# କାୟାକଳ୍ପ

ପ୍ରେମଚନ୍ଦ



ଭାରତୀୟ ଉପନ୍ୟାସ

# କାୟାକଳ୍ପ



ପ୍ରେମଚନ୍ଦ

ଅନୁବାଦ : ଶ୍ରୀ ରାମଚନ୍ଦ୍ର ମହାପାତ୍ର

ଗ୍ରନ୍ଥମନ୍ଦିର

ପ୍ରକାଶକ : ଅଭିରାମ ମହାପାତ୍ର
ଗ୍ରନ୍ଥମନ୍ଦିର, ବିନୋଦବିହାରୀ, କଟକ-୨

ମୁଦ୍ରକ :
ଦୁର୍ଗାଶଙ୍କର ପ୍ରେସ, କଟକ-୨

ପ୍ରଥମ ସଂସ୍କରଣ : ୧୯୮୮

ମୂଲ୍ୟ : ଟଙ୍କା ୫-୦୦



# କାୟାକଳ୍ପ

ଦିନ ଦ୍ୱିପ୍ରହର । ଚତୁର୍ଦ୍ଦିଗ ଅନ୍ଧକାର । ଆକାଶରେ ନକ୍ଷତ୍ରମାଳା !! ସର୍ବତ୍ର ନିସ୍ତବ୍ଧତା ! ସତେ ଯେପରି ସଂସାରରୁ ଜୀବନ ସତ୍ତା ଲୋପ ପାଇ ଯାଇଛି । ପବନ ମଧ୍ୟ ବନ୍ଦ । ସୂର୍ଯ୍ୟୋପରାଗ । ତ୍ରିବେଣୀରେ ଯାତ୍ରୀମାନଙ୍କର ପ୍ରବଳ ଭିଡ଼ । ଏ ଭିଡ଼ର ଉପମା ନାହିଁ । ଏମାନେ ସମସ୍ତେ ହିନ୍ଦୁ । ହୃଦୟରେ ଶ୍ରଦ୍ଧା ଏବଂ ଧର୍ମାନୁରାଗ । ଭାରତର ବିଭିନ୍ନ ସ୍ଥାନରୁ ଏହି ମହାନ୍ ଅବସରରେ ତ୍ରିବେଣୀର ପବିତ୍ର ଧାରରେ ନିଜ ନିଜର ପାପରାଶି ବିସର୍ଜନ କରିବା ନିମିତ୍ତ ଆସିଯାଇଥିଲେ । ଏଠାର ସଙ୍କୀର୍ଣ୍ଣ ଘାଟରେ ଲୋକେ ଏଡ଼େ ଉତ୍ସାହରେ ପଡ଼ି ଉଠି ଧାଉଁଥିଲେ ଯେ, ତ୍ରିବେଣୀର ଏହି ଶୀତଳ ଜଳଧାରା ଯଦି ପ୍ରଜ୍ୱଳିତ ଅଗ୍ନିକୁଣ୍ଡ ହୋଇଥାନ୍ତା, ତେବେ ବି ଲୋକେ ତହିଁରେ ଡେଇଁ ପଡ଼ିବାକୁ ଟିକେ ହେଲେ କୁଣ୍ଠାବୋଧ କରି ନ ଥା'ନ୍ତେ ।

ଦଳାଚକଟାରେ କେତେ ଯେ ମଲେ, କେତେ ଗଭୀର ଜଳରେ ବୁଡ଼ି ମଲେ, କେତେ ଯେ ହଜିଗଲେ, କେତେ ଯେ ପଙ୍ଗୁ ହୋଇଗଲେ—ତାହା ଅନୁମାନ କରିବା କଠିନ । ଧର୍ମର ବିକଟ ସଂଗ୍ରାମ । ପ୍ରଥମତଃ ସୂର୍ଯ୍ୟୋପରାଗ, ଦ୍ୱିତୀୟରେ ପ୍ରକୃତିର ଅସାଧାରଣ ଦୃଶ୍ୟ । ସମଗ୍ର ଦୃଶ୍ୟ ଧାର୍ମିକ ବୃତ୍ତିଗୁଡ଼ିକୁ ଜାଗ୍ରତ କରୁଥିଲା । ଦିନ ଦ୍ୱିପ୍ରହର ସମୟରେ ତାରାମାନଙ୍କର ପ୍ରକାଶ ! ମାୟାର ପରଦା ଚିରି ଆତ୍ମାକୁ ଆଲୋକିତ କରୁଥିବା ଭଳି ଜଣାପଡ଼ୁଥିଲା । ବୈଜ୍ଞାନିକମାନଙ୍କ କଥା ଛାଡ଼ନ୍ତୁ—ଜନତାର ମନରେ ବହୁ ଦିନରୁ ବିଶ୍ୱାସ ଥିଲା ଯେ ତାରାମାନେ ଦିନରେ କୌଣସି ସାଗରରେ ବୁଡ଼ି ରହିଥାଆନ୍ତି । ଆଜି କିନ୍ତୁ ସେହି ତାରାମାନେ ଆଖିକୁ ସ୍ପଷ୍ଟ ଦେଖାଯାଉଛନ୍ତି । ଏଥିରେ ଭକ୍ତି ଜାଗ୍ରତ ନ ହେବ କିପରି ! ସଦ୍‌ବୃତ୍ତିଗୁଡ଼ିକ ସ୍ପଷ୍ଟ ଦେଖା ନ ଦିବେ କିପରି !

ଅର୍ଦ୍ଧ ଘଣ୍ଟାଏ ପରେ ପୃଥିବୀ ଆଲୋକିତ ହେଲା । ତାରାଗୁଡ଼ିକ ପୁଣି ଅଦୃଶ୍ୟ ହୋଇଗଲେ । ଭଗବାନ ସୂର୍ଯ୍ୟଦେବଙ୍କର ସମାଧି ଭଙ୍ଗ ହେଲା ।

ଯାତ୍ରୀମାନେ ନିଜ ନିଜ ପାପର ଗଣ୍ଠିଲିମାନ ତ୍ରିବେଣୀରେ ଫିଙ୍ଗିଦେଇ ଫେରିବା ଆରମ୍ଭ କଲେ । ସନ୍ଧ୍ୟା ପୂର୍ବରୁ ଘାଟ ନିସ୍ତବ୍ଧ ହୋଇଗଲା । କେବଳ କେତେଜଣ ଆହତ କେତେଜଣ ଅର୍ଦ୍ଧମୃତ ପ୍ରାଣୀ ଏଣେ ତେଣେ ପଡ଼ି ଚିତ୍କାର କରୁଥିଲେ । ନାଳି ଭିତରେ ଗୋଟିଏ ତିନି ଚାରି ବର୍ଷ ବୟସର ବାଳକ ପଡ଼ି ବଡ଼ପାଟିରେ କାନ୍ଦୁଥିଲା ।

ସେବା ସମିତିର ଯୁବକମାନେ ଏ ଯାଏ ଏ ଭିଡ଼କୁ ସମ୍ଭାଳିବା ପାଇଁ ବିଫଳ ପ୍ରଯତ୍ନ କରୁଥିଲେ । ଏବେ ସେମାନେ ଷ୍ଟ୍ରେଚର କାନ୍ଧେଇ ଧାଇଁଲେ ଏବଂ ହଜିଯାଇଥିବା ବାଳକ-ମାନଙ୍କର ଖବର ନେବା ପାଇଁ ଏଣେତେଣେ ବୁଲିବାକୁ ଲାଗିଲେ । ସେବା ଏବଂ ଦୟାର ଏକ ଅନୁପମ ଦୃଶ୍ୟ ଦେଖିବାକୁ ମିଳୁଥିଲା ।

ସହସା ଜଣେ ଯୁବକର କାନରେ ଏକ ବାଳକାର କ୍ରନ୍ଦନ ଧ୍ୱନି ପଡ଼ିଲା । ସାଥିକୁ ଡାକି କହିଲା—ଯଶୋଦା, ଇଆଡ଼େ ଗୋଟେ ପିଲାର କାନ୍ଦ ଶୁଭୁଛି ।

ଯଶୋଦା—ହଁ, ସତେ ତ ! ଏ ମୂର୍ଖଗୁଡ଼ାକୁ କିଏ କମିତି ବା ବୁଝେଇବ ଏଠାକୁ ପିଲାମାନଙ୍କୁ ଆଣ ନାହିଁ ବୋଲି । ଚାଲିଲ ଦେଖିବା ।

ଉଭୟେ ଯାଇ ଦେଖିଲେ—ଗୋଟିଏ ବାଳିକା ନାଳ ଭିତରେ ପଡ଼ି କାନ୍ଦୁଛି । ପିଲାଟି ଦେଖିବାକୁ ଗୋରୀ, ହୃଷ୍ଟପୁଷ୍ଟ, ବଡ଼ ବଡ଼ ଆଖି, ସୁନ୍ଦର ମୁଖ । ଗୋଡ଼ଠାରୁ ମୁଣ୍ଡଯାଏଁ ଅଳଙ୍କାର ମଣ୍ଡି ହୋଇଛି । କୌଣସି ଭାଗ୍ୟଶାଳୀ ଘରର ଝିଅ । କାନ୍ଦି କାନ୍ଦି ଆଖି ଲାଲ ଦେଖାଯାଉଥିଲା । ସମ୍ମୁଖରେ ଦୁଇଜଣ ଯୁବକଙ୍କୁ ଦେଖି ସେ ଭୟରେ ଚିତ୍କାର କରିବାକୁ ଲାଗିଲା । ଯଶୋଦା ତାକୁ କୋଳରେ ଉଠାଇ ଗେଲ କରି କହିଲା—ମାଆଟି ମୋର, କାନ୍ଦନା । ଆମେ ତୋତେ ତୋ ମାଆ ପାଖରେ ନେଇ ପହଞ୍ଚାଇଦେବୁ । ସେମାନେ ତୋତେ ଖୋଜୁଥିବେ । ଆଚ୍ଛା, କହିଲୁ ଝିଅ—ତୋ ବାପାଙ୍କ ନାମ କ'ଣ ?

ପିଲାଟି ଚୁପ୍ ହୋଇ ସନ୍ଦେହ ଦୃଷ୍ଟିରେ ଚାହିଁ ଧକେଇବାକୁ ଲାଗିଲା । ଏ ପ୍ରଶ୍ନର କୌଣସି ଉତ୍ତର ଦେଇ ପାରିଲା ନାହିଁ ।

ଯଶୋଦା ପୁଣି ଗେଲ କରି ପଚାରିଲା—ଝିଅ, ତୋର ଘର କେଉଁଠି ?

ବାଳିକା କିଛି ଉତ୍ତର ଦେଲା ନାହିଁ ।

ଯଶୋଦା—ମହମୁଦ, ଉପାୟ କ'ଣ କହ ?

ମହମୁଦ ଜଣେ ଧନୀ ମୁସଲମାନ ସନ୍ତାନ । ଯଶୋଦାନନ୍ଦନଙ୍କର ସାଙ୍ଗ । ସେବା ସମିତିର ମେମ୍ବର । କହିଲା—କ'ଣ ଉପାୟ ! କ୍ୟାମ୍ପକୁ ଚାଲ । ସମ୍ଭବତଃ ଠିକଣା ମିଳିପାରେ ।

ଯଶୋଦା—ଅଭାଗାଗୁଡାକ, ଯୁଆଡ଼େ ଗଲେ ପିଲାଙ୍କୁ ନେଇ ପଳେଇ ଯାଉଛନ୍ତି । ସେମାନଙ୍କୁ ନାମ ଏବଂ ଠିକଣା ମଧ୍ୟ ବତାଉ ନାହାନ୍ତି ।

ମହମୁଦ—ଝିଅ, ତୋ ବାପାଙ୍କ ନାଁ କ'ଣ କହିଲୁ !

ବାଳିକା ଧୀର କଣ୍ଠରେ କହିଲା—ବାପା…

ମହମୁଦ—ତମର ଘର ଏଇ ସହରରେ ନା ଆଉ କେଉଁଠି ?

ବାଳିକା—ମୁଁ ବାପାଙ୍କ ସାଙ୍ଗରେ ରେଲ ଉପରେ ବସି ଆଇଥିଲି ।

ମହମୁଦ—ତୋ ବାପା କ'ଣ କରନ୍ତି ?

ବାଳକା—କିଛି କରନ୍ତୁନ ।

ଯଶୋଦା—ବାପଙ୍କ ଏବେ ଯଦି ମିଳି ଯାଆନ୍ତା ନା, ସତ କହୁଚି—ଧକ୍କା ମାରି ମାରି ତାଙ୍କ କରି ଦିଅନ୍ତି । ଅଳଙ୍କାର ପିନ୍ଧେଇ ଆଣିଚି ଏଠି ତାମସା ଦେଖେଇବାକୁ ।

ମହମୁଦ—ବୁଝିଲୁ, ମୋ ମନ ହଉଚି ତୋତେ ଦି ଧକ୍କା ପକେଇବାକୁ । ଅରେ ବାବା, ମିୟାଁ ବବୀ ଆସିଲେ ପିଲାକୁ କୁଉଠି ରଖିଦେଇ ଆସିବେ ? ଘରେ ଆଉ କେହି ନ ଥିଲେ କ'ଣ କରିବେ !

ଯଶୋଦା—ସେମାନଙ୍କର ଏଠାକୁ ଆସିବା କ'ଣ ଦରକାର ?

ମହମୁଦ—ତୁ ଗୋଟାଏ ନାସ୍ତିକ । ଧର୍ମ କଥା ତୋତେ କ'ଣ ବା ଜଣା !

ଯଶୋଦା—ଏଭଳି ଧର୍ମକୁ ଦୂରୁଁ ଜୁହାର । ଏବେ ମିୟାଁବବୀ ହାୟ ହାୟ କରୁଥିବେ କି ନାହିଁ ?

ମହମୁଦ—ଅରେ ଏ ଭିଡ଼ ଭିତରେ କୁଉଠି ଖତମ ଯେ ହୋଇ ନ ଥିବେ କିଏ କହିବ !

ବାଳକା ସାହସ କରି କହିଲା—ତମେ ମତେ ଘରେ ପହଞ୍ଚି ଦିଅ । ବାପା ଭଉଣୀଙ୍କୁ ପଇସା ଦେବେ ।

ଯଶୋଦା—ଆଚ୍ଛା, ଚାଲ ମା' ତୋ ବାପାଙ୍କୁ ଖୋଜିବା ।

ଦୁଇ ବନ୍ଧୁ ବାଳକାଟିକୁ ଧରି କ୍ୟାମ୍ପକୁ ଫେରିଲେ । କିନ୍ତୁ ଏଠାରେ ମଧ୍ୟ କିଛି ଠିକଣା ମିଳିଲା ନାହିଁ । ତା'ପରେ ଦୁଇ ବନ୍ଧୁ ଯାତ୍ରୀମାନେ ନିଜ ନିଜ ଗଣ୍ଠିଲି ଧରି ପଡ଼ିଥିବା ପଡ଼ିଆକୁ ଚାଲିଲେ । ମହମୁଦ ବାଳକାକୁ କାନ୍ଧରେ ବସାଇଲା । ଯଶୋଦାନନ୍ଦନ ବଡ଼ ପାଟିରେ କହିଲା—'ଏ ବାଳକାଟି କାହାର ? କାହାର ଝିଅ ହଜି ଯାଇଛି ?' ଏ ପାଟି ଶୁଣି କେତେ ଯାତ୍ରୀ 'ହାଁ ହାଁ—କାଇଁ କାଇଁ' କହି ଦୌଡ଼ି ଆସିଲେ । କିନ୍ତୁ ବାଳକାକୁ ଦେଖି ନିରାଶରେ ଫେରିଗଲେ ।

ଅନ୍ଧାର ହେବା ଯାଏ ଦୁଇ ବନ୍ଧୁ ବୁଲିଲେ । ତଳ ଉପର, କଲି ପାଖ, ରେଲ ଷ୍ଟେସନ, ଅଲୋପୀ ଦେବୀ ମନ୍ଦିର—ଯେଉଁଠାରେ ଯାତ୍ରୀ ଥିଲେ—ସବୁଠି ବୁଲି ବୁଲି ନିରାଶରେ କ୍ୟାମ୍ପକୁ ଫେରି ଆସିଲେ ।

ଦ୍ୱିତୀୟ ଦିନ ମଧ୍ୟ ସମିତିର କେତେ ଜଣ ସେବକ ଚେଷ୍ଟା କଲେ । ଦିନସାରା ଦୌଡ଼ାଦୌଡ଼ି କଲେ । ସାରା ପ୍ରୟାଗ ଦରାଣ୍ଡି ପକାଇଲେ । ସବୁ ଧର୍ମଶାଳା ଖୋଜିଲେ । କିନ୍ତୁ କୌଣସିଠାରେ କିଛି ଖବର ମିଳିଲା ନାହିଁ ।

ତୃତୀୟ ଦିନ ଖବରକାଗଜରେ ନୋଟିସ ଦିଆଗଲା । ଦୁଇ ଦିନ କ୍ୟାମ୍ପ ରହିଲା । ତା'ପରେ କ୍ୟାମ୍ପ ଆଗରୁ ଉଠିଗଲା । ବାଳକାକୁ ମଧ୍ୟ ସାଙ୍ଗରେ ନେଇଗଲେ । ଖବର କାଗଜରେ ବାହାରିଲେ କିଛି ଖବର ମିଳିବାର ଆଶା ଥିଲା । ତଥାପି କିଛି ଫଳ ନ ହେବାରୁ

କର୍ମକର୍ତ୍ତାମାନେ ଝିଅଟିକୁ ଅନାଥାଳୟରେ ରଖିଦେଲେ । ଯଶୋଦାନନ୍ଦନ ଥିଲେ ସେହି ଅନାଥାଳୟର ମ୍ୟାନେଜର ।

( ୨ )

ବନାରସରେ ମହାତ୍ମା କବୀରଙ୍କ ଚଉପାଢ଼ୀ ପାଖରେ ମୁନ୍‌ସି ବଜ୍ରଧର ସିଂହଙ୍କ ଘର । ବଜ୍ରଧର ସିଂହ ରାଜପୁତ, କିନ୍ତୁ ନିଜକୁ 'ମୁନ୍‌ସୀ' ବୋଲି ପରିଚୟ ଦିଅନ୍ତି । 'ମୁନ୍‌ସି' ଉପାଧିଟା ବାବୁଙ୍କର ଖୁବ ପ୍ରିୟ । 'ଠାକୁର' ଉପାଧିଟା ଗାଉଁଲି ବୋଲି ଭାବନ୍ତି । ଅନେକ ଦିନ ହେଲା ସେ ପେନ୍‌ସନ୍ ପାଇଲେଣି । ଖୁବ୍ ଶ୍ରେଷ୍ଠ ଚାକିରିରୁ ପଦୋନ୍ନତ ହୋଇ ତହସିଲଦାର ପର୍ଯ୍ୟନ୍ତ ଯାଇଥିଲେ । ଏହି ମହାନ୍ ପଦରେ ସେ ତିନି ବର୍ଷରୁ ଅଧିକ କାଳ ରହିପାରିଲେନି । ଆଡ଼ିସନାଲ୍‌ରେ ରହିଲେ ବି ସେ ନିଜକୁ 'ସାବିକ୍ ତହସିଲଦାର' ବୋଲି କହୁଥା'ନ୍ତି । ତାଙ୍କୁ ଖୁସି କରିବା ପାଇଁ ସାହିରେ ତାଙ୍କୁ 'ତହସିଲଦାର ସାହେବ' ବୋଲି ଡାକନ୍ତି । ଏ ଡାକଟା ତାଙ୍କୁ ଖୁବ୍ ଭଲ ଲାଗେ । ଏବେ ପେନ୍‌ସନ୍ ୨୫ ଟଙ୍କା । ବଜାର ସଉଦା ନିଜେ କରନ୍ତି । ଘରେ ଚାରି ପ୍ରାଣୀଙ୍କ ଖର୍ଚ୍ଚ । ଗୋଟିଏ ଝିଅ, ଗୋଟିଏ ପୁଅ ଓ ଇଏ ଦୁଇ ପ୍ରାଣୀ । ପୁଅର ନାମ ଚକ୍ରଧର । ନିଜ ବୁଦ୍ଧିବଳରେ ସେ ଏମ୍. ଏ. ପାସ୍ କରିଛି । ମୁନ୍‌ସିଜୀ ଦରବାରୀ କଳାରେ ନିପୁଣ ଥିଲେ । ହାକିମମାନେ ଦେଇଥିବା ଶହେ ଶହେ ପ୍ରଶଂସା-ପତ୍ର ହେଉଛି ତାଙ୍କର ଅମୂଲ୍ୟ ସମ୍ପଦ । ବଡ଼ ଗର୍ବର ସହ ସେ ସେଗୁଡ଼ିକୁ ସମସ୍ତଙ୍କୁ ଦେଖାନ୍ତି । କୌଣସି ନୂଆ ହାକିମ ଆସିଲେ ତାକୁ ଯେ କୌଣସି ପ୍ରକାରେ ହାତକୁ ଆଣନ୍ତି । ପରୀକ୍ଷା ଫଳ ବାହାରିବା ପରେ ମୁନ୍‌ସିଜୀ ଚକ୍ରଧରକୁ କମିଶନରଙ୍କ ପାଖକୁ ଯିବାକୁ କହିବାରୁ ସେ ମନା କରିଦେଲେ ।

ମୁନ୍‌ସିଜୀ କ୍ରୋଧରେ ପଚାରିଲେ—ଘରେ ବସି ରହିଲେ କ'ଣ ଚାକିରି ମିଳିବ !

ଚକ୍ରଧର—ଚାକିରି କରିବାକୁ ମୁଁ ଇଚ୍ଛା କରେନା ।

ବଜ୍ରଧର—ଏ ଭୂତ କେଉଁ ଦିନଠାରୁ ମୁଣ୍ଡରେ ପଶିଲାଣି ! ଚାକିରୀ ବ୍ୟତୀତ-ଆଉ କରିବୁ କ'ଣ ?

ଚକ୍ରଧର—ମୁଁ ସ୍ୱାଧୀନ ରହିବାକୁ ଚାହେଁ ।···

ବଜ୍ରଧର—ତେବେ ଏମ୍. ଏ. ପଢ଼ିଲୁ କାହିଁକି ?···

ଚକ୍ରଧର—ସ୍ୱାଧୀନତାର ମହତ୍ତ୍ୱ ବୁଝିବା ପାଇଁ ।

ସେହିଦିନ ପିତା ପୁତ୍ରଙ୍କ ମଧ୍ୟରେ ଖଟଖଟ ଲାଗିରହିଲା । ଯୁଦ୍ଧ ହେଲେ ମଧ ମୁନ୍‌ସିଜୀ ସଉକିନିଆ ଲୋକ । ଭଲ ଖାଇବା ଓ ଭଲ ପିନ୍ଧିବା ତାଙ୍କର ଅଭ୍ୟାସ । ପୁଅ ଚାକିରି କଲେ ମଉଜରେ ରହିବେ ବୋଲି ସେ ଭାବିଥିଲେ । ଏବେ ପୁଅର ଢଙ୍ଗ ଦେଖି

ସଦାବେଳେ ତାକୁ କର୍ମଚୋରା, ଗର୍ବୀ, ମୂର୍ଖ ବୋଲି କହିବାକୁ ଲାଗିଲେ । ଏବେ ପିଲାଙ୍କୁ କିଛି ଜଣାପଡ଼ୁନ । ମୁଁ ମରିଗଲେ ବୁଝିବ ସେ ! ହଜାରେବାର କହିଲି ଏ ଯୁଗଟା ହେଉଛି ଖୁସାମତର ଯୁଗ । ତୁମେ ବିଦ୍ୟାର ସାଗର ହୋଇଥାଅ ପଛେ—କେହି ପଚାରିବେନି । ତୁମେ ବସି ସ୍ୱାଧୀନତାର ମଜା ଚାଖୁଥିବ, ଆଉ ଅନ୍ୟମାନେ ପକେଟ ଗରମ କରି ଚାଲିଥିବେ । ବିଦ୍ୱାନ୍‌କୁ ଆଦର କରିବା ଯୁଗ ଚାଲିଗଲାଣି । ଏବେ ବିଦ୍ୟା ହେଉଛି ଶସ୍ତା । କେହି ହି ପଇସାକୁ ପଚାରିବେନି । ସାଧାରଣ ଜିନିଷ ତିଆରି ପାଇଁ ଯେମିତି କାରଖାନା ଖୋଲି ଯାଇଛି, ସେହିଭଳି ବିଦ୍ୱାନ ଉତ୍ପାଦନ ପାଇଁ କାରଖାନା ତିଆରି ହୋଇଛି । ପ୍ରତି ବର୍ଷ ଏ ସଂଖ୍ୟା ବୃଦ୍ଧି ହେବାରେ ଲାଗିଛି ।

ଚନ୍ଦ୍ରଧର ପିତାଙ୍କୁ ସମ୍ମାନ ଦେଖାଉଥିଲେ । ନିଜ ଜୀବନକୁ ସାର୍ଥକ କରିବା ପାଇଁ ଯେଉଁ ମାର୍ଗ ବାଛି ନେଇଥିଲେ, ତହିଁରେ ସେ ଦୃଢ଼ ଥିଲେ । କେବଳ ପେଟ ପାଇଁ ଅଧା ବୟସ ଯାଏଁ ପଢ଼ାରେ ବ୍ୟସ୍ତ କରିବାଟାକୁ ସେ ହାସ୍ୟାସ୍ପଦ ମନେକରୁଥିଲେ । ପେଟ ପାଳିବା ଯଦି ଜୀବନର ଆଦର୍ଶ ହୁଏ, ତେବେ ପଢ଼ିବାର ଆବଶ୍ୟକତା କ'ଣ ? କୁଲି ମୂଲିଆଙ୍କୁ ଅକ୍ଷର ଜଣା ନାହିଁ । କିନ୍ତୁ ସେମାନଙ୍କର ତ ପେଟ ଅପୋଷା ରହୁନି । ଭୋକରେ ମରିବ ସିନା, ଚାକିରି ପାଇଁ ଆବେଦନ ପତ୍ର ଧରି କୁଆଡ଼େ ଯିବ ନାହିଁ । ଦୀନଦୁଃଖୀଙ୍କ ସେବାରେ ଯେଉଁ ଆନନ୍ଦ, ଅଫିସରେ ବସି କଲମ ଘଷି କଲେ ତାହା ମିଳିବ ନାହିଁ ।

ଦୁଇ ବର୍ଷ ବିତିଗଲା । ମୁନ୍‌ସୀ ବଜ୍ରଧର ଭାବିଲେ—ଏ ନିଶା ଦୁଇ ଦିନ ପାଇଁ ରହିବନି । ବାହା କରିଦେଲେ ବଳେ ଚାକିରି ପଛରେ ଗୋଡ଼ାଇବ । କିନ୍ତୁ ଦୁଇ ବର୍ଷ ବିତିଗଲେ ମଧ୍ୟ ନିଶା ଛାଡ଼ିବାର କୌଣସି ଲକ୍ଷଣ ଦେଖିବାକୁ ମିଳିଲାନି । ଦିନେ ସେ ବିରକ୍ତିରେ ଚନ୍ଦ୍ରଧରଙ୍କୁ କହିଲେ—ଦୁନିଆର ନିୟମ ଆଗ ଘରେ ସଂଧା ବଳତା କରାଅ, ତା'ପରେ ମନ୍ଦିରରେ ଦୀପ ଦେବ । ତୁ ନିଜ ଘରକୁ ଅନ୍ଧାର କରି ମନ୍ଦିର ଆଲୋକିତ କରିବାକୁ ଚାହୁଁଛୁ । ନିଜ ରକ୍ଷଣ ଯାହାର ଅସମ୍ଭବ ସେ ଅନ୍ୟକୁ ସାହାଯ୍ୟ କିପରି କରିବ ? ବୃଦ୍ଧାବସ୍ଥାରେ ମୁଁ ଋଣଗ୍ରସ୍ତ ହେବି । ତୁ ଅନ୍ୟର କଲ୍ୟାଣରେ ଘୂରି ବୁଲୁଛୁ । ମୁଁ ତୋତେ ଜନ୍ମ ଦେଇଛି, ପାଳିଛି, ପୋଷିଛି, ତୋତେ ଧରି ବୈଦ୍ୟ ଡାକ୍ତରଙ୍କ ଦ୍ୱାରକୁ ଧାଇଁଛି । ଅନ୍ୟ କେହି କରିନି, ପାଳିନି କି ପୋଷିନି । ତୋ ଉପରେ ବେଶି ଦାବୀ ମୋର—ଅନ୍ୟମାନଙ୍କର ନୁହେଁ ।

ଚନ୍ଦ୍ରଧର ଆଉ ପିତାଙ୍କର ଅବାଧ୍ୟ ହୋଇ ପାରିଲେନି । କଲେଜରେ ତାଙ୍କୁ ସମସ୍ତେ ଭଲପାଉଥିଲେ । ସେଠାରେ ତାଙ୍କୁ ଚାକିରି ମିଳି ପାରି ଥାଆନ୍ତା । କିନ୍ତୁ ସେ ଚାହୁଁ ନ ଥିଲେ, ଯହିଁରେ ଘଣ୍ଟାଏ ପରିଶ୍ରମ କରି କିଛି ରୋଜଗାର କରି ହେବ । ଯୋଗକୁ ଜଗଦୀଶପୁର ବର୍ତ୍ତମାନ ଠାକୁର ହରିସେବକ ସିଂହଙ୍କ କନ୍ୟାକୁ ପଢ଼ାଇବା ପାଇଁ ଜଣେ ଅଧ୍ୟାପକ ଦରକାର ପଡ଼ିଲେ । ମାସକୁ ୩୦ ଟଙ୍କା ଦେବେ । କଲେଜର ଅଧ୍ୟାପକମାନେ ଏତେ କମ୍‌ରେ ରାଜି ହେଲେନି । ଚନ୍ଦ୍ରଧରଙ୍କୁ ଏ କାମରେ ଲଗେଇ ଦେଲେ । ବଡ଼

ଦାୟିତ୍ୱପୂର୍ଣ୍ଣ କାମ । କିନ୍ତୁ ଚକ୍ରଧରଙ୍କ ଉପରେ ସମସ୍ତଙ୍କର ଭରସା ଥିଲା । ପରଦିନ ଚକ୍ରଧର ପଢ଼େଇବାକୁ ଆରମ୍ଭ କଲେ ।

( ୩ )

କେତେ ମାସ କଟିଗଲା । ମାସ ଶେଷରେ ଚକ୍ରଧର ଟଙ୍କା ଆଣି ମାଆଙ୍କୁ ଧରେଇ ଦିଅନ୍ତି । ନିଜ ପାଇଁ ପଇସାର ଅବଶ୍ୟକତା ନଥିଲା । ଦୁଇଖଣ୍ଡ ମୋଟା କୁରୁତାରେ ବର୍ଷେ ଚଳେଇ ଦିଅନ୍ତି । ପୁସ୍ତକ ପାଠ ଓ ସେବା କାର୍ଯ୍ୟରେ ଆଗ୍ରହ । ପୁସ୍ତକ ପାଇଁ କଲେଜ ପୁସ୍ତକାଳୟ ସର୍ବଦା ଖୋଲା । ସେବା କାର୍ଯ୍ୟ ସ୍ୱଚ୍ଛନ୍ଦାରେ ଚାଲେ । ଆଉ ଅଧିକ ଡେରି କଲେ ଅସୁବିଧା ହେବ ବୋଲି ବଜ୍ରଧର ଭାବିଲେ ଏବଂ ଶୀଘ୍ର ବିବାହ କରାଇଦେଲେ ମହାଶୟ ଠିକ୍ ବାଟକୁ ଆସିବେ ବୋଲି ସ୍ଥିର କରିନେଲେ ।

ମନୋରମାର ବୟସ ମାତ୍ର ତେର ବର୍ଷ । ତାକୁ ପଢ଼େଇବାରେ ଚକ୍ରଧର ନାକେଦମ୍ ହୁଅନ୍ତି । ସର୍ବଦା ସେ ଚେଷ୍ଟା କରୁଥିଲେ, ଠାକୁର ସାହେବଙ୍କ ଉପସ୍ଥିତିରେ ପଢ଼େଇବେ । ଠାକୁର ସାହେବ ଯଦି କେତେବେଳେ କୁଆଡ଼େ ଚାଲି ଯାଆନ୍ତି, ଚକ୍ରଧର ବଡ଼ ଅସୁବିଧାର ସମ୍ମୁଖୀନ ହୁଅନ୍ତି ।

ଦିନେ ଏହିଭଳି ଅସୁବିଧାରେ ଚକ୍ରଧର ପଡ଼ିଲେ । ଠାକୁର ସାହେବ କୁଆଡ଼େ ଯାଇଥିଲେ । ଚକ୍ରଧର ଚୌକିରେ ବସି ଦୁଆର ଆଡ଼କୁ ଚାହିଁଲେ । ତାଙ୍କ ବସିବା ଭଙ୍ଗିରୁ ଜଣା ପଡ଼ୁଥିଲା ଯେତେ ଯେପରି ଏଠାରେ ବସିବାକୁ ସେ ଭୟ କରୁଛନ୍ତି । ମନୋରମା ବାଲ୍ମୀକି ରାମାୟଣ ପଢ଼ୁଥିଲା । ସେ ଦୁଇ ତିନି ଥର ଚକ୍ରଧରଙ୍କୁ ଚାହିଁଲା । କିନ୍ତୁ ଚକ୍ରଧର ଦୁଆର ଆଡ଼େ ଚାହିଁ ରହିଥିବାର ଦେଖି ସେ ଶ୍ଳୋକ ପଢ଼ିବାକୁ ଲାଗିଲା । ତାର ମନରେ ସୀତା ବନବାସ ସମ୍ବନ୍ଧରେ ସନ୍ଦେହ ଜାତ ହେଲା ଏବଂ ଏ ସନ୍ଦେହର ସମାଧାନ ସେ ଚାହୁଁଥିଲା । ଚକ୍ରଧର ପୂର୍ବପରି ଦୁଆର ଆଡ଼େ ଚାହିଁ କହିଲେ—ଚୁପ୍ ହୋଇଗଲ କାହିଁକି ? ଆଜିର ପାଠପଢ଼ା ହେବ ନାହିଁ କି ?

ମନୋରମା—ମୁଁ ଆପଣଙ୍କୁ ଗୋଟିଏ କଥା ପଚାରିବାକୁ ଚାହୁଁଛି ।

ଚକ୍ରଧର କାତର ଭାବରେ କହିଲେ—କ'ଣ ?

ମନୋରମା—ରାମଚନ୍ଦ୍ର ସୀତାଙ୍କୁ ବାହାର କରିଦେଲେ । କିନ୍ତୁ ସୀତା ଚାଲିଗଲେ କାହିଁକି ?

ଚକ୍ରଧର—ଆଉ କ'ଣ କରିଥାନ୍ତେ ?

ମନୋରମା—ମନା କରି ଦେଇଥାଆନ୍ତେ । ରାଜ୍ୟରେ ରାମଚନ୍ଦ୍ରଙ୍କର ଯେତକ ଅଧିକାର, ସୀତାଙ୍କର ମଧ୍ୟ ସେତକ ଅଧିକାର । ତା'ପରେ ସେ ନିର୍ଦ୍ଦୋଷ । ଯଦି ସେ ଏ ଅନ୍ୟାୟକୁ ବରଦାସ୍ତ କରି ନ ଥା'ନ୍ତେ ତେବେ କ'ଣ ତାଙ୍କ ଉପରେ ବିପଦ ପଡ଼ି ଯାଇଥାଆନ୍ତା ?

ଚକ୍ରଧର—ଆମ ଏଠାରେ ପୁରୁଷମାନଙ୍କର ଆଦେଶ ପାଳନ କରିବାଟାକୁ ସ୍ତ୍ରୀମାନେ ପରମ ଧର୍ମ ବୋଲି ମନେକରିଥା'ନ୍ତି । ଯଦି ସୀତା ପତିଙ୍କର ଆଦେଶ ପାଳନ କରି ନ ଥା'ନ୍ତେ, ତେବେ ସେ ଭାରତୀୟ ସ୍ତ୍ରୀଙ୍କର ଆଦର୍ଶରୁ ବିଚ୍ୟୁତ ହୋଇଯାଇଥା'ନ୍ତେ ।

ମନୋରମା—ସ୍ତ୍ରୀ ପୁରୁଷର ଆଦେଶ ପାଳନ କରିବା ଉଚିତ—ଏହା ମୁଁ ଜାଣେ । କିନ୍ତୁ କ'ଣ ସବୁ ଅବସ୍ଥାରେ ପାଳନ କରାଯିବ ? ଯଦି ସାଧାରଣ ପ୍ରଜା ରାଜାଙ୍କଠାରୁ ନ୍ୟାୟ ଦାବୀ କରିପାରେ, ତେବେ କ'ଣ ତା'ର ସ୍ତ୍ରୀ କରି ପାରିବ ନାହିଁ ? ରାମଚନ୍ଦ୍ର ସୀତାଙ୍କୁ ପରୀକ୍ଷା କଲେ ଏବଂ ପବିତ୍ର ବୋଲି ସର୍ବାନ୍ତଃକରଣରେ ସ୍ୱୀକାର କଲେ । କେବଳ ମିଥ୍ୟା ଅପବାଦରୁ ରକ୍ଷା ପାଇବା ପାଇଁ ତାଙ୍କୁ ଘରୁ ତଡ଼ିଦେବାଟା କେଉଁ ନ୍ୟାୟ ?

ଚକ୍ରଧର—ତାହା ହେଉଛି ରାଜଧର୍ମର ଆଦର୍ଶ ପାଳନ ।

ମନୋରମା—ତେବେ କ'ଣ ଉଭୟ ପ୍ରାଣୀ ଜାଣୁଥିଲେ ଯେ ଆମେ ସଂସାରରେ ଆଦର୍ଶ ସ୍ଥାପନ କରୁଛୁ ବୋଲି ! ଏହାଦ୍ୱାରା ତ ସେମାନେ କୌଣସି ଅଭିନୟ କରୁଥିଲେ ବୋଲି ପ୍ରତିପାଦିତ ହେଉଛି । ଆଚ୍ଛା, ଧରାଯାଉ ଏହା ଆଦର୍ଶ । କିନ୍ତୁ ଏହା ଏପରି ଏକ ଆଦର୍ଶ, ଯେଉଁ ଆଦର୍ଶ ସତ୍ୟକୁ ହତ୍ୟା କରି ପାଳନ କରାଗଲା । ଏହା ଆଦର୍ଶ ନୁହେଁ, ଚାରିତ୍ରିକ ଦୁର୍ବଳତା । ମୁଁ ଆପଣଙ୍କୁ ପଚାରୁଛି—ଆପଣ ଯଦି ରାମଚନ୍ଦ୍ର ହୋଇଥାଆନ୍ତେ, ତେବେ କ'ଣ ଆପଣ ସୀତାଙ୍କୁ ଘରୁ ତଡ଼ି ଦେଇ ଥାଆନ୍ତେ !

ଚକ୍ରଧର ବଡ଼ ଅଡୁଆରେ ପଡ଼ିଗଲେ । ତାଙ୍କ ମନରେ ମଧ୍ୟ ଏଇ ବିଷୟରେ ଏଇ ସନ୍ଦେହ ଜାଗ୍ରତ ହୋଇଥିଲା । କିନ୍ତୁ ସେ ତାର ସମାଧାନ କରି ପାରି ନ ଥିଲେ । ଏବେ ସ୍ପଷ୍ଟ ଉତ୍ତର ଦେବା ଆବଶ୍ୟକ ପଡ଼ିବାରୁ ସେ ଇତସ୍ତତଃ ହେଲେ ।

କିଛି ଉତ୍ତର ନ ଦେବାର ଦେଖି ମନୋରମା ପଚାରିଲା—କ'ଣ ଆପଣ ମଧ୍ୟ ତାଙ୍କୁ ଘରୁ ତଡ଼ି ଦେଇ ଥାନ୍ତେ ?

ଚକ୍ରଧର—ମୁଁ ସମ୍ଭବତଃ ତଡ଼ିନ'ଥାନ୍ତି ।

ମନୋରମା—ଆପଣ ନିନ୍ଦାକୁ ଟିକିଏ ହେଲେ ଖାତିର କରି ନ ଥା'ନ୍ତେ ?

ଚକ୍ରଧର—ନାଁ, ମୁଁ ମିଥ୍ୟା ଅପବାଦକୁ ଖାତିର କରେ ନାହିଁ ।

ମନୋରମାର ଆଖି ଖୁସିରେ ହସି ଉଠିଲା । ପ୍ରଫୁଲ୍ଲିତ ହୋଇ କହିଲା—ମୁଁ ମଧ୍ୟ ତା' କରିଥା'ନ୍ତି । ମୁଁ ବାପା, ଭାଇ, ପଣ୍ଡିତ, ଲବଙ୍ଗ ମାଆ, ଭଉଜଙ୍କୁ ଏ କଥା ପଚାରିଥିଲି ।

କିନ୍ତୁ ସେମାନେ ସମସ୍ତେ କହିଲେ—ରାମଚନ୍ଦ୍ର ଭଗବାନ, ତାଙ୍କ ସମ୍ବନ୍ଧରେ କୌଣସି ସନ୍ଦେହ କରିବା ଉଚିତ ନୁହେଁ । କିନ୍ତୁ ଆପଣ ଆଜି ମୋ ମନ କଥା କହିଲେ । ଆପଣ ଏଇ ଉତ୍ତର ଦେବେ ବୋଲି ମୁଁ ଜାଣିଥିଲି । ଏଇଥିପାଇଁ ମୁଁ ଆପଣଙ୍କୁ ପଚାରିଥିଲି । ଏବେ ମୁଁ ସେମାନଙ୍କୁ ସବୁ ଠିକ୍ ଜବାବ ଦେବି ।

ସେହିଦିନଠାରୁ ମନୋରମାର ଚକ୍ରଧର ପ୍ରତି ସ୍ନେହ ଅଧିକ ହେବାର ଦେଖାଗଲା । ପଢ଼ାପଢ଼ିରେ ତାର ଅଧିକ ଆଗ୍ରହ ଜାତ ହେଲା । ନିଜର ମନୋଭାବ ଚକ୍ରଧରଙ୍କ ସମ୍ମୁଖରେ ପ୍ରକାଶ କରିବାକୁ ସଂକୋଚ ପ୍ରକାଶ କଲା ନାହିଁ ।

ଠାକୁର ହରସେବକ ସିଂହଙ୍କର ଅଭ୍ୟାସ—ପ୍ରଥମେ ଦୁଇ ଚାରିମାସ ଯାଏଁ ନୌକର-ଚାକରମାନଙ୍କୁ ଠିକ୍ ସମୟରେ ବେତନ ଦିଅନ୍ତି । ତା'ପରେ କ୍ରମେ ସେ ବେତନ ଦେବା ବନ୍ଦ କରିଦିଅନ୍ତି । ବର୍ଷେ ହେଲା ବେତନ ନ ପାଇ କାମ କରୁଥିବା ବ୍ୟକ୍ତି ଅନେକ ଅଛନ୍ତି । ଏବେ ଚାରିମାସ ହେଲା ଚକ୍ରଧରଙ୍କୁ ମଧ୍ୟ ବେତନ ମିଳିନାହିଁ । ଚକ୍ରଧର ଲାଜରେ ମାଗନ୍ତି ନାହିଁ । ଏଣେ ଘରେ ମୁନସୀ ବଜ୍ରଧରଙ୍କର ବାରମ୍ବାର ତାଗିଦ—'ମାଗୁନୁ କାହିଁକି ?' ଶେଷରେ ଚକ୍ରଧର ବାଧ୍ୟ ହୋଇ ଠାକୁର ସାହେବଙ୍କୁ ବେତନ କଥା ଖଣ୍ଡିଏ କାଗଜରେ ଲେଖି ଜଣାଇଲେ । ଠାକୁର ସାହେବ କାଗଜଖଣ୍ଡି ଫେରାଇ ଦେଲେ । କହିଲେ—କାଗଜ-କଲମରେ କ'ଣ କାରବାର ? ଯାହା କହିବା କଥା ମୁହେଁ ମୁହେଁ କହ । ଚକ୍ରଧର ଲାଜ ଲାଜ ହୋଇ ଅତ୍ୟନ୍ତ ଶିଷ୍ଟାଚାରର ସହ ଟଙ୍କା ମାଗିଲେ । ଠାକୁର ସାହେବ ହସିହସି କହିଲେ—ବାଃ ବାବୁ, ଅଦ୍ଭୁତ ମଣିଷଟିଏ ତ ଅପଣ । ଚାରିମାସ ହେଲା ବେତନ ନେଇ ନାହାନ୍ତି ? ନ ମାଗିଲେ କିଆଁ ? ଏବେ ତ ୧୬୦ ଟଙ୍କା ହୋଇଗଲାଣି । ଏବେତ ମୋର ଟିକିଏ ଅସୁବିଧା ଅଛି । ଆଉ ପାଞ୍ଚ ଦଶଦିନ ଅପେକ୍ଷା କରନ୍ତୁ । ମାସ ଶେଷରେ ଅପଣ ବେତନ ନେଇଯିବା ଉଚିତ ଥିଲା ।

ଚକ୍ରଧର ଆଉ କିଛି ନ କହି ନିରାଶାରେ ଫେରିଲେ । ଆଜି ତ ଆଉ ବାପା ଜୀବନ ରଖିବେନି । କାଗଜଖଣ୍ଡି ମନୋରମା ବାପାଙ୍କ ପାଖକୁ ନେଇଯିବାବେଳେ ବାଟରେ ଖୋଲି ପଢ଼ିଥିଲା । ଚକ୍ରଧରଙ୍କୁ ଉଦାସ ଦେଖି ପଚାରିଲା—ବାପା କ'ଣ କହିଲେ ?

ଟଙ୍କା ପଇସା ସମ୍ବନ୍ଧରେ କିଛି ନ କହିବାକୁ ସେ ଚାହୁଁଥିଲେ । କହିଲେ—ନାଇଁ-କିଛି ନାହିଁ ।

ମନୋରମା—ଟଙ୍କା ଦେଲେ ?

ଚକ୍ରଧର—ଦେବେ···

ମନୋରମା—ଆପଣ ୧୬୦ ଟଙ୍କା ପାଇବା କଥା ।

ଚକ୍ରଧର—ଏବେ ଟଙ୍କାର ସେତେ ଆବଶ୍ୟକତା ନାହିଁ ।

ମନୋରମା—ଆବଶ୍ୟକ ନଥିଲେ ମାଗନ୍ତେ କାହିଁକି ? ବାପା ତ କାହାକୁ ଟଙ୍କା ଦେବାର ନାଁ ଧରନ୍ତିନି । ଅଚ୍ଛା—ମୁଁ ଯାଉଛି ।

ଚକ୍ରଧର—ନା ନା—ବର୍ତ୍ତମାନ ଆବଶ୍ୟକ ନାହିଁ ।

ମନୋରମା କିଛି ନଶୁଣି ଘର ଭିତରକୁ ଗଲା ଏବଂ ସେଠୁ ସଙ୍ଗେ ସଙ୍ଗେ ୧୬୦ ଟଙ୍କା ଆଣି ଟେବୁଲ ଉପରେ ରଖିଦେଲା ।

ଚକ୍ରଧର—ଠାକୁର ସାହେବଙ୍କ କାହିଁକି କୁଆଡ଼େ ହୋଇଯିବ କଲ ?

ମନୋରମା—ମୁଁ ତାଙ୍କୁ କିଛି କହିନି । ସେ ତ ନିଜ ବ୍ୟତୀତ କାହାର ସୁବିଧା ଅସୁବିଧା କେବେ ଦେଖନ୍ତି ନାହିଁ ।

ପଢ଼ା ଚାଲିଥିବା ଭିତରେ ଚକ୍ରଧର ଚିନ୍ତିତ ଥିଲେ—ଟଙ୍କା ନେବେ କି ନାହିଁ । ପଢ଼ା ସରିବା ପରେ ଟଙ୍କା ନ ନେଇ ସିଧା ଚାଲି ଆସିଲେ । ମନୋରମା ଟଙ୍କା ଧରି ପଛେ-ପଛେ ଦୌଡ଼ି କହିଲା ଟଙ୍କା ନେଇ ଯାଆନ୍ତୁ । ବାପା ଆପଣଙ୍କୁ ଦେଲେ ମୋତେ ଫେରେଇ ଦେବେ । କିନ୍ତୁ ଚକ୍ରଧର କିଛି ନ ଶୁଣି ଚାଲି ଆସିଲେ ।

( ୪ )

ଚକ୍ରଧର ଡରି ଡରି ଆସି ଘରେ ପହଞ୍ଚି ଦେଖିଲେ ଦୁଆରେ ଟାଙ୍ଗିଆ ପଡ଼ିଛି । ଘର ଭିତରେ ଗାଲିଚା ବିଛା ଯାଇଛି । ଜଣେ ୪୦।୪୫ ବର୍ଷ ବୟସର ବ୍ୟକ୍ତି ବିରାଜମାନ କରନ୍ତି । ତାଙ୍କ ଆଗରେ ମୁନସି ବଜ୍ରଧର ବସିଛନ୍ତି । ବାତେକ ପଙ୍ଖା କରୁଛି । ଚକ୍ରଧରଙ୍କର ପ୍ରାଣ ଏ ସବୁ ଦେଖି ଶୁଖି ଶୁଖି ଗଲା ପରି ଲାଗିଲା । ଅନୁମାନ କରିନେଲେ ଏ ମହାଶୟ ବର ଖୋଜି ଆସିଛନ୍ତି । ସନ୍ଦେହ ଦୂର କରିବାପାଇଁ ଯାଇ ମାତାଙ୍କୁ ପଚାରିବାରୁ ନିର୍ମଳା ହସି ହସି କହିଲେ—କ'ଣ ଜୀବନ ସାରା ଅଭିଆଡ଼ା ରହିବୁ ! ଏବେ ତ ଅନେକ ଡେରି ହେଲାଣି । ଯା' ବାହାରେ ବସ । ଆଜି କାହିଁକି ତୋର ଏତେ ଉଛୁର ହେଲା !

ଚକ୍ରଧର—ଇଏ କିଏ ?

ନିର୍ମଳା—ଆଗ୍ରାର କିଏ ଜଣେ ଓକିଲ—ମୁନସି ଯଶୋଦାନନ୍ଦନ ।

ଚକ୍ରଧର—ମୁଁ ବୁଲିବାକୁ ଯାଉଛି । ଏ ଯମଦୂତ ଚାଲିଗଲା ପରେ ଆସିବି ।

ନିର୍ମଳା—ବାଃରେ ମୋ ଲାଜକୁଳା ! ତୋ ଭଳି ପିଲାଟେ ତ ଦେଖାନାହିଁ । ଅସୋ ମୁଣ୍ଡରେ ତେଲ ଲଗେଇ କୁଣ୍ଡେଇ ଦେବି । କୋଉଦିନୁ ବାଳରେ ପାନିଅ ବାଜିନି । ସଫା ଲୁଗା ପିନ୍ଧି ବାହାରେ ଯାଇ ବସ ।

ଚକ୍ରଧର—ଘରେ ପଚେ କିଛି ନଥାଉ—ବାହା କରିବା ପାଇଁ ଆଗ । ମୁଁ ସଫା ସଫା କହି ଦଉଛି—ବାହା ହେବିନି ।

କିନ୍ତୁ ସ୍ନେହମୟୀ ମାତା ଶୁଣୁ ଚନ୍ତି କୋଉଠି ! ଜବରଦସ୍ତି ଧରି ନେଇ ମୁଣ୍ଡରେ ତେଲ ଢାଳିଦେଲେ । ସିନ୍ଦୁକରୁ ଏକ ଧଡ଼ି ଲୁଗା ବାହାର କରି ଆଣି ପିଲାଙ୍କୁ ପିନ୍ଧେଇଲା ଭଳି ପିନ୍ଧେଇ ଦେଲେ । ଚକ୍ରଧର ଛଟପଟ ହେବାକୁ ଲାଗିଲେ ।

ନିର୍ମଳା—ମୋତେ ହଇରାଣ କରିବୁ ତ ପିଟି ପିଟି ସାବାଡ଼ କରିଦେବି । ମୁଣ୍ଡ ଦେଖା—ଅଳତକିଆ କରି ଦେଉଛୁ କିଆଁ । ଜୀବନସାରା କ'ଣ ଅଭିଆଡ଼ା ରହିବୁ ! ମୁଁ କ'ଣ ମଲାପାଏଁ ଚୁଲି ଫୁଙ୍କୁଥିବି ! କିଛିଦିନ ବୋହୂ ସୁଖ କଣ ପାଇବିନି ?

ଚକ୍ରଧର—ତୋତେ କିଏ କହୁଚି ଚୋପେଇ କରି ବୋଲି ! ମୁଁ କାଲିଠୁ ଚୋପେଇ କରିଦେବି । ମଙ୍ଗଳାକୁ ରାନ୍ଧିବାକୁ କହୁନୁ ?

ନିର୍ମଳା—ହେଉଛି, ଆଜ୍ଞାପାଏ ମାଉନି । ଆଜି କିନ୍ତୁ ପିନ୍ଧିବି । ଭୂନି ହେଇ ଅଗଣାରେ ବସ ।

ତେଣେ ବଜ୍ରଧର ଡାକ ଶୁଭିଲେ—ଆରେ ବାବୁ, କିଏ ଏଠାକୁ ଆସିଲୁ । ନିରୁପାୟ ହୋଇ ଚକ୍ରଧର ଯିବା ପୂର୍ବରୁ କହିଲେ—ଦେଖ୍ ବୋଉ ! କହି ଦଉଚି—ମୁଁ ଏ କୁଆଳି କାନ୍ଧେଇ ପାରିବିନି । ବାହାହେଇ ପିଲା ଜନ୍ମ କରିବା କେବଳ ଜୀବନର କାମ ନୁହେଁ । ବାପା ହେଇ ବଳଦ ଭଳି ଘଣା ପେଲିବା ଏବଂ ଆଖିରେ ଅନ୍ଧପୁଟୁଳି ବାନ୍ଧି ଗୃହସ୍ଥି କରିବା ମୋ ଦ୍ୱାରା ହୋଇପାରିବନି ।

ଚକ୍ରଧର ବାହାରକୁ ଆସିବାରୁ ମୁନ୍‌ସି ଯଶୋଦାନନ୍ଦନ ଠିଆ ହୋଇ ତାଙ୍କୁ କୋଳାଗତ କଲେ ଏବଂ ଚୌକିରେ ବସାଇ କହିଲେ—'ସରସ୍ୱତୀ' ପତ୍ରିକାରେ ଆପଣଙ୍କର ପ୍ରବନ୍ଧ ପାଠ କରି ଖୁବ୍ ଖୁସି ହେଲି । ଏହି ବୈଷମ୍ୟ ଦୂର କରିବା ପାଇଁ ଆପଣ ଯେଉଁ ମାର୍ଗ ପ୍ରଦର୍ଶନ କରିଛନ୍ତି, ତାହା ଅତ୍ୟନ୍ତ ବସ୍ତୁନିଷ୍ଠ ।

ସ୍ନେହ ମୃଦୁଳ ଆଲିଙ୍ଗନ ଏବଂ ସହୃଦୟତାପୂର୍ଣ୍ଣ ଆଲୋଚନାରେ ଚକ୍ରଧର ମୋହିତ ହେଲେ । ଯଶୋଦାନନ୍ଦନ କହିଲେ—'କେଉଁ କାର୍ଯ୍ୟରେ ମନୋଯୋଗୀ ହେବାର ଅଭିଳାଷ ଅଛି ?

ଚକ୍ରଧର—କିଛିଦିନ ସ୍ୱାଧୀନ ଭାବରେ ସେବାକାର୍ଯ୍ୟ କରିବାକୁ ଇଚ୍ଛା କରିଛି ।

ଯଶୋଦାନନ୍ଦନ—ଏହାଠାରୁ ଉତ୍ତମ କାର୍ଯ୍ୟ ବା ଆଉ କ'ଣ ଅଛି ! ଆପଣ ଯେଉଁଭଳି ଭାବରେ ହମିତ ପର୍ଯ୍ୟାଲୋଚନା କରୁଛନ୍ତି, ତାହା ତ ଅତୁଳନୀୟ । ଆପଣଙ୍କ ଭଳି ଉତ୍ସାହୀ ଯୁବକମାନେ ଉଚ୍ଚାଦର୍ଶରେ ଅନୁପ୍ରାଣିତ ହୋଇ ସେବାକ୍ଷେତ୍ରକୁ ଆସିବା ଜାତି ପାଇଁ ସୌଭାଗ୍ୟର କଥା । ଆପଣଙ୍କର ଏହି ସଦ୍‌ଗୁଣ ମୋତେ ଆପଣଙ୍କ ପାଖକୁ ଟାଣି ଆଣିଛି । ମୋ ଦୃଷ୍ଟିରେ ଚରିତ୍ର ସବୁଠାରୁ ଅତ୍ୟନ୍ତ ମୂଲ୍ୟବାନ ।

ଚକ୍ରଧର ମୁହଁ ପୋତି କହିଲେ—କିନ୍ତୁ ସଂସାର ବନ୍ଧନରେ ବାନ୍ଧିହେବାକୁ ମୁଁ ବର୍ତ୍ତମାନ ଚାହେଁନା । ମୋ ବିଚାରରେ ଗୃହସ୍ଥି ବନ୍ଧନରେ ପଡ଼ି କେହି ଆନ୍ତରିକତାର ସହ ସେବାକାର୍ଯ୍ୟ କରି ପାରେ ନାହିଁ ।

ଯଶୋଦାନନ୍ଦନ—ତାହା ନୁହେ । ଏବେ ଯେଉଁମାନେ ସେବାକାର୍ଯ୍ୟ କରୁଛନ୍ତି ସେମାନେ ସମସ୍ତେ ପ୍ରାୟ ସଂସାରୀ ।

ଚକ୍ରଧର—ସେଥି ହେତୁ ତ ସେବା କାର୍ଯ୍ୟ ଏତେ ଶିଥିଳ ।

ଯଶୋଦାନନ୍ଦନ—ମୋ ମତରେ ଯଦି ସ୍ତ୍ରୀ ଓ ପୁରୁଷ ଉଭୟଙ୍କର ସ୍ୱଭାବ ଏକ ହୁଏ ତେବେ ସ୍ତ୍ରୀ ପୁରୁଷର କାମରେ ବାଧକ ନ ହୋଇ ସହାୟକ ହୋଇଥାଏ । ମୋ କନ୍ୟାର ସ୍ୱଭାବ, ସ୍ୱଭାବ ଏବଂ ସିଦ୍ଧାନ୍ତ ସବୁ କିଛି ଆପଣଙ୍କ ସହ ମିଳି ଯାଉଛି । ମୋର ବିଶ୍ୱାସ ଆପଣ ଉଭୟେଁ ସୁଖୀ ତଥା ସୁସ୍ଥ ଜୀବନ ଯାପନ କରିପାରିବେ । ମୁଁ ତ ଭାବୁଛି ଭଗବାନ ଆପଣଙ୍କୁ ତାରି ପାଇଁ ଏବଂ ତାକୁ ଆପଣଙ୍କ ପାଇଁ ଗଢ଼ିଛନ୍ତି । ଇଂରାଜୀ, ହିନ୍ଦି, ସଂସ୍କୃତ, ଉର୍ଦ୍ଦୁ ଉତ୍ତମ ରୂପେ ପଢ଼ିଛି । ଘର କାମରେ ଏତେ ଧୁରନ୍ଧର ଯେ, ତା' ବିନା ମୋ ଘର କିମିତି ଚଳିବ ମୁଁ ଭାବି ପାରୁନାହିଁ । ରୂପ ମଧ୍ୟ ଭଗବାନ ସେମିତି ଦେଇଛନ୍ତି । ଏଇ ଫଟୋରୁ ଜାଣି ପାରିବେ ।

ଯଶୋଦାନନ୍ଦନ ପକେଟରୁ ଫଟୋ ବାହାର କରି ଚକ୍ରଧରଙ୍କ ହାତରେ ଦେଇ କହିଲେ—ମୋ ମତରେ ଯେଉଁ ଦୁଇଜଣ ସାରା ଜୀବନ ସଂସାର ବନ୍ଧନରେ ଆବଦ୍ଧ ହେବେ, ସେମାନଙ୍କ ମଧ୍ୟରେ ପରସ୍ପର ସାକ୍ଷାତ ହୋଇଯିବା ଦରକାର । ପୁରୁଷକୁ ସ୍ତ୍ରୀ ପସନ୍ଦ ନହେଲେ ସେ ଅନ୍ୟ ସ୍ତ୍ରୀ ବିବାହ କରିପାରେ । କିନ୍ତୁ ସ୍ତ୍ରୀକୁ ପୁରୁଷ ପସନ୍ଦ ନହେଲେ ସେ ସାରା ଜୀବନ କାନ୍ଦି କାନ୍ଦି କଟେଇବ ।

ଫଟୋଟିକୁ ଧ୍ୟାନର ସହ ଦେଖିବାକୁ ଚକ୍ରଧର ଉତ୍କଣ୍ଠିତ ହେଲେ । ଏଠାରେ ଦେଖିବାକୁ ଲାଜ ମାଡ଼ୁଛି । ଏଣେ ଏକାକୀ ଗୁଡ଼ି ଯିବାଟା ଅସୁନ୍ଦର । ବାପା ଏ ମଧ୍ୟରେ ଗାଉଣା ବାଜଣା କରିବା ପାଇଁ ଓସ୍ତାଦକୁ ଡାକିବାକୁ ଚାଲିଗଲେଣି । କେତେ ମିନିଟ୍ ଯାଏଁ ଅପେକ୍ଷା କରିବା ପରେ ପାନ ଆଣିବା ବାହାନାରେ ଚକ୍ରଧର ଘର ଭିତରକୁ ଗଲେ । ନିଜ କୋଠରୀକୁ ଯାଇ ଫଟୋଟିକୁ ଦେଖିବାକୁ ଚାହୁଁଥିଲେ । କିନ୍ତୁ ମା ପଚାରିଲେ—କ'ଣ କଥାବାର୍ତ୍ତା ହେଲାରେ ? କ'ଣ କିଛି ଦେବେ ନା—ସେଇ ୫୧ ଟଙ୍କା ବାଲା ପରି ?

ଚକ୍ରଧର କହିଲେ—ସେ ଦବା ନବା କଥା କହିବାରୁ ତ ସାଫ ଛାଡ଼ିଦେବି ।

ନିର୍ମଳା—ବାଃ ରେ ! ପଚିଶିବର୍ଷ ଯାଏଁ ପାଳିଲି ପୋଷିଲି କାହିଁକି ମ ! ତା' ନ ହେଲେ ମୁହଁ ଧୋଉଥାଉ ।

ଚକ୍ରଧର—ତା' ହେଲେ ବଜାରରେ ଠିଆକରେଇ ନିଲାମ କରୁନୁ ।

ନିର୍ମଳା—ତା'ହେଲେ ତୁ ଶଶୁର ପକ୍ଷ ହେଇଗଲୁଣି ?

ଏତିକି ବେଳେ ମଙ୍ଗଳା ଆସି ଦେଖିଲା—ଭାଇ ହାତରେ କାଗଜ ପୁଳିନ୍ଦା । ଚଟକରି ଛଡ଼େଇ ନେଇ ଖୋଲି କହିଲା—ଦେଖିଲେ ବୋଉ, ବୋହୂର ଫଟୋ । କେତେ ସୁନ୍ଦର ହେଇଚି ମ !

ନିର୍ମଳା ଫଟୋ ଦେଖି ଆଶ୍ଚର୍ଯ୍ୟ ହୋଇଗଲେ । କହିଲେ—ପୁଅ, ତୋ ଭାଗ୍ୟ ଖୋଲି-ଗଲା । ମୋତେ କିଛି ନ ମିଳୁ ପଛେ, ଏଇଟିକି ବୋହୂ କରିବ । ମୁଁ ଏମିତି ଝିଅ ଦେଖିନ ।

ଚକ୍ରଧର ପାନ ଏବଂ ଫଟୋ ନେଇ ବୈଠକ ଘରକୁ ନ ଯାଇ ନିଜ କୋଠରିରେ ପହଞ୍ଚିଲେ ଏବଂ ଉତ୍ସୁକତାର ସହିତ ଫଟୋ ଉପରେ ଆଖି ପକେଇଲେ । ଯେତେ ଦେଖିଲେ ତୃପ୍ତି ଆସୁନି । କବି କଳ୍ପନା ପରି ମଧୁର, ରହସ୍ୟମୟୀ ଛବି । ଫଟୋଟି ଧରି ଚକ୍ରଧର ଭବିଷ୍ୟ-ଜୀବନର ମଧୁର ସ୍ୱପ୍ନ ଦେଖିବାକୁ ଲାଗିଲେ । ତେଣେ ଯଶୋଦାନନ୍ଦନ ଏକାକୀ ବସିଥିବା କଥା ଭୁଲିଗଲେ ।

ସନ୍ଧ୍ୟା ତବଲା ଶବ୍ଦରେ ତାଙ୍କର ଧ୍ୟାନ ଭାଙ୍ଗିଗଲା । ବୈଠକ ଘରେ ସଂଗୀତ ଆସର ଆରମ୍ଭ ହୋଇଗଲାଣି । ବଜ୍ରଧରଙ୍କ ସହ ଯଶୋଦାନନ୍ଦନ ଆଗ୍ରହରେ ଯୋଗ ଦେଲେ । ଅଧରାତିବେଳକୁ ଗାଉଣା ବାଜଣା ବନ୍ଦ ହେଲା । ଭୋଜନ ପରେ ବଜ୍ରଧର ପଚାରିଲେ— ପୁଅ ସହିତ କଥାବାର୍ତ୍ତା କଲେ ?

ଯଶୋଦାନନ୍ଦନ—ହଁ । କିନ୍ତୁ କଥାଟା ସ୍ପଷ୍ଟ ହେଲନି ।

ବଜ୍ରଧର—ବିବାହ ନାଁ ପଡ଼ିଲେ ଖାଲି ଚିଡୁଛି । କେତେ କେତେ ଲୋକ ଆସି ଫେରି-ଗଲେଣି । କେତେଜଣ ତ ଦଶ କୋଡ଼ିଏ ହଜାର ଦେବାକୁ ପ୍ରସ୍ତୁତ ଥିଲେ । ଜଣେ ତାଙ୍କର ଜମିଦାରୀଟା ଲେଖି ଦେବାକୁ ମଧ୍ୟ କହିଲେ, ତଥାପି ନାହିଁ କଲା ।

ପ୍ରାତଃ ସମୟରେ ଶଯ୍ୟା ତ୍ୟାଗ ଓ ନିତ୍ୟକର୍ମ ପରେ ଯଶୋଦାନନ୍ଦନ ଚକ୍ରଧରଙ୍କୁ ପଚାରିଲେ—ବାପା, ମୋ ସହିତ ଟିକିଏ ଆଗ୍ରା ଚାଲ, ବୁଲିଆସିବ ।

ଚକ୍ରଧର—ମୋତେ ଏ ଜଞ୍ଜାଳରେ ନ ପକାଇବା ଭଲ ।

ଯଶୋଦାନନ୍ଦନ—ତୁମକୁ ଜଞ୍ଜାଳରେ ପକାଉନାହିଁ ବାପା, ତୁମକୁ ଏପରି ଏକ ଯୋଗ୍ୟ ମନ୍ତ୍ରୀ, ସଚ୍ଚା ସହାୟକ ଏବଂ ଉତ୍ତମ ମିତ୍ର ଦେଉଛି, ଯିଏ ତୁମର ଉଦ୍ଦେଶ୍ୟ ପୂରଣ କରିବାପାଇଁ ଜୀବନର ମହାନ ବ୍ରତ ବୋଲି ମନେକରିବ । ମୁଁ ସ୍ୱାର୍ଥବଶରୁ ଏହା କହୁନାହିଁ । ମୁଁ ନିଜେ ଆଗ୍ରା ହିନ୍ଦୁସଭାର ମନ୍ତ୍ରୀ । ସେବାକାର୍ଯ୍ୟର ମହତ୍ତ୍ୱ ମୁଁ ଜାଣେ । ଏ ସମ୍ବନ୍ଧ ଆପଣଙ୍କ କାର୍ଯ୍ୟରେ ବାଧକ ହେଉଥିଲେ, ମୁଁ ଆଗ୍ରହ କରନ୍ତିନି । ମୁଁ ଚାହେଁ ଆପଣ ଥରେ ଅହଲ୍ୟାକୁ ଦେଖନ୍ତୁ । ଆପଣ ଲଜ୍ଜା କରନ୍ତୁନି । ଅପଣ ଧରିନିଅନ୍ତୁ ଯେ ଆପଣ ମୋର କୌଣସି ସହର ଦେଖିବାକୁ ... ହୋଇ ସାରିଛନ୍ତି । କେବଳ ମୋ ସହିତ ଭ୍ରମଣ କରିବାକୁ ଯାଉଛନ୍ତି । ଆପଣଙ୍କୁ ଦେଖି ଆପଣଙ୍କର ଶାଶୂ ଏବଂ ଶାଳୀ ଖୁବ୍ ଖୁସି ହେବେ ।

ଚକ୍ରଧର ବଡ଼ ଦ୍ୱିଧାରେ ପଡ଼ିଲେ । ଇତସ୍ତତଃ ହୋଇ କହିଲେ—ମୁଁ ଆପଣଙ୍କୁ ସତ କହୁଛି—ମୁଁ ନିଜକୁ ଏପରି ସୁଯୋଗ୍ୟ ତରୁଣୀର ଯୋଗ୍ୟ ସ୍ୱାମୀ ବୋଲି ମନେ କରୁନାହିଁ ।

ଯଶୋଦାନନ୍ଦନ—ମୁଁ ଆପଣଙ୍କର ମନୋଭାବ ଜାଣି ପାରୁଛି । ସଙ୍କୋଚରେ ଆପଣ ଏପରି କହୁଛନ୍ତି । କିନ୍ତୁ ଅହଲ୍ୟା ଅତି ଉତ୍ତମ ଝିଅ । ତା'ର ସରଳତା ଦେଖି ଆପଣ ଖୁସି ହେବେ । ମୁଁ ଆପଣଙ୍କର ସିଧା ପରିଚୟ ନ ଦେଇ କହିବି 'ଅପର ଜଣେ ବିଦେଶୀ, ଏଠାକୁ ବୁଲିବା ପାଇଁ ଆସି ଷ୍ଟେସନରେ ହୋଟେଲ ପଚାରୁଥିଲେ । ମୁଁ ଦେଖିଲି ଜଣେ ସରଳବ୍ୟକ୍ତି । ହୋଟେଲକୁ ଗଲେ ଠକାମିରେ ପଡ଼ିଯିବେ । ତେଣୁ ସଙ୍ଗରେ ତାଙ୍କୁ ନେଇ ଆସିଛି ।'

ଚକ୍ରଧର ନିଜର ଆନନ୍ଦକୁ ଲୁଚାଇ କହିଲେ—ଅନ୍ୟ କେତେବେଳେ ଗଲେ ଚଳନ୍ତାନି !

ଯଶୋଦା—ନା, ଏ କାମରେ ବିଳମ୍ବ କରିବା ମୁଁ ଚାହେଁନା । ମୁଁ ତ ଅହଲ୍ୟାକୁ ଆଣି ଏଠାରେ ହିଁ ଚାରିଦିନ ରହିବାକୁ ଚାହେଁ । କିନ୍ତୁ ସମ୍ଭବତଃ ଆପଣଙ୍କ ଘରେ ଏହା ପସନ୍ଦ କରିବେନି ।

ଚକ୍ରଧର ଯିବାକୁ ରାଜି ହେଲେ । କାରଣ ସେ ଭାବିଲେ—ଯଦି ଟାଳଟୁଲି କରିବି ଏ ମହାଶୟ ହୁଏତ ଝିଅକୁ ଆଣି ଏଠାରେ ପହଞ୍ଚିବେ ।

ଘରେ ବନ୍ଧୁଙ୍କ ପ୍ରସ୍ତାବ ଶୁଣିଲେ ସମସ୍ତେ କିଛି ପରିମାଣରେ ଉଦାର ହୋଇ ଯାଆନ୍ତି । ନିର୍ମଳା ତ ଖୁସିରେ ରାଜି ହୋଇଗଲେ । ମୁନ୍‌ସି ବଜ୍ରଧର କିଛିଟା ସଙ୍କୁଚିତ ହେଲେ । କିନ୍ତୁ ଭାବିନେଲେ—ଏ ମହାଶୟ ପୁଅକୁ ଦେଖି ମୋହିତ ହୋଇଛନ୍ତି । ନିଶ୍ଚୟ ବହୁତ କିଛି ଦେବେ । ତେଣୁ ସେ ମଧ୍ୟ ଆପତ୍ତି କଲେନି । କେବଳ ଠାକୁର ହରସେବକ ସିଂହଙ୍କୁ ସୂଚନା ଦେବାର ଥିଲା । ଚକ୍ରଧର ଚାରିଟା ବେଳେ ପଢ଼େଇବାକୁ ଯାଆନ୍ତି, କିନ୍ତୁ ଆଜି ନଅଟାରେ ଯାଇ ପହଞ୍ଚିଗଲେ ।

ହରସେବକସିଂହ ନିଜର ପ୍ରାଣେଶ୍ୱରୀ ଲବଙ୍ଗ ସହିତ କଥାବାର୍ତ୍ତାରେ ମଗ୍ନ ଥିଲେ । ମନୋରମାର ମା' ଦେବପୁରକୁ ଚାଲି ଯାଇଥିଲେ । ଲବଙ୍ଗ ସେ ସମୟରେ ଦାସୀରୂପେ ଥିଲା । ସେ ଏତେ କୁଶଳତାର ସହ ଗୃହିଣୀର ଶୂନ୍ୟସ୍ଥାନ ସମ୍ଭାଳି ନେଲା ଯେ, ଠାକୁର ସାହେବ ତା'ପ୍ରତି ଆକୃଷ୍ଟ ହୋଇ ତାକୁ ଗୃହିଣୀ ରୂପେ ଗ୍ରହଣ କରିନେଲେ । ପ୍ରଥମେ ଲବଙ୍ଗ ଏତେ ପତଳା ଥିଲା ଯେ ଫୁଙ୍କିଦେଲେ ଉଡ଼ିଯିବ । କିନ୍ତୁ ଗୃହିଣୀ ପଦ ପାଇଲା ପରେ ତା'ର ଶରୀର ସ୍ଥୂଳରୂପ ଧାରଣକଲା ।

କ୍ଷୀଣ ଜଳଧାରା ବର୍ଷାଦିନେ ବଢ଼ିଲା ଭଳି ବର୍ତ୍ତମାନ ତା'ର ଶରୀର ବିଶାଳ ମୂର୍ତ୍ତି ଧାରଣ କରିଛି—ଅଟଳ ଏବଂ ଅପାର । କିନ୍ତୁ ବାହାରର ସ୍ଥୂଳତା ଭିତରର କୋମଳତାକୁ ଅକ୍ଷୁଣ୍ଣ ରଖିଥିଲା । ସରଳ, ସଦୟ, ହସହସ ମୁଖ ଏବଂ ସହନଶୀଳ ସେ। ସମସ୍ତଙ୍କୁ ସେ ବଶୀଭୂତ କରି ରଖିଥିଲା । ତା'ର ବ୍ୟବହାର ହେତୁ ଚାକରମାନେ ବେତନ ନ ମିଳିଲେ

ମଧ୍ୟ ରହୁଥିଲେ । ମନୋରମାକୁ ସେ ପ୍ରାଣଠାରୁ ଅଧିକ ଭଲ ପାଉଥିଲା । ଈର୍ଷା, ଦ୍ୱେଷ ତା ପାଖ ମାଡ଼ୁ ନ ଥିଲେ । ସେ ଉଦାର ନ ଥିଲା କି କୃପଣ ନ ଥିଲା ।

ଦୁଇ ପ୍ରାଣୀଙ୍କ ମଧ୍ୟରେ କ'ଣ ଝିକ ଝିକ ଲଗିଥିଲା । ଠାକୁର ସାହେବ ଖୁବ୍ ପାଟି କରି କହୁଥିଲେ । ଲବଙ୍ଗ ମୁଣ୍ଡ ତଳକୁ ପୋତି ଠିଆ ହୋଇଥିଲା । ମନୋରମା ଆସି କହିଲା—ବାବୁଜୀ ଅସିଛନ୍ତି, କ'ଣ କହିବାକୁ ଡାକୁଛନ୍ତି ।

ଠାକୁର ସାହେବ ଆଖି ଭଉଁଡି କହିଲେ—କ'ଣଟେ କହିବେ ! ଟଙ୍କା ମାଗିବାକୁ ତ ଆସିଥିବେ । ଆଚ୍ଛା ଯାଇ କହ ବସିବାକୁ—ଯାଉଛି ।

ଠାକୁର ସାହେବ ଡମ ଡମ ହୋଇ ଚକ୍ରଧର ଅସିଲେ । ବାଟରେ କିନ୍ତୁ ତାଙ୍କର କ୍ରୋଧ ଶାନ୍ତ ହୋଇଗଲା । ଚକ୍ରଧରଙ୍କ ପାଖରେ ପହଞ୍ଚିଲା ବେଳକୁ ସେ ବିନୟର ଦେବତା ହୋଇଯାଇଥିଲେ ।

ଚକ୍ରଧର—ଆପଣଙ୍କୁ ହଇରାଣ କରିବାକୁ···

ଠାକୁର—ନାହିଁ ନାହିଁ କିଛି ହଇରାଣ ନାହିଁ । ମୋ ପାଖରେ ଟଙ୍କା ନ ଥିଲା । ତେଣୁ ଦଶ ପାଞ୍ଚ ଦିନ ଅପେକ୍ଷା କରିବାକୁ କହିଥିଲି । ଏଇ ନଅନ୍ତୁ ।

ଚକ୍ରଧର—ମୁଁ ଅନ୍ୟ କାମରେ ଆସିଛି । ଅନ୍ୟ ଏକ କାର୍ଯ୍ୟ ହେତୁ ମୁଁ ଆଗ୍ରା ଯାଉଛି । ଦୁଇ ତିନିଦିନ ଲାଗିବ । ସେଥିପାଇଁ କ୍ଷମା ଦେବେ ।

ଠାକୁର—ହଁ ହଁ ଯାଆନ୍ତୁ । ଏଥିପାଇଁ ମୋତେ ପଚାରିବା ଦରକାର କ'ଣ !

ଠାକୁରସାହେବ ଘର ଭିତରକୁ ଚାଲିଗିବା ପରେ ମନୋରମା ପଚାରିଲେ—ଆପଣ ଆଗ୍ରା କାହିଁକି ଯାଉଛନ୍ତି ?

ଚକ୍ରଧର—ଗୋଟେ ଜରୁରୀ କାମ ଅଛି ।

ମନୋରମା—କ'ଣ ଦେହ ଖରାପ ଅଛି ?

ଚକ୍ରଧର—ନାହିଁ ।

ମନୋରମା—ତେବେ କାମ ? ନ କହିଲେ ଛାଡ଼ିବିନି ।

ଚକ୍ରଧର—ଜଣେ ବନ୍ଧୁଙ୍କ ଘରକୁ ଯାଉଛି ।

ଏହା ମଧ୍ୟରେ ଗୋଟିଏ ଉତ୍ତମ ରୂପେ ସଜାଯାଇଥିବା ଘୋଡ଼ାଗାଡ଼ି ଦାଣ୍ଡରେ ଗଲା । ଯୁଗଜଣ ସିପାହୀ ଭାଲ ଧରି ଗାଡ଼ିର ଦୁଇ ପାଖେର ଦୌଡ଼ ଥାଆନ୍ତି । ଚକ୍ରଧର କହିଲେ—ବୋଧେ ରାଣୀ ଯାଉଛନ୍ତି ।

ମନୋରମା—ଜଗଦୀଶପୁର ମହାରାଣୀ । ମୁଁ ଯେତେବେଳେ ଯାଏ, ମୋତେ ଗୋଟିଏ ଗିନି ଦିଅନ୍ତି ।

ଚକ୍ରଧର—ଆଚ୍ଛା ମୁଁ ଆସୁଛି । ପଢ଼ାପଢ଼ି କରୁଥିବୁ ।

ମନୋରମା—କାହିଁକି ଯାଉଛନ୍ତି ନ କହିଲେ କିଛି ପଢ଼ିବନି ।

ଚକ୍ରଧର—କହିଲି ପରା—ବନ୍ଧୁ ପାଖକୁ ଯାଉଛି ।

ମନୋରମା—ମିଛ କଥା । ଛାଡ଼ିବନି ।

ଚକ୍ରଧର—ଆଗ୍ରା ଯାଉଛି । ହରିଦ୍ବାର । ମୋର ବିବାହ ସମ୍ପର୍କରେ କଥାବାର୍ତ୍ତା ଚାଲିଛି । ମୋର ତ ଇଚ୍ଛା ନାହିଁ । ଜଣେ ମହାଶୟ ମୋତେ ଜବରଦସ୍ତି ନେଉଛନ୍ତି ।

ଏହା କହି ଚକ୍ରଧର ଉଠିଲେ । ମନୋରମା ହସିହସି ଦୁଆର ଯାଏଁ ଆସି ନମସ୍କାର କଲା ।

( ୫ )

ସନ୍ଧ୍ୟାରେ ରେଲଗାଡ଼ି ବନାରସ ଛାଡ଼ିଲା । ଯଶୋଦାନନ୍ଦନ ଚକ୍ରଧରଙ୍କୁ ପଚାରିଲେ—ବାବୁ, କେଉଁଣସି ସମୟରେ ମିଥ୍ୟାକଥନ—ତୁମ ବିଚାରରେ କ୍ଷମଣୀୟ ନା ଅକ୍ଷମଣୀୟ ?

ଚକ୍ରଧର ବିସ୍ମିତ ହୋଇ କହିଲେ—ମୋ ବିଚାରରେ ଅକ୍ଷମଣୀୟ ।

ଯଶୋଦା—କେଉଁଣସି ଅବସ୍ଥାରେ ବି କ୍ଷମଣୀୟ ନୁହେ ?

ଚକ୍ରଧର—ଯେ କେଉଁଣସି ଅବସ୍ଥାରେ ବି ନୁହେ । କେତେକ ପରୋପକାର ପାଇଁ ଅସତ୍ୟ କଥନକୁ କ୍ଷମଣୀୟ ବୋଲି ମନେକରନ୍ତି । କିନ୍ତୁ ତା ମଧ୍ୟ ଭୁଲ ।

ଯଶୋଦା—ସେହିମାନଙ୍କ ମଧ୍ୟରେ ମୁଁ ଜଣେ । ମୁଁ ଭାବୁଚି—ପୂର୍ବବୃତ୍ତାନ୍ତ ଶୁଣିଲା ପରେ ତୁମେ ମଧ୍ୟ ମୋ ସହିତ ଏକମତ ହେବ । ମୁଁ ଅହଲ୍ୟା ସମ୍ପର୍କରେ ମିଛ କଥା କହିଛି । ସେ ପ୍ରକୃତରେ ମୋ କନ୍ୟା ନୁହେ । ତାର ମାତା ପିତା ସମ୍ବନ୍ଧରେ ଆମେ କିଛି ଜାଣିନୁ ।

ଚକ୍ରଧର ଆଶ୍ଚର୍ଯ୍ୟାନ୍ୱିତ ହୋଇ କହିଲେ—ତେବେ ସେ ଆପଣଙ୍କ ପାଖକୁ ଆସିଲା କିପରି ?

ଯଶୋଦା—ବିଚିତ୍ର କଥା ! ପନ୍ଦର ବର୍ଷ ତଳେ । ଥରେ ସୂର୍ଯ୍ୟୋପରାଗ ହୋଇଥିଲା । ମୁଁ କଲେଜରେ ପଢୁଥିଲି । ଆମର ଗୋଟିଏ ସେବାସମିତି ଥିଲା । ଯାତ୍ରୀମାନଙ୍କର ସେବା କରିବା ପାଇଁ ଆମେ ପ୍ରୟାଗ ଯାଇଥିଲୁ । ଏତେ ବଡ଼ ମେଳା କେବେ ହୋଇନ । ସେଠାରେ ଆମେ ଗୋଟିଏ ଝିଅ ନାଳଭିତରେ ପଡ଼ି କାନ୍ଦୁଥିବା ଅବସ୍ଥାରେ ପାଇଲୁ । ବହୁ ଚେଷ୍ଟା କରି ମଧ୍ୟ ସେ ପିଲାର ମା ବାପାଙ୍କ ଖବର କିଛି ପାଇଲୁ ନାହିଁ । ବାଧ୍ୟ ହୋଇ ସଙ୍ଗରେ ନେଇ ଆସିଲୁ । ୪।୫ ବର୍ଷ ଯାଏ ଅନାଥାଳୟରେ ରଖିଲୁ । କିନ୍ତୁ କର୍ମକର୍ତ୍ତାମାନଙ୍କ ମଧ୍ୟରେ ବିବାଦ

ଲାଗି ଅନାଥାଳୟଟି ବନ୍ଦ ହୋଇଯିବାରୁ ମୁଁ ତା'ର ପାଳନ ପୋଷଣ ଭାର ବହନ କଲି । ମୁଁ ଜନ୍ମ ନ ଦେଇଥିଲେ ମଧ୍ୟ ସେ ମୋର କନ୍ୟା । ସେ ଯେ ଏକ କୁଳୀନ ବ୍ୟକ୍ତିର କନ୍ୟା, ଏଥିରେ ତିଳେ ମାତ୍ର ସନ୍ଦେହ ନାହିଁ । ତାର ସ୍ୱଭାବ, ଆଚାର ଦେଖି ବଡ଼ ବଡ଼ ଘରର ସ୍ତ୍ରୀ ଲୋକେ ଆଶ୍ଚର୍ଯ୍ୟ ହୋଇ ଯାଆନ୍ତି । କର୍ଷେ ହେଲା ମୁଁ ତା ପାଇଁ ଏକ ଯୋଗ୍ୟ ବରର୍ ସନ୍ଧାନରେ ଅଛି । ପଣ୍ଡିତଜୀ, ତାକୁ ଲୁଚି ତାକୁ ଖୁସିରେ ଗ୍ରହଣ କରିବ, ଏପରି ଏକ ଯୋଗ୍ୟ ବ୍ୟକ୍ତିର ସନ୍ଧାନରେ ଥିଲି । ଖବରକାଗଜରେ ତୁମର ଲେଖା ପଢ଼ି ଏବଂ ତୁମ ସେବା କାର୍ଯ୍ୟର ପ୍ରଶଂସା ଶୁଣି, ମୋର ଧାରଣା ହେଲା ତୁମେ ହିଁ ତା'ର ଯୋଗ୍ୟ । ମୁଁ ସମସ୍ତ ବୃତ୍ତାନ୍ତ କହିଦେଲି । ଏଣିକି ତୁମେ ସ୍ଥିର କର, ତାକୁ ଗ୍ରହଣ କରିବ ନା ତ୍ୟାଗ କରିବ । ହଁ, ମୁଁ ନିଶ୍ଚିତ ଭାବରେ କହିବି—ଏପରି ରତ୍ନ କଦାପି ମିଳିବନି । ମୁଁ ଜାଣିଛି, ତୁମର ପିତା ଏହା ଗ୍ରହଣ କରିବେନି ଏବଂ ଏହା ମଧ୍ୟ ଜାଣିଛି—ବୀରପୁରୁଷ ସତ୍‌କାର୍ଯ୍ୟରେ ବିରୋଧକୁ ଖାତିର୍ କରେ ନାହିଁ ।

ଚକ୍ରଧର ଗମ୍ଭୀର ବିଚାରରେ ବୁଡ଼ି ଗଲେ । ଏଣେ ଅହଲ୍ୟାର ଅନୁପମ ସୌନ୍ଦର୍ଯ୍ୟ, ଉଜ୍ଜ୍ୱଳ ଚରିତ୍ର—ତେଣେ ପିତାମାତାଙ୍କର ବିରୋଧ ଓ ଲୋକନିନ୍ଦାର ଭୟ । ମନ ମଧ୍ୟରେ ତର୍କ-ସଂଗ୍ରାମ ଚାଲିଲା । ଚକ୍ରଧର ଦ୍ୱିଧାରେ ପଡ଼ିଥିବା ଜାଣି ଯଶୋଦାନନ୍ଦନ କହିଲେ—ତୁମେ ଚକିତ ଜଣାପଡୁଛ ; ଏହା ଚିନ୍ତାର କଥା ମଧ୍ୟ । ମୁଁ ସତ କହୁଛି—ଯଦି ମୋର ଦୁଇ ପୁତ୍ରଙ୍କ ମଧ୍ୟରୁ ଜଣେ ଜୈନେନ୍ଦ୍ର କୁମାର ଥାଆନ୍ତା ଏବଂ ଅହଲ୍ୟା ତାକୁ ବିବାହ କରିବାକୁ ରାଜି ହୁଅନ୍ତା, ତେବେ ମୁଁ ଆନନ୍ଦରେ ତାକୁ ବୋହୂ କରି ଆଣନ୍ତି । ତୁମର ସାମାଜିକ-ବିଚାର-ସ୍ୱାତନ୍ତ୍ର୍ୟର ପରିଚୟ ପାଇ ଅହଲ୍ୟା ଭଳି ରତ୍ନର ଉଦ୍ଧାର ଦାୟିତ୍ୱ ତୁମ ଉପରେ ନ୍ୟସ୍ତ କରିବା ମନସ୍ଥ କଲି । ତୁମେହିଁ ତାକୁ ଉଦ୍ଧାର କରିବ ।

ରୂପ ଲାବଣ୍ୟ ପ୍ରତି ଚକ୍ରଧର ଆଖି ବନ୍ଦ କରି ପାରିବେ, କିନ୍ତୁ ଉଦ୍ଧାର କରିବା ପ୍ରତି ବିତଷ୍ଣୁ ହେବା ଅସମ୍ଭବ । ସେ ଥିଲେ ସ୍ୱାଧୀନତାର ଉପାସକ ଏବଂ ନିର୍ଭିକତା ହେଉଛି ସ୍ୱାଧୀନତାର ପ୍ରଥମ ସୋପାନ । ମନେ ମନେ ଭାବିଲେ—ଏଥିରେ ତ ସମାଜ ହସିବା କଥା ନୁହେଁ, ବରଂ ପ୍ରଶଂସା କରିବା କଥା । ଏ କାମ କଲେ ସମାଜ ଯଦି ମୋତେ ଘୃଣା କରେ, ତେବେ ମୁଁ ତାକୁ ତୃଣବତ୍ ମନେ କରିବି । ଦୃଢ଼ତାର ସହ କହିଲେ—ମୋ ଆଡୁ ନିଃସନ୍ଦେହ ରହନ୍ତୁ । ମୁଁ ଏତେ ଭୀରୁ ନୁହେଁ ଯେ ସମାଜର ନିନ୍ଦାକୁ ଡରିବି । ପିତା ମାତାଙ୍କୁ ଖୁସି ରଖିବା ମୋର ଧର୍ମ । କିନ୍ତୁ କର୍ତ୍ତବ୍ୟ ଏବଂ ନ୍ୟାୟକୁ ହତ୍ୟା କରି ନୁହେଁ । କର୍ତ୍ତବ୍ୟ ସମ୍ମୁଖରେ ମାତାପିତାଙ୍କ ଇଚ୍ଛା ମଧ୍ୟ ମୂଲ୍ୟହୀନ ।

ଯଶୋଦାନନ୍ଦନ ଚକ୍ରଧରଙ୍କୁ କୁଣ୍ଢାଇପକାଇ କହିଲେ—ତୁମଠାରୁ ମୁଁ ଏହାହିଁ ଆଶା କରିଥିଲି ।

ଗାଡ଼ି ଆଗ୍ରାରେ ପହଞ୍ଚିଲା ଅପରାହ୍ଣରେ । ଗାଡ଼ିରୁ ଓହ୍ଲାଇ ଯଶୋଦାନନ୍ଦନ କୁଲି ଡାକିବା ବେଳେ ତାଙ୍କର ଦୃଷ୍ଟି ପୁଲିସ ସିପାହୀଦଳ ଉପରେ ପଡ଼ିଲା । ଚତୁର୍ଦ୍ଦିଗରେ

ପଡ଼ିବ । ଯାତ୍ରୀମାନଙ୍କର ଟ୍ରଙ୍କ, ବ୍ୟାଗ୍ ପ୍ରଭୃତି ତଲାସ କରାଯାଉଛି । ଜଣେ ଥାନାଦାର ଯଶୋଦାନନ୍ଦନଙ୍କର କାଗଜପତ୍ର ତଲାସିନେଲେ ।

ଯଶୋଦାନନ୍ଦନ ଆଶ୍ଚର୍ଯ୍ୟରେ ପଚାରିଲେ—କ'ଣ ହୋଇଛି, ଏ କଣ ?

ଥାନାଦାର—ଆପଣମାନେ ଯେଉଁ କଣ୍ଟା ପୋତିଛନ୍ତି, ଇଏ ତାର ଫଳ । ସହରରେ ଦଙ୍ଗା ଆରମ୍ଭ ହୋଇଯାଇଛି ।

ଯଶୋଦା—ଏବେ ତ ତିନିଦିନ ପୂର୍ବେ ଶାନ୍ତିଥିଲା । ହଠାତ୍ ଏ ଭୂତ କୁଆଡ଼ୁ ଆସିଗଲା !

ଏହି ସମୟରେ ସମିତିର ଜଣେ ସେବକ ଦୌଡ଼ିଆସି ପହଞ୍ଚିଲା । ଯଶୋଦାନନ୍ଦନ ତାକୁ ପଚାରିଲେ—ରାଧାମୋହନ, କ'ଣ ଘଟଣା ! ମୁଁ ଗଲା ଦିନ ଯାଏଁ ତ ଦଙ୍ଗାର କୌଣସି ଲକ୍ଷଣ ଦେଖାନଥିଲା ।

ରାଧାମୋହନ—ଆପଣ ଯେଉଁଦିନ ଗଲେ, ସେହି ଦିନ ପଞ୍ଜାବରୁ ମୌଲବୀ ଦିନମହମ୍ମଦ ସାହେବ ଆସି ପହଞ୍ଚିଲେ । ଖୋଲା ପଡ଼ିଆରେ ମୁସଲମାନମାନଙ୍କର ଏକ ସଭା ହେଲା । ସେ ସଭାରେ ମୌଲବୀ ସାହେବ କ'ଣ ବକ୍ତୋଦ୍‌ଗାର କଲେ କେଜାଣି, ପରଦିନ ସବୁ ମୁସଲମାନଙ୍କ ମୁଣ୍ଡରେ ଗୋହତ୍ୟା କରିବା ଭୂତ ଚଢ଼ିଲା । ଏଣେ ହିନ୍ଦୁମାନଙ୍କର ଜିଦ୍ ଯେ, ରକ୍ତନଦୀ ବହିଯାଉ ପଛେ ଗୋହତ୍ୟା କରେଇଦେବେନି । ଉଭୟେ ପ୍ରସ୍ତୁତ ହୋଇଗଲେ । ଆମେ ବୁଝେଇ ବୁଝେଇ ହାରିଗଲୁ ।

ଯଶୋଦା—ଖ୍ୱାଜାମହମ୍ମଦ କିଛି କହିଲେନି ?

ରାଧାମୋହନ—ସେ ତ ସେହି ସଭାରେ ସଭାପତି ହୋଇଥିଲେ ।

ଯଶୋଦା—ଖ୍ୱାଜାମହମ୍ମଦ ?

ଯଶୋଦା—ହଁ, ନିଜେ ଖ୍ୱାଜାମହମ୍ମଦ । ଆପଣ ତାଙ୍କୁ ମହାତ୍ମା ବୋଲି ଭାବୁଛନ୍ତି । କିନ୍ତୁ ପ୍ରକୃତରେ ସେ ଜଣେ ନୀଳବର୍ଣ୍ଣ ଶୃଗାଳ । ଆମେ ସବୁବେଳେ କହି ଆସୁଚୁ, ତାଙ୍କ ପ୍ରତି ସାବଧାନ ରହନ୍ତୁ ବୋଲି । କିନ୍ତୁ ଆପଣଙ୍କର ତାଙ୍କ ପ୍ରତି ଏତେ ବିଶ୍ୱାସ କାହିଁକି କେଜାଣି !

ଆତ୍ମଗ୍ଲାନିରେ ପୀଡ଼ିତ ହୋଇ ଯଶୋଦାନନ୍ଦନ କହିଲେ—ଯାହାକୁ ୨୫ ବର୍ଷ ହେଲା ଦେଖି ଆସୁଛି—ଯାହା ସଙ୍ଗେ କଲେଜରେ ପଢ଼ିଲି—ସିଏ ଏହି ସମିତିର ଦିନେ ସଭ୍ୟ ବି ଥିଲା, ତା' ପ୍ରତି ଅବିଶ୍ୱାସ କରନ୍ତି ବା କାହିଁକି ! ଦୁନିଆଁ ଯାହା କହୁ ପଛେ, ଖ୍ୱାଜାମହମ୍ମଦଙ୍କ ଉପରେ ମୋର ସନ୍ଦେହ ହେବ ନାହିଁ ।

ରାଧାମୋହନ—ଆପଣ ତାଙ୍କୁ ଦେବତା ମନେ କରିପାରନ୍ତି, କିନ୍ତୁ ଏବେ ଆପଣ ଦେଖିବେ, ସେ କେଡ଼େ ମନୋଯୋଗ ସହି କୁରବାନୀ (ବଳି, ହତ୍ୟା)ର ଉଯୋଗାଡ଼ କରୁଛନ୍ତି । ସେ ମଫସଲରୁ ଗୁଣ୍ଡା ମଗେଇଛନ୍ତି । ସେ ନିଜେ ଗାଈ କିଣି ନେଇଛନ୍ତି ଏବଂ ତାଙ୍କର ଦୁଆରେ ବଳିପଡ଼ିବ ।

ଯଶୋଦା—ଖ୍ୱାଜା ମହମ୍ମଦଙ୍କ ଦୁଆରେ କୁରବାନୀ ହେବ ? ତାଙ୍କ ଦୁଆରେ ପ୍ରଥମେ ମୋର କିମ୍ବା ଖ୍ୱାଜା ମହମ୍ମଦଙ୍କର ବଳି ପଡ଼ିବ । ଘୋଡ଼ାଗାଡ଼ି ଡାକ ।

ରାଧା—ଆପଣ ବର୍ତ୍ତମାନ ଏଇଠି ରହିଗଲେ ଖୁବ୍ ଭଲହୁଅନ୍ତା ।

ଯଶୋଦା—ବାଃ, ସହରରେ ନିଆଁ ଲାଗିଛି, ଅଥଚ ତୁମେ କହୁଚ ଏଇଠି ରହିଯିବା ପାଇଁ ! ଅନ୍ୟମାନଙ୍କର ଯାହା ହବ, ମୋର ବି ସେଇଆ ହେବ । ଆଗରୁ ମୋତେ ଟିକିଏ ଜଣେଇଥିଲେ ଭଲହୋଇଥାନ୍ତା ।

ରାଧା—କ'ଣ ସବୁ ହେଉଛି କାଲି ଦିପ୍ରହର ପର୍ଯ୍ୟନ୍ତ ଆମକୁ ଜଣାନଥିଲା । ଖ୍ୱାଜା ସାହେବଙ୍କ ପାଖକୁ ଗଲୁ । ସେ ନିର୍ଭର ପ୍ରତିଶ୍ରୁତି ଦେଲେ ଯେ କୁରବାନୀ କଦାପି ହୋଇ ପାରିବନି—ଆପଣମାନେ ନିଶ୍ଚିନ୍ତ ରହନ୍ତୁ । ଆମକୁ ସେ ଏକଥା କହିଲେ । ତେଣେ କିନ୍ତୁ କାଲି ସନ୍ଧ୍ୟାରେ ଲଠିଆଲ ଆସି ପହଞ୍ଚିଗଲେ ଏବଂ ମୁସଲମାନମାନଙ୍କର ଏକ ଡେପୁଟେସନ୍ ସିଟି ମାଜିଷ୍ଟ୍ରେଟଙ୍କୁ କୁର୍‌ବାନୀ ହେବାର ସୂଚନା ଦେବାକୁ ଗଲେ ।

ଯଶୋଦା—ମହମ୍ମଦ କ'ଣ ଡେପୁଟେସନ୍‌ରେ ଥିଲେ ?

ରାଧା—ସେ ତ ଡେପୁଟେସନ୍‌ର ନେତା । ଆମର ପକ୍‌କା ବିଶ୍ୱାସ ସେ ହେଉଛନ୍ତି ଏ ସବୁର ମୂଳ ।

ଯଶୋଦା--ଏହା ତ ସମ୍ଭବ ନୁହେଁ । ମହମ୍ମଦଠାରେ ଦ୍ୱେଷ ଜାତ କରି ପାରିବା ଭଳି ବ୍ୟକ୍ତି ନାହାନ୍ତି ବୋଲି ମୁଁ ମନେକରେ । ଚାଲ, ପ୍ରଥମେ ତାଙ୍କ ସହି କଥାବାର୍ତ୍ତା କରିବ । ମୋ ଦୁଆରେ ତ ଏବେ ଖୁବ୍ ଲୋକ ଗହଳି ହୋଇଥିବ !

ରାଧା—ଆଜ୍ଞା, ଆପଣଙ୍କର ଏବଂ ଖ୍ୱାଜା ମହମ୍ମଦଙ୍କ ଘର ଆଗରେ ଖୁବ୍ ଗହଳି । ମଝିରେ ଯାହା ଅଳ୍ପ ସ୍ଥାନ ଖାଲିପଡ଼ିଛି ।

ଧନଞ୍ଜୟ ଟାଙ୍ଗାରେ ଚଢ଼ି ଚାଲିଲେ । ସଡ଼କରେ ପୁଲିସ ପହରା ଦେଉଥିଲେ । ଗଳିମାନଙ୍କରେ ଲୋକେ କୋଉଠି କିମିତି ଜମାହୋଇ କଥାବାର୍ତ୍ତା କରୁଥିଲେ ।

କିଛି ଦୂରଯାଏଁ ଧନଞ୍ଜୟ ନୀରବରେ ବସି ରହିଲେ । ଚକ୍ରଧର ସଶଙ୍କ । ଏଣେ ତେଣେ ଚାହୁଁଥାଆନ୍ତି । ଯଶୋଦାନନ୍ଦନଙ୍କ ମନ ଗ୍ଲାନି ପୂର୍ଣ୍ଣ । ତାଙ୍କ ସାହିରେ ଏଯାଏଁ କୁର୍‌ବାନୀ ହୋଇନଥିଲା । ହିନ୍ଦୁ-ମୁସଲମାନ ମଧ୍ୟରେ ପ୍ରଭେଦ ନ ଥିଲା । ଅନ୍ୟ ସହରମାନଙ୍କରେ କିପରି ହିନ୍ଦୁ-ମୁସଲମାନଙ୍କ ମଧ୍ୟରେ ଝଗଡ଼ା ହୋଇଯାଉଛି ଶୁଣି ସେ ଆଶ୍ଚର୍ଯ୍ୟ ହେଉଥିଲେ ।

ସହସା ଉତ୍ତେଜିତ କଣ୍ଠରେ ଯଶୋଦାନନ୍ଦନ କହିଲେ—ରାଧାମୋହନ, ମହମ୍ମଦଙ୍କ ସହି କଥାବାର୍ତ୍ତା କରିବା ପାଇଁ ମୁଁ ଏଠାରେ ଓହ୍ଲେଇ ପଡୁଛି । ତୁମେ ଏ ବାବୁଙ୍କୁ ନେଇ ଘରକୁ ଚାଲିଯାଅ ! ବାବୁ ମୋର ଜଣେ ବନ୍ଧୁଙ୍କ ପୁଅ । ଏଠାକୁ ବୁଲିବା ପାଇଁ ଆସିଛନ୍ତି । ବୈଠକ ଘରେ ରହିବାର ବନ୍ଦୋବସ୍ତ କରିଦେବ । ଯଦି ଫେରିବାର ସୁଯୋଗ ମୋତେ

ନମିଲେ, ତେବେ ବ୍ୟସ୍ତ ହେବ ନାହିଁ । ତୁମେ ଘରେ କହିଦେବ, ଅହଲ୍ୟା ସହିତ ଏଙ୍କାଙ୍କର ବିବାହ କରାଇଦେବେ ।

ଚନ୍ଦ୍ରଧର—ମୁଁ ମଧ୍ୟ ଆପଣଙ୍କ ସହିତ ରହିବାକୁ ଚାହେଁ ।

ଯଶୋଦା—ନାହିଁ ବାବୁ, ତୁମେ ଆମର ଅତିଥି । ମୋ ସହିତ ତୁମେ ରହିବାର ଆବଶ୍ୟକତା ନାହିଁ ।

ଚନ୍ଦ୍ରଧର—ଗୋରକ୍ଷା କ'ଣ କେବଳ ଆପଣଙ୍କର ଧର୍ମ—ମୋର ନୁହେଁ ?

ଯଶୋଦା—ନାହିଁ, ତା' ନୁହେଁ, ତୁମେ ମୋର ଅତିଥି । ତୁମକୁ ରକ୍ଷା କରିବା ଆମର ଧର୍ମ ।

ଟାଙ୍ଗା ଧୀରେ ଧୀରେ ଯାଇ ମହମ୍ମଦଙ୍କ ଘର ପାଖରେ ପହଞ୍ଚିଲା । ହଜାର ହଜାର ଲୋକ ଜମା ହୋଇଥିଲେ । କାହାରି ହାତରେ ଠେଙ୍ଗାବାଡ଼ି କିଛି ନଥିଲେ ମଧ୍ୟ ମୁହଁ ତମ ତମ ଦେଖାଯାଉଥିଲା । ଯଶୋଦାନନ୍ଦନଙ୍କୁ ଦେଖି କେତେ ଲୋକ ତାଙ୍କ ଅଡ଼କୁ ଦୌଡ଼ିଲେ । କିନ୍ତୁ ସେ ଜୋର୍‌ରେ କହିଲେ—ମୁଁ ତୁମମାନଙ୍କ ସହିତ ଲଢ଼େଇ କରିବାକୁ ଆସିନି । ଖ୍ୱାଜା ମହମ୍ମଦ କାହାନ୍ତି ? ମୋର ତାଙ୍କ ସହିତ କାମ ଅଛି ।

ଲୋକେ ଅଡ଼େଇହୋଇଗଲେ । ଜଣେ ଲମ୍ବା, ଧଳାକଳା ମିଶ୍ରିତ ଦାଢ଼ୀ, ଗୋରା ବ୍ୟକ୍ତି ଆସି ପହଞ୍ଚିଲେ । ଏହି ବ୍ୟକ୍ତି ଖ୍ୱାଜା ମହମ୍ମଦ । ମୁହଁରେ ତାଙ୍କର ଶିଷ୍ଟତା ଝଲକିଉଠୁଥିଲା ।

ଯଶୋଦାନନ୍ଦନ—କ'ଣ ଖ୍ୱାଜା ସାହେବ, ଆପଣ ଜାଣନ୍ତି—ଆମ ସାହିରେ କୁର୍‌ବାନୀ କେବେ ହୋଇନାହିଁ ।

ମହମ୍ମଦ—ହଁ ଆଜ୍ଞା—ଆମ ସାହିରେ କେବେ ହୋଇନାହିଁ ।

ଯଶୋଦା—ତେବେ ଆଜି ଏ କ'ଣ ?

ମହମ୍ମଦ—କିନ୍ତୁ କୁର୍‌ବାନୀ କରିବା ଆମର ଦାବୀ, ଧର୍ମ । ଏ ଯାଏଁ ଆମେ ଆପଣଙ୍କ ମୁହାଁମୁହିଁରେ ଆମର କର୍ତ୍ତବ୍ୟ ଭୁଲିଯାଇଥିଲୁ । ଯଦି ଆପଣମାନେ ନିଜର ଧର୍ମ ପାଳନରେ ଆମ ପ୍ରତି ଆଖି ବୁଜି ଦେଉଛନ୍ତି, ତେବେ ଆମେ କାହିଁକି ଖାତିର କରିବୁ ?

ଯଶୋଦା—ତେବେ କ'ଣ କାଲି ଆମର ଦୁଆରେ, ଆମର ମନ୍ଦିର ସମ୍ମୁଖରେ ଆପଣମାନେ କୁର୍‌ବାନୀ କରିବେ ଏବଂ ଆମେ ଚୁପ୍‌ଚାପ୍ ତାହା ଦେଖିବୁ ! ଆପଣ ଏଠାରେ କଦାପି କୁର୍‌ବାନୀ କରି ପାରିବେ ନାହିଁ । ଯଦି କରିବେ, ସେଥିପାଇଁ ଦାୟୀ ଆପଣ ହେବେ ।

ଏହା କହି ଯଶୋଦାନନ୍ଦନ ଟାଙ୍ଗାରେ ବସିଲେ । ଦଶ ପାଞ୍ଚ ଜଣ ଟାଙ୍ଗାକୁ ରୋକିବାକୁ ଚାହିଁଲେ । କିନ୍ତୁ କୋଚୱାନ୍ ଘୋଡ଼ାଙ୍କର ଗତିକୁ ତୀବ୍ର କରିଦେଲା । ଯଶୋଦାନନ୍ଦନଙ୍କ ଦୁଆରେ ହଜାର ହଜାର ଲୋକ ଜମା ହୋଇଥିଲେ । ଘୋଡ଼ାଗାଡ଼ି ପହଞ୍ଚିବାରୁ ଲୋକେ ଚତୁର୍ଦ୍ଦିଗରୁ ଆସି ଗାଡ଼ି ଚାରିପଟେ ଘେରିଗଲେ । ଏପର୍ଯ୍ୟନ୍ତ ସେନାବାହିନୀର ଅଫିସର

ଆସି ନଥିଲେ । ତେଣୁ ସିପାହିମାନେ ଏ ଅବସ୍ଥାରେ କ'ଣ କରିବେ କିଛି ଚିନ୍ତା କରିପାରୁ ନଥିଲେ । ସେନାପତି ଆସି ପହଞ୍ଚିବାରୁ ସିପାହିମାନଙ୍କ ମନରେ ଦମ୍ଭ ଆସିଲା ।

ଯଶୋଦାନନ୍ଦନ ଗାଡ଼ିରୁ ଓହ୍ଲାଇ କହିଲେ—ଭାଇମାନେ, କ'ଣ ବିଚାର କରୁଛ ? ଏଠାରେ କୁର୍‌ବାନି ହେବ ? ଆପଣମାନେ ଜାଣନ୍ତି ଏଯାଏଁ ଏଠାରେ କୁର୍‌ବାନି ହୋଇନାହିଁ । ଯଦି ଆମେ ଆଜି ଏଠାରେ କୁର୍‌ବାନି ହେବାକୁ ଦେବା, ତେବେ କିଏ କହିପାରିବ ଆମ ମନ୍ଦିର ଆଗରେ ଗୋହତ୍ୟା କାଲି ନ ହେବ ବୋଲି ?

ବହୁ ବ୍ୟକ୍ତି ଏକ କଣ୍ଠରେ କହିଲେ—ଆମେ ମରିବୁ ପଛେ, କୁର୍‌ବାନି ହେବାକୁ ଦେବୁ ନାହିଁ ।

ଯଶୋଦା—ଠିକ୍ ଏ ଭଲ କରି ଚିନ୍ତା କର । ସେମାନେ ସବୁ ପ୍ରକାରେ ତିଆରି ହୋଇ ରହିଛନ୍ତି ।

ଅନେକ ବ୍ୟକ୍ତି ଏକା ସ୍ୱରରେ କହିଲେ—ଶୁଣ ଭାଇମାନେ, ଯଦି କେହି ପଛକୁ ଘୁଞ୍ଚିବ, ସେ ଗୋହତ୍ୟା ପାପରେ ଭାଗୀ ହେବ । ଜଣେ ଶିଖ୍ ଯୁବକ କହିଲା—ଦେଖ, ଆମେ କ'ଣ କରୁଛୁ ! ଜଣେ ପଞ୍ଜାବୀ ହିନ୍ଦୁ କହିଲା—ବେକଗୁଡ଼ାକ ସବୁ ମୋଡ଼ି ଦେବୁ ।

ଲୋକମାନଙ୍କୁ ଉତ୍ତେଜିତ କରି ଯଶୋଦାନନ୍ଦନ ଆଗକୁ ଚାଲିଲେ । ଜନତା 'ଜୟ ମହାବୀର, ଜୟ ଶ୍ରୀରାମଚନ୍ଦ୍ର' ଧ୍ୱନି ଦେଇ ତାଙ୍କ ପଛେ ପଛେ ଚାଲିଲେ । ଏଣେ ମୁସଲମାନମାନେ ମଧ୍ୟ ଠେଙ୍ଗା ଧରି ପ୍ରସ୍ତୁତ । ଦୁଇଦଳ ଭିତରେ ହାତାହାତି ହେବାର କେତେ ମୁହୂର୍ତ୍ତ ପୂର୍ବରୁ ହଠାତ୍ ଚକ୍ରଧର ଦୌଡ଼ି ଆସି ଯଶୋଦାନନ୍ଦନଙ୍କ ଆଗରେ ଠିଆ ହୋଇଗଲେ । ସେ ବିନୀତ ଏବଂ ଦୃଢ଼ କଣ୍ଠରେ କହିଲେ—ଆପଣମାନେ ସେଆଡ଼େ ଯଦି ଯିବେ, ତେବେ ମୋ ଛାତିରେ ପାଦଦେଇ ଯାଆନ୍ତୁ । ମୋ ଆଖି ଆଗରେ ଏ ଅନର୍ଥ ହୋଇ ପାରିବ ନାହିଁ ।

ଯଶୋଦାନନ୍ଦନ ଚିଡ଼ିଉଠି କହିଲେ—ଆଡ଼େଇ ଯାଅ । ଯଦି ସାମାନ୍ୟ ଡେରି ହୁଏ, ତେବେ ପାଶ୍ଚାତ୍ତାପ କରିବାକୁ ପଡ଼ିବ ।

ଚକ୍ରଧର—ଆପଣମାନେ ସେଠାକୁ ଯାଇ କ'ଣ କରିବେ ?

ଯଶୋଦା—ହତ୍ୟାକାରୀଙ୍କ ହାତରୁ ଗୋରୁ ଛଡ଼େଇ ଆଣିବୁ ।

ଚକ୍ରଧର—ଅହିଂସାର ନିୟମ ଗୋରୁମାନଙ୍କ ପାଇଁ ନୁହେଁ, ମନୁଷ୍ୟଙ୍କ ପାଇଁ ।

ଯଶୋଦା—କ'ଣ ଏମିତି କହୁଛ ! ଏଠାରେ ଆମେ ଠିଆ ହୋଇ ଆଖି ଆଗରେ ଗୋହତ୍ୟା ଦେଖିବୁ—ଆମେ ଏତେ ଉଦାର ନୋହୁ ।

ଚକ୍ରଧର—ଏ ସମୟରେ ମଧ୍ୟ ? ବନ୍ଧୁଗଣ, ଠିକ୍ ଏ ବିଚାର କରନ୍ତୁ ।

କେତେଜଣ—ବିଚାର କରି କାମ କରିବା ଭୀରୁତାର ଲକ୍ଷଣ ।

ଜଣେ ଶିଖ୍ ଯୁବକ କହିଲା—ଯଦି ଠେଙ୍ଗା ଦ୍ୱାରା କାର୍ଯ୍ୟ ହାସଲର ମୁହୂର୍ତ୍ତ ଆସେ, ତେବେ ବିଗୁରକୁ ବନ୍ଦ କରି ସିନ୍ଧୁକରେ ରଖିଦେବା ଉଚିତ ।

ଚକ୍ରଧର—ତେବେ ଯାଆନ୍ତୁ । କିନ୍ତୁ ସେ ଗୋରୁକୁ ବଞ୍ଚାଇବା ପାଇଁ ଜଣେ ଭାଇକୁ ଖୁନ୍ କରିବାକୁ ପଡ଼ିବ ।

ସହସା ଗୋଟେ ପଥର କୁଆଡ଼ୁ ଆସି ଚକ୍ରଧରଙ୍କ ମୁଣ୍ଡରେ ପଡ଼ିଲା । ମୁଣ୍ଡ ଫାଟିଯାଇ ରକ୍ତ ବୋହିବାକୁ ଲାଗିଲା । ଚକ୍ରଧର ନିଜ ସ୍ଥାନରୁ ହଟିଲେ ନାହିଁ । ମୁଣ୍ଡକୁ ଚପିଧରି କହିଲେ—ଯଦି ମୋ ରକ୍ତରେ ଆପଣମାନଙ୍କର କ୍ରୋଧାଗ୍ନି ଶାନ୍ତହୁଏ, ତେବେ ଏହା ମୋର ସୌଭାଗ୍ୟ ।

ପୁଣି ଦ୍ୱିତୀୟ ପଥର ଆସିଲା । କିନ୍ତୁ ଦେହରେ ନ ବାଜି କାନ ପାଖ ଦେଇ ଚାଲିଗଲା ।

ଯଶୋଦାନନ୍ଦନ ଗର୍ଜନ କରି କହିଲେ—କିଏ ଟେକା ଫିଙ୍ଗୁଛ ? ସମ୍ମୁଖକୁ ଆସ । ଯଦି ସେ ନିଜକୁ ବୀର ବୋଲି ମନେକରୁଛି, ତେବେ ଆଗକୁ ଆସି ବୀରତା ଦେଖାଉ । ପଛରେ ଠିଆହୋଇ ପଥର ଫିଙ୍ଗୁଛି କାହିଁକି ?

ପଛରୁ ଶୁଭିଲା—ଧର୍ମଦ୍ରୋହୀଙ୍କୁ ମାରିବା ଅଧର୍ମ ନୁହେଁ ।

ଯଶୋଦା—ଯାହାକୁ ତୁମେ ଧର୍ମଦ୍ରୋହୀ ବୋଲି ମନେକରୁଛ, ସେ ତୁମଠାରୁ ମଧ୍ୟ ଶ୍ରେଷ୍ଠ ହିନ୍ଦୁ ।

ପୁଣି ଶୁଭିଲା ଏକ ବ୍ୟଙ୍ଗପୂର୍ଣ୍ଣ ଶବ୍ଦ—ଶ୍ରେଷ୍ଠ ହିନ୍ଦୁ ତ ତାଙ୍କୁହିଁ କହନ୍ତି, ଯିଏ ଠିକ୍ ସମୟରେ ସହର ଛାଡ଼ି ବାୟୁସେବନ ପାଇଁ ଅନ୍ୟତ୍ର ଖସିଯାଏ ।

କେତେଜଣ କହିଲେ—କିଏ ସେ ଭଦ୍ରଲୋକ, ଆକ୍ଷେପ କରୁଛ ! ତା'ର ଜିଭଟା ଛିଣ୍ଡାଇଦିଅ ।

ଯଶୋଦା—ମୋ ପ୍ରତି ଯେଉଁ ଆକ୍ଷେପ କରାଯାଉଛି, ତାହା ଆପଣମାନେ ଶୁଣିପାରୁଥିବେ । ମୁଁ ହିନ୍ଦୁ ନୁହେଁ, ଠିକ୍ ସମୟରେ ସହର ଛାଡ଼ି ଚାଲିଯାଉଛି—ଏଭଳି ବ୍ୟକ୍ତି ଆପଣଙ୍କର ନେତା ହେବା ଯୋଗ୍ୟ ନୁହେଁ । ଯିଏ ଶ୍ରେଷ୍ଠ ହିନ୍ଦୁ ଆପଣ ତାଙ୍କୁ ନେତା ନିଯୁକ୍ତ କରନ୍ତୁ ।

କେତେଜଣ କହିଲେ—ମହାଶୟ, ଆପଣ ସେ ସବୁ କଥା ଶୁଣନ୍ତୁ ନାହିଁ ।

ଯଶୋଦା—ଏହା ମୋର ପଚିଶି ବର୍ଷ ସେବାର ଉପହାର । ଯେଉଁ ସେବାର ଫଳ ଅପମାନ, ମୁଁ ସେ ସେବାକୁ ଦୂରରୁ ସଲାମ କରେ ।

ଏହା କହି ଯଶୋଦାନନ୍ଦନ ଘର ଆଡ଼କୁ ଚାଲିଲେ । କେତେଜଣ ତାଙ୍କୁ ରୋକିବାକୁ ଚାହିଁଲେ । କେତେଜଣ ତାଙ୍କ ଗୋଡ଼ତଳେ ପଡ଼ିଗଲେ । କିନ୍ତୁ ସେ କିଛି ଶୁଣିଲେ ନାହିଁ । ସେ ଥିଲେ ତେଜସ୍ୱୀ ବ୍ୟକ୍ତି । ନିଜ ସଭାକୁ ସେ ସ୍ୱେଚ୍ଛାଚାରୀ ରାଜାମାନଙ୍କ ଭଳି ଶାସନ କରିବା ଚାହୁଁଥିଲେ । ସମାଲୋଚନା ସହ୍ୟ କରିବାର ସାମର୍ଥ୍ୟ ତାଙ୍କର ନଥିଲା ।

ସେ ଯିବା ପରେ କେତେଜଣଙ୍କ ମଧ୍ୟରେ ଝଗଡା ଆରମ୍ଭ ହୋଇଗଲା । ଜଣେ ଅନ୍ୟଜଣକୁ ଆକ୍ଷେପ କରିବାକୁ ଲାଗିଲା । ହାତାହାତି ମଧ୍ୟ ହୋଇଗଲା ।

ଚନ୍ଦ୍ରଧର ଦୌଡ଼ି ଆସି ମୁସଲମାନଙ୍କ ସମ୍ମୁଖରେ ପହଞ୍ଚି ଉଚ୍ଚ ସ୍ୱରରେ କହିଲେ—ମୋତେ କିଛି କହିବାକୁ ଅନୁମତି ମିଳିଲେ କହିବି ।

ଜଣେ କହିଲା—ଆରେ ହେ ହେ, ଇଏ ତ ଇଲେ ହିନ୍ଦୁମାନଙ୍କ ପାଖରେ ଥିଲା ।

ଅନ୍ୟ ଜଣେ—ଶତ୍ରୁମାନଙ୍କର ବଳ ଭାଙ୍ଗି ଗଲାଣି । ସେମାନେ ସବୁ ହଟି ଚାଲି ଯାଉଛନ୍ତି ।

ତୃତୀୟ—ଏଇ ବୋଧେ ସେମାନଙ୍କୁ ବୁଝେଇ ସୁଝେଇ ଫେରେଇ ଦେଇଛି । ଶୁଣ, ସିଏ କ'ଣ କହୁଛି ।

ଚନ୍ଦ୍ରଧର—ଯଦି ଏ ଗାଈକୁ ହତ୍ୟା କରିବା ଆପଣମାନେ ନିଜର ଧାର୍ମିକ କର୍ତ୍ତବ୍ୟ ବୋଲି ମନେକରନ୍ତି, ତେବେ ଖୁସିରେ କରନ୍ତୁ । ମୁଁ ଆପଣମାନଙ୍କର ଧର୍ମ କାର୍ଯ୍ୟରେ ହସ୍ତକ୍ଷେପ କରିବାକୁ ଚାହେଁନା, କିନ୍ତୁ ଏଇ ସ୍ଥାନରେ ହତ୍ୟା କରିବା କ'ଣ ନିତାନ୍ତ ଦରକାର !

ଜଣେ ବ୍ୟକ୍ତି—ଆମ ଖୁସି । ଆମେ ଯେଉଁଠି ଚାହିଁବୁ ସେଇଠି କୁର୍‌ବାନୀ କରିବୁ । ତୁମର ଯାଏ ଆସେ କ'ଣ ?

ଚନ୍ଦ୍ରଧର—ହଁ, ଏଥିରେ ମୋର କିଛି କହିବାକୁ ନାହିଁ । କିନ୍ତୁ ଇସ୍‌ଲାମ୍ ପ୍ରତି ମୋ ହୃଦୟରେ ଯେଉଁ ସମ୍ମାନ ଅଛି, ସେହି ବିଶ୍ୱାସ ମୋତେ କହିବାକୁ ବାଧ କରୁଛି । ଇସ୍‌ଲାମ କେବେହେଲେ ଅନ୍ୟ ଧର୍ମ ପ୍ରତି ଅସମ୍ମାନ କରେ ନାହିଁ । ସେ ସର୍ବଦା ଅନ୍ୟମାନଙ୍କର ଭାବନାକୁ ସମ୍ମାନ ଦେଖାଏ । ବାଗ୍‌ଦାଦ୍ ଏବଂ ରୋମ୍, ସ୍ପେନ୍ ଏବଂ ମିଶରର ଯେଉଁ ଚଳଣି ଥିଲା ତାହା ଇସ୍‌ଲାମ୍ ଚଳଣିର ସାକ୍ଷୀ ।

ଜଣେ ମୌଲବୀ ଜୋର୍‌ରେ କହିଲେ—ଆମେ ଏଭଳି ମିଠା ମିଠା କଥା ବହୁତ ଶୁଣିଛୁ । ଏଇଠାରେହିଁ କୁର୍‌ବାନୀ ହେବ ।

ଖ୍ୱାଜା ମହମ୍ମଦ ମନୋଯୋଗ ଦେଇ ଚନ୍ଦ୍ରଧରଙ୍କ କଥା ଶୁଣୁଥିଲେ । ମୌଲବୀ ସାହେବଙ୍କର ଉଦ୍ଦଣ୍ଡତା ଦେଖି ବିରକ୍ତ ହୋଇ କହିଲେ—କ'ଣ ଧର୍ମଶାସ୍ତ୍ରରେ ନିର୍ଦ୍ଦେଶ ଅଛି କୁର୍‌ବାନୀ ଏଇଠି ହେବ ବୋଲି ?

ମୌଲବୀ ସାହେବ ଅବିଶ୍ୱାସ ଦୃଷ୍ଟିରେ ଖ୍ୱାଜା ମହମ୍ମଦଙ୍କୁ ଚାହିଁ କହିଲେ—ଧର୍ମକାର୍ଯ୍ୟ ସମ୍ପର୍କରେ ମୌଲବୀଙ୍କ ବ୍ୟତୀତ ଅନ୍ୟ କାହାରି କହିବାର ଅଧିକାର ନାହିଁ ।

ଖ୍ୱାଜା—ଖରାପ ଭାବିବେନି ମୌଲବୀ ସାହେବ ! ଯଦି ଦଶଜଣ ସିପାହୀ ଆସି ଏଠାରେ ଠିଆହୋଇଯିବେ, କେଉଁଠି ଲୁଚିବାକୁ ଜାଗା ମିଳିବନି ।

ମୌଲବୀ—ଭାଇମାନେ, ଆପଣମାନେ ଖ୍ୱାଜା ସାହେବଙ୍କର ଧର୍ମଦ୍ରୋହୀ କଥା ଶୁଣୁଛନ୍ତି ତ ! ଧର୍ମ ସମ୍ବନ୍ଧରେ କିଛି କହିବାର ଅଧିକାର ତାଙ୍କର ନାହିଁ । ଏ ସମ୍ବନ୍ଧରେ ଫଇସଲା ମୌଲବୀ କରିବେ ନା ସର୍ଦ୍ଦାର !

ଜଣେ ମୋଟା, ଡଗଡ଼ା, ଦାଢ଼ୀବାଲା ବ୍ୟକ୍ତି କହିଲେ—ଆପଣ ପଇଲେ କରନ୍ତୁ, ହିନ୍ଦୁମାନଙ୍କର ଏଥିରେ ଅଧିକାର ନାହିଁ ।

ଏହାଶୁଣି କେତେଜଣ ଛୁରୀ ଧରି ଗାଈ ପାଖକୁ ମାଡ଼ିଗଲେ । କେତେଜଣ ଯାଇ ତାର ଶିଙ୍ଗ ଧରିଲେ । ଗାଈଟା ଏ ଯାଏଁ ଚୁପ୍‌ଚାପ ଠିଆ ହୋଇଥିଲା, ଛୁରୀ ଦେଖି ଛଟପଟ ହେବାକୁ ଲାଗିଲା । ଏ ଦୃଶ୍ୟ ଦେଖି ଚନ୍ଦ୍ରଧର ବିଚଳିତ ହୋଇପଡ଼ିଲେ । ଘୃଣା ଏବଂ କ୍ରୋଧରେ କମ୍ପମାନ ହୋଇ କହିଲେ—ଭାଇମାନେ, ଗୋଟିଏ ନିରୀହ ପ୍ରାଣୀକୁ ମାରିବା ବାହାଦୁରୀ ନୁହେଁ । ନିରୀହ ପ୍ରାଣୀର ରକ୍ତରେ ଖୋଦା ଖୁସି ହୁଅନ୍ତି ନାହିଁ । ଯଦି ବୀରତା ଦେଖାଇବାକୁ ଚାହଁ, ତେବେ ସିଂହ ଶିକାର କର, ବାଘ ଶିକାର କର, ଦୋନ୍ତା ବାଘର ପଛରେ ଦୌଡ଼ । ଯେ ପର୍ଯ୍ୟନ୍ତ ହିନ୍ଦୁମାନେ ଏଠାରେ ଠିଆ ହୋଇଥିଲେ, ସେ ଯାଏଁ ହାତରେ ଛୁରୀ ଧରିବାକୁ କେହି ସାହସ ତ କରୁନଥିଲେ । ସେମାନେ ଏଠାରୁ ଚାଲିଯିବାରୁ ଶରୀରରେ ବଳ ଆସିଗଲା ?

ଜଣେ ବ୍ୟକ୍ତି—କାହିଁକି ଚାଲିଗଲେ ? ଏଠାରେ ଠିଆ ହେଲେ ନାହିଁ କାହିଁକି ? ଗୋ-ରକ୍ଷାର ବାହାଦୁରି ଦେଖେଇ ଥାଆନ୍ତେ । ଲାଙ୍ଗୁଡ଼ ଜାକି ପଳେଇ ଗଲେ କାହିଁ ?

ଚନ୍ଦ୍ରଧର—ଲାଙ୍ଗୁଡ଼ ଜାକି ପଳେଇ ଗଲେ ନାହିଁ, ଲଢ଼ିବାକୁ ସେମାନେ ଆପଣମାନଙ୍କଠାରୁ ବଳରେ କମ୍ ନୁହନ୍ତି । ସେମାନେ ଜାଣିଲେ—ମାନବ ହତ୍ୟା ଏକ ଅନୁଚିତ କାର୍ଯ୍ୟ ।

ମୌଲବୀ—ଧନ୍ୟବାଦ, ସେମାନେ ତା'ହେଲେ ବୁଝିଲେଣି !

ଚନ୍ଦ୍ରଧର—ଆପଣ ଅଛା କରିବା ପାଇଁ ସତେ ଯେପରି କଟିବଦ୍ଧ । ଶୁଣନ୍ତୁ, ଆପଣଙ୍କର ଯାହା ଇଚ୍ଛା, ତାହା କରିପାରନ୍ତି । ମୁଁ କିନ୍ତୁ ଦୃଢ଼ତାର ସହିତ କହିବି, ଆପଣଙ୍କର ଏ ଅଛା ବଡ଼ ଖରାପ ପ୍ରଭାବ ପକେଇବ । ଏଠାରେ ହିନ୍ଦୁ ଲୋକ ଆଦୌ ନାହାନ୍ତି ବୋଲି ଭାବନ୍ତୁନି । ଆପଣଙ୍କର ପ୍ରତ୍ୟେକ କୁର୍‌ବାନୀ ହିନ୍ଦୁସ୍ଥାନର ୨୧ କୋଟି ଲୋକଙ୍କ ମନରେ ଭୟଙ୍କର ଆଘାତ ଦେବ ଏବଂ ଏତେ ହୃଦୟରେ ଦୁଃଖ ଜାତ ହେଲେ ପରିଣାମ ପାଇଁ ଆପଣ ପଶ୍ଚାତ୍ତାପ କରିବେ । ଆପଣଙ୍କର ଖାଇବାକୁ ଇଚ୍ଛା ହେଉଛି ତ ଖୁସିରେ ଖାଆନ୍ତୁ । ପ୍ରତିଦିନ ଲକ୍ଷ ଲକ୍ଷ ଗୋରୁ ହତ୍ୟା ହେଉଛନ୍ତି, କାହିଁ କୌଣସି ହିନ୍ଦୁ ତ ପାଟି ଫିଟାଉ ନାହାନ୍ତି ! କିନ୍ତୁ ଏ ସବୁ କାହିଁକି ? ଯଦି ଆପଣଙ୍କର ବିଶ୍ୱାସ ନ ହେଉଛି, ତେବେ ଦେଖନ୍ତୁ, ଗାଈ ସହିତ ଜଣେ ହିନ୍ଦୁ କିପରି ଖୁସିରେ ନିଜର ଜୀବନ ଦେଉଛି ।

ଏହା କହି ଚନ୍ଦ୍ରଧର ଦୌଡ଼ିଯାଇ ଗାଈର ବେକରେ ଓହଳିପଡ଼ି କହିଲେ—ତେବେ ଏହି ଗୋରୁ ସହ ଏହି ବ୍ୟକ୍ତିକୁ ବଳି ଦେବାକୁ ପଡ଼ିବ ।

ସମସ୍ତେ ଆଶ୍ଚର୍ଯ୍ୟ ହୋଇ ଚନ୍ଦ୍ରଧରଙ୍କ ମୁହଁକୁ ଚାହିଁରହିଲେ । ମୌଲବୀ ସାହେବ କ୍ରୋଧରେ ଉନ୍ମତ୍ତ ହୋଇ କହିଲେ—ହଟିଯାଅ, ସେଠାରୁ ହଟିଯାଅ, ନଚେତ୍ ଅନର୍ଥ ହୋଇଯିବ ।

ଚନ୍ଦ୍ରଧର—ହେବାକୁ ଦିଅନ୍ତୁ । ଖୋଦାଙ୍କର ଯଦି ଇଚ୍ଛା, ତେବେ ଏହି ଗାଈ ସହ ମୋତେ ମଧ୍ୟ ବଳି ପକାନ୍ତୁ ।

ଖ୍ୱାଜା ମହମ୍ମଦ—ଆଚ୍ଛା ଭାଇ, ତୁମର ଘର କେଉଁଠି ?

ଚନ୍ଦ୍ରଧର—ମୁଁ ଜଣେ ବିଦେଶୀ ।

ଖ୍ୱାଜା—ଖୋଦାର୍ କ୍ଷଣ, ମୁଁ ତୁମ ଭଳି ବ୍ୟକ୍ତି ଦେଖି ନାହିଁ । ଗାଈକୁ ତ ସବୁ ହିନ୍ଦୁ ନାମକୁ ମାତ୍ର ମାତା ବୋଲି କହନ୍ତି, କିନ୍ତୁ ଗାଈ ପାଇଁ ଜୀବନ ଦେବା ବ୍ୟକ୍ତି ଏକଦମ୍ ବିରଳ । ବାଃ, ତୁମେ ତ ଜଣେ ସଚ୍ଚା ମୁସଲମାନ । ତୁମେ ଖୋଦାଙ୍କୁ ମାନ ?

ଚନ୍ଦ୍ରଧର—ଉତ୍ତମ ରୂପେ ମାନେ, ଖୁବ୍ ସମ୍ମାନ ଦିଏ ।

ଖ୍ୱାଜା—ଆମ ସଙ୍ଗେ ଖାଇବା ପିଇବାରେ ଘୃଣା କର ନାହିଁ ?

ଚନ୍ଦ୍ରଧର—ହଁ କରେ । ଯେପରି ଜଣେ ବ୍ରାହ୍ମଣ ସହ ବସି ଖାଇବା ପିଇବାରେ ଘୃଣା କରେ, ଯଦି ସେ ପବିତ୍ର ବୋଲି ହୃଦ୍‌ବୋଧ ନ ହୁଏ ।

ଖ୍ୱାଜା—ଠିକ୍ । ତୁମ ଭଳି ଜାଣିବାଶୁଣିବା ବ୍ୟକ୍ତି ହେଲେ ତୁମର ଅନ୍ୟ ଭାଇମାନେ ଠିକଏ ହୁଅନ୍ତେ ! କିନ୍ତୁ ଏଠାର ଲୋକେ ତ ଆମକୁ ମ୍ଳେଚ୍ଛ ବୋଲି କହନ୍ତି । ଏପରି କି ଆମକୁ କୁକୁର ଠାରୁ ବି ଅଧିକ ହୀନ ବୋଲି ମନେକରନ୍ତି । ସେମାନଙ୍କ ଥାଳରେ କୁକୁର ଖାଆନ୍ତି, କିନ୍ତୁ ମୁସଲମାନ ସେମାନଙ୍କ ଗ୍ଲାସରେ ପାଣି ପିଇବା ମନା । ବାଃ, ତୁମ ସହିତ ମିଶି ଖୁବ୍ ଆନନ୍ଦ ଲାଗିଲା । ବର୍ତ୍ତମାନ ତୁମେ ଯାଅ । ମୁଁ ଭରସା ଦେଉଛି, କୁର୍ବାନୀ ହେବ ନାହିଁ ।

ଚନ୍ଦ୍ରଧର—ଅନ୍ୟ ସାହେବମାନଙ୍କୁ ପଚାରନ୍ତୁ ।

କେତେଜଣ—ହବ ତ ନିଶ୍ଚୟ – କିନ୍ତୁ ବର୍ତ୍ତମାନ ନୁହେଁ ।

ଖ୍ୱାଜା—ତୁମେ ରହୁଚ କେଉଁଠି ? ମୁଁ ତୁମ ସହିତ ସାକ୍ଷାତ କରିବି ।

ଚନ୍ଦ୍ରଧର—ଆପଣ କଷ୍ଟ କରିବା ଦରକାର ନାହିଁ । ମୁଁ ସ୍ୱୟଂ ହାଜର ହେବି ।

ଖ୍ୱାଜା ମହମ୍ମଦ ଚନ୍ଦ୍ରଧରଙ୍କୁ କୁଣ୍ଢାଇ ପକାଇଲେ । ଗାଈକୁ ପଘାରୁ ଖୋଲି ଦିଆଗଲା । ସେ ଜୀବନ ବିକଳରେ ଦୌଡ଼ି ପଳାଇଲା । ଅନ୍ୟମାନେ ମଧ୍ୟ ଏ 'ନବଜଓ୍ୱାନ'ର ସାହସକୁ ପ୍ରଶଂସା କରି କରି ଗ୍ଲଲିଗଲେ ।

ଚନ୍ଦ୍ରଧର ଆସୁଥିବାର ଦେଖି ଯଶୋଦାନନ୍ଦନ ଘରୁ ବାହାରି ତାଙ୍କୁ କୁଣ୍ଢାଇ ପକାଇ କହିଲେ—ଆଜି ତୁମର ଧୈର୍ଯ୍ୟ ଓ ସାହସ ଦେଖି ମୁଁ ଅତ୍ୟନ୍ତ ଆଶ୍ଚର୍ଯ୍ୟ ହେଲି । ତୁମେ ଆଜି ଆମର ଇଜ୍ଜତ ରଖିଲ ।

ଜଣେ ବୃଦ୍ଧ—ଶହ ଶହ ଲୋକଙ୍କ ରକ୍ତପାତରେ ଯାହା ସମ୍ଭବ ହୋଇ ପାରି ନଥା'ନ୍ତା, ଆଜି ତୁମେ କାମ କରି ଦେଖେଇଦେଲ ।

ଚନ୍ଦ୍ରଧର—ମୁଁ କିଛି କରିନି ଆଜ୍ଞା ! ଲୋକେ ଅନୁନୟ ବିନୟ ଶୁଣିଲେ । ଲୋକମାନଙ୍କ ଦୟାରୁ ଏହା ହୋଇପାରିଲା ।

ଯଶୋଦା—କାନ୍ଦିବାର ଢ଼ଙ୍ଗ ଅଲଗା ! ଏହା ପୂର୍ବରୁ ଅନେକଥର ଅନୁନୟ ବିନୟ କରାଯାଇଛି—କିନ୍ତୁ କିଏ ଶୁଣୁଥିଲା !

ଯଶୋଦାନନ୍ଦନ ପତ୍ନୀ ବାଗେଶ୍ୱରୀଙ୍କୁ କହିଲେ—ବାବୁ ମୋର ଜଣେ ବନ୍ଧୁଙ୍କର ପୁଅ, ବୁଲିବାକୁ ଆସିଥିଲେ । ମଯୋଗ୍ରୀ ସିଦେ । ରାସ୍ତାରେ ଦେଖାଦେଖି । ଡାକି ଆଣିଲି । ଯାହାହେଉ ସ୍ୱାଙ୍କର ହେତୁ ଦାରା ହିନ୍ଦୁ ସମାଜର ଇଜ୍ଜତ ରହିଲା । ଆଘାତ ଲାଗିଛି । ମୁଁ ଡାକ୍ତର ଡାକି ଆଣୁଛି—ତୁମେ ସ୍ୱାଙ୍କର ବ୍ୟବସ୍ଥା କର ।

ପାଖରେ ଡାକ୍ତରଙ୍କ ଘର । ଯଶୋଦାନନ୍ଦନ ଡାକ୍ତରଙ୍କୁ ଡାକିବାକୁ ଗଲେ । ବାଗେଶ୍ୱରୀ ଆଦରରେ ଚନ୍ଦ୍ରଧରଙ୍କୁ କୁଣ୍ଢାଇ ପକାଇଲେ । ପାଖର ସବୁ ମହିଳା ଆସି ତାଙ୍କୁ ଦେଖି ଧନ୍ୟ ଧନ୍ୟ କଲେ । ଅହଲ୍ୟା ପାଣି ଗରମ କରି ଆଣି, ଚେକା ବାଜି ଝଣ୍ଟିଆ ହୋଇଥିବା ଜାଗାମାନ ଧୋଇଦେଲା । ଚନ୍ଦ୍ରଧର ଏହି ଲବଣୀ ପିତୁଳା ମୂର୍ତ୍ତି ଦେଖି ମୋହିତ ହୋଇଗଲେ । ଡାକ୍ତର ଆସି ବ୍ୟାଣ୍ଡେଜ୍ କଲେ । ରାତିରେ ଖାଇବା ପିଇବାର ବନ୍ଦୋବସ୍ତ ହେଲା । ଅହଲ୍ୟା ରନ୍ଧନ କଳାର ଚମତ୍କାରିତା ଦେଖେଇଲା । ବହୁ ଡେରିଯାଏଁ ପାଖ ଲୋକ ବସି ନାନା କଥା ପଚାରିଲେ । ରାତି ବେଶି ହେବାରୁ ସମସ୍ତେ ଯେ'ଯାହା' ଘରକୁ ଚାଲିଗଲେ ।

ରାତିରେ ଖଟ ଉପରେ ଶୋଇ ବାଗେଶ୍ୱରୀ ଅହଲ୍ୟାର ମନୋଭାବ ଜାଣି କହିଲେ—ଏତେବେଳଯାଏଁ ଶୋଇନାହୁଁ ଅହଲ୍ୟା ?

ଅହଲ୍ୟା—ନାହିଁ ମା'—ନିଦ ଆସୁନି ।

ବାଗେଶ୍ୱରୀ—ଏହାଙ୍କୁ ବିବାହ କରିବୁ ?

ଅହଲ୍ୟା—ମା', ଯେମିତ କହିଲେ ମୁଁ ତଳକୁ ଯାଇ ମଶା ଖାଆନ୍ତୁ ପଛେ ଶୋଇବି ।

ବାଗେଶ୍ୱରୀ—ଆରେ ମା', ମୁଁ ସତରେ କହୁଛି—ଗାଳି ଦଉନି । ତୁ କ'ଣ ବାହା ହବୁନି କି ? ଏପରି ଭଲ ବର ମିଳିବେନି'। ମୁଁ ଅଙ୍କାରେ କହୁନି । ଯଦି ତୋର ଇଚ୍ଛା ହୁଏ, କଥା ପକେଇବା । ଆମ ଜାତିର ତ—ଯଦି ରାଜି ହୋଇଯାଏ, ତେବେ ଭଲ ହବ ।

ଅହଲ୍ୟା—ସେ ସବୁ କଥା ଜାଣିଲେ କ'ଣ—

ବାଗେଶ୍ୱରୀ—ତୋ ବାପା ସବୁ କଥା କହିଦେଇଛନ୍ତି । ତୁ ତୋ କଥା କହ ।

ଅହଲ୍ୟା—ତୁମେ ମୋ ହୃଦୟ କଥା ମୋଠାରୁ ଅଧିକ ଜାଣ । ମୋତେ କାହିଁକି ପଚାରୁଛ !

ବାଗେଶ୍ୱରୀ—ସେ କିନ୍ତୁ ଧନୀ ନୁହଁ ।

ଅହଲ୍ୟା—ମୁଁ ଧନଲୋଭୀ ନୁହଁ ।

ବାଗେଶ୍ୱରୀ—ତେବେ ମୁଁ ତୋତେ ଆଉ ଲୁଚେଇବି କାହିଁକି ! ତୋ ବାପା ତାଙ୍କୁ କାଶୀରୁ ଡାକି ଆଣିଛନ୍ତି ତୋ ସହିତ ସାକ୍ଷାତ କରେଇବା ପାଇଁ । ତାଙ୍କ ପାଖରେ ଆଉ କିଛି ଥାଉ ବା ନଥାଉ, ହୃଦୟ ନିଶ୍ଚୟ ଅଛି । ଖୁବ୍ କମ୍ ଲୋକଙ୍କ ପାଖରେ ଏପରି ହୃଦୟ ଦେଖିବାକୁ ମିଳେ । ଏପରି ସ୍ୱାମୀ ଲାଭକରି ତୋର ଜୀବନ ସଫଳ ହୋଇଯିବ ।

ଅହଲ୍ୟା ସଜଳ ନେତ୍ରରେ ବାଗେଶ୍ୱରୀଙ୍କୁ ଚାହିଁଲା । ମୁହଁରୁ କଥା ବାହାରିଲା ନାହିଁ ।

( ୬ )

ମୁନସୀ ବଜ୍ରଧରଙ୍କୁ ଜଣେ ଏପରି ରେଲଯାତ୍ରୀ ସହିତ ତୁଳନା କରାଯାଇପାରେ, ଯେଉଁ ଯାତ୍ରୀ ପ୍ରଥମେ ଠିଆ ହେବାକୁ ଟିକିଏ ସ୍ଥାନ ମାଗେ; ତା'ପରେ ବସିବାର ଉପାୟ ଚିନ୍ତା କରି ଆରାମରେ ବସିଯାଏ ଏବଂ ଶେଷରେ ଶୋଇବା ପାଇଁ ମଧ୍ୟ ସ୍ଥାନ ଠିକ୍ କରିଦିଏ । ଚକ୍ରଧର ଗୋଟାଏ ବଡ଼ ଗଡ଼ଜାତର ଦେଓ୍ୱାନଙ୍କ ଝିଅକୁ ପଢ଼ାଉଛି । ଏହି ସୁବର୍ଣ୍ଣ ସୁଯୋଗରୁ ଲାଭ ଉଠାଇବା କଥା । କ୍ରମେ ସେ ଦେଓ୍ୱାନ ସାହେବଙ୍କୁ ସଲାମ୍ କରିବା ପାଇଁ ଯିବା ଆସିବା କଲେ । କଥାବାର୍ତ୍ତା କରିବାରେ ସେ ଓସ୍ତାଦ୍ । ଦୁଇ ଚାରିଥର ଯିବାପରେ ବାଟ ସଫା ହୋଇଗଲା ।

ଦିନେ ଦେଓ୍ୱାନ ସାହେବଙ୍କ ସାଙ୍ଗରେ ରାଜ୍ୟର ଶାସିକା ରାଣୀ ସାହେବାଙ୍କ ପାଖକୁ ସାକ୍ଷାତ୍ ପାଇଁ ଚାଲିଗଲେ । ଜଗଦୀଶପୁର ଦରବାରରେ ରାଣୀ ସାହେବାଙ୍କ ପାଖରେ ପହଞ୍ଚି ଏମିତି ଚମକିଆ କଥାବାର୍ତ୍ତା କଲେ ଯେ ରାଣୀସାହେବା ମୁଗ୍ଧ ହୋଇଗଲେ, ମୋ ଭଳି ତହସିଲ୍‌ଦାରଙ୍କୁ କେହି କରି ପାରି ନାହାନ୍ତି । ଯେଉଁ ଇଲାକାରେ ମୁଁ ଥିଲି, ସେଠାର ଲୋକେ ଏବେ ମଧ୍ୟ ମୋ ନାଁ ଘୋଷି ହଉଛନ୍ତି । ଠକିବା ମୋ ଜାତକରେ ନାହିଁ । ସେ ଇଲାକାରେ ବଡ଼ କଷ୍ଟରେ ୫୦ ହଜାର ଅସୁଲ ହେଉଥିଲା । ଗୋଟେ ବର୍ଷ ମଧ୍ୟରେ ମୁଁ ଦୁଇଲକ୍ଷ ଆଦାୟ କଲି । କୋରକ୍ ହେଇନି, କେହି ହାଜତକୁ ଯାଇ ନାହାନ୍ତି । ସମସ୍ତେ ଖୁସି ।"

ଏଭଳି କାର୍ଯ୍ୟକୁଶଳ ବ୍ୟକ୍ତିର ଆବଶ୍ୟକତା ସବୁଠି ଥାଏ । ରାଣୀସାହେବା ଭାବିଲେ— ଏଇ ଲୋକକୁ ରଖିଲେ ଆୟ ବଢ଼ିବ । ଠାକୁର ସାହେବଙ୍କ ସଙ୍ଗେ ପରାମର୍ଶ କଲେ । ମାସିକ ୨୫ ଟଙ୍କାରେ ତହସିଲଦାରି ମିଳିଗଲା । ଏବେ ମୁନ୍‌ସୀଙ୍କ ପାଞ୍ଚ ଆଙ୍ଗୁଳି ଯାକ ଘିଅରେ ବୁଡ଼ିରହୁଛି । ଆଉ ବୋତଲର ଅଭାବ ନାହିଁ । ଗୋଟେ ବାରିକକୁ ନୌକର ରଖିଦେଲେ । ଦେଓ୍ୱାନ ସାହେବଙ୍କ ଘରୁ ଦ' ଚାରିଟା ଚୌକି ଉଠେଇ ଆଣିଲେ । କିନ୍ତୁ ସେ ଜାଣିଥିଲେ

ଏ ଗୃହକଣରର କୌଣସି ଠିକ୍‌ଠିକଣା ନାହିଁ । ରାଣୀସାହେବାଙ୍କ ହାତରେ ରଖିପାରିଲେ ମଧ୍ୟ ରାଜାସାହେବ ଆସିଲେ ପୁରୁଣା କର୍ମଚାରୀମାନଙ୍କୁ ତଡ଼ିଦେବେ । ଦେଓ୍ୱାନ୍ ସାହେବଙ୍କ ରହିବାର ଠିକଣା ନ ରହିଲେ ମୋ କଥା ପଚାରୁଛି କିଏ ? ରାଜା ବଦଳିଲେ ରାଜା କଥା । ତେଣୁ ସେ ଆଗରୁ ନୂଆ ରାଜା ବିଶାଳ ସିଂହଙ୍କ ପାଖକୁ ଯିବା ଆସିବା କରିବା ଆରମ୍ଭ କରିଦେଲେ । ରାଣୀସାହେବାଙ୍କର କକା ଶ୍ୱଶୁରଙ୍କ ପୁଅ—ଦିଅର ସେ । ବଡ଼ ଭାଇ ମାଲିକ ଥିଲେ । ଏବେ ରାଣୀସାହେବା ନିଃସନ୍ତାନ ହେତୁ ବିଶାଳ ସିଂହଙ୍କର ଭାଗ୍ୟ ଉଦୟ ହୋଇଥିଲା । ତାଙ୍କ ବାପାଙ୍କୁ ଯେଉଁ ଦୁ'ଖଣ୍ଡ ଗାଁ ଗୁଜୁରାଣ ମେଣ୍ଟାଇବା ପାଇଁ ମିଳିଥିଲା ତାକୁଇ ବନ୍ଧାଛନ୍ଦା କରି ୫୦ ବର୍ଷ କାଟିଲେ । ଏବେ ବିଶାଳ ସିଂହଙ୍କ ପାଖରେ ଗୁଜୁରାଣ ମେଣ୍ଟାଇବା ପାଇଁ ସେପରି କିଛି ନାହିଁ । କିନ୍ତୁ କୁଳ ମର୍ଯ୍ୟାଦା ପାଳନ କରିବା ଆବଶ୍ୟକ ପଡୁଥିଲା । ଜନ୍ମାଷ୍ଟମୀ, ଦଶହରା ଉତ୍ସବ ଧୁମ୍‌ଧାମ୍‌ରେ ପାଳନ କରିବାକୁ ପଡୁଥିଲା ।

ମାଘମାସ । ସକାଳେ ନିତ୍ୟକର୍ମ ସାରି ଜଳପାନ ସମୟରେ ମୁନ୍‌ସୀଜୀ ନିର୍ମଳାଙ୍କୁ କହିଲେ —ମୁଁ ଟିକିଏ ଠାକୁର ବିଶାଳ ସିଂହଙ୍କ ପାଖକୁ ଯାଉଛି ।

ନିର୍ମଳା—ଦୁ'ପହର ବେଳକୁ ଫେରିବ ନା ?

ମୁନସୀ—ଛାଡ଼ିଲେ ତ !

ଆଠଟାରେ ମୁନ୍‌ସୀଜୀ ଠାକୁର ବିଶାଳ ସିଂହଙ୍କ ପାଖରେ ପହଞ୍ଚିଲେ । ଘରେ ବସି ଠାକୁର ସାହେବ ଖବରକାଗଜ ପଢୁଥିଲେ । ଗୋରା ରଙ୍ଗ — ତେଜସ୍ୱୀ ପୁରୁଷ ।

ମୁନସୀଜୀ ଚୌକିରେ ବସୁ ବସୁ କହିଲେ—ସବୁ କୁଶଳ ତ ?

ବିଶାଳ ସିଂହ—ହଁ ଆଜ୍ଞା, ଈଶ୍ୱରଙ୍କ ଦୟା । କହନ୍ତୁ, ଦରବାରର ଖବର କ'ଣ ?

ମୁନ୍‌ସୀ—ସବୁ ସେଇ ପୁରୁଣା କଥା । ଡାକ୍ତରଙ୍କର ପୁଅ ବାର ଦିନ ଭିତରେ ତିନିଜଣ ଡାକ୍ତର ଆସିଲେଣି ।

ବିଶାଳ—କ'ଣ ହେଇଚି ?

ମୁନ୍‌ସୀ—ବୃଦ୍ଧାବସ୍ଥାରେ ନାନା ଅସୁବିଧା । ଏ ରୋଗ ମଧ୍ୟ ଅସାଧ୍ୟ ।

ବିଶାଳ—ସେ ଭାବିବା ଉଚିତ—ଏ ମାୟାଜାଲରୁ କିପରି ଶୀଘ୍ର ମୁକ୍ତିଲାଭ କରିବେ । ଔଷଧର ଫେସନ ଏବେ ଆଉ କ'ଣ ଦରକାର ! ଏତେ ଦିନ ରାଜ ସୁଖ ଭୋଗ କରିସାରିଲା ପରେ ଆହୁରି ମନବୋଧ ହେଉନି ?

ମୁନ୍‌ସୀ—ପ୍ରତ୍ୟହ ଜଗଦୀଶପୁରରୁ ୧୬ ଜଣ ଗଉଡ଼ ପାଲିଙ୍କି ବୋହିବା ପାଇଁ ଧରାହୋଇ ଆସୁଛନ୍ତି । ଚମାରଙ୍କ ଉପରେ ତ ନାହିଁ ନଥିବା ବିପଦ ।

ବିଶାଳ—ଏହା ନିତାନ୍ତ ଅନ୍ୟାୟ । ଆପଣ ଦେଖିବେ ଏ ବେଠି ମୁଁ ପୂରା ଉଠେଇ ଦେବି ।

ମୁନ୍‌ସୀ—ଆପଣଙ୍କ ଉପରେ ଲୋକଙ୍କର ବଡ଼ ଭରସା ଅଛି । ସଡ଼କ ଗୁଡ଼ାକ ତ ନିତ୍ୟାନ୍ତ ଖରାପ ହୋଇଗଲାଣି । ଗାଡ଼ି ଆଉ ଯାଉନି ।

ବିଶାଳ—ସଡ଼କ ଭଲ ଭାବରେ ମରାମତି କରି ମଟର ସର୍ଭିସ୍ ଚଲାଇବା ମୋର ପ୍ରଥମ କାମ ହେବ । କାରଖାନା ଦେଇ ଇଂରେଜ ମେନେଜର ରଖିବି । ହିନ୍ଦୁସ୍ଥାନୀଙ୍କୁ ଅଦୌ ବିଶ୍ୱାସ ନାହିଁ । ମୁଁ ଇଲାକାରେ ପ୍ରେମରାଜ୍ୟ ସ୍ଥାପନ କରିବି ।

ଦୁହେଁ ଏପରି ବାର୍ତ୍ତାଳାପରେ ମଜ୍ଜି ଥିବା ବେଳେ ଭେତରେ ଭିତରେ ଘରି ପାନି ତୁଣ୍ଡ ହେଲା । ଏଇ ହେଉଛି ଠାକୁର ସାହେବଙ୍କର ବଡ଼ ମୁଣ୍ଡବ୍ୟଥା । ତାଙ୍କର ତିନୋଟି ସ୍ତ୍ରୀ । ବଡ଼ ବସୁମତୀ, ମଝିଆଁ ପ୍ରେମପ୍ରିୟା ଓ ସାନ ରୋହିଣୀ । ରୋହିଣୀଙ୍କୁ ବିଶାଳ ସିଂହ ଖୁବ୍ ଭଲ ପାଉଥିଲେ ।

ବସୁମତୀ କର୍କଶା ଓ ଗର୍ବୀ । କିନ୍ତୁ ମଳିନ ହୃଦୟା ନୁହେ । ସେ ସପତ୍ନୀଙ୍କୁ ଶାସନ କରିବାକୁ ଚାହେଁ । ପ୍ରେମପ୍ରିୟା ଦୟା ଓ ବିନୟର ମୂର୍ତ୍ତି, ବିଚାରଶୀଳା ଓ ମଧୁର ଭାଷିଣୀ । କୋମଳାଙ୍ଗୀ ଏବଂ କୋମଳହୃଦୟା । ପୁସ୍ତକ ପଢ଼ିବାରେ ଭାରି ସଉକ । ତା'ର କାହା ସହିତ ଶତ୍ରୁତା ବା ମିତ୍ରତା ନାହିଁ । ରୋହିଣୀ ଦ୍ୱେଷମୟୀ । ମୁହଁରେ କହେ, ତାଠାରୁ ଅଧିକ ପେଟରେ ଦେଖେ ।

ଘରେ ପ୍ରାୟ ସବଦା କଳି । ଗୃହିଣୀ ହିନ୍ଦୀ କାହା କାମ ଅାଗ କରିବ ସେଇଥି ପାଇଁ ଆଜିର ପାଟି ତୁଣ୍ଡ ଚରମ ସୀମାରେ ପହଞ୍ଚିଛି । ମୁନ୍‌ସୀଜି ବସିଥିବା ଅବସ୍ଥାରେ ଏପରି ଅବସ୍ଥା ଦେଖି ବିଶାଳ ସିଂହ ଯାଇ ବହୁତ ବୁଝେଇଲେ, କାକୁତି ମିନତି କଲେ । କିନ୍ତୁ କିଛି କାମ ଦେଲିନି । ଶେଷରେ ବିରକ୍ତ ହୋଇ ଫେରି ଆସି ମୁନ୍‌ସୀଙ୍କ ସହ ବାର୍ତ୍ତାଳାପ ଆରମ୍ଭ କରିଦେଲେ ।

( ୭ )

ଚକ୍ରଧରଙ୍କର କୀର୍ତ୍ତି ସେ ଫେରିବା ପୂର୍ବରୁ ବନାରସରେ ଆସି ପହଞ୍ଚି ଯାଇଥିଲା । ତାଙ୍କର ବନ୍ଧୁବର୍ଗ ଏବଂ ଅନ୍ୟ ଲୋକେ ତାଙ୍କୁ ସାକ୍ଷାତ କରିବା ପାଇଁ ଉତ୍ସୁକ ହେଉଥିଲେ । ବଜ୍ରଧର କିନ୍ତୁ ଏହା ଶୁଣି ଭାରି ବିଗିଡ଼ି ଗଲେ । ତୋର କି ଦରକାର ! ଏ ମୂର୍ଖତା କାହିଁକି ! ତୋତେ ଏ ଭୂତ କାହିଁକି ଲାଗିଲା ! ନିର୍ମଳା ତ ଏତେ ବିଗିଡ଼ିଗଲେ ଯେ, ଚକ୍ରଧର ସହିତ କଥାବାର୍ତ୍ତା କରିବାକୁ ଇଚ୍ଛା କଲେନି ।

ସନ୍ଧ୍ୟା ସମୟରେ ଚକ୍ରଧର ମନୋରମା ଘରକୁ ଗଲେ । ମନୋରମା କୁର୍ବାନୀ କଥା ଶୁଣି ସାରିଥିଲା । କହିଲା—ବାବୁଜୀ, ଉତ୍କ୍ଷିପ୍ତ ମୁସଲମାନମାନଙ୍କ ପାଖକୁ ଯିବାକୁ ଡର ଲାଗିଲାନି ! ଚକ୍ରଧର ଚୌକିରେ ବସି କହିଲେ—ନାଇଁ, ଟିକିଏ ବି ନୁହେ । କୁର୍ବାନୀ କରେଇ ନଦେବା ପାଇଁ ମୁଁ ଦୃଢ଼ ରହିଲି । ବୃଥାରେ ମୁସଲମାନଙ୍କୁ ସମସ୍ତେ ବଦନାମ କରୁଛନ୍ତି । ଗଣ୍ଡଗୋଳକୁ

ହିନ୍ଦୁମାନେ ଯେପରି ଚରନ୍ତି, ହେମାନେ ବି ସେହିପରି ଚରନ୍ତି । ଶାସ୍ତ୍ରର ଇଚ୍ଛା ସେମାନଙ୍କର ହିନ୍ଦୁମାନଙ୍କଠାରୁ କମ୍ ନୁହେଁ ।

ମନୋରମା—ଖବରକାଗଜରୁ ପଢ଼ି ମୋ ଲୋମ ଟାଙ୍କୁରି ଉଠିଲା । ଆପଣଙ୍କର କ'ଣ ଜୀବନ ପ୍ରତି ଚିକିଏ ସ୍ନେହ ମୋହ ନାହିଁ ?

ଚକ୍ରଧର—କେବଳ ପେଟ ପୋଷିବା ପାଇଁ ମନୁଷ୍ୟ ଜନ୍ମ ହୋଇନାହିଁ ! ଯେଉଁମାନେ ନିଜକୁ ସଭ୍ୟ ବୋଲି କହନ୍ତି—ସେମାନଙ୍କ ଜୀବନ – ଆଦର୍ଶ ଅନ୍ୟମାନଙ୍କଠାରୁ ଉଚ୍ଚହେବା ଦରକାର । ଆଡ଼ମ୍ବରରେ ରହିବା ସଭ୍ୟତା ନୁହେଁ ।

ମନୋରମା—(ହସି ହସି) ଅଚ୍ଛା, ଆପଣଙ୍କୁ ଏବେ ଯଦି ପାଞ୍ଚ ଲକ୍ଷ ଟଙ୍କା ମିଳିଯିବ, ଆପଣ କ'ଣ ନେବେନି ?

ଚକ୍ରଧର—ସେତେବେଳେ ମନର ଅବସ୍ଥା କ'ଣ ହେବ କହି ହେବନି ମନୋରମା । ମୁଁ ଧନର ନିନ୍ଦା କରୁନି, କିନ୍ତୁ ଧନକୁ ମୋର ଭାରି ଭୟ । ଏତିକି ଅବଶ୍ୟ କହିବି— ସେ ଧନକୁ ମୁଁ ଭୋଗ ବିଳାସରେ ଉଡ଼େଇବିନି ।

ମନୋରମା—ଆଚ୍ଛା—ଏବେ କହନ୍ତୁ ବୋହୂଙ୍କ ସହିତ କ'ଣ କଥାବାର୍ତ୍ତା ହେଲା । ଚକ୍ରଧର ଲାଜରେ ମୁଣ୍ଡପୋତି କହିଲେ—କିମିତି କଥାବାର୍ତ୍ତା କରିବାକୁ ହେବ ମୁଁ ଜାଣି ପାରିଲିନି । ଥରେ କହିବାକୁ ସାହସ କଲି, କିନ୍ତୁ ହୋଇପାରିଲିନି ।

ମନୋରମା—ଆପଣଙ୍କୁ ଦେଖି ଖୁସିତ ହୋଇଥିବେ ?

ଚକ୍ରଧର—(ଲାଜରେ) କାହାର ମନ କଥା ମୁଁ କିମିତି ଜାଣିବି ?

ମନୋରମା—ସବୁ ଜାଣିହୁଏ । ମୋତେ ଆପଣ ଲୁଚଉଛନ୍ତି । ତାଙ୍କର ଇଚ୍ଛାତ ଜାଣିବା ଦରକାର । ମୁଁ ମନେକରେ, ଯେଉଁ ବିବାହ ଝିଅର ଇଚ୍ଛା ବିରୋଧରେ ହୁଏ, ସେ ବିବାହ ବିବାହ ନୁହଁ । ଆପଙ୍କେ ମତ କ'ଣ ?

ଚକ୍ରଧର ବଡ଼ ଅଡୁଆରେ ପଡ଼ିଲେ । ମନୋରମା ସହ ଏପରି କଥାବାର୍ତ୍ତା କରିବାକୁ ସଙ୍କୁଚିତ ହେଉଥିଲେ । ଯଦି ଠାକୁର ସାହେବ ଶୁଣିବେ—ସେ ବୁଝିବେ, ମୁଁ ତାଙ୍କ ସାମାଜିକ ବିଶ୍ୱରରେ ବିପ୍ଳବ କରୁଛି । ମୁହଁ ତଳକୁ ପୋତି କହିଲେ—ମନୋରମା, ଆମ ଏଠାରେ ବିବାହର ଆଧାର ପ୍ରେମ ଓ ଇଚ୍ଛା ଉପରେ ନିର୍ଭର କରେନି । ଧର୍ମ ଓ କର୍ତ୍ତବ୍ୟ ଉପରେ ଏହା ଆଧାରିତ । ଇଚ୍ଛା ଚଞ୍ଚଳ । ପ୍ରତି ମୁହୂର୍ତ୍ତରେ ବଦଳେ । କର୍ତ୍ତବ୍ୟ ସ୍ଥାୟୀ । ତହିଁରେ କିଛି ପରିବର୍ତ୍ତନ ହୁଏ ନାହିଁ ।

ମନୋରମା—ପୂର୍ବକାଳରେ ସ୍ୱୟମ୍ବର ତେବେ କାହିଁକି ହେଉଥିଲା ?

ଚକ୍ରଧର—ସ୍ୱୟମ୍ବରରେ କନ୍ୟାର ଇଚ୍ଛା ସର୍ବପ୍ରଧାନ ନୁହେଁ । ସେ ଯୁଗଥିଲା ବୀରଯୁଗ ଏବଂ ଧୀରତାକୁ ମାନବର ସବୁଠାରୁ ଉଜ୍ଜ୍ୱଳ ଗୁଣ ବୋଲି ଗ୍ରହଣ କରାଯାଉଥିଲା ।

ମନୋରମା—ଇଚ୍ଛା ଅଛାଦ୍ଦି, ଏହା ମୁଁ ମାନୁଛି । କିନ୍ତୁ ଥରେ ଅନୁମତ ଦେଇ ସାରିଲା ପରେ, କନ୍ୟାକୁ ପଶ୍ଚାତ୍ତାପ କରିବା ଉଚିତ ନୁହେଁ ।

ଚନ୍ଦ୍ରଧର—ମନକୁ ବୁଝାଇବା ପାଇଁ କେବେହେଲେ ତର୍କର ଅଭାବ ରହେନାହିଁ ମନୋରମା । କର୍ତ୍ତବ୍ୟହିଁ ଏପରି ଏକ ଆଦର୍ଶ, ଯିଏ କେବେହେଲେ ଧୋକା ଦିଏ ନାହିଁ ।

ମନୋରମା—ହଁ । କିନ୍ତୁ ଆଦର୍ଶ କେବଳ ଆଦର୍ଶ ହୋଇହିଁ ରହେ । ଯଥାର୍ଥ ହୋଇପାରେ ନାହିଁ । (ହସି ହସି) ଯଦି ଆପଣଙ୍କର ବିବାହ କୌଣସି କାଣୀ, କାଲୀ ଏବଂ ଅସୁନ୍ଦରୀ ସହିତ ହୋଇଯାଏ, ତେବେ କ'ଣ ଆପଣଙ୍କୁ ଦୁଃଖ ହେବ ନାହିଁ ? ଆପଣ କ'ଣ ଭାବୁଛନ୍ତି ଯେ କୌଣସି ଝିଅର ବିବାହ କୌଣସି ବୋକା ସହ ହୋଇଗଲେ ତାକୁ ଦୁଃଖ ହେବ ନାହିଁ ? ଆଚ୍ଛା—ଛାଡ଼ନ୍ତୁ । କୋହ୍ନୁ ଭାରି ସୁନ୍ଦର୍ କି ନା ?

କଥା ଟାଳିବା ଅଭିପ୍ରାୟରେ ଚନ୍ଦ୍ରଧର କହିଲେ—ସୁନ୍ଦରତା ମନୋଭାବ ଉପରେ ନିର୍ଭର କରେ । ମାତା ନିଜର କୁରୂପ ପୁଅକୁ ମଧ୍ୟ ସୁନ୍ଦର ବୋଲି ମନେକରେ ।

ମନୋରମା—ଆପଣ ତ କଥା ଟାଳିଦେବାକୁ ଏପରି କହୁଛନ୍ତି । କୌଣସି ସୁନ୍ଦର ବାଳକକୁ ଦେଖି ମାତା କ'ଣ ମନେକରେ ନାହିଁ, ମୋର ଏହିପରି ବାଳକଟିଏ ହେଲେ ହେଇଥାଆନ୍ତା !

ଚନ୍ଦ୍ରଧର ଲଜ୍ଜିତ ହୋଇ କହିଲେ—ମୋର ଅଭିପ୍ରାୟ ତା'ନୁହେଁ । ମୋର କହିବା କଥା—ସୁନ୍ଦରତା ବିଷୟରେ ସମସ୍ତଙ୍କର ମତ ଏକ ନୁହେଁ ।

ମନୋରମା—ଆପଣ ପୁଣି ବାଆଁରେଇଲେଣି । ସମସ୍ତଙ୍କର ମତରୁ କ'ଣ ମିଳିବ ? ଆପଣଙ୍କୁ ସୁନ୍ଦର ଦେଖା ଯାଉଛନ୍ତି ନା ନାହିଁ ?

ସହସା ଘର ଭିତରୁ କାହାର କର୍କଶ ଶବ୍ଦ ଶୁଣାଗଲା । ଲବଙ୍ଗ କାନ୍ଦୁଥିବାର ଦେଖାଗଲା । ଚନ୍ଦ୍ରଧର ପଚାରିଲେ—ଏତ ଲବଙ୍ଗଙ୍କର କାନ୍ଦ ।

ମନୋରମା—ହଁ । ଇଏଙ୍କ ସଙ୍ଗେ ଆପଣଙ୍କର ସାକ୍ଷାତ ହୋଇ ନାହିଁ । ଇଏଙ୍କ ନାମ ଗୁରୁସେବକ ସିଂହ । କେତେମାସହେଲା ମଫସଲରେ ରହି ଜମିଦାରୀ ବୁଝା ସୁଝା କରୁଛନ୍ତି । ମୋର ସେ ସହୋଦର ଭାଇ । ଖୁବ୍ ପଢ଼ିଛନ୍ତି । କିନ୍ତୁ ମାନବିକତା ନାହିଁ । ଯେତେବେଳେ ଆସନ୍ତି, ଲବଙ୍ଗ ମା' ଉପରେ ମିଥ୍ୟା ଅଭିଯୋଗ କରିଥାଆନ୍ତି । କ'ଣ ତାଙ୍କୁ ସେଥିରେ ମିଳେ କେଜାଣି ?

ଏହି ସମୟରେ ଗୁରୁସେବକ ସିଂହ ଲାଲ ଲାଲ ଆଖି କରି ଆସି ମନୋରମାକୁ କହିଲେ—ବାବା କୁଆଡ଼େ ଗଲେ ? କେତେବେଳେ ଆସିବେ ତୁ ଜାଣିଛୁ ? ଆଜିହିଁ ଫଇସଲା ହେବ ।

ଗୁରୁସେବକ ସିଂହଙ୍କର ବୟସ ୨୫ ବର୍ଷ । ରୂପବାନ୍ ଯୁବକ । ଆଖିରେ ଚଷମା । ବଡ଼ ସଉକିଆ । ପାନ ଖାଇବା ଅଭ୍ୟାସ ।

ଚନ୍ଦ୍ରଧର ବସିଥିବା ଦେଖି ବଡ଼ ଚଡ଼ ଚଡ଼ ହେଲେ । ଭିତରକୁ ଚାଲି ଯାଉଥିବା ବେଳେ ଲବଙ୍ଗ କାନ୍ଦି କାନ୍ଦି ଆସି ଚନ୍ଦ୍ରଧରଙ୍କୁ କହିଲେ—ବାବୁଜୀ, ଯାଙ୍କୁ ଚିକିଏ ବୁଝେଇ ଦେଲ । ମୁଁ ଏ ବୃଦ୍ଧାବସ୍ଥାରେ କୁଆଡ଼େ ଯିବି ! ଏଯାଏଁ ଏ ଘରେ କଟେଇଲି । ଏବେ କାହା ଦୁଆରକୁ ଯିବି ? ବାବୁଜୀ, ସତ କହୁଛି, ମୁଁ ଯାଙ୍କୁ ନିଜ ଦୁଧ ପିଆଇ ପାଳିଛି । ଏବେ ସେ ମୋତେ ଏ ଘରୁ ତଡ଼ିବା ପାଇଁ ଜିଦ୍‌ଧରି ବସିଛି ।

ଚନ୍ଦ୍ରଧରଙ୍କୁ ଏ କଳହ ସମ୍ପର୍କରେ କିଛି କହିବାକୁ ଗୁରୁଦେବକ ସିଂହଙ୍କର ଇଚ୍ଛା ନ ଥିଲା । କିନ୍ତୁ ଲବଙ୍ଗ ତାଙ୍କୁ ପକ୍ଷ ସ୍ୱୀକାର କରିବାକୁ ସଙ୍କୋଚ ନ କରିବାରୁ କହିଲେ—ମହାଶୟ, ଯାଙ୍କୁ ପଚାରନ୍ତୁ, ଏବେ ଆସି ବୁଢ଼ୀ ହେଲା, ମୃତ୍ୟୁକାଳ ଆସି ଉପସ୍ଥିତ ହେଲାଣି । କେଉଁଣସି ତୀର୍ଥ ସ୍ଥାନକୁ ଯାଇ କଳୁଷିତ ଜୀବନର ଅବଶିଷ୍ଟ ଦିନ ଗୁଡ଼ିକ ନ କଟେଇବ କାହିଁକି ? ବୃନ୍ଦାବନରେ ଛାଡ଼ିଦେବା ପାଇଁ ମୁଁ ବାବାଙ୍କୁ କହିଥିଲି ଏବଂ ପ୍ରସ୍ତୁତ ମଧ୍ୟ ହୋଇଥିଲି । କିନ୍ତୁ ଇଏ ନାନା ପ୍ରକାର ବାହାନା ଦେଖେଇ ଯିବା ବନ୍ଦ କଲା । ଯାର ଯୋଗୁଁ ମୁଁ ଏ ଘରେ ରହିପାରୁନି, ମୋତେ ଲଜ୍ଜା ଲାଗୁଛି । ମନୋରମା ବଡହେଲା । ତାର ବିବାହ ହେବ । ଇଏ ଯଦି ଏ ଘରେ ରହିବ, କେଉଁ ଭଦ୍ରଲୋକ ଆମ ଘରେ ବନ୍ଧୁ କରିବ ? ଦେଖିବ୍ରତ ଯାର ଚିକିଏ ହେଲେ ଚିନ୍ତା ନାହିଁ । ମଲାଯାଏଁ କେବଳ ଘରର ମାଲିକାଣୀ ହେବା ଚିନ୍ତା । କି ଜାଲ ଇଏ ବାବାଙ୍କ ଉପରେ ପକେଇଚି ଯେ, ସେ ଯାର ପାଇଁ ମୋ ସହିତ ଲଢ଼ିବାକୁ ତିଆର । ଆଜି ମୁଁ ଯାଙ୍କୁ ଘରୁ ତଡ଼ି ନିଶ୍ୱାସ ମାରିବି ବୋଲି ସ୍ଥିର କରି ଆସିଛି ।

ଲବଙ୍ଗ—ତେବେ ଶୁଣ୍ ପୁଅ, ଯେ ପର୍ଯ୍ୟନ୍ତ ମାଲିକ ବଞ୍ଚିଛନ୍ତି, ସେ ପର୍ଯ୍ୟନ୍ତ ଲବଙ୍ଗ ଏଇ ଘରେ ଏଇ ଭଳି ରହିବ । ଲବଙ୍ଗ ବାରଦୁଆରି ଶୁଙ୍ଘିପିଣ୍ଡା ହେଉ ବୋଲି ତୁ ଯାହା ଚାହୁଁଛୁ, ତା' ହୋଇପାରିବନି । ମୁଁ ଦାସୀ ନୁହେଁ ଯେ, କୁଉଠି ଯାଇ ବାହାରେ ରହିବି । ମୁଁ ମାଲିକଙ୍କର ଯେପରି ସେବା କରିଛି, କେହି ବାହାହେଲା ସ୍ତ୍ରୀ ମଧ୍ୟ କରିବନି ।

ଗୁରୁଦେବକ—ତୋତେ କଥା ଖୁବ୍ ଭଲ କହି ଆସେ ବୋଲି ମୁଁ ଜାଣିଛି । ତୁ ମନକୁ ମନ ମାଲିକାଣୀ ହୋଇପାରୁ । ମୁଁ କିନ୍ତୁ ଜାଣେ, ତୁ ଏ ଘରର ଦାସୀ ।

ଲବଙ୍ଗ—ତୋ' ଜାଣିବା ଅଜାଣିବାରେ କ'ଣ ଅଛି ! ମୋର ମାଲିକ ଏ ଯାଏଁ ଜୀବିତ । ଭଗବାନ କରନ୍ତୁ, ତାଙ୍କୁ ଅମର ଆୟୁଷ ଦିଅନ୍ତୁ । ମୁଁ ଯେଉଁ ପର୍ଯ୍ୟନ୍ତ ବଞ୍ଚିଛି, ଏଇ ଭଳି ରହିବି—ତୋତେ ଭଲଲାଗୁ କି ଖରାପ ଲାଗୁ । ଯିଏ ଯୁବତୀ ସମୟରେ ହାତ ଧରିଚି, ସେ କ'ଣ ଏବେ ଛାଡ଼ିଦବ ?

ଏହା କହି ଲବଙ୍ଗ ଘର ଭିତରକୁ ଚାଲିଗଲା । ମନୋରମା ଚୁପ୍‌ଚାପ୍ ସବୁ ଶୁଣୁଥିଲା । ମାତୃ ସ୍ନେହର ସମସ୍ତ କିଛି ସେ ଲବଙ୍ଗଠାରୁ ପାଇଛି । ତା'ର ମା'ତା ଜନ୍ମ ଦେଇ ସ୍ୱର୍ଗପୁରକୁ ଚାଲିଯାଇଥିଲେ । ଲବଙ୍ଗ ତା' ପାଇଁ ପ୍ରାଣ ଦେଇଛି । ସେ କଦାପି ଲବଙ୍ଗକୁ ଭୁଲିପାରିବନି । ଗୁରୁଦେବକର ତା' ପ୍ରତି ଏପରି ବ୍ୟବହାର ତାକୁ ଭଲ ଲାଗେନାହିଁ ।

ଲବଙ୍ଗ ଯିବାପରେ ଗୁରୁସେବକ ଶାନ୍ତ ଭାବରେ ଚୌକିରେ ବସି ଚନ୍ଦ୍ରଧରଙ୍କୁ କହିଲେ ମହାଶୟ, ଆପଣଙ୍କ ସହ ସାକ୍ଷାତ କରିବାର ଅଭିଳାଷ ଥିଲା । ବର୍ତ୍ତମାନ ମୁଁ ଆସିବାର କାରଣ ମଧ୍ୟ ଏଇଆ । ଯେଉଁ ବୁଦ୍ଧିମତ୍ତାର ସହ ଆପଣ ଆଗ୍ରା ସମସ୍ୟାର ସମାଧାନ କଲେ, ତା'ର ଯେତେ ପ୍ରଶଂସା କଲେ ମଧ୍ୟ କମ୍ ବୋଲି କହିବାକୁ ହେବ ।

ଚନ୍ଦ୍ରଧର—ତାହା ତ ମୋର କର୍ତ୍ତବ୍ୟ ଥିଲା ।

ଗୁରୁସେବକ—ଶାନ୍ତି ପାଇଁ ଆତ୍ମସମର୍ପଣ କରିବା ବ୍ୟକ୍ତି ଲକ୍ଷେ ବି ଲକ୍ଷରେ ଜଣେ ମିଳିବା କଷ୍ଟ । ମୋ ଇଲାକାରେ ପଠାଣ ଗାଁ ଅନେକ ଅଛି ଏବଂ ଠାକୁର ଗାଁ ମଧ୍ୟ କମ୍ ନାହିଁ । ପ୍ରଥମେ ପଠାଣ ଓ ହିନ୍ଦୁମାନଙ୍କ ମଧ୍ୟରେ ଏତେ ଘନିଷ୍ଠତା ଥିଲା ଯେ, ପର୍ବ ପର୍ବାଣି-ମାନଙ୍କରେ ପରସ୍ପର ମିଳି ମିଶି ଉତ୍ସବ ପାଳନ କରୁଥିଲେ । କିନ୍ତୁ ଏବେ କୌଣସି ପର୍ବ ପର୍ବାଣି ବିନା ହାଣକୋଟରେ ସମାପ୍ତ ହେଉନାହିଁ । ଆପଣ ବି ଗୃହ ଧନ ପାଇଁ ମୋ ଇଲାକା ଆଡ଼େ ଟିକିଏ ଗଲେ ଭଲ ହୁଅନ୍ତା । ଖବରକାଗଜରୁ ମୁସଲମାନମାନେ ଆପଣଙ୍କୁ ଜାଣିଛନ୍ତି । ସେମାନେ ଆପଣଙ୍କୁ ଆନନ୍ଦରେ ସ୍ୱାଗତ କରିବେ । ଆପଣଙ୍କ ଉପଦେଶ ଭଲ ପ୍ରଭାବ ପକେଇବ ।

ଚନ୍ଦ୍ରଧର—ପ୍ରଭାବ ପକେଇବାଟା ଭଗବାନଙ୍କ ହାତରେ । ତେବେ ମୁଁ ଆପଣଙ୍କ ସହିତ ଯିବାକୁ ପ୍ରସ୍ତୁତ । କେବେ ଯିବା ?

ଗୁରୁସେବକ—ଆଜି ତ ଯାଇଥାଆନ୍ତେ । ମୁଁ ଏ କୁଳଟାକୁ ଘରୁ ତଡ଼ିଲେ ଯାଇ ଯିବି । ବାବା ଯଦି ରୋକିବେ, ତେବେ ମନୋରମାକୁ ସଙ୍ଗରେ ନେଇଯିବି । ଆଉ ଏଠି ପାଦ ପକେଇବିନି । ଭାବନ୍ତୁ ତ କେଡ଼େ ବଦ୍‌ନାମ କଥା ।

ଚନ୍ଦ୍ରଧର ବଡ଼ ଅଡୁଆରେ ପଡ଼ିଲେ । ହସି ହସି କହିଲେ—ସାମାଜିକ ବିଚାରରେ ମୋର ଏବଂ ଆପଣଙ୍କ ମଧ୍ୟରେ ପ୍ରଭେଦ ଅଛି । ମୁଁ ଏକ୍‌ଦମ ଭ୍ରଷ୍ଟ ହୋଇଗଲିଣି ।

ଗୁରୁସେବକ—ଲବଙ୍ଗ ଏଠାରେ ରହିବାଟାକୁ ଅନୁଚିତ ବୋଲି ଆପଣ ମନେ କରୁନାହାନ୍ତି ?

ଚନ୍ଦ୍ରଧର—ମୁଁ ଅନୁଚିତ ମନେକରୁନି । ଖାନ୍‌ଦାନର ବଦ୍‌ନାମୀ ଅବଶ୍ୟ ଅଛି । କିନ୍ତୁ ବଦ୍‌ନାମ ଭୟରେ ଅନ୍ୟାୟ କରିବାକୁ ମୁଁ ପରାମର୍ଶ ଦେଇପାରିବିନି । କ୍ଷମା କରିବେ, ମୁଁ ବଡ଼ ନିର୍ଭୀକତାରେ ମୋର ମତ ପ୍ରକାଶ କରୁଛି ।

ଗୁରୁସେବକ—ନା ନା, ମୁଁ ଖରାପ ଭାବୁନି । ଆପଣ ମୋତେ ଟିକିଏ ବୁଝେଇ ଦିଅନ୍ତୁ—ସେ ରହିବାଟା ଉଚିତ କିପରି । ମୁଁ ଚାହୁଁନି କାହାକୁ ଅକାରଣ କଷ୍ଟ ଦେବାକୁ ।

ଚନ୍ଦ୍ରଧର—ପୁରୁଷର କୌଣସି ସ୍ତ୍ରୀ ସହିତ ପତ୍ନୀର ସମ୍ବନ୍ଧ ହେଲେ ତାର ଧର୍ମ ହେବ ଯେ ପର୍ଯ୍ୟନ୍ତ ସ୍ତ୍ରୀ ଆଡ଼ୁ କୌଣସି ବିରୁଦ୍ଧ ଆଚରଣ ଦେଖିବାକୁ ନ ମିଳୁଚି, ସେ ଯାଏଁ ପତିପତ୍ନୀର ସମ୍ବନ୍ଧକୁ ଅକ୍ଷୁଣ୍ଣ ରଖିବା ।

ଗୁରୁସେବକ—ସେ ସ୍ତ୍ରୀ ଯେତେ ନୀଚ ଜାତିର ହୋଇଥିଲେ ମଧ୍ୟ !

ଚକ୍ରଧର—ହଁ, ସେ କୌଣସି ଜାତିର ହେଉ ।

ଏହି ସମୟରେ ଠାକୁର୍ ଯୋହେବ ଘୋଡ଼ାଗାଡ଼ିରୁ ଓହ୍ଲାଇ ଘର ଭିତରକୁ ଆସିଲେ । ଗୁରୁସେବକ ସିଂହ ଉଠି ତାଙ୍କ ପଛେ ପଛେ ଗଲେ । ନିବଙ୍କ ତାଙ୍କ କାନରେ ଏ କଥା କାଳେ ପୋଡ଼ିଦେବ, ସେଇଥିପାଇଁ ସେ ପାଖେ ପାଖେ ରହିବାକୁ ଚାହୁଁଥିଲେ ।

ସେ ଚାଲିଯିବାରୁ ମନୋରମା ଆସି କହିଲା—ଆପଣ ମୋ ମନକଥା କହି ଦେଲେ । ଅନେକ କଥାରେ ମୋର୍ ଏବଂ ଆପଣଙ୍କର ମତ ମିଳିଯାଉଛି ।

ଚକ୍ରଧର—ଆଚ୍ଛା, ଛାଡ଼ ସେକଥା । କହ ତ ଏଇ ଚାରିପାଞ୍ଚ ଦିନ ଭିତରେ କ'ଣ ପଢ଼ା କରିଛ ?

ମନୋରମା—ମୁଁ ତ ବହି ଆଦୌ ଖୋଲିନାହିଁ । ଖାଲି ଖବରକାଗଜ ଦେଖୁଥିଲି । ଆପଣ ନ ଥିଲେ ପଢ଼ିବାକୁ ମନ ଲାଗୁନି ।

ଚକ୍ରଧର ମନୋରମା ଆଡ଼କୁ ଚାହିଁ ଭାବିଲେ—ବାଳିକାଟି କେତେ ସରଳ ଓ ଉଦାର । କେତେ କୋମଳ ଏବଂ ଭାବମୟ !

( ୮ )

ଜଗଦୀଶପୁର ରାଣୀ ଦେବପ୍ରିୟାଙ୍କ ଜୀବନ ଯାପନ ପ୍ରଣାଳୀ କେବଳ ଦୁଇଟି ଶବ୍ଦରେ ବଖାଣି ହେବ—ବିନୋଦ ଏବଂ ବିଳାସ । ଏ ବୃଦ୍ଧାବସ୍ଥାରେ ମଧ୍ୟ ତାଙ୍କର୍ ବିଳାସ ବୃତ୍ତିରୁ ଅନୁମାତ୍ର କମି ନାହିଁ । ଆମର କର୍ମେନ୍ଦ୍ରିୟଗୁଡ଼ିକ ଜର୍ଜରିତ ହୋଇଗଲେ ମଧ୍ୟ ଚେଷ୍ଟାତ ବୃଦ୍ଧ ହୋଇଯାଇନାହିଁ । ବୃଦ୍ଧାବସ୍ଥା ମୃତଅଭିଳାଷର ସମାଧି କମ୍ବା ପୂର୍ବ ପାପର ପଶ୍ଚାତ୍ତାପ ବୋଲି କହନ୍ତି, କିନ୍ତୁ ରାଣୀ ଦେବପ୍ରିୟାଙ୍କର ବୃଦ୍ଧାବସ୍ଥା ଥିଲା ଅତୃପ୍ତ ତୃଷ୍ଣା ଏବଂ ଅପୂର୍ଣ୍ଣ ବିଳାସ ଆରାଧନା । ସେ ଖୁବ୍ ଦାନପୁଣ୍ୟ କରନ୍ତି । ବର୍ଷ ମଧ୍ୟରେ ଦି ଚାରିଟା ଯଜ୍ଞ ମଧ୍ୟ କରନ୍ତି । ସାଧୁ ସନ୍ଥଙ୍କ ପ୍ରତି ଅସୀମ ଶ୍ରଦ୍ଧା । ଏହି ଧର୍ମନିଷ୍ଠାରେ ତାଙ୍କର ଐହିକ ସ୍ୱାର୍ଥ ଲୁକ୍କାୟିତ ଥାଏ । ପରଲୋକ ପ୍ରତି ତାଙ୍କର ବିଶ୍ୱାସ ଆଦୌ ନ ଥାଏ । ବୁଢ଼ୀ ନ ହେବା ତାଙ୍କର୍ ପ୍ରବଳ ଇଚ୍ଛା । ଦେବତା ପ୍ରସନ୍ନ ହୋଇ ଯଦି ତାଙ୍କୁ ବର ଯାଚନ୍ତେ ତେବେ ବୁଢ଼ୀ ନ ହେବା ବର ମାଗନ୍ତେ । ଏହି ଉଦ୍ଦେଶ୍ୟରେ ସେ ନାନା ପ୍ରକାର ରସ, ପୁଷ୍ଟିକାରକ ଔଷଧ ସେବନ କରନ୍ତି । ପ୍ରକାର ପ୍ରକାର ରଙ୍ଗ, ପାଉଡର, ପ୍ରଲେପ ବ୍ୟବହାର କରନ୍ତି । ଯୌବନଟା ତାଙ୍କର ଭୋଗ ବିଳାସର ସାଧନ ବୋଲି ମନେ କରନ୍ତି । ଏଥିନିମିତ୍ତ ଯେତେ ଧନ ଦରକାର, ତାହା

ସ୍ନେହକର ହେଉ, ଅତ୍ୟାଗ୍ରହ କର ହେଉ, ଯେ କୌଣସି ପ୍ରକାରେ ଦେବା ମ୍ୟାନେଜରଙ୍କର କାମ । ପ୍ରଜା ମରନ୍ତୁ କି ତରନ୍ତୁ ସେଥିପ୍ରତି ତିଳେମାତ୍ର ଧ୍ୟାନ ନଥିଲା ।

ଥିଏଟର୍, ପହଲମାନ ଲଢ଼େଇ, ଇଂରେଜ ନାଚ ଇତ୍ୟାଦି ପ୍ରତ୍ୟେକ ପ୍ରକାର ବିନୋଦ ପ୍ରତି ତାଙ୍କର ଏକା ଆଗ୍ରହ ଥିଲା । କିନ୍ତୁ ସବୁଠାରୁ ଅଧିକ ପ୍ରିୟ ଥିଲା ଯୁବକ ଯୁବତୀ ମାନଙ୍କ ସହିତ ପ୍ରେମ-କ୍ରୀଡ଼ା କରିବା । ସେ ଯୌବନ ସମୟ ହରେଇଛନ୍ତି ବୋଲି ଭୁଲିଯାଉଥିଲେ । ନିଜ ବିଗତ ଯୌବନ-ପ୍ରଦୀପକୁ ସେ ଯୁବକମାନଙ୍କର ପ୍ରଜ୍ୱଳିତ ସ୍ଫୂର୍ତ୍ତି ଦ୍ୱାରା ଉଦ୍ଦୀପ୍ତ କରିବାକୁ ଚାହୁଁଥିଲେ । କାଶୀକୁ ଆସୁଥିବା ରାଜକୁମାର ଏବଂ ରାଜକୁମାରୀମାନଙ୍କ ସହ ତାଙ୍କର ବହୁ ମିଳା ମିଶା ହେଉଥିଲା । ପ୍ରତିଦିନ କେହି ନା କେହି ଆସୁଥିଲେ । ରାଣୀଙ୍କର ଅତିଥିଶାଳା କୌଣସିଦିନ ଖାଲି ରହୁ ନ ଥିଲା । ସେ ଚାହୁଁଥିଲେ—ମୋର ସୌନ୍ଦର୍ଯ୍ୟ ପ୍ରଦୀପରେ ଯୁବକମାନେ ପତଙ୍ଗ ଭଳି ଆସି ପଡ଼ନ୍ତୁ । ତାଙ୍କର ରସମୟୀକଳ୍ପନା ପ୍ରେମର ଘାତ-ପ୍ରତିଘାତ ଦ୍ୱାରା ଏକ ବିଶେଷ ସ୍ଫୂର୍ତ୍ତି ଅନୁଭବ କରେ ।

ଦିନେ ଠାକୁର ହରିସେବକ ସିଂହ ମନୋରମାକୁ ସଙ୍ଗରେ ଧରି ରାଣୀସାହେବାଙ୍କ ପାଖକୁ ଗଲେ । ମନୋରମାକୁ ଦେଖି ରାଣୀ ମୋହିତ ହୋଇଗଲେ । ସେହି ଦିନଠାରୁ ମନୋରମାକୁ ପ୍ରତିଦିନ ସେଠାକୁ ଯିବାକୁ ପଡ଼େ । କୌଣସି କାରଣରୁ ଆସି ନ ପାରିଲେ ଡକେଇ ନିଅନ୍ତି । ମନୋରମାର ମଧୁର ଗୀତ ଶୁଣି ସେ ମୁଗ୍ଧ ହୋଇ ଯାଆନ୍ତି । ହରିସେବକ ସିଂହଙ୍କର ଉଦ୍ଦେଶ୍ୟ ଥିଲା—ମନୋରମା ସେଠାକୁ ଗଲେ କୌଣସି ରାଜକୁମାରଙ୍କୁ ଆକର୍ଷଣ କରିବାର ସୁଯୋଗ ମିଳିବ ।

ଭାଦ୍ରବମାସର ଅନ୍ଧାର ରାତି । ମୂଷଳ ଧାରାରେ ବର୍ଷା ହେଉଛି । ରାଣୀସାହେବା ଆଜି ଟିକିଏ ଜ୍ୱର ଅନୁଭବ କରୁଛନ୍ତି । ମନରେ ସ୍ଫୂର୍ତ୍ତି ଆସୁନି । କିନ୍ତୁ ବିଛଣାରେ ପଡ଼ିରହିବାକୁ ଅବସର ନାହିଁ । ହର୍ଷପୁର ରାଜକୁମାରଙ୍କୁ ଆଜି ସେ ନିମନ୍ତ୍ରଣ କରିଛନ୍ତି । ତାଙ୍କର ସତ୍କାର କରିବା ନିତାନ୍ତ ଜରୁରୀ । ତାଙ୍କ ସହବାସ ସୁଖରୁ ନିଜକୁ ବଞ୍ଚିତ କରି ପାରିବେନି । ତାଙ୍କର ଆସିବା ସମୟ ହୋଇଗଲାଣି । ବଡ଼ କଷ୍ଟରେ ଉଠି ରାଣୀସାହେବା ଦର୍ପଣ ପାଖକୁ ଗଲେ । ପ୍ରଭାତ ଚନ୍ଦ୍ରଭଳି ମ୍ଳାନ ମୁଖ ଦେଖି ସେ ବଡ଼ ଆଘାତ ପାଇଲେ ।

ରାଜକୁମାର ଏବେ ଆସିଯିବେ । ପ୍ରସ୍ତୁତି ହୋଇଯିବା ଉଚିତ । ଜ୍ୱର ଅଛି । ଥାଉ, ପରୁଆ ନାହିଁ । ଏପରି ସୁବିଧା କ'ଣ କାଲି ମିଳିବ ! ଟେବୁଲ ଉପରେ ଏକ ଆଲବମ୍ ଥିଲା । ତହିଁରୁ ସେ ରାଜକୁମାରଙ୍କର ଫଟୋ କାଢ଼ି ଦେଖିଲେ । କେତେ ସୁନ୍ଦର ମୁଖ ! କେତେ ତେଜସ୍ୱୀ ପୁରୁଷ ! କି ଆହ୍ଲାଦଦାୟକ ଛବି !

ରାଣୀ ଏକ ଆତ୍ମମଗ୍ନତାରେ ପଡ଼ି ଭାବିବାକୁ ଲାଗିଲେ—ଏ ଫଟୋ ମୋର ଚିତ୍ତକୁ ଏତେ ଆକର୍ଷଣ କରୁଛି କାହିଁକି ! ଏ ଆଲବମ୍‌ରେ ତ ଆହୁରି ଅନେକ ସୁନ୍ଦର ଫଟୋ ଅଛି । ସେ ସବୁ

ନବମୁବକଙ୍କୁ ମୁଁ କଣ୍ଢେଇ ଭଳି ନଚେଇ ନଚେଇ ଗୁଡ଼ାନ୍ତି । କିନ୍ତୁ ଏ ଫଟୋ ମୋର ବିସ୍ମୃତ କଥାକୁ ସ୍ମରଣ କରାଉଛି । ଏ ଫଟୋକୁ ଦେଖିଲେ ମୁଁ ଲଜ୍ଜା ହେଉଛି କାହିଁକି ?

ରାତି ୯ଟା ହେଲା । ଆରାମଚୌକିରୁ ଉଠି ରାଣୀ ଆଲମାରି ଖୋଲିଲେ । ତହିଁରୁ ଗୋଟେ ଶିଶି ବାହାର କରି କେତେ ଟୋପା ଆଖିବୁଜି ପିଇଦେଲେ । ତା'ର ପ୍ରଭାବରେ ମଉଳା ଫୁଲ ସତେ ଯେମିତି ସତେଜ ହୋଇ ଉଠିଲା । ତାଙ୍କ ମୁଖମଣ୍ଡଳ ବିକସିତ ହୋଇଗଲା । ଶରୀରରେ ନବୀନ ରକ୍ତ ପ୍ରବାହିତ ହେଲା । ଆନନ୍ଦରେ ଫୁଲି ଉଠିଲେ । ବେଶକାରିଣୀକୁ ଡାକିଲେ । ନାମ ତାର ଗୁଜୁରାତୀ ।

ରାଣୀ—ସମୟ ଖୁବ୍ କମ୍ । ବେଗି ସାର ।

ଗୁଜୁରାତୀ—ରାଣୀସାହେବାଙ୍କର ଡର ଡର କାହିଁକି ମ ! ଯିଏ ଆସିବ ସେ ତ ବସି ରହିବ ।

ରାଣୀ—ନାଇଁ ନାଇଁ, ଆଜି କଥା ଅଲଗା ।

ବେଶକାରିଣୀ ବଡ଼ ନିପୁଣା । ସଙ୍ଗେ ସଙ୍ଗେ ସଜାଇବା ପେଡ଼ି ଖୋଲି ରାଣୀଙ୍କୁ ଛବିଟିଏ ଭଳି ବେଶ କରିଦେଲେ । ତାଙ୍କୁ ଦେଖିଲେ ଜଣା ପଡ଼ିଲା—ସତେ ଯେପରି ଗୋଟିଏ ସୁନ୍ଦରୀ ଯୁବତୀ ଶୋଇକରି ଉଠିଛି । ଅଳସ ଅଳସ ଅଙ୍ଗ, ମଉଳିଆ ଆଖି । ବେଶ ସରିଲେ ପରେ ରାଣୀ ଦର୍ପଣ ପାଖକୁ ଯାଇ କହିଲେ—ଗୁଜୁରାତୀ, ତୁ କଣ ଯାଦୁବିଦ୍ୟା ଜାଣିଛୁ !

ଏହି ସମୟରେ କେହି ଆସିବାର ଶବ୍ଦ ଶୁଣାଗଲା । ରାଣୀ କହିଲେ ମୁଁ ଦୋଳି ଉପରକୁ ଯାଉଛି—ତୁ ତାଙ୍କୁ ନେଇ ଆସିବୁ । ରାଣୀ ସାହେବା ପୁଣି ଶିଶିରୁ ଦି'ଗୁଣା ରସ ପାନ କରି ଝୁଲା ଭବନକୁ ଚାଲିଗଲେ । ଏହା ଏକ ବିଶାଳ ଭବନ । ଦୋଳିରେ ବସି ଯେତେ ଉପର ଯାଏଁ ଇଚ୍ଛା ଝୁଲି ପାରିବ । ନାନା ପ୍ରକାର ଚିତ୍ରରେ କୁନ୍ତ ଭଳି ଭବନଟି ସଜା ଯାଇଛି । ଝରଣା କୁଳୁ କୁଳୁ ହୋଇ ବହୁଛି । ବଡ଼ ଗମଲାମାନଙ୍କରେ ବିଭିନ୍ନ ପ୍ରକାରର ବୃକ୍ଷଲତା ସଜ୍ଜିତ । ତା' ଭିତରେ ହରିଣ ଛୁଆ ଖେଳି ବୁଲୁଛନ୍ତି ।

ଝୁଲା ଭବନକୁ ଯାଇ ରାଣୀ ଦୋଳିର ରେଶମ ଦଉଡ଼ିକୁ ଧରି ଠିଆ ହେଲେ । ଗୋଟିଏ ହରିଣ ଛୁଆକୁ ଡାକି ଆଉଁସିଲେ । ସହସା ପାଦ ଶବ୍ଦ ଶୁଭିଲା । ଅତିଥିଙ୍କୁ ସ୍ୱାଗତ କରିବା ପାଇଁ ରାଣୀ ଦୁଆର ଆଡ଼କୁ ଆସିଲେ । କିନ୍ତୁ ଇଏ ରାଜକୁମାର ନୁହନ୍ତି—ମନୋରମା । ରାଣୀ ନିରାଶ ହେଲେ ସତ—କିନ୍ତୁ ଆଜିର ଏ ଅଭିନୟରେ ଭାଗ ନେବାକୁ ସେ ମନୋରମାକୁ ଡକାଇଥିଲେ ।

ରାଣୀ—ବହୁତ ଡେରି କଲୁ । ତୋତେ ଗୁହିଁ ଗୁହିଁ ଥକିଗଲିଣି ।

ମନୋରମା—ବର୍ଷା ହେଉ ଘରୁ ବାହାରିବା ସମ୍ଭବ ହେଲାନାହିଁ ।

ରାଣୀ—ରାଜକୁମାର ଏତେ ଡେରି କଲେ କାହିଁକି କେଜାଣି ? ଆ, ସେ ଆସିଲା ଯାଏଁ ଗୀତ ଶୁଣ ।

ଉଭୟ ଯାଇ ଏକ ଶଙ୍ଖମଲମଲ ଚଉତରା ଉପରେ ବସିଲେ ।

ରାଣୀ—ଦେଖିଲୁ, ମୁଁ କ'ଣ ଝିଅପରି ଦେଖାଯାଉଛି ?

ମନୋରମା—ଆଜ୍ଞେ ? ଆପଣ ତ ସୌନ୍ଦର୍ଯ୍ୟର ଦେବୀ ଭଳି ଦେଖାଯାଉଛନ୍ତି ।

ରାଣୀ—ଯାଃ—ମିଛ କହୁଛୁ । ତୋ’ଭଳି କଣ ମୁଁ ଦେଖାଯିବି ?

ମନୋରମା—ମୁଁ ତ ଆପଣଙ୍କର ଦାସୀ ଭଳି ମଧ୍ୟ ନୁହେଁ । ଆପଣଙ୍କ ପାଖରେ ବସିବାକୁ ତ ମତେ ଲାଜ ଲାଗୁଛି ।

ରାଣୀ—ଆଚ୍ଛା କହିଲ୍, ସଂସାରରେ ସବୁଠାରୁ ଅମୂଲ୍ୟ କ’ଣ ?

ମନୋରମା—କୋହିନୁର ହୀରା ।

ରାଣୀ—ଧେତ୍ ପାଗଳୀ । ସଂସାରରେ ସବୁଠାରୁ ଉତ୍ତମ ଓ ଦେବଦୁର୍ଲଭ ବସ୍ତୁ ହେଉଛି ଯୌବନ । କହିଲ୍, ତୁ କେବେ କାହାକୁ ପ୍ରେମ କରିଛୁ ?

ମନୋରମା—ହେଃ—ମୁଁ ଆପଣଙ୍କ କଥା ବୁଝିବିନି ।

ରାଣୀ—ହିଁ—ଏଇତ ତୋର ଭୁଲରେ । ଏମିତ ବଗିଡ଼ିଲେ ପୁରୁଷକୁ ମୋହିତ କରି ହେବ । ସତ କହ, ତୁ କୌଣସି ପୁରୁଷକୁ କେବେ ପ୍ରେମ କରିଛୁ !—ଅଚ୍ଛା, ଆ, ମୁଁ ତୋତେ ଶିଖେଇ ଦଉଛି ।

ମନୋରମା—ଆପଣ ମୋତେ ଚଢ଼େଇଲେ ମୁଁ ଗୃହିଯିବି ।

ରାଣୀ—ଅରେ, ଏମିତ ବଗୁଡ଼ୁଛୁ କାହିଁକି ! ତୁ ତ ଅଉ ପିଲା ନୁହଁ । ଦେଖ୍, ସବୁଠାରୁ ବଡ଼ କଥା ହେଲା କଟାକ୍ଷ କଳାରେ ନିପୁଣ ହେବା । ଏ କଳା ଯାହାକୁ ଜଣା, ସେ ଚନ୍ଦ୍ରମୁଖୀ ନ ହେଲେ ବି ପୁରୁଷର ହୃଦୟକୁ ବଶୀଭୂତ କରି ପାରିବ । ଯେପରି ସିପାହୀ ହାତରେ ଉତ୍ତମ ଅସ୍ତ୍ର ଥିଲେ ମଧ୍ୟ, ତାକୁ ବ୍ୟବହାର କରିବା କୌଶଳ ତାକୁ ଜଣା ନ ଥିଲେ ସେ କିଛି କରିପାରିବ ନାହିଁ, ସେହିପରି ସୌନ୍ଦର୍ଯ୍ୟ ସ୍ୱୟଂ କିଛି କରି ପାରେ ନାହିଁ । ଧରନେ, ମୁଁ ତୋର ପ୍ରେମିକ । ବତେଇଲୁ, ତୁ ମୋ ଆଡ଼କୁ କିମିତ ଚାହିଁବୁ ।

ମନୋରମା ଲଜ୍ଜାରେ ମୁଣ୍ଡ ନୁଆଇଁଲା । ରାଣୀଙ୍କର ରସିକତା ପ୍ରତି ତା’ର କୌତୂହଳ ଜାତ ହେଲା । ଅନେକଥର ସେ ଏଠାକୁ ଆସିଛି । କିନ୍ତୁ କେବେହେଲେ ରାଣୀଙ୍କର ଏପରି ମଦମତ୍ତ ଅବସ୍ଥା ଦେଖିବାକୁ ପାଇ ନ ଥିଲା ।

ରାଣୀ ତା’ର ଓଠକୁ ଧରି ମୁହଁ ଉପରକୁ ଉଠାଇ କହିଲେ—ଆରେ ପାଗଳୀ, ଏପରି ମୁହଁ ତଳକୁ କରି ରଖିଲେ ପୁରୁଷ ଭାବିବ, ଯାକୁ କିଛି ଜଣା ନାହିଁ । ଆଚ୍ଛା, ଧରନେ ତୁ ପୁରୁଷ । ଦେଖ୍ ମୁଁ ତୋତେ କେମିତ ଚାହୁଁଛି । ମୁହଁ ଟେକ ମୋ ଆଡ଼କୁ ଅନା । ମୁହଁ ଟେକେ । ହଁ, ଦେଖ୍ ।

ଏହା କହି ରାଣୀ ମନୋରମାକୁ ଭ୍ରୁକୁଟୀ-ବିଳାସ ଏବଂ ଲୋଚନ କଟାକ୍ଷର ଏପରି କୌଶଳମାନ ଦେଖାଇଲେ ଯେ ମନୋରମାର ଅଜ୍ଞାନ ମନ ମୁହୂର୍ତ୍ତିକ ପାଇଁ ଚଞ୍ଚଳ ହୋଇ

ଉଠିଲା । କଟାକ୍ଷରେ କେତେ ଉତ୍ତେଜକ ଶକ୍ତି ଅଛି, ତାହା କେତେକ ପରିମାଣରେ ସେ ଅନୁମାନ କଲା ।

ରାଣୀ—କ'ଣ କିଛି ଜାଣି ପାରିଲୁ ?

ମନୋରମା—ମୋତେ ତ ଔରଷଧ ଭଳି ଜଣାଗଲା । ଆପଣ ମୋହନମନ୍ତ୍ର ବୋଧେ ଜାଣିଛନ୍ତି ।

ରାଣୀ—ତୁ ଯଦି ଯୁବକ ହୋଇଥାଆନ୍ତୁ, ତେବେ ଛଟପଟ ହୋଇ ଯାଆନ୍ତୁ । ଏ ତ ଗଲା କଟାକ୍ଷ । ଆଃ, ତତେ ବତେଇ ଦେବ, ଆଖିରେ କିପରି ପ୍ରେମାଳାପ ହୁଏ । ମୋ ଆଡ଼କୁ ଚାହାଁ ।

ରାଣୀ ପୁଣି ଶିଥିଳତା ଅନୁଭବ କଲେ । 'ସୁଧାବିନ୍ଦୁ'ର ପ୍ରଭାବ କମିଗଲା । ମୁଖରେ ମଳିନତା ଦେଖାଗଲା । ମନୋରମା ତାଙ୍କର ମୁହଁକୁ ଦେଖି ଚମକି ପଡ଼ି କହିଲା—ଆପଣଙ୍କର ଇଏ କ'ଣ ହେଲା ? ମୁଖମଣ୍ଡଳ ପାଣ୍ଡୁର ଦେଖାଗଲା । ଆପଣଙ୍କୁ କ'ଣ ଜର ହେଉଛି ?

ରାଣୀ—ହଁ ଝିଅ, ଜର । ରାଜକୁମାର ଏଯାଏଁ ଆସିଲେନି । ତୁ ଯାଇ ଗୁଳୁଗୁଡ଼ାଟାରୁ 'ସୁଧାବିନ୍ଦୁ' ଶିଶି ଏବଂ ପିଆଲା ନେଇ ଆ । ବେଗି ଆସିବୁ ।

ମନୋରମା 'ସୁଧାବିନ୍ଦୁ' ଆଣିବାକୁ ଯିବା ପରେ ପରେ ରାଜକୁମାର ଚନ୍ଦ୍ରବିକ୍ରମ ସିଂହ ମଟରଗାଡ଼ିରୁ ଓହ୍ଲାଇଲେ । ବୟସ ୩୦ ଭିତରେ । ମୁଖରେ ସଯମ, ତେଜ ଏବଂ ସଙ୍କଳ୍ପ ଝଲସି ଉଠୁଥିଲା । ଗୋରା, ଦେହ଼ା ଚାକ, ଉଚ୍ଚଯୋଡ଼ ପୁରୁଷ । ମନୋରମା ଔଷଧ ଶିଶି ଆଣି ରାଣୀଙ୍କୁ ଦେଲା । ଢଗେ ଢଗେ ଟୋପା ନ ଟେଣି ରାଣୀ ସୁଧାବିନ୍ଦୁ ପାନ କଲେ । ମୁହଁରେ ପୁଣି ପ୍ରଭା ଝଲକି ଉଠିଲା । ଯାଇ ଦୋଳି ଉପରେ ବସି ଝୁଲିବାକୁ ଲାଗିଲେ ।

ରାଜକୁମାର ଝୁଲଭବନରେ ପ୍ରବେଶ କଲେ । ରାଣୀ ଦୋଳିରୁ ଓହ୍ଲାଇବାକୁ ଯାଉଥିଲେ । ରାଜକୁମାର ପାଖକୁ ଚାଲିଆସି କହିଲେ—ଇଏ ତ ଏକ ମଧୁର କଳ୍ପନା । ସ୍ୱପ୍ନ ସାମ୍ରାଜ୍ୟରେ ମୁଁ ବିହାର କଲାଭଳି ଜଣାପଡୁଛି ।

ରାଣୀ—ନାହିଁ ଆଜ୍ଞା, ପ୍ରତୀକ୍ଷା ନୈରାଶ୍ୟର କୋଳରେ ବିଶ୍ରାମ କରୁଛି ।

ରାଜକୁମାର—ମୋର କିଛି ଦୋଷ ନୁହେଁ । ମୁଁ ଆସିବା ସମୟରେ ବିଶ୍ୱବିଦ୍ୟାଳୟର କେତେଜଣ ଛାତ୍ର ଆସି ପହଞ୍ଚିଲେ । ଏକ ଗମ୍ଭୀର ବିଷୟ ଉପରେ ବ୍ୟାଖ୍ୟାନ ଦେବା ପାଇଁ ମୋତେ ଜୋର୍ କରି ନେଇଗଲେ । ବହୁତ ବାହାନା କଲି, କିନ୍ତୁ ସେମାନେ କିଛି ଶୁଣିଲେନି ।

ରାଣୀ—ମୁଁ ତ ଅଭିଯୋଗ କରୁନି । ଆପଣ ଯେ ଆସିଗଲେ, ଏହା ତ କିଛି କମ୍ ଅନୁଗ୍ରହ ନୁହେଁ । କିନ୍ତୁ ଡେରି ପାଇଁ ପ୍ରାୟଶ୍ଚିତ୍ତ କରିବାକୁ ପଡ଼ିବ । ଆଜି ରାତି ସାରା ବନ୍ଧା ହୋଇ ରହିବେ ।

ରାଜକୁମାର—ଯଦି ପ୍ରେମ-କାରାବାସରେ ପ୍ରାୟଶ୍ଚିତ୍ତ କରିବାକୁ ପଡ଼େ, ତେବେ ମୁଁ ଆଜୀବନ ବନ୍ଦୀ ହୋଇ ରହିବାକୁ ଚାହେଁ ।

ରାଣୀ—ଆପଣ ତ କଥା କହିବାରେ ନିପୁଣ । ଆଚ୍ଛା, ଏ ନିର୍ଦ୍ଦୟ କେଶଗୁଡ଼ାକୁ ଟିକିଏ ସମ୍ଭାଳନ୍ତୁ ତ । ବାରମ୍ବାର ମୁଖମଣ୍ଡଳକୁ ବ୍ୟସ୍ତ କରିପକାଉଛି ।

ରାଜକୁମାର—ମୋର କଠୋର ହସ୍ତ ସେଗୁଡ଼ିକ ସ୍ପର୍ଶ କରିବାକୁ ଯୋଗ୍ୟ ନୁହେ ।

ରାଣୀ ମର୍ମଭେଦୀ ଦୃଷ୍ଟିରେ ରାଜକୁମାରଙ୍କୁ ଚାହିଁଲେ । ହୃଦୟ ବିଦୀର୍ଣ୍ଣ ହୋଇଗଲା । ଏ କୋମଳ, ସୁଗନ୍ଧିତ, ଲହରାୟିତ କେଶଗୁଚ୍ଛକୁ ସ୍ପର୍ଶ କରି କିଏ ବା ନିଜକୁ ଭଗ୍ୟବାନ୍ ବୋଲି ନ କହେ ! ରାଣୀ ପୁରୁଷମାନଙ୍କୁ ସର୍ବଦା ବିଳାସର ବସ୍ତୁ ବୋଲି ବୁଝିଥିଲେ । ଅବନତ ମସ୍ତକରେ କହିଲେ—ଯଦି ହସ୍ତ ଭଳି ହୃଦୟ ମଧ୍ୟ କଠୋର ହୁଏ, ତେବେ ପ୍ରେମ ତ ପ୍ରବେଶ କରିପାରିବନି !

ରାଜକୁମାର—ବିନା ପ୍ରେମରେ ତ କୌଣସି ଉପାସକ ଦେବଙ୍କ ସମ୍ମୁଖକୁ ଯାଏ ନାହିଁ । ତୃଷା ବିନା କେହି ଜଳ ପାଖକୁ ଯିବାର ଆପଣ ଦେଖିଛନ୍ତି ?

ରାଣୀ ଆଉ ଦୋଳରେ ରହିପାରିଲେନି । ଏହି କଥନରେ ନିର୍ମଳ ପ୍ରେମ ଝଲକି ଉଠିଥିଲା । ନିଜର କେଶଗୁଚ୍ଛକୁ ସମ୍ଭାଳି ମଥାରେ ପଣତ ଦେଇ କହିଲେ—ତୃଷା ଦେବତାମାନଙ୍କୁ ମଧ୍ୟ ଆକର୍ଷଣ କରେ ।

ରାଣୀ ପ୍ରେମ ସଜଳ ନେତ୍ରରେ ଅନାଇଁ କହିଲେ—ମୁଁ ବା ଏପରି ବସ୍ତୁର ଆଶା କାହିଁକି କରିବି—ଯେଉଁ ବସ୍ତୁ ମୋ ପାଇଁ ଦୁର୍ଲଭ ବୋଲି ଜାଣୁଛି ।

ଦେବପ୍ରିୟା ଏହା କହି ଏକ ଲମ୍ବା ନିଶ୍ୱାସ ନେଲେ ଏବଂ ଉପରକୁ ଅନାଇଁ ରହିଲେ । ଏ ଦେବଦୁର୍ଲଭ ବସ୍ତୁ କ'ଣ ମୋତେ ମିଳି ପାରିବ—ଏ ଆଶଙ୍କା ତାଙ୍କ ମନରେ ଉଦୟ ହେଲା ।

ରାଜକୁମାର କରୁଣ ସ୍ୱରରେ କହିଲେ—ଯେଉଁ ବସ୍ତୁକୁ ଆପଣ ଦୁର୍ଲଭ ବୋଲି ମନେ କରୁଛନ୍ତି, ସେ ଆଜିଠାରୁ ବହୁ ପୂର୍ବରୁ ଆପଣଙ୍କ ପାଦରେ ସମର୍ପିତ ହୋଇ ସାରିଛି । ଆପଣ ମୋତେ ଜାଣି ନାହାନ୍ତି, କିନ୍ତୁ ମୁଁ ଆପଣଙ୍କୁ ଜାଣେ । ବହୁ ପୂର୍ବରୁ ଜାଣେ । ଏବେ କେବଳ ଆପଣଙ୍କ ମୁହଁରୁ ଶୁଣିବାକୁ ଚାହେଁ—ଆପଣ ମୋର ଭେଟି ସ୍ୱୀକାର କଲେ କି ?

ରାଣୀ—ଏ ରତ୍ନକୁ ଗ୍ରହଣ କରିବା ସାମର୍ଥ୍ୟ ମୋର ନାହିଁ । ମୁଁ ଆପଣଙ୍କ ଦୟାର ଯୋଗ୍ୟା—ପ୍ରେମର ନୁହେଁ ।

ରାଜକୁମାର—ପ୍ରେମ-ଜଳରେ ଧୋଇ ନ ହେବା ଭଳି ଏପରି କିଛି ଦାଗ ନାହିଁ ।

ରାଣୀ—ସମୁଦ୍ରର ଚଢ଼ାକୁ କିଏ ଲଙ୍ଘିଇ ପାରେ ! ହାୟ ! ଆପଣ ମୋର ପ୍ରକୃତ ରୂପ ଦେଖି ନାହାନ୍ତି । ଯେଉଁ ମୋହିନୀ ଛବି ଆପଣ ଦେଖୁଛନ୍ତି, ସେ ଅନେକ ଦିନୁଁ ମୋଠାରୁ

ବିଦାୟ୍ ନେଇଛୁ । ଏବେ ମୁଁ ମୋ ଯୌବନ କାଳର ଚିହ୍ନ ମାତ୍ର । ଆପଣ ମୋର ଅସଲ ରୂପ ଦେଖିଲେ ଘୃଣାରେ ମୁହଁ ଫେରାଇବେ ।

ରାଣୀ ଶିଥିଳତା ଅନୁଭବ କଲେ । 'ସୁଧାବିନ୍ଦୁ'ର ପ୍ରଭାବ ଦୂର ହୋଇଗଲା । ମୁହଁ ଶେତା ପଡ଼ିଗଲା । ଲଜ୍ଜାରେ ମୁହଁ ଲୁଚାଇ ଦେଲେ । ପ୍ରେମାଭିନୟ ସମାପ୍ତ ହୋଇଯିବ ଭାବି କହିଁ କହିଁ ହୋଇ କାନ୍ଦି ଉଠିଲେ । ରାଜକୁମାର ଧୀରେ ତାଙ୍କର ହାତଧରି ପ୍ରେମ ମଧୁର ସ୍ୱରରେ କହିଲେ—ପ୍ରିୟେ, ମୁଁ ତୁମର ଏହି ରୂପରେ ମୁଗ୍ଧ । ବେଶରେ ସଜ୍ଜିତ ହୋଇଥିବା ରୂପରେ ନୁହେଁ । ଏଇ ପରଦା ପଛରେ ଯେଉଁ ବସ୍ତୁ ଲୁଚି ରହିଛି, ମୁଁ ତାକୁଇ ଚାହେଁ । ବହୁ ପୂର୍ବରୁ ସେ ମୋର ଥିଲା । ଏବେ କିଛି ଦିନ ହେଲା, ତାହା ମୋ ଅଧିକାରରୁ ବଞ୍ଚିତ ଥିଲା । ମୋ ଆଡ଼କୁ ଧ୍ୟାନର ସହ ଦେଖ । ମୋତେ ଚିହ୍ନି ପାରୁଛ ! କେବେ ମୋତେ ଦେଖିଛ !

ରାଣୀ ରାଜକୁମାରଙ୍କ ମୁହଁକୁ ଚାହିଁଲେ । ଆଖି ଆଗରୁ ଗୋଟାଏ ପରଦା ଆଡେଇ ହୋଇଗଲା ଭଳି ସେ ଅନୁଭବ କଲେ । ମୁଁ ଏହାଙ୍କୁ କୁଉଠି ଦେଖିଛି—ଏପରି ମନେ ହେଲା । କିନ୍ତୁ କିଛି ମନେ ପଡ଼ିଲାନି । କହିଲେ ମୁଁ ଆପଣଙ୍କୁ ପୂର୍ବେ କୁଉଠି ଦେଖିଛି ।

ରାଜକୁମାର—ମନେ ଅଛି ! ଭ୍ରମରେ ପଡ଼ନାହିଁ ତ !

ରାଣୀ—ନାହିଁ । ମୁଁ ଆପଣଙ୍କୁ ନିଶ୍ଚୟ ଦେଖିଛି । ସମ୍ଭବତଃ ରେଲଗାଡ଼ିରେ କୁଉଠି ଦେଖିଛି । ଆପଣଙ୍କର ମୋର ଏକତ୍ର କେଉଁଠି ଅନେକ ଦିନ ଯାଏଁ ରହିଛେ ଏପରି ଜାହିଁକି ମୋର ମନେ ହେଉଛି । ମୋର କିନ୍ତୁ କିଛି ମନେ ପଡୁନି । ଆପଣ କହନ୍ତୁ ।

ରାଜକୁମାର—ଖୁବ୍ ମନେ ପକାଅ ।

ରାଣୀ—(ମନେ ମନେ ଭାବି) ନା, ମୋର କିଛି ମନେ ପଡୁନି ।

ରାଜକୁମାର ଗମ୍ଭୀର ଭାବରେ କହିଲେ—ତୁମେ ମୋତେ ନିଶ୍ଚୟ ଦେଖିଛ । ତୁମେ ଓ ମୁଁ ଏକତ୍ର ରହିଆସିଛେ ଏବଂ ଏଇ ଘରେ ରହିଛେ । ଏଇ ଥିଲା ମୋର ଘର । ତୁମେ ଥିଲ ସ୍ତ୍ରୀ ଏବଂ ମୁଁ ଥିଲି ପୁରୁଷ । ତୁମର ମନେଅଛି—ତୁମେ ଓ ମୁଁ ଏଇ ସ୍ଥାନରେ, ଏଇ ଝରଣା କୂଳରେ ପ୍ରତିଦିନ ସନ୍ଧ୍ୟାରେ ଆସି ବସୁଥିଲେ । ଏବେ ଚିହ୍ନିପାରିଲ !

ଦେବପ୍ରିୟାଙ୍କର ଦୃଷ୍ଟି ପୁଣି ରାଜକୁମାରଙ୍କ ମୁଖମଣ୍ଡଳରେ ପଡ଼ିଲା । ଦର୍ପଣରେ ଲାଗିଥିବା ମଇଳା ସଫା ହୋଇଗଲା । କହିଲେ—ପ୍ରାଣେଶ ! ତୁମେ— ।

ଏହା କହିବା ଅବସ୍ଥାରେ ମୂର୍ଚ୍ଛିତା ହୋଇ ପଡ଼ିଲେ ।

( ୯ )

ରାଣୀ ଦେବପ୍ରିୟାଙ୍କର ମସ୍ତକ ରାଜକୁମାରଙ୍କ ପାଦରେ ଥିଲା ଏବଂ ଚକ୍ଷୁର ଲୋତକ ବହିଚାଲିଥିଲା । ରାଜକୁମାର ତାଙ୍କର ପତି, ଏଥିରେ ସନ୍ଦେହ ନାହିଁ । କିନ୍ତୁ ଏ କି ମାୟା ! ଏ କ'ଣ ପ୍ରେତ ଲୀଳା ! କିନ୍ତୁ ପ୍ରତ୍ୟକ୍ଷ ତ ଦେଖୁଛି । ଜୀବନ ଓ ମୃତ୍ୟୁର ଅପାର ସାଗର କ'ଣ କେହି ପାରି ହୋଇ ପାରେ !

ସେହିପରି ରାଜକୁମାର ତାଙ୍କୁ ଉଠେଇ ବସେଇଲେ ଏବଂ ତାଙ୍କର ମନୋଭାବକୁ ଶାନ୍ତ କରିବାକୁ ଯାଇ କହିଲେ—ହଁ ପ୍ରିୟେ, ମୁଁ ତୁମର ସେହି ଚିରସଙ୍ଗୀ, ଯିଏ ନିଜର ପ୍ରେମାଭିଳାଷକୁ ନେଇ କିଛି ଦିନ ପାଇଁ ଚାଲିଯାଇଥିଲା । କିଛି ଦିନର ଯାତ୍ରା ପରେ ଫେରିବା ଭଳି ତ ମୁଁ ଅନୁଭବ କରୁଛି । ଯାହାକୁ ଆମେ ମୃତ୍ୟୁ ବୋଲି କହୁ, ଯାହାର ଭୟରେ ସଂସାର କମ୍ପି ଉଠେ—ତାହା କେବଳ ଯାତ୍ରା । ସେହି ଯାତ୍ରାରେ ମୁଁ ବିକଳ ହୋଇ ଆକାଶରେ ଏଣେ ତେଣେ ଦୌଡ଼ୁଥିଲି । ମୋ ଭଳି ଅନ୍ୟ ପ୍ରାଣୀମାନଙ୍କର ମଧ୍ୟ ଏଇ ଦଶାଥିଲା । ସେଠାର ଦୃଶ୍ୟ ଏ ମର୍ତ୍ତ୍ୟଲୋକର ଦୃଶ୍ୟ ଅପେକ୍ଷା ଅଧିକ କରୁଣାଜନକ ଥିଲା । ଇଏ ହେଉଛି କର୍ମ ଲୋକ ଏବଂ ସିଏ ଭୋଗ ଲୋକ । ଏଠାରେ ଯିଏ ଯେପରି କର୍ମ କରେ, ସେଠାରେ ସେ ସେପରି ଭୋଗକରେ । କର୍ମର ଦଣ୍ଡ କର୍ମଠାରୁ ଅଧିକ ଭୟଙ୍କର । ମୁଁ ମଧ୍ୟ ସେଇ ଅଭାଗାମାନଙ୍କ ମଧ୍ୟରୁ ଜଣେଥିଲି । ମୁଁ ଦେଖୁଥିଲି—ମୋର ପ୍ରେମ-ସିଞ୍ଚିତ ଉଦ୍ୟାନକୁ ଭିନ୍ନ ଭିନ୍ନ ପ୍ରକାରର ପଶୁ ନଷ୍ଟ କରୁଛନ୍ତି । ମୋ ପ୍ରଣୟର ପବିତ୍ର ସାଗରରେ ହିଂସକ ଜଳଜନ୍ତୁ ସନ୍ତରଣ କରୁଛନ୍ତି । ଏହା ଦେଖି ମୁଁ କ୍ରୋଧରେ ବିହ୍ୱଳ ହେଉଥିଲି । କେତେଦିନ ଯାଏଁ ମୋର ଏ ଅବସ୍ଥା ରହିଲା, ତାହା କହି ପାରିବି ନାହିଁ । କାରଣ ସେଠାରେ ସମୟବୋଧ କିଛି ନଥିଲା । ସହସା ଦିନେ ମୁଁ ଲୁପ୍ତ ହୋଇଗଲି । କିପରି ଲୁପ୍ତ ହେଲି, ମନେନାହିଁ । ହୋସ୍ ଆସିଲା ପରେ ଦେଖିଲି ମୁଁ ଜଣେ ବାଳକ । ମୁଁ ହର୍ଷପୁର ରାଜାଙ୍କ ଘରେ ଜନ୍ମଗ୍ରହଣ କଲି । ସେଇ ଘରେ ମୋର ଲାଳନ ପାଳନ ହେଲା । ଯେତିକି ବଡ଼ ହେଲି, ମୋର ସ୍ମୃତି-ପରଦା ଦୂର ହୋଇଗଲା । ପଛ କଥା ଭୁଲି ଭୁଲି ଯାଉଥିଲି । କଥା କହିବାର ସାମର୍ଥ୍ୟ ଆସିବା ପରେ ମାତୃ। ନିଜର କାମ ଶେଷ କରି ଦେଇଥିଲା ।

ଅନେକ ଦିନ ଯାଏଁ ଅଧ୍ୟାପକଙ୍କ ପାଖରେ ଅଧ୍ୟୟନ କଲି । ବିଜ୍ଞାନ ପ୍ରତି ମୋର ଅଧିକ ଆଗ୍ରହ ଥିଲା । ଭାରତରେ ବିଜ୍ଞାନର ଉତ୍ତମ ପ୍ରୟୋଗ ଶାଳା ନ ଥିବାରୁ ମୁଁ ୟୁରୋପ ଗଲି । ସେଠାରେ ବହୁ ବୈଜ୍ଞାନିକ ପରୀକ୍ଷା କଲି । ବିଜ୍ଞାନ ରହସ୍ୟ ଯେତେ ବୃଦ୍ଧି ପାଉଥିଲା, ମୋର ଜ୍ଞାନ-ପିପାସା ସେତେ ବଡ଼ ବଡ଼ ଯାଉଥିଲା । କିନ୍ତୁ ଏ ପରୀକ୍ଷାର ଫଳ ମୋତେ ଲକ୍ଷ୍ୟଠାରୁ ଦୂରକୁ ନେଇ ଯାଉଥିଲା । ମୁଁ ଭାବିଥିଲି—ବିଜ୍ଞାନଦ୍ୱାରା ଜୀବତତ୍ତ୍ୱ ଉଦ୍‌ଘାଟନ କରିବି । ସାତବର୍ଷଯାଏଁ ଅନବରତ ପରିଶ୍ରମ କଲାପରେ ମଧ୍ୟ ତାହା ପୂରା ହୋଇ ପାରିଲାନାହିଁ ।

ଦିନେ ମୁଁ ବର୍ଲିନ୍‌ର ପ୍ରଧାନ ଗବେଷଣାଗାରରେ ବସି ଏହି ବିଷୟ ଚିନ୍ତା କରୁଥାଏ, ଜଣେ ତିବ୍‌ବତୀୟ ଭିକ୍ଷୁ ଆସି ପହଞ୍ଚିଲେ । ମୋତେ ଚିନ୍ତିତ ଦେଖି ମୋ ଆଡ଼କୁ ତୀକ୍ଷଣ ଦୃଷ୍ଟିରେ ଗୃହିଁରହିଲେ । ତା'ପରେ ସେ କହିଲେ—ବାଲିରୁ ମୁକ୍ତା ମିଳେନାହିଁ । ଭୌତିକ ଜ୍ଞାନ ଦ୍ୱାରା ଆତ୍ମାର ଜ୍ଞାନ ପ୍ରାପ୍ତ ହୁଏ ନାହିଁ ।

ମୁଁ ଆଶ୍ଚର୍ଯ୍ୟ ହୋଇ ପଗ୍ଚରିଲି—ଆପଣ ମୋ ମନକଥା କିପରି ଜାଣିପାରିଲେ ? ଭିକ୍ଷୁ ହସି ହସି କହିଲେ—ମନର ଅବସ୍ଥା ମୁହଁରେ ଲେଖା ହୋଇଛି । ଜଡ଼ରୁ ଚେତନର ଜ୍ଞାନ ଲାଭ ହୁଏ ନାହିଁ । ଏ ହେଉଛି ଓଲଟା ପ୍ରକ୍ରିୟା । ଆତ୍ମଜ୍ଞାନୀ ମହାତ୍ମାଙ୍କ ପାଖକୁ ଯାଅ— ସେ ଏ ମାର୍ଗ ଦେଖାଇଦେବେ ।

ମୁଁ ପଗ୍ଚରିଲି—ଏଭଳି ମହାତ୍ମାଙ୍କୁ ମୁଁ କେଉଁଠାରେ ଦର୍ଶନ କରି ପାରିବି ? ମୋର ଅନୁମାନ, ସେ ବିଦ୍ୟା ଲୋପ ହୋଇଗଲେଣି ଏବଂ ଯେଉଁମାନେ ଜାଣିଛନ୍ତି ବୋଲି ଦାବୀ କରନ୍ତି, ସେମାନଙ୍କୁ ସମ୍ଭବତଃ କିଛି ଜଣାନାହିଁ । ଭିକ୍ଷୁ କହିଲେ—ତୁମେ ଯଥାର୍ଥ କଥା କହୁଛ । କିନ୍ତୁ ଖୋଜିଲେ ଏବେ ମଧ୍ୟ ସେପରି ମହାତ୍ମା ମିଳିବେ । ତିବ୍‌ବତର ତପୋଭୂମିରେ ଆଜି ମଧ୍ୟ ଏପରି ମହାତ୍ମା ଅଛନ୍ତି । ସେମାନେ ମାୟାର ରହସ୍ୟ ଉତ୍ତମ ରୂପେ ଜାଣନ୍ତି । କିନ୍ତୁ ଜିଜ୍ଞାସାରେ ଆନ୍ତରିକ ବିଶ୍ୱାସ ଥିବା ଉଚିତ ।

ତାଙ୍କ କଥା ମୋ ହୃଦୟକୁ ଭେଦ କଲା । ତିବ୍‌ବତ ସମ୍ବନ୍ଧୀୟ ଚର୍ଚ୍ଚା ବହୁ ଦିନରୁ ଶୁଣୁଥିଲି । ସେଠା ସମ୍ପର୍କରେ କେତେକ କଥା ଭିକ୍ଷୁଙ୍କୁ ପଗ୍ଚରି ବୁଝିଲି । ଶେଷରେ ତାଙ୍କ ସହିତ ତିବ୍‌ବତ ଯିବାକୁ ସ୍ଥିର କଲି । ମୋ ସହିତ କେତେକ ବନ୍ଧୁ ମଧ୍ୟ ଯିବାକୁ ପ୍ରସ୍ତୁତ ହେଲେ । ଗୋଟିଏ ସମିତି ଗଢ଼ାହେଲା । ଦୁଇଜଣ ଇଂରେଜ, ଦୁଇଜଣ ଫ୍ରେଞ୍ଚ ଓ ତିନିଜଣ ଜର୍ମାନ୍ ନିଜନିଜର ନାନା ପ୍ରକାର ଯନ୍ତ୍ର ଧରି ଗ୍ଚଲିଲେ । ରାସ୍ତାରେ କି କି ଅସୁବିଧାର ସମ୍ମୁଖୀନ ହେବାକୁ ପଡ଼ିଲା, ସେଠାରେ କିପରି ପହଞ୍ଚିଲୁ, ବିହାରମାନଙ୍କରେ କି କି ଦୃଶ୍ୟ ଦେଖିଲୁ ଇତ୍ୟାଦି କହିବସିଲେ ଅନେକ ଦିନ ଲାଗିବ । କେତେଥର ତ ଆମେମାନେ ମୃତ୍ୟୁ ମୁଖରୁ ବଞ୍ଚିଲୁ । କିନ୍ତୁ ସେଠାରେ ମନକୁ ଯେଉଁ ଶାନ୍ତି ମିଳିଲା, ମରିଯାଇଥିଲେ ମଧ୍ୟ ଦୁଃଖ ହୋଇ ନ ଥା'ନ୍ତା । ଇଂରେଜ ଦ୍ୱୟଙ୍କୁ ତ ସଫଳତା ମିଳିଲାନି—କାରଣ ସେମାନେ ତିବ୍‌ବତର ସାମରିକ ଅବସ୍ଥା ଦେଖିବାକୁ ଆସିଥିଲେ । ଭିକ୍ଷୁମାନେ ସେମାନଙ୍କ ଉଦ୍ଦେଶ୍ୟ ଜାଣିପକାଇଲେ । କିନ୍ତୁ ଅନ୍ୟ ପାଞ୍ଚଜଣ ପାଲି ଏବଂ ସଂସ୍କୃତର ଏପରି ମୂଲ୍ୟବାନ୍ ଗ୍ରନ୍ଥ-ରତ୍ନ ପାଇଗଲେ, ଯାହାକୁ ଅଣିବା ମଧ୍ୟ ମୁସ୍କିଲ୍ ହେଲା । ଜର୍ମାନ୍‌ମାନଙ୍କର ଆନନ୍ଦ କହିଲେ ନସରେ ।

ଶରତ ଋତୁ । ଚତୁର୍ଦ୍ଦିଗ ବରଫାଚ୍ଛନ୍ନ । ମୋର ବନ୍ଧୁମାନେ ସବୁ ଗ୍ଚଲିଗଲେ । ମୁଁ ଏକାକୀ ସେଠାରେ ଥିଲି । ଦିନେ ସନ୍ଧ୍ୟା ସମୟରେ ଏଣେ ତେଣେ ବୁଲିବୁଲି କରି ଗୋଟିଏ ପଥର ଉପରେ ଠିଆହୋଇଥାଏ । ଚତୁର୍ଦ୍ଦିଗର ଦୃଶ୍ୟ ଅତ୍ୟନ୍ତ ମନୋମୁଗ୍ଧକର । ସେ ଅଲୌକିକ

ଦୃଶ୍ୟ ବର୍ଣ୍ଣନା କରିବାକୁ ବାଣୀର ଏତେ ଶକ୍ତି ଏବଂ ଶବ୍ଦରେ ଏତେ ବୈଚିତ୍ର୍ୟ ନାହିଁ । ସେ ଅନୁପମ ଦୃଶ୍ୟକୁ ମନ୍ତ୍ରମୁଗ୍‌ଧବତ୍ ଗୃହିଁଥିବା ସମୟରେ ହଠାତ୍ ଦେଖିଲି, ଏକ ବୃଦ୍ଧ ପୁରୁଷ ପର୍ବତ ଶିଖରର ଏକ ଗୁମ୍ଫାରୁ ବାହାରି ଶିଖର ଦେଶକୁ ଗୃଲିଗଲେ । ଯେଉଁ ବରଫାଛନ୍ନ ଶିଖରରେ କଳ୍ପନାରେ ମଧ୍ୟ ଗୃଲିବା ସମ୍ଭବପର ନୁହେ—ତା' ଉପରେ ସାବଲୀଳ ଗତିରେ ଗୃଲି କୁଆଡ଼େ ଅନ୍ତର୍ଦ୍ଧାନ ହୋଇଗଲେ ଦେଖି ବିସ୍ମିତ ହେଲି । ଏ ଭଳି ପୁରୁଷାର୍ଥ କେବଳ ସିଦ୍ଧମାନଙ୍କ ପକ୍ଷେ ସମ୍ଭବ ହୋଇପାରେ । ତାଙ୍କର ଦର୍ଶନ ପାଇଁ ମନ ଛଟପଟ ହେଲି । କିନ୍ତୁ ସେ ଉପରେ ଚଢ଼ିବା ମୋ ପକ୍ଷେ ସମ୍ପୂର୍ଣ୍ଣ ଅସମ୍ଭବ । କ୍ରମଶଃ ଅନ୍ଧାର ହୋଇଗଲା । ପରଦିନ ସକାଳୁ ଆସି ସେହି ସ୍ଥାନରେ ଠିଆ ହୋଇ ଏକାଗ୍ର ଦୃଷ୍ଟିରେ ଅନାଇଁ ରହିଲି । ଦିନସାରା ବିତିଗଲା । ଦର୍ଶନ ମିଳିଲା ନାହିଁ ।

ଏହିପରି ମାସେ ବିତିଗଲା । ରାତିସାରା ବିହାରରେ ପଡ଼ିରହେ । ଦିନସାରା ଶିଳାଖଣ୍ଡ ଉପରେ ଅନାଇଁ ରହେ । ଉପରକୁ ଚଢ଼ିବା ପାଇଁ କେତେଥର ଚେଷ୍ଟାକଲି । କିନ୍ତୁ ଶହେ ଗଜରୁ ଆଗକୁ ଯିବା ସମ୍ଭବ ହେଲିନାହିଁ । ଭିକ୍ଷୁମାନଙ୍କୁ ପଗୃରିବାରୁ ସେମାନେ ହସି ହସି କହିଲେ—ତାଙ୍କୁ ଦର୍ଶନ କରିବା ଆମ ପକ୍ଷେ ଦୁର୍ଲଭ । ବର୍ଷ ମଧ୍ୟରେ କେବେ କମିତ ଦେଖିବାକୁ ମିଳନ୍ତି । କେଉଁଠି ରହନ୍ତି କାହାକୁ ଜଣାନାହିଁ । କିନ୍ତୁ ତୁମେ ଅଧୀର ହୁଅନାହିଁ । ତୁମର ତପସ୍ୟାରେ ସେ ଯଦି ପ୍ରସନ୍ନ ହେବେ, ତେବେ ତୁମର ମନୋକାମନା ପୂର୍ଣ୍ଣହେବ । କେତେଜଣ ଭିକ୍ଷୁ ତାଙ୍କୁ ଦର୍ଶନ କରିବାକୁ ଚେଷ୍ଟା କରି ପ୍ରାଣ ହରାଇଛନ୍ତି । ତାଙ୍କଠାରେ ଏତେ ବିଦ୍ୟୁତ୍ ତେଜ ଅଛି ଯେ, ସାଧାରଣ ବ୍ୟକ୍ତି ତାଙ୍କ ସାମନାରେ ଠିଆ ହେବା ଅସମ୍ଭବ । କୌଣସି ଯୋଗୀ ଅବା ତାଙ୍କ ଆଗରେ ଠିଆହୋଇପାରେ ।

ମୁଁ ପ୍ରତିଜ୍ଞା କଲି, ପ୍ରାଣ ଯାଉ କି ରହୁ, ମୁଁ ନିଶ୍ଚୟ ଦର୍ଶନ କରିବି । ଯୋଗ ପ୍ରକ୍ରିୟା ମୋତେ ଜଣାଥିଲା । ଦିବ୍ୟଜ୍ଞାନ ପ୍ରାପ୍ତ କରିବା ଚେଷ୍ଟାରେ ମୃତ୍ୟୁ ଘଟିଲେ ମଧ୍ୟ ଶ୍ରେୟସ୍କର ହେବ । କ'ଣ ଥିଲି, କ'ଣ ହେବି—କେଉଁଠାରୁ ଆସିଛି, କୁଆଡ଼େ ଯିବି—ଏ ସବୁ ଜ୍ଞାନ-ଲାଭରେ ମୃତ୍ୟୁ ହେଉ—ଚିନ୍ତା ନାହିଁ ।

ଏକ ବର୍ଷ ଗୃଲିଗଲା । ମହାତ୍ମାଙ୍କର ଦର୍ଶନ ମିଳିଲାନାହିଁ । ସମୟେ ସମୟେ ଏ ଚେଷ୍ଟାରୁ ବିରତ ହେବା ପାଇଁ ମନ ହୁଏ । କିନ୍ତୁ ପର ମୁହୂର୍ତ୍ତରେ ତାହା ପରିବର୍ତ୍ତିତ ହୋଇଯାଏ । ଶେଷରେ ଦିନେ ଠିକ୍ କଲି, ଯାହା ହେଉ ପଛେ ପର୍ବତ ଶୃଙ୍ଗ ଉପରକୁ ଚଢ଼ିବି । ଚଢ଼ିବା ଆରମ୍ଭ କଲି । ସନ୍ଧ୍ୟା ସୁଦ୍ଧା ମାତ୍ର ଶହେ ଗଜ ହେବ ଚଢ଼ି ପାରିଲି । ବରଫାବୃତ ପାହାଡ଼ ଚଢିବାର କୌଶଳ ମୋତେ ଜଣା ନାହିଁ । ମୁଁ ଏକାକୀ । ଭୋଜନର ବ୍ୟବସ୍ଥା ନାହିଁ । ପ୍ରାଣ ସହ ଖେଳିବା କଥା । କେବଳ ଆତ୍ମସମର୍ପଣ ।

ପ୍ରଥମ ରାତି ମୁଁ ଗୋଟାଏ ଚଟାଣ ଉପରେ ବସି ବସି କଟାଇଲି । ଟିକିଏ ଅସାବଧାନ ହେଲେ ରସାତଳଗାମୀ ହେବାକୁ ପଡ଼ିବ । ସୁଖର କଥା, ଗରମ ଋତୁ ଆସିଯାଇଥିଲା ।

ବରଫ ପଡ଼ିବା ବନ୍ଦ ହୋଇଯାଇଥିଲା । ପଡ଼ିଥିବା ବରଫଖଣ୍ଡ ତରଳି ଖଣ୍ଡ ଖଣ୍ଡ ହୋଇ ଖସୁଥିଲା । ବରଫଖଣ୍ଡ ପଡ଼ି କେତେବେଳେ ପ୍ରାଣ ଚାଲିଯିବ, ଏ ଆଶଙ୍କା ଚ୍ଛତମୃତ୍ୟୁ ରୂପରେ ଦେଖାଦେଉଥିଲା । ସେ ଭୟଙ୍କର ରାତ୍ରି ଏବଂ ଭୟଙ୍କର ଜୀବଜନ୍ତୁଙ୍କର ଗର୍ଜନ ମନେପଡ଼ିଲେ ଆଜି ମଧ୍ୟ ଲୋମ ଟାଙ୍କୁର ଉଠୁଛି । କୌଣସି ମତେ ରାତିଟି କଟିଲା । ପରଦିନ ବଡ଼ କଷ୍ଟରେ ପର୍ବତ ଉପରକୁ ଉଠିଲି । ଦ୍ୱାରରେ ଗୋଟାଏ ବଗାଲ ଝାଇ ପଡ଼ିଲା । ତାକୁ ପାରହେବା ସମ୍ପୂର୍ଣ୍ଣ ଅସମ୍ଭବ ମନେହେଲା । ମୁଁ ଆଉ ଫେରିବି, କାନ୍ଥ ଭଳି ସିଧା । ମଝିରେ ବିଶାଳ ଝାଇ । ନିରୀକ୍ଷଣ କଲି । ଦେଖିଲି, ଦୁଇପାଖେ ଥିବା ଦୁଇଟା ଗଛର ଡ଼ାଳ ପାଖାପାଖି ରହିଛି । ମୋ ପାଖରେ ଗୋଟାଏ ଲମ୍ବା ରସି ଥିଲା । ଯଦି କୌଣସି ମତେ ରସି ଦ୍ୱାରା ଦୁଇ ଡ଼ାଳକୁ ବାନ୍ଧି ଦିଆଯାଏ, ତେବେ ସମସ୍ୟାର ସମାଧାନ ହୋଇଯିବ । କିନ୍ତୁ ସେ ପାଖରେ ରସି ବନ୍ଧା ହେବ କିପରି ? ଶେଷରେ ମୁଁ ରସିର ଗୋଟେ ପାଖରେ ଗୋଟାଏ ପଥର ବାନ୍ଧି ଆରପାଖ ଗଛକୁ ଫିଙ୍ଗିଲି । କିନ୍ତୁ ପଥର ସେ ଯାଏଁ ଗଲାନାହିଁ । ସାରାଦିନ କଟିଗଲା । ରାତି ହେଲା । ତଳେ ପଥରଉପରେ ଶୋଇବା ବିପଦଜନକ । ତେଣୁ ଗଛ ଉପରେ ରାତିଟି କଟାଇଲି । ଅଧ ରାତି ବେଳକୁ ଏକ ପ୍ରକାଣ୍ଡ ଶବ୍ଦ ହେଲା । ସେ ଶବ୍ଦ କେତେ ସମୟ ଯାଏଁ ପର୍ବତ କନ୍ଦରରେ ପ୍ରତିଧ୍ୱନି ସୃଷ୍ଟିକଲା । ସକାଳୁ ଉଠି ଦେଖିଲି ଏକ ପ୍ରକାଣ୍ଡ ବରଫଖଣ୍ଡ ଭୂଷୁଡ଼ି ଝାଇ ଉପରେ ପଡ଼ିଛି । ଯାହାହେଉ, ଆଉ ଅସୁବିଧା ନାହିଁ । ଆନନ୍ଦରେ ଅଧୀର ହୋଇପଡ଼ିଲି । କିନ୍ତୁ ସେ ବରଫଖଣ୍ଡ ଉପରେ ଝାଇ ପାରହେବା ମୃତ୍ୟୁକୁ ଆଲିଙ୍ଗନ କରିବା ସଙ୍ଗେ ସମାନ । ତଥାପି ଅନ୍ୟ ଉପାୟ କିଛି ନ ଥିଲା । ଈଶ୍ୱରଙ୍କୁ ସ୍ମରଣ କରି ଅତି ସତର୍କତାର ସହ ପାଦ ପକେଇ ଚାଲିଲି । ମୋତେ ଜଣାପଡ଼ିଲା—କୌଣସି ଅଜ୍ଞାତ ଶକ୍ତି ସତେ ଯେପରି ମୋର ଜୀବନ ରକ୍ଷା କରୁଛି । କୌଣସି କଠିନ କାର୍ଯ୍ୟରେ ସଫଳତା ହାସଲ ଆତ୍ମବିଶ୍ୱାସ ପାଇଁ ସଞ୍ଜୀବନୀ ସଦୃଶ । ମୋର ଦୃଢ଼ ବିଶ୍ୱାସ ହୋଇଗଲା ଯେ, ମୋର ମନୋରଥ ନିଶ୍ଚୟ ପୂର୍ଣ୍ଣ ହେବ ।

ଆର ପାଖେ ମୋତେ କାନ୍ଥଭଳି ସିଧା ଚଟାଣ ମିଳିଲା । ଝାଇ ଏବଂ ଚଟାଣ ମଧ୍ୟରେ କେଉଁଠି ହାତେ ଓସାର ତ କେଉଁଠି ଗୃହଖଣ୍ଡେ ଓସାର ରାସ୍ତା । କାନ୍ଥକୁ ଧରି ଧରି ଦୁଇ ତିନି ଘଣ୍ଟା ଚାଲିଲି । ତା'ପରେ ଆଉ ଚାଲିବାକୁ ରାସ୍ତା ନାହିଁ । ଘୁଷୁରି ଘୁଷୁରି ଉପରକୁ ଉଠିଲି । କିଛି ବାଟ ଉପରକୁ ଉଠିଲା ପରେ ଏକ ସମତଳ ପଥର ମିଳିଲା । ମୁଁ ଅତ୍ୟନ୍ତ ହାଲିଆ ହୋଇ ପଡ଼ିଥିଲି । ଟିକିଏ ବିଶ୍ରାମ ନେବାକୁ ଭାରି ଇଚ୍ଛା ହେଲା । କାଳେ ନିଦ ହୋଇଯିବ, ସେଥିପାଇଁ ବସି ଭଜନ ଗାଇଲି । କିନ୍ତୁ କେତେବେଳେ ମୋତେ ନିଦ ହୋଇଗଲା । କେତେ ସମୟ ସେଠାରେ ପଡ଼ିରହିଲି ଜାଣିପାରିଲି ନାହିଁ । ନିଦ ଭାଙ୍ଗିବାରୁ ଆଖି ଖୋଲି ଦେଖିଲି ଗୋଟିଏ ଛୋଟ କୁଟିରରେ ଖଣ୍ଡିଏ ମୃଗଚର୍ମ ଉପରେ କମ୍ବଳ ଘୋଡ଼ି ହୋଇ ଶୋଇଛି । ଜଣେ ବୃଦ୍ଧ ମୋ ପାଖରେ ବସି ବାତ୍ସଲ୍ୟ ଦୃଷ୍ଟିରେ ମୋତେ ଅନାଇଁଛନ୍ତି । ମୁଁ ତାଙ୍କୁ ଚିହ୍ନି ପାରିଲି । ଇଏ ସେଇ ମହାତ୍ମା । ମୁଣ୍ଡରେ ସେଇ ଘଞ୍ଚ

ଶ୍ୱେତକେଶ । ଏହାଙ୍କୁ ଦର୍ଶନ କରିବାକୁ ମୋର ଏତେ ଆଗ୍ରହ ! ସେ ହସି ହସି କହିଲେ—ହିମଶଯ୍ୟା କେତେ ପ୍ରିୟବସ୍ତୁ ! ପୁଷ୍ପଶଯ୍ୟାରେ କ'ଣ ତୁମକୁ ଏତେ ସୁଖ ମିଳୁଥିଲା ?

ମୁଁ ଉଠି ବସିଲି । ମହାତ୍ମାଙ୍କ ଚରଣରେ ମୁଣ୍ଡରଖି କହିଲି—ଆପଣଙ୍କ ଦର୍ଶନ ହେତୁ ଜୀବନ ସଫଳ ହୋଇଗଲା । ଆପଣଙ୍କର ଦୟା ହୋଇ ନ ଥିଲେ, ମୋର ଜୀବନର ଅନ୍ତ ଏଇଠାରେ ହୋଇଯାଇଥାଆନ୍ତା ।

ମହାତ୍ମା—କାହାର କେବେ ଅନ୍ତ ହୁଏ ନାହିଁ । ଜୀବନ ଅନନ୍ତ । ଅଜ୍ଞାନବଶତଃ ଆମେ ଏପରି ଭାବୁଛେ ।

ମୁଁ—ଆପଣଙ୍କୁ ଦର୍ଶନ କରିବାର ପ୍ରବଳ ଇଚ୍ଛା ଥିଲା । ଆପଣଙ୍କଠାରେ ଅତିମାନବୀୟ ଶକ୍ତି ଅଛି ।

ମହାତ୍ମା—ଅତିମାନବୀୟ ନୁହେଁ—ସାଧାରଣ ବ୍ୟକ୍ତି ଅଭ୍ୟାସବଳରେ ଏହା କରିପାରେ ।

ମୁଁ—ଆପଣ ଯୋଗଦ୍ୱାରା ଏ ଶକ୍ତି ସମ୍ଭବତଃ ଲାଭ କରିଥିବେ ।

ମହାତ୍ମା—ନା, ମୁଁ ଯୋଗୀ ନୁହେଁ, ପ୍ରୟୋଗୀ । ତୁମେ ଡାର୍‌ୱିନ୍‌ଙ୍କ ନାମ ଶୁଣିଥିବ । ପୂର୍ବ ଜନ୍ମରେ ମୁଁ ଥିଲି ସେଇ ଡାର୍‌ୱିନ୍ ।

ମୁଁ ବିସ୍ମିତ ହୋଇ କହିଲି—ଆପଣହିଁ ଥିଲେ ସେଇ ଡାର୍‌ୱିନ୍ ?

ମହାତ୍ମା—ହଁ, ସେ ସମୟରେ ମୁଁ ପ୍ରାଣୀ-ଶାସ୍ତ୍ର-ପ୍ରେମୀ ଥିଲି । ବର୍ତ୍ତମାନ ମୁଁ ପ୍ରାଣ-ଶାସ୍ତ୍ର ଅନ୍ୱେଷକ ।

ସହସା ମୋ ଦେହରେ ଏକ ଅଦ୍‌ଭୁତ ଶକ୍ତି ସ୍ରୋତ ପ୍ରବାହିତ ହେବାର ମୁଁ ଅନୁଭବ କଲି । ମୁଁ ସଙ୍ଗେ ସଙ୍ଗେ ଠିଆ ହୋଇ ମହାତ୍ମାଙ୍କୁ ଅବନତ ମସ୍ତକରେ ପ୍ରଣତି ଜଣାଇବାକୁ ଉଦ୍ୟତ ହେଲି । ମୋତେ ଧରିପକାଇ ସେ କହିଲେ—ବରଫ କାନ୍ଥ ଉପରେ ମୁଁ ଚାଲୁଥିବାର ଦେଖି ତୁମେ ବିସ୍ମିତ ହୋଇଛ । କିନ୍ତୁ ସମୟ ଆସୁଛି, ଆଗାମୀ ଜାତି ଜଳ ସ୍ଥଳ ଆକାଶରେ ଏକା ଭଳି ଚାଲି ପାରିବେ । ପୃଥିବୀ ସେମାନଙ୍କୁ କ୍ଷୁଦ୍ର ଜଣାପଡ଼ିବ । ସେମାନେ ପୃଥିବୀରୁ ଅନ୍ୟ ଗ୍ରହକୁ ସୁଗମତାର ସହ ଯିବା ଆସିବା କରିପାରିବେ, ଯେପରି ଗୋଟିଏ ଦେଶରୁ ଅନ୍ୟ ଦେଶକୁ ଯାଉଛନ୍ତି ।

ମୁଁ—ଆପଣଙ୍କୁ ନିଜର ପୂର୍ବଜନ୍ମ ଜ୍ଞାନ-ଯୋଗ ଦ୍ୱାରା ଜଣାପଡ଼ିଥିବ !

ମହାତ୍ମା—ନା, ପ୍ରଥମରୁ ମୁଁ କହିଛି ମୁଁ ଯୋଗୀ ନୁହେଁ—ମୁଁ ପ୍ରୟୋଗୀ । ତୁମେ ତ ବିଜ୍ଞାନ ପଢ଼ିଛ । ତୁମେ ନିଶ୍ଚୟ ଜାଣିଥିବ—ଏ ବ୍ରହ୍ମାଣ୍ଡ ବିଦ୍ୟୁତ୍‌ର ଅପାର ଭଣ୍ଡାର । ଯଦି ବିଜ୍ଞାନ ଦ୍ୱାରା ଆମେ ମନର ଗୁପ୍ତରହସ୍ୟ ଜାଣିପାରୁଛେ, ତେବେ ଆମର ପୂର୍ବ ସଂସ୍କାର ଜାଣି ନ ପାରିବା କାହିଁକି ! ସ୍ମୃତିକୁ କେବଳ ଜାଗ୍ରତ କଲେ ପୂର୍ବଜନ୍ମ ଜାଣି ହୁଏ ।

ମୁଁ—ମୋତେ ମଧ୍ୟ ସେ ଜ୍ଞାନ ମିଳିପାରିବ ?

ମହାତ୍ମା—ମୋ ଦ୍ୱାରା ଯଦି ହୋଇ ପାରୁଛି ତୁମେ ବାହିଁକି ପାରିବନି ? ଏବେ ତୁମେ ଥକିଯାଇଛ । କିଛି ଭୋଜନ କରି ସୁସ୍ଥ ହୁଅ । ମୁଁ ତୁମକୁ ମୋର ଗବେଷଣାଗାର ଦେଖାଇବି ।

ମୁଁ—ଆପଣଙ୍କର କ'ଣ ଗବେଷଣାଗାର ଅଛି ?

ମହାତ୍ମା—ହଁ-ଏଇ କୋଠରୀକୁ ଲଗିଛି । ତୁମେ କ'ଣ ଖାଇବାକୁ ଇଚ୍ଛାକର ?

ମୁଁ—ଆପଣ ଚିନ୍ତା କରନ୍ତୁନାହିଁ । ମୁଁ ଆପଣଙ୍କ ଭୋଜନର ବଳକା ପ୍ରସାଦ ସେବନ କରିବି ।

ମହାତ୍ମା—ତାହା ତୁମେ ଖାଇପାରିବନାହିଁ । ତୁମର ପାଚନ ଶକ୍ତି ସେତେ ଶକ୍ତ ନୁହେଁ । ତୁମେ ଯେଉଁ ପଦାର୍ଥକୁ ଖାଦ୍ୟ ବୋଲି ଭାବୁଛ, ମୁଁ ତାହା ବହୁ ବର୍ଷହେଲା ଖାଇନାହିଁ । ଉଦରକୁ ସ୍ଥୂଳ ବସ୍ତୁରେ ପୂର୍ଣ୍ଣ କରିବା ଅବୈଜ୍ଞାନିକ ବୋଲି ମୁଁ ମନେକରେ—ଯେପରି ଏ ବାୟୁଯାନ ଯୁଗରେ ବଳଦଗାଡ଼ିରେ ଯିବାକୁ ଇଚ୍ଛାକରିବା । ଭୋଜନର ଉଦ୍ଦେଶ୍ୟ, ସଞ୍ଚାଳନ ଶକ୍ତି ଉତ୍ପନ୍ନ କରିବା । ଯଦି ଏ ଶକ୍ତି ଭୋଜନ ନ କରି ନେଉଁଠାରୁ ସହଜରେ ମିଳିଯାଏ, ତେବେ ଉଦରକୁ କାହିଁକି ଅନାବଶ୍ୟକ ବସ୍ତୁରେ ପୂର୍ଣ୍ଣ କରିବା ? ବାସ୍ତବିକ ଆଗାମୀ କାଳ ଉଦରବିହୀନ ହେବେ ।

ଏହା କହି ସେ ମୋତେ ସାମାନ୍ୟ ଫଳ ଖାଇବାକୁ ଦେଲେ । ସେ ଫଳର ସ୍ୱାଦ ମୋର ଏଯାଏଁ ମନେଅଛି । ସେଠାର ବିଦ୍ୟୁତ୍‌ମୟ ବାୟୁ ଦ୍ୱାରା ମୋଠାରେ ଆଶ୍ଚର୍ଯ୍ୟଜନକ ସ୍ଫୂର୍ତ୍ତି ଜାଗ୍ରତ ହୋଇଥିଲା । ଏ ଫଳାହାର ପରେ ମୁଁ ଆକାଶରେ ଉଡ଼ିପାରିବା ଭଳି ଶକ୍ତି ଲାଭ-କଲାପରି ଅନୁଭବ କଲି ।

ତା'ପରେ ସେ ମହାତ୍ମା ମୋତେ ତାଙ୍କ ଗବେଷଣାଗାର ଦେଖାଇବାକୁ ନେଲେ । ଏହା ଏକ ବିଶାଳ ଗୁମ୍ଫା । ସହଜରେ ଅନୁମାନ କରିବା କଠିନ । ଓସାର ୫୦୦ ହାତରୁ କମ୍ ହେବନାହିଁ । ଆମର ଲମ୍ବା ଲମ୍ବା ମିନାର୍ ଭଳି ଉଚ୍ଚ । ବୌଦ୍ଧ ଚିତ୍ରକଳା ତା'ର କାନ୍ଥରେ ବିଦ୍ୟମାନ । ମୁଁ ଅନୁମାନ କଲି ପୂର୍ବକାଳରେ ଏହା କୌଣସି ଏକ ବିହାରଥିଲା । ମହାତ୍ମା ସେଇଠିକି ଗବେଷଣାଗାର କରିଛନ୍ତି ।

ସେଠାରେ ପାଦରଖି ମୁଁ ଅନ୍ୟ ଏକ ଦୁନିଆରେ ପ୍ରବେଶ କଲାଭଳି ଅନୁଭବ କଲି । ହଠାତ ସେଠି ମୁଁ ଦେଖିଲି ଜେନିଭା ସହର । ଜେନିଭାର ଏକ କୋଠାରେ ରାଷ୍ଟ୍ରର ରାଜନୀତିଜ୍ଞମାନେ କୌଣସି ବିଷୟରେ ଆଲୋଚନା କରୁଛନ୍ତି । ତାଙ୍କର କଥାବାର୍ତ୍ତା, ଭାବଭଙ୍ଗୀ ଇତ୍ୟାଦି ପରିଷ୍କାର ଦେଖାଯାଉଥିଲା । ସେମାନଙ୍କ ମୁଖନିର୍ଗତ ପ୍ରତ୍ୟେକ ଶବ୍ଦ ସ୍ପଷ୍ଟ ଶୁଣାଯାଉଥିଲା । ସତେ ଯେପରି ମୁଁ ଜେନିଭା ସହରରେ ଅଛି—ଏପରି ଅନୁଭବ କଲି । ଆଉ ଟିକିଏ ଆଗକୁ ଯାଇ ଶୁଣିଲି ସଙ୍ଗୀତ ଧ୍ୱନି । ୟୁରୋପରେ ଏ ଧ୍ୱନି ମୁଁ ଶୁଣିଥିଲି । ଆଶ୍ଚର୍ଯ୍ୟରେ ମୁଁ ଅଭିଭୂତ ହୋଇଗଲି । ଯେଉଁ ଆବିଷ୍କାର ପାଇଁ ବଡ଼ ବଡ଼ ବିଦ୍ୱାନ୍ କେବଳ

ଆବିଷ୍କାର ମାତ୍ର ଦେଇଥିଲେ, ସେ ସବୁ ଏଠାରେ ପ୍ରତ୍ୟକ୍ଷ ବର୍ତ୍ତମାନ୍ । ଏହି ନିର୍ଜନ ସ୍ଥାନରେ, ଲୋକବସତିରୁ ବହୁ ଦୂରରେ, ଏତେ ଉଚ୍ଚରେ କିପରି ଏ ପ୍ରୟୋଗ ସମ୍ଭବ ହେଲା, ତାହା କେବଳ ଭଗବାନ ଜାଣନ୍ତି । ମହାତ୍ମାମାନେ ତ ଯୋଗ ପ୍ରକ୍ରିୟାରେ କୁଶଳୀ । ଆଧ୍ୟାତ୍ମ ବିଦ୍ୟା ସେମାନଙ୍କର କ୍ଷେତ୍ର । ବିଜ୍ଞାନ ଉପରେ ଏ କିପରି ଆଧିପତ୍ୟ ବିସ୍ତାର କରି ପାରିଲେ ? ମହାତ୍ମା ମୋତେ ଚାହିଁ ହସି ହସି କହିଲେ—ବିଜ୍ଞାନ ଅନ୍ତଃକରଣକୁ ଗୁପ୍ତରଖି ପାରେ ନାହିଁ । ତୁମେ ଏ ସବୁ ଦେଖି ଆଶ୍ଚର୍ଯ୍ୟ ହେଉଛ । କିନ୍ତୁ ଯଥାର୍ଥରେ ବିଜ୍ଞାନ ଯୋଗକୁ ଖୁବ୍ ସରଳ ଓ ସହଜ କରି ଦେଇଛି । ବିଜ୍ଞାନ ବହିର୍ଜଗତରୁ ଏବେ ଅନ୍ତର୍ଜଗତରେ ପ୍ରବେଶ କରୁଛି । ମନଯୋଗର ଜଟିଳ ପ୍ରକ୍ରିୟା ଦ୍ୱାରା ଯେଉଁ ସିଦ୍ଧି ବର୍ଷ ବର୍ଷ ପରେ ପ୍ରାପ୍ତ ହୋଇଥାଏ, ତାହା ଏବେ ମୁହୂର୍ତ୍ତକ ମଧ୍ୟରେ ମିଳିଯାଉଛି । ଏ ସମୟ ମଧ୍ୟ ଦୂରରେ ନାହିଁ—ଆମେ ବିଜ୍ଞାନଦ୍ୱାରା ମୋକ୍ଷ ପ୍ରାପ୍ତ ମଧ୍ୟ କରିପାରିବା ।

ମୁଁ ପଚାରିଲି—ପୂର୍ବ ସମସ୍ତର ଜ୍ଞାନ କ'ଣ କୌଣସି ପ୍ରୟୋଗ ଦ୍ୱାରା ମଧ୍ୟ କରାଯାଇ ପାରିବ ?

ମହାତ୍ମା—ହଁ ହୋଇପାରିବ । କିନ୍ତୁ ତହିଁରେ କିଛି ଉପକାରର ଆଶା ନାହିଁ । ବିଜ୍ଞାନ ଯଦି ପ୍ରାଣୀମାନଙ୍କର ଉପକାର କରି ନ ପାରିବ, ତେବେ ସେ ଲୋପ ହୋଇଯିବା ଉଚିତ । କେବଳ ଜିଜ୍ଞାସାକୁ ଶାନ୍ତ କରିବା, ବିନାଶରେ ଯୋଗଦେବା ଦୁରୁପଯୋଗ ଅଟେ । ମୁଁ ଯଦି ଚାହିଁବି, ଏବେ ଏକ ମୁହୂର୍ତ୍ତରେ ୟୁରୋପ୍‌ର ଯେ କୌଣସି ନଗରକୁ ଧ୍ୱଂସ କରିଦେଇ ପାରିବି । କିନ୍ତୁ ବିଜ୍ଞାନ ପ୍ରାଣରକ୍ଷା ପାଇଁ ଉଦ୍ଦିଷ୍ଟ, ନଷ୍ଟ କରିବା ପାଇଁ ନୁହେଁ ।

ସନ୍ଧ୍ୟା ପର୍ଯ୍ୟନ୍ତ ଗବେଷଣାଗାର ବୁଲି ଦେଖିଲି । ମୁଁ କହିଲି—ଭଗବାନ୍, ଆପଣ ଏ ସବୁ ଯାହା କରିଛନ୍ତି, ସଂସାରର ବିଜ୍ଞାନବେତ୍ତାମାନେ ଏ ସମ୍ପର୍କରେ ଏବେ ସ୍ୱପ୍ନ ମାତ୍ର ଦେଖୁଛନ୍ତି ।

ମହାତ୍ମାଙ୍କ ଉପରେ ମୋ କଥାର ପ୍ରଭାବ ପଡ଼ିଲା—ଯାହା ମୁଁ ଚାହୁଁଥିଲି, ତାହାହିଁ କହିଥିଲି । କେବେ କେବେ ଯଥାର୍ଥତା ମଧ୍ୟ ଖୋସାମତର କାମ କରିଥାଏ । ମହାତ୍ମା ହସି ହସି କହିଲେ—ମୁଁ ଗର୍ବ ତ କରୁନାହିଁ, କିନ୍ତୁ ଏପରି ଗବେଷଣାଗାର ଦୁନିଆଁରେ ନାହିଁ ।

ମୁଁ—ୟୁରୋପୀୟମାନଙ୍କୁ ଆପଣଙ୍କ ଖବର ମିଳିଗଲେ, ସେମାନେ ଆପଣଙ୍କୁ ଆରାମରେ ବସାଇ ଦେବେ ନାହିଁ ।

ମହାତ୍ମା—ମୁଁ ମୋ ଖ୍ୟାତି ବା ଗୌରବର ଉପାସକ ନୁହେଁ । ମୁଁ ବିଜ୍ଞାନର ଉପାସକ । ମୋ ଯାନ ଆକାଶରେ ଯେତେ ଉଚ୍ଚକୁ ଯାଇପାରେ, ୟୁରୋପୀୟମାନେ ତାହା କଳ୍ପନା କରିପାରିବେ ନାହିଁ । ମୁଁ ଶୀଘ୍ର ଚନ୍ଦ୍ରଲୋକ ଯାତ୍ରାରେ ସଫଳ ହେବି—ଏ ବିଶ୍ୱାସ ମୋର ଅଛି ।

ମୁଁ—ସେ ଦିନ ଆମ ପାଇଁ ସୌଭାଗ୍ୟ ଏବଂ ଗର୍ବର ଦିନ ହେବ ।

ମହାତ୍ମା—ପ୍ରାଚୀନ କାଳରେ ମୁନି ଋଷିମାନେ ଯୋଗବଳରେ ତ୍ରିକାଳଦର୍ଶୀ ହୋଇ ପାରୁଥିଲେ । କିନ୍ତୁ ଅନେକ ସମୟରେ ତହିଁରେ ଭ୍ରମ ରହୁଥିଲା । ତା' ସାହାଯ୍ୟରେ କୌଣସି ପ୍ରତ୍ୟକ୍ଷ ପ୍ରମାଣ ମିଳୁ ନ ଥିଲା । ମୁଁ ବୈଜ୍ଞାନିକ ପରୀକ୍ଷା ଦ୍ୱାରା ତହିଁରେ ସିଦ୍ଧି ଲାଭ କରିଛି । ଏ ସମ୍ପର୍କରେ କାହାକୁ କିଛି ନ କହିବା ପାଇଁ ମୁଁ ପ୍ରତିଜ୍ଞା କରିଥିଲି । କିନ୍ତୁ ତୁମ ଉପରେ ମୁଁ ଖୁସିଅଛି । ମୋ ସହିତ ଆସ ।

ମୁଁ ମହାତ୍ମାଙ୍କ ପଛେ ପଛେ ଅନ୍ୟ ଏକ ଗୁମ୍ଫାରେ ପହଞ୍ଚିଲି । ତହିଁରେ ଗୋଟିଏ ମାତ୍ର ଚୌକି ପଡ଼ିଥିଲା । ମହାତ୍ମା ଗମ୍ଭୀର ହୋଇ କହିଲେ ତୁମେ—ଏକଥା ଗୁପ୍ତରଖିବ ଶପଥକର । ମୁଁ ଶପଥ କଲି ।

ମହାତ୍ମା କହିଲେ—ଯଦି କୌଣସି ଧନ କିମ୍ବା ଯଶଲିପ୍ସୁକୁ ଏ ଖବର ମିଳିଯାଏ, ତେବେ ସେ ସଂସାରରେ ଏକ ମହାନ କ୍ରାନ୍ତି ସଙ୍ଗଠିତ କରିଦେବ । ମୋର ଜୀବନ ମଧ୍ୟ ରହିବନାହିଁ । ମୁଁ ମରିଗଲେ ମଧ୍ୟ ଏ ଗୁପ୍ତଜ୍ଞାନ ପ୍ରଚାର କରିବ ନାହିଁ । ତୁମେ ଏହି ଚୌକି ଉପରେ ଆଖି ବନ୍ଦ କରି ବସ ।

ଚୌକି ଉପରେ ବସୁ ବସୁ ମୋ ଆଖି ଝଲସି ଉଠିଲା ଏବଂ ପୂର୍ବ ଜନ୍ମର ଦୃଶ୍ୟ ସମ୍ମୁଖକୁ ଆସିଗଲା । ହଁ ପ୍ରିୟେ, ମୋର ଅତୀତ ଜୀବିତ ହୋଇ ଉଠିଲା । ଏଇ ଭବନ, ସେଇ ମାତା ପିତା । ମୁଁ ପିଲାମାନଙ୍କ ସହିତ ବଗିଚାରେ ପେଣ୍ଡୁ ଖେଳୁଛି । ପୁଣି ଦ୍ୱିତୀୟ ଦୃଶ୍ୟ— ମୁଁ ଗୁରୁଦେବାରେ ବସିଛି, ପାଠ ପଢୁଛି । ତା'ପରେ ଯୁବାବସ୍ଥାର ଦୃଶ୍ୟ ଆସିଲା । ମୁଁ ତୁମ ସହିତ ନୌକାବିହାର କରୁଛି ।

ଦେବପ୍ରିୟା—ଖୁବ୍ ମନେଅଛି ପ୍ରାଣେଶ । ସେ ଦୃଶ୍ୟ ସ୍ପଷ୍ଟ ମନେଅଛି ।

ରାଜକୁମାର—ଯେତେବେଳେ ମୁଁ ଲତାକୁଞ୍ଜ ପାଖ ଘାସ ଉପରେ ବସି ତୁମକୁ ପୁଷ୍ପାଭୂଷଣରେ ଅଲଂକୃତ କରୁଥିଲି, ସେ ଦୃଶ୍ୟ ମନେଅଛି ?

ଦେବପ୍ରିୟା—ହଁ ପ୍ରାଣେଶ, ଠିକ୍ ମନେଅଛି ।

ରାଜକୁମାର—ପଞ୍ଚମ ଦୃଶ୍ୟରେ ମୁଁ ମୃତ୍ୟୁ ଶଯ୍ୟାରେ ପଡ଼ିଛି । ପିତାମାତା ମୁଣ୍ଡ ପାଖରେ ବସିଛନ୍ତି । ତୁମେ ମୋ ପାଦରେ ମୁଣ୍ଡରଖି କାନ୍ଦୁଛ—ମନେଅଛି ?

ଦେବପ୍ରିୟା—ହାୟ ପ୍ରାଣନାଥ, ସେ ଦୃଶ୍ୟ ଭୁଲି ହେବ ନାହିଁ ।

ରାଜକୁମାର—ତା'ପରେ ସବୁ କିଛି ଅନ୍ତର୍ହିତ ହୋଇଗଲା । ମୋ ଆଖି ଖୋଲି ହୋଇଗଲା । ମୁଁ ତାଙ୍କୁ ପଚାରିଲି—ମହାତ୍ମା, ମୋର ପିତାମାତା କ'ଣ ବଞ୍ଚିଛନ୍ତି ? ସେ ଆଖି ବନ୍ଦକରି ଚିନ୍ତାକଲେ ଏବଂ କହିଲେ—ସେମାନେ ଝୁରି ଝୁରି ଦେହତ୍ୟାଗ କରିସାରିଲେଣି ।

ମୁଁ—ମୋ ସ୍ତ୍ରୀ ?

ମହାତ୍ମା—ସେ ବର୍ତ୍ତମାନ ଜୀବିତ ।

ମୁଁ—କେଉଁଠାରେ ?

ମହାତ୍ମା—କାଶୀ ନିକଟସ୍ଥ ଜଗଦୀଶପୁରରେ । କିନ୍ତୁ ତୁମେ ସେଠାକୁ ଯିବା ଠିକ୍ ହେବନାହିଁ, ଗଲେ ତାହା ଭଗବାନଙ୍କ ଇଚ୍ଛାବିରୁଦ୍ଧ ହେବ ।

ଯେତେବେଳେ ମୁଁ କିଛି କହିଲି ନାହିଁ । କିନ୍ତୁ ମୁଁ ତୁମକୁ ସାକ୍ଷାତ୍ କରିବା ପାଇଁ ଦୃଢ଼ ସଂକଳ୍ପ କଲି । ସେଠାରେ ରହିବାକୁ ଆଉ ଭଲ ଲାଗିଲାନାହିଁ । ତୃତୀୟ ଦିନ ମହାତ୍ମାଙ୍କୁ ବିଦାୟ ମାଗିଲି । ଆସିବା ସମୟରେ ସେ ବଳ ଓ ବୟସକୁ ଇଚ୍ଛା ଅନୁସାରେ ବୃଦ୍ଧି କରିବା ପ୍ରକ୍ରିୟା ବତାଇ ଦେଲେ । ମୋତେ ଆଲିଙ୍ଗନ କରି ଗୋଟିଏ ଯାନରେ ବସାଇ ଦେଲେ । ସେ ଯାନ ମନକୁ ମନ ହରିଦ୍ୱାରରେ ମୋତେ ଓହ୍ଲାଇ ଦେଇ ଫେରିଗଲା । ଏହା ଥିଲା ସେ ଯାନର ବିଶେଷତ୍ୱ । ହରିଦ୍ୱାରରୁ ମୁଁ ସିଧା ହର୍ଷପୁର ପହଞ୍ଚିଲି । ଏକ ସପ୍ତାହ ପିତାମାତାଙ୍କ ସେବାରେ ରହି ଏଠାକୁ ଆସିଲି । ତୁମ ସହ ସାକ୍ଷାତ କରିବା ପୂର୍ବରୁ ଏଠାରେ ଏଣେତେଣେ ବୁଲିଲି । ଦୁ' ତିନି ଜଣ ପୁରୁଣା ସାଙ୍ଗଙ୍କୁ ଦେଖିଲି । କିନ୍ତୁ ସେମାନଙ୍କୁ କିଛି କହିଲି ନାହିଁ । ଅକସ୍ମାତ୍ ତୁମ ସହିତ ପାର୍କରେ ସାକ୍ଷାତ୍ ହୋଇଗଲା । ତୁମକୁ ଦେଖି ମନର ଦଶା ଯାହାହେଲା, ଭାଷାରେ ବ୍ୟକ୍ତ କରିହେବନାହିଁ । ମହାତ୍ମାଙ୍କର ଅନ୍ତିମ ଶବ୍ଦ ଭୁଲିଯାଇ ଏଠାକୁ ସାକ୍ଷାତ କରିବାକୁ ଆସିଗଲି ।

ଦେବପ୍ରିୟା କାନ୍ଦି କାନ୍ଦି କହିଲେ—ପ୍ରାଣନାଥ, ଆପଣଙ୍କ ଦର୍ଶନରେ ମୋ ହୃଦୟ ଗଦ୍‌ଗଦ ହୋଇଯାଉଛି । ସ୍ୱାମୀ, ଆପଣଙ୍କ ଚରଣ ସ୍ପର୍ଶ କରିବା ଯୋଗ୍ୟ ମୁଁ ନୁହେଁ । କିନ୍ତୁ ଯେତେଦିନ ବଞ୍ଚିଥିବି, ସେତେଦିନଯାଏଁ ଆପଣଙ୍କ ମୂର୍ତ୍ତି ହୃଦୟରେ ଧାରଣ କରିଥିବି ।

ରାଜକୁମାର—ପ୍ରିୟେ, ବିବାହ ସମ୍ବନ୍ଧ ଦେହ ସହ ନୁହେଁ, ଆତ୍ମା ସହ ଜଡ଼ିତ । ଆତ୍ମା ଅନନ୍ତ ଏବଂ ଅମର । ବର୍ତ୍ତମାନ ତୁମେ ମୋ ସହିତ ଯିବାରେ କିଛି ଆପତ୍ତି ଅଛି ?

ଦେବପ୍ରିୟା ରୁଦ୍ଧ କଣ୍ଠରେ କହିଲେ—ପ୍ରାଣନାଥ, ଆପଣ ମୋତେ ଏ ପ୍ରଶ୍ନ କରୁଛନ୍ତି କାହିଁକି ! ଆପଣଙ୍କୁ ଛାଡ଼ି ମୁଁ ଆଉ କାହା ଆଶ୍ରାରେ ରହିବି ! ଏ ଶୁଭ ଅବସର ଏ ଜୀବନରେ ମିଳିବ ବୋଲି ତ ମୁଁ କଳ୍ପନା ସୁଦ୍ଧା କରିନଥିଲି ।

ରାଜକୁମାର ରାଣୀଙ୍କୁ ଆଲିଙ୍ଗନ କରି କହିଲେ—ଏହା ଆମର ପୁନର୍ମିଳନ ।

ଦେବପ୍ରିୟା—ନା ପ୍ରାଣନାଥ, ମୁଁ ଏହାକୁ ପ୍ରେମ-ମିଳନ ମନେକରେ ।

ରାଣୀ ମନେ ମନେ ଚିନ୍ତା କଲେ; ମୋ ଭଳି ବୃଦ୍ଧା ଏ ଦେବଦୁର୍ଲଭ ରୂପର ଯୋଗ୍ୟ ନୁହେଁ । ଏବେ ଦୟାପରବଶ ହୋଇ ମୋତେ ଉଦ୍ଧାର କରିଦେ । କିନ୍ତୁ ମୁଁ ରାଣୀମହଲରେ ଯୁବତୀମାନଙ୍କ ମଧ୍ୟରେ ଏ ଅବସ୍ଥା ନେଇ ରହିବି କିପରି ! ରାଜକୁମାର ରାଣୀଙ୍କର ଏ ମନୋଭାବକୁ ବୁଝିପାରି କହିଲେ—ପ୍ରିୟେ, ତୁମ ମନରେ ସନ୍ଦେହ ହେବା ସ୍ୱାଭାବିକ । କିନ୍ତୁ ସେ ସନ୍ଦେହ କର ନାହିଁ । ମୁଁ ବିଳାସର ଦାସ ହୋଇଥିଲେ ତୁମ ପାଖକୁ ଆସି ନ ଥା'ନ୍ତି । ରୂପ ସୌନ୍ଦର୍ଯ୍ୟର ମୂଲ୍ୟ ମୁଁ ଜାଣେ । ତା' ପ୍ରତି ମୋର ଆକର୍ଷଣ ନାହିଁ । ହଁ,

ମୁଁ ତୁମ ସନ୍ତୋଷ ପାଇଁ ମହାତ୍ମାଙ୍କ ବତେଇଥିବା କିସ୍ମା ପ୍ରୟୋଗ କରିବି । ମୋର ବିଶ୍ୱାସ ମଉଳି ଯାଇଥିବା ଫୁଲ ପୁଣି ସତେଜ ହୋଇ ଉଠିବ । କିନ୍ତୁ ତୁମକୁ ମଧ୍ୟ ମୋ ପାଇଁ କିଛି ତ୍ୟାଗ କରିବାକୁ ପଡ଼ିବ । ସମ୍ଭବତଃ ଏ ରାଜମହଲ, ଏ ବସ୍ତ୍ର-ଆଭୂଷଣ···

ଦେବପ୍ରିୟା—ଆପଣଙ୍କ ବ୍ୟତୀତ ମୋର ଅନ୍ୟ ଇଚ୍ଛା ନାହିଁ ।

ରାଜକୁମାର—ତେବେ ମୁଁ ଆଜି ଯାଉଛି । କାଲି ସନ୍ଧ୍ୟାରେ ପୁଣି ଆସିବି । ଏ ମଧ୍ୟରେ ତୁମେ ପ୍ରସ୍ତୁତ ହୁଅ ।

ଦେବପ୍ରିୟା—ମୁଁ ଏଇ ମୁହୂର୍ତ୍ତରେ ଆପଣଙ୍କ ସହ ଯିବି । ଆପଣଙ୍କୁ ମୁଁ ଛାଡ଼ିବି ନାହିଁ ।

ରାଜକୁମାର—ଏ ଭଳି ଗଲେ ଲୋକେ ସନ୍ଦେହ କରିବେ । ମୋର ପୁନର୍ଜନ୍ମ କଥା କେହି ବିଶ୍ୱାସ କରିବେ ନାହିଁ । କୁତ୍ସିତ ପ୍ରେମ ପାଇଁ ଏ ଏକ କୌଶଳ ବୋଲି କହିବେ । ତୁମେ ତୀର୍ଥଯାତ୍ରା କରୁଛ ବୋଲି କହି···

ରାଣୀ କହିଲେ—ମୋତେ ଲୋକ ନିନ୍ଦାର ଭୟ ନାହିଁ । ମୁଁ ମୋ ପ୍ରାଣପତିଙ୍କ ସହ ଯାଉଛି ବୋଲି ସମସ୍ତଙ୍କୁ କହିବି ।

ରାଜକୁମାର ହସି ହସି କହିଲେ—ଯଦି ମୁଁ ତୁମକୁ ଦଗାଦିଏ ।

ରାଣୀ ଭୟାତୁର ହୋଇ କହିଲେ—ପ୍ରାଣନାଥ, ଏପରି କଥା କହ ନାହିଁ । ମୁଁ ନିଜକୁ ଆପଣଙ୍କ ଚରଣରେ ଅର୍ପଣ କରି ସାରିଛି । କିନ୍ତୁ କୁସଂସ୍କାରରୁ ମୁକ୍ତ ହୋଇନାହିଁ । ରାତି ବହୁତ ହେଲାଣି । ଆପଣ ବିଶ୍ରାମ କରନ୍ତୁ । ମୁଁ ଏବେ କୁମାର ବିଶାଳସିଂହଙ୍କୁ ତାଙ୍କ ରାଜ୍ୟ ସମ୍ଭାଳିବା ପାଇଁ ସୂଚନା ଦେଇ ଦେଉଛି । କାଲି ପ୍ରାତଃକାଳରେ ଆପଣଙ୍କ ସହ ଯିବାପାଇଁ ପ୍ରସ୍ତୁତ ହୋଇଯିବି ।

ଏହା କହି ରାଣୀ ରାଜକୁମାରଙ୍କ ପାଇଁ ଭୋଜନର ବ୍ୟବସ୍ଥା କରିବାକୁ ଆଦେଶ ଦେଲେ । ରାଜକୁମାର ଖାଇବସିଲେ ଏବଂ ରାଣୀ ପଙ୍ଖାଧରି ବସିଲେ । ଏଭଳି ସ୍ୱର୍ଗୀୟ ଆନନ୍ଦ ତାଙ୍କୁ କେବେ ମିଳି ନଥିଲା । ରାଜକୁମାର ଶୋଇବାକୁ ଗଲେ । ରାଣୀ ବିଶାଳସିଂହଙ୍କ ପାଖକୁ ଚିଠି ଲେଖିଲେ ।

କୁମାର ବିଶାଳସିଂହ !

ଏତେ ଦିନ ଯାଏଁ ମାୟାଜାଲରେ ବାନ୍ଧି ହୋଇ ମୋର ଚକ୍ଷୁ ସଂସାର ପ୍ରତି ବିରକ୍ତ ହୋଇଛି । ମୁଁ ତୀର୍ଥଯାତ୍ରାକୁ ଯାଉଛି । ସମ୍ଭବତଃ ଆଉ ଫେରିବିନାହିଁ । କୌଣସି ତୀର୍ଥସ୍ଥାନରେ ଶେଷଜୀବନ କଟାଇବି । ଆପଣ ଆସି ଆପଣଙ୍କ ରାଜ୍ୟ ସମ୍ଭାଳନ୍ତୁ । ମୋ ହେତୁ ଆପଣ ବହୁତ କଷ୍ଟ ପାଇଛନ୍ତି, ଏଥି ନିମିତ୍ତ ମୁଁ ଦୁଃଖିତ । ଆପଣ ମୋ ପ୍ରତି ଯେଉଁ ଅନ୍ୟାୟ କରିଛନ୍ତି, ସେ ସବୁକୁ ମୁଁ କ୍ଷମା ଦେଉଛି । ମାୟାନ୍ଧ ହୋଇ ଅମ୍ଭେମାନେ ଏପରି ସବୁ କରିଥାଉଁ । ମୋର ଆପଣଙ୍କୁ ପ୍ରାର୍ଥନା, ମୋର ସେବକ ସେବିକା ମାନଙ୍କ ପ୍ରତି ଦୟା କରିବେ । ମୁଁ ନିଜ

ସହିତ କିଛି ଜିନିଷ ନେଉନାହିଁ । ଈଶ୍ୱରଙ୍କୁ ମୋର ପ୍ରାର୍ଥନା, ସେ ଆପଣଙ୍କୁ ସଦ୍‌ବୁଦ୍ଧି ଦିଅନ୍ତୁ ଏବଂ ଆପଣଙ୍କର କୀର୍ତ୍ତି ଦେଶ ବିଦେଶରେ ବ୍ୟାପ୍ତ କରନ୍ତୁ ।

ଆପଣଙ୍କର

ଦେବପ୍ରିୟା

ଏପତ୍ର ଲେଖି ଟେବୁଲ ଉପରେ ରଖି ଭାବିଲେ—ମୁଁ ନିଜର ରାଜ୍ୟ ଛାଡ଼ିଦେବି କାହିଁକି ! ମୁଁ ହର୍ଷପୁରରେ ରହି ମଧ୍ୟ ଗୁହ୍ୟାପୂଜା କରିପାରିବି । ବର୍ଷ ମଧ୍ୟରେ ମାସେ ଦି' ମାସେ କ'ଣ ଆସି ହେବନାହିଁ ! ଯାଇ ପ୍ରାଣନାଥଙ୍କୁ ପଚାରେ । ଏହା ଭାବି ସେ ରାଜକୁମାରଙ୍କ ଦୁଆରଯାଏଁ ଆସିଲେ । କିନ୍ତୁ ଭିତରକୁ ପାଦ ପକାଇ ପାରିଲେ ନାହିଁ । ଭାବିଲେ—ସେ ଭାବିବେ, ତୃଷ୍ଣାର ପ୍ରଭାବରେ ଆସିଛି । ଫେରି ଆସିଲେ ।

ରାତି ଦୁଇଟା ହୋଇଗଲା । ଦେବପ୍ରିୟା ଯାତ୍ରା ପାଇଁ ପ୍ରସ୍ତୁତ ହେଲେ । କ'ଣ କ'ଣ ଜିନିଷ ସଙ୍ଗରେ ନେବେ ଚିନ୍ତାକଲେ । ପ୍ରଥମେ ବସ୍ତ୍ରାଗାରକୁ ଗଲେ । କାଚ ଆଲମିରା ଭିତରେ ବିଭିନ୍ନ ପ୍ରକାର ଅତି ମୂଲ୍ୟବାନ ବସ୍ତ୍ର ରଖାଯାଇଥିଲା । ତନ୍ମଧ୍ୟରୁ ନିଜର ସୁହାଗ-ଶାଢ଼ୀ ବାହାର କଲେ । ୨୫ ବର୍ଷ ତଳେ ସେ ତାକୁ ପିନ୍ଧିଥିଲେ । ତାର ଶୋଭା ଏବେ ମଧ୍ୟ ସେହିପରି ଅଛି ।

ତା'ପରେ ଆଭୂଷଣ କୋଠରୀରେ ପହଞ୍ଚିଲେ । ଏହି ଅଳଙ୍କାରକୁ ସେ ଜୀବନଠାରୁ ଅଧିକ ଭଲ ପାଉଥିଲେ । କିନ୍ତୁ ଏବେ ସେ ସବୁକୁ ଛୁଇଁବାକୁ ଭୟ ଲାଗିଲା । ତନ୍ମଧ୍ୟରୁ ସେ ରତ୍ନଜଡ଼ିତ ପେଟିକାଟିକୁ କେବଳ ଆଣିଲେ । ଏଇ ୨୫ ବର୍ଷ ମଧ୍ୟରେ ସେ ଲକ୍ଷ ଲକ୍ଷ ଟଙ୍କା ଏହି ପେଟିକା ପାଇଁ ଖର୍ଚ୍ଚ କରିଛନ୍ତି । ଏ ଲୋଭ ସେ ସମ୍ବରଣ କରିପାରିଲେ ନାହିଁ ।

ସେ ଆଜି ନିଜ କୋଠରୀରେ ବସିଛନ୍ତି, ଗୁଜୁରାତୀ ଆସି ପହଞ୍ଚିଲା । ଦେବପ୍ରିୟା ପଚାରିଲେ—ଏଯାଏଁ ଶୋଇନୁ !

ଗୁଜୁରାତୀ—ସରକାର ତ ଶୋଇନାହାନ୍ତି, ମୁଁ କିମିତି ଶୋଇବି !

'ମୁଁ ତ କାଲି ତୀର୍ଥଯାତ୍ରା କରିବାକୁ ଯାଉଛି ।'

'ମୋତେ ସଙ୍ଗରେ ନିଅନ୍ତୁ ।'

'ନା, ମୁଁ ଏକାକୀ ଯିବି । କେବେ ଫେରିବି କିଛି ହେବନାହିଁ ।'

ସହସା କୋଇଲି, କୁମ୍ଭାଟୁଆ ସ୍ୱର ଶୁଣାଗଲା । ଉଷାର ସ୍ନିଗ୍ଧ, ମଧୁର, ସଙ୍ଗୀତମୟ ଆଭା ଦୃଷ୍ଟିଗୋଚର ହେଲା । ରାଜକୁମାର ଉଠି ଦୁଆରେ ଆସି ଠିଆ ହୋଇଗଲେ ।

ରାଣୀ—ମୁଁ ପ୍ରସ୍ତୁତ ।

ରାଜକୁମାର—ମୋର ଆନ୍ତରିକ ଇଚ୍ଛା—ଏଇଠି ତୁମରି ଉପାସନାରେ ଜୀବନ କଟାଇ ଦିଅନ୍ତି । ଆଶାତୀତ ଫଳ ମୋତେ ମିଳି ପାରିଛି ।

ଅଧ ଘଣ୍ଟେ ମଧ୍ୟରେ ରାଜକୁମାର ନିତ୍ୟକର୍ମ ଶେଷ କଲେ । ମୋଟର୍ ପ୍ରସ୍ତୁତ ଥିଲା । ଉଭୟେ ଯାଇ ବସିଲେ । ରାଣୀ କରୁଣ ଦୃଷ୍ଟିରେ ଉଭୟ ଆଡ଼କୁ ଚାହିଁଲେ । ହର୍ଷ ଓ ଶୋକ, ଆଶା ଓ ନିରାଶା, ମମତା ଓ ବିରାଗର ଏକ ବିଚିତ୍ର ସମାବେଶ !

ଘରର ଚାକର, ଚାକରାଣୀ, ସିପାହୀ, ପିଅଦା ସଜଳ ନେତ୍ରରେ ଠିଆ ହୋଇଥିଲେ । ମୋଟର୍ ଚାଲିଗଲା ।

( ୧୦ )

ମୁନ୍‌ସୀ ବଜ୍ରଧର ବିଶାଳସିଂହଙ୍କ ପାଖରୁ ଫେରି ତାଙ୍କର ପ୍ରଶଂସା ଗାଇବାରେ ଶତମୁଖ ହୋଇଗଲେ । ମାଲିକ ହେବ ତ ଏଇଭଳି । କେଡ଼େ ଭଦ୍ର ! ପ୍ରଜାଙ୍କ ପାଇଁ ଜୀବନ ଦେବାକୁ ବଳେ ହେଲେ କୁଣ୍ଠିତ ନୁହନ୍ତି । ପ୍ରଜାଙ୍କୁ ବେଠି ଖଟେଇବା ଶୁଣି କାନ୍ଧ ଥରେଇଲେ । ତାଙ୍କ ଶାସନରେ ପ୍ରଜାବୃନ୍ଦ ଆନନ୍ଦରେ ରହିବେ । ଏ ପ୍ରଶଂସା ଶୁଣି ଚକ୍ରଧରଙ୍କର ତାଙ୍କ ପ୍ରତି ଶ୍ରଦ୍ଧା ଜାତ ହେଲା । ସମିତିରେ ତାଙ୍କୁ ସଭ୍ୟ ରୂପେ ଗ୍ରହଣ କଲେ । କୁମାର ସାହେବ ସଭାରେ ଭାଗ ନେଲେ । କୁମାର ସାହେବଙ୍କ କୃଷ୍ଣାଷ୍ଟମୀ ଉତ୍ସବରେ ଚକ୍ରଧର ତାଙ୍କ ସହଯୋଗୀମାନଙ୍କ ସହ ଯୋଗ ଦେଲେ ।

କୁମାର ସାହେବ ଜଣେ କୃଷ୍ଣ ଭକ୍ତ । ଜନ୍ମାଷ୍ଟମୀ ବଡ ଧୁମ୍‌ଧାମ୍‌ରେ ପାଳନ କରନ୍ତି । ତାଙ୍କ ପତ୍ନୀମାନଙ୍କ ମଧ୍ୟରେ ଏ ବିଷୟରେ ମତଭେଦଥିଲା । ରୋହିଣୀ କୃଷ୍ଣ ଉପାସକ, ବସୁମତୀ ରାମଭକ୍ତ । ରାମପ୍ରିୟା ବ୍ରତଫ୍ରତ କିଛି ମାନନ୍ତି ନାହିଁ—ଏ ବ୍ରତ ଖାଲି ଦେଖେଇହବା ପାଇଁ । ମନ ଶୁଦ୍ଧ ହେଲେ, ସେଇହିଁ ବଡ଼ ଭକ୍ତ । ମନରେ ଯଦି ରାଗଦ୍ୱେଷ ପୂରି ରହିଛି—ବ୍ରତରେ ମୂଲ୍ୟ କ'ଣ !

ସନ୍ଧ୍ୟା ସମୟ । ବାହାରେ କମ୍ବଳ ବିଛାଯାଇଛି, ଲାଇଟ୍ ଲାଗିଛି । ଚକ୍ରଧର ନିଜର ସହଯୋଗୀମାନଙ୍କୁ ନେଇ ବସିଛନ୍ତି । ସଙ୍ଗୀତଦଳ ଗୀତଗାଇବା ଆରମ୍ଭକରିବାକୁ ଯାଉଛନ୍ତି, ଏହି ସମୟରେ ବସୁମତୀ ଓ ରୋହିଣୀଙ୍କ ମଧ୍ୟରେ କଳି ଆରମ୍ଭ ହୋଇଗଲା । ଏ ଆଡ଼ମ୍ବର ବସୁମତୀ ସହିପାରନ୍ତି ନାହିଁ । ତାଙ୍କ ରାମନବମୀ ଉତ୍ସବରେ କିଛି ନାହିଁ । ଜନ୍ମାଷ୍ଟମୀରେ ଆଡ଼ମ୍ବରର ସୀମା ନାହିଁ ! ଏ ଉତ୍ସବ କୃଷ୍ଣଭକ୍ତ ପାଇଁ ନୁହେଁ, ବିଶାଳସିଂହଙ୍କର ରୋହିଣୀ ଭକ୍ତ ପାଇଁ ଉଦ୍ଦିଷ୍ଟ ବୋଲି ସେ ମନେ କରନ୍ତି । ଏଣେ ରୋହିଣୀ ଅପୂର୍ବ ବେଶଭୂଷା ହୋଇ ବସୁମତୀଙ୍କୁ ଚଢ଼େଇବା ପାଇଁ ନିଜେ ମନକୁମନ ଗୀତ ବୋଲନ୍ତି । ବସୁମତୀ ରାଗରେ ଜଳି ଉଠନ୍ତି । ଏ ଆଡ଼ମ୍ବରକୁ ଧ୍ୱଂସ କରିବା ତାଙ୍କର ଇଚ୍ଛା । ଗୋଟାଏ ବାହାନା ମିଳିଗଲା ।

ବାସନଯାକ ସବୁ ଏଇ କାମରେ ଲାଗିଥିଲା । ବସୁମତୀ ଦାସୀ ହାତରେ ରୋହିଣୀ ପାଖକୁ ଖବର ଦେଲେ—ଦୁଇଟା ଥାଳି, ଦୁଇଟା ଲେଖାଏଁ ବେଲା, ଗିନା, ଥାଳିଆ, ଢାଳ ଜଲ୍‌ଦି ପଠା । ତମର ସୁନାଯାକ ଏ ପାଳି ଲାଗିବ ଯେ କିଏ ଗୁଣ୍ଠି ବସିଥିବ ! ରୋହିଣୀ ଦାସୀକୁ ତମତମ ହୋଇ କହିଲେ—ଆଜି ଏଡ଼େ ବେଗି ଲୋକ ଲାଗିଗଲା ! ସବୁଦିନ ତ ରାତି ଅଧଯାଏଁ ବସିରହନ୍ତି, ଆଜି ଏଇ ଆଠଟା ବେଳୁ ଲୋକ ! ଯଦି ଅସମ୍ଭାଳ ହଉଚି—ତେବେ କୁମ୍ଭାର ଘରୁ ହାଣ୍ଡି ମଗେଇ ଆଣି ବେଢ଼େଇ କର । ବାସନ ଦିଆଯିବ ନାହିଁ ।

ବସୁମତୀ ଏହା ଶୁଣି ଅଗ୍ନିଶର୍ମା । ପିଲାର ଉତ୍ସବ ପାଳନ ପାଇଁ ଏଡ଼େ ମନ, ନୂଆ ବାସନ କିଣି ଆଣୁନାହିଁ ! କୃଷ୍ଣଙ୍କୁ କହିଦେଉଛି ଗାଡ଼ିଏ ବାସନ ପଠେଇ ଦିବ । କ'ଣ ଜବରଦସ୍ତି ଅନ୍ୟମାନଙ୍କୁ ଲୋକରେ ମାରିବ !

ରୋହିଣୀ ରାଗେଇ ଘରୁ ବାହାର ପଡ଼ି କହିଲେ—ଭଉଣୀ, ମୁହଁ ସମ୍ଭାଳି କଥାବାର୍ତ୍ତା କର । ଦେବତାମାନଙ୍କୁ ଅପମାନ ଦେବା ଭଲ ନୁହେଁ ।

ବସୁମତୀ—ଅପମାନ ତ ତୁ କରୁଚୁ । ବ୍ରତ ଦିନରେ ଅଳଙ୍କାର ବେଶ ଭୂଷାରେ ମଣ୍ଡି ହୋଇ ଟହଲ ମାରୁଛୁ । ଦେବତା ରଙ୍ଗ ରୂପ ଦେଖନ୍ତି ନାହିଁ, ଦେଖନ୍ତି ଭକ୍ତି ।

ରୋହିଣୀ—ମୋ ବେଶଭୂଷାରେ ଅନ୍ୟର କାହିଁକି ଆଖି ଫୁଟିଯାଉଛି ! ଭଗବାନ ଶ୍ରୀକୃଷ୍ଣଙ୍କ ଜନ୍ମଦିନରେ ପିନ୍ଧିବିନାହିଁ ତ କ'ଣ ମୁଣ୍ଡରେ ହାତଦେଇ କାନ୍ଦିବି ! କଳି କରିବା ପାଇଁ କାହିଁକି ଅଣ୍ଟାଭିଡ଼ି ବାହାରି ଆସୁଛ ! ଭଗବାନ ମୋତେ ପଛେ ସବୁ ଦୁଃଖ ଦିଅନ୍ତୁ—କିନ୍ତୁ ଏଠାର କୁସଙ୍ଗ ଦିଅନ୍ତୁ ନାହିଁ । ଏ ଶାଢ଼ି ଗହଣା ଯଦି ଦିହ ସହୁନାହିଁ—ପିନ୍ଧିବି ନାହିଁ । ମହିମ୍ଷଙ୍କୁ କହିଲେ—ଆଲୋ ଯା' କହିଦେ, ଝିଅ ମିଠେଇ ଗୁଡ଼ିଆ ଡକେଇ ଢଆରି କରନ୍ତୁ ।

ଏହା କହି ରୋହିଣୀ ତମ ତମ ହୋଇ ନିଜ କୋଠରୀକୁ ଯାଇ ଶାଢ଼ି ଗହଣା ସବୁ ଫିଙ୍ଗି ଦେଲେ ଓ ମୁହଁମାଡ଼ି ପଲଙ୍କ ଉପରେ ପଡ଼ିରହିଲେ । ଠାକୁର ସାହେବ ଘଟଣା ଶୁଣି ମୁଣ୍ଡରେ ହାତ ଦେଇ କହିଲେ—ଆଜିର ଏ ଶୁଭ ଉତ୍ସବରେ ଏ ଚଣ୍ଡାଳୁଣୀଗୁଡ଼ାକ ଟିକିଏ ଶାନ୍ତିରେ ରହିପାରୁନାହାନ୍ତି ! ଏ ଭଳି ଜୀବନ ଅପେକ୍ଷା ମୃତ୍ୟୁ ଭଲ । ଭିତରକୁ ଯାଇ ରୋହିଣୀଙ୍କୁ କହିଲେ—ତୁମେ ମୁହଁ ଘୋଡ଼େଇ ହୋଇ ଶୋଇଲ, ମିଠା ଢଆରି କରିବ କିଏ ! ରୋହିଣୀ ସେମିତି ପଡ଼ିରହି ଉତ୍ତର ଦେଲେ—ଏ କାନ ହେଲେ ପୋଡ଼ି ଯାଆନ୍ତା କି ଗହଣା ଲଗାଇବାରୁ ଉଦ୍ଧାର ମିଳନ୍ତା । ଘରବାଲିଙ୍କର ଛାତି ଅଉ ଫାଟି ଯାଆନ୍ତା ନାହିଁ ।

ବିଶାଳସିଂହ—ତୁମକୁ ତ ବାରମ୍ବାର କହିଚି ତା' ସାଙ୍ଗରେ ଲାଗନି । ଗୋଟେ ଚୂପ୍‌ରେ ଶହେ ବକ୍ତା ହାରିବେ । ତୁମଠୁ ତ ସିଏ ବଡ଼ । ଟିକିଏ ସମ୍ଭାଳିଗଲେ ହୁଅନ୍ତା ନାହିଁ ।

ରୋହିଣୀ—ହଉ ଥାଉ ଥାଉ । ଆଉ କଟା ଘାଆରେ ଲୁଣ ଦିଅନି । ମତେ ଖାଲି ଉପଦେଶ ଦେଇ ଜାଣ । ତୁମେ ତାକୁ ମୁହଁ ଦେଉଚ । ତାକୁ କହିବାକୁ କଲିଜା କମ୍ପି ଯାଉଛି । ତୁମେ ବହିପ ନ ଦେଇଥିଲେ ସେ ମୋତେ ଆଖି ଦେଖାନ୍ତା !

ବିଶାଳସିଂହ—ମୁଁ କ’ଣ ତାକୁ ଶିଖେଇ ଦେଇଚି ତୁମକୁ ଗାଳି ଦେବାକୁ ।

ରୋହିଣୀ—ଆଉ କ’ଣ କହୁଚ ଯେ ! ଘରେ ଯଦି କେହି ନ୍ୟାୟ କରିବାବାଲା ନାହିଁ, ଏହା ବ୍ୟତୀତ ଆଉ କ’ଣ କୁହାଯିବ ! ତାହାଣୀ ଭଳି ତ ସେ ଘରେ ବସିଚି, ଯାଇ ପଚାରୁନ । ଅନ୍ୟ କେଉଁ ପୁରୁଷ ହୋଇଥିଲେ ଯୋତାରେ କଥାବାର୍ତ୍ତା କରନ୍ତା ।

କୁମାର ସାହେବ ଯେତିକି ଶାନ୍ତ କରିବାକୁ ଚେଷ୍ଟାକଲେ, ରୋହିଣୀଙ୍କ କ୍ରୋଧ ସେତିକି ପଞ୍ଚମକୁ ଉଠିଲା । ବସୁମତୀ ସେପଟେ ବସି ଦୁଇ ପ୍ରାଣୀଙ୍କ ବାର୍ତ୍ତାଳାପ ତନ୍ମୟ ହୋଇ ଶୁଣୁଥିଲେ । ଯେତେ ଯେପରି କୌଣସି ସେନାପତି ଦୁଇପକ୍ଷର ଗତିବିଧି ଅଧ୍ୟୟନ କରୁଛି ।

ମୁହଁ ଶୁଖେଇ ବିଶାଳସିଂହ ଅସୁଥିବାର ଦେଖି ବସୁମତୀ କହିଲେ ହଇହେ, ମୁହଁ ଶୁଖିବାକୁ ବୋଲି କ’ଣ ସ୍ତନ ପକେଇଚ ନା ତୁମ ଝିଅଙ୍କରେ ମୁଁ ଘରର କେହି ନୁହଁ ! ବହୁଦିନ ତ ରାଗି କରି ରହିଲ । କ’ଣ ଜୀବନସାରା ଇମିତି ବିତିଥିବ ! ଏମିତି ମୁହଁ କଣ କରିଚ !

ବିଶାଳସିଂହ—ତୁମେ ଲଗେଇଥିବା ନିଆଁ ଲିଭଉଥିଲି । କିନ୍ତୁ ଏଇଟି ମୋ ହାତ ପୋଡ଼ିଗଲା । ସବୁଦିନ ଏ ପାଲି କାହିଁକି ଲାଗିଉଚ ! ଆଜି ମଲେ କାଲିକି ଦୁ’ଦିନ । ହସି ଖେଳି ଜୀବନ କଟାଇବା ଭଲ କିନା ! ଏ ସବୁ ଦେଖି କୁଅଡ଼େ ଗୁଳିଯିବାକୁ ଇଚ୍ଛା ହେଉଛି ।

ବସୁମତୀ—କୁଅଡ଼େ ପଳେଇବ ନୂଆ ବୋହୂଙ୍କୁ ଛାଡ଼ି ! ନୂଆ ବାହାର ସୁଖ ତ ମିଳିନି ।

ବିଶାଳସିଂହ—ବହୁତ ମିଳିଗଲା । ମନ ବୋଧ ହୋଇଗଲା ।

ବସୁମତୀ—ଯଦି ମନବୋଧ ହୋଇଗଲାଣି, ଆଉ ଗୋଟେ ବାହାହେଇ ପଡ଼ ।

ବିଶାଳସିଂହ—ବାହା ହେଇଥିଲି କ’ଣ ଭୋଗ ବିଳାସ କରିବା ପାଇଁ ! ତୁମଠୁଁ କ’ଣ ବଡ଼ ସୁନ୍ଦରୀଟେ ?

ବସୁମତୀ—ହଉ ହଉ ଆସ, ଶୁଣିଯାଅ ।

ବିଶାଳସିଂହ—ଛାଡ଼ ଛାଡ଼ ଡେ଼ରି ହଉଚି, ବାହାରେ ଭଦ୍ରଲୋକ ସବୁ ବସିଛନ୍ତି ।

ବସୁମତୀ—ଘଣ୍ଟେ କାଳ ବସି ସେଠାରେ ଚକ୍‌କଣିଆ କଥା କହିବାରେ ଡେରି ହେଇଯାଉ ନଥିଲା, ମୁହୂର୍ତ୍ତେ ପାଇଁ ଡେ଼ରି ହେଇଯିବ ।

ଏହା କହି ବସୁମତୀ ଆସି ହାତ ଧରି ନିଜ କୋଠରୀକୁ ନେଇଗଲେ । ପଲଙ୍କ ଉପରେ ବସାଇ କହିଲେ—ମାଇପିମାନଙ୍କୁ ମୁହଁ ଦେଲେ ଏଇ ଫଳ ମିଳେ । ଫିମ୍ପୁଡ଼ି ହେଇ ରୁଖା ଉପରେ ଚଢ଼ିବାକୁ ଯାଉଛି । ପଡ଼ିରହୁ, ଚାରି ଆଠଦିନ ସେମିତି ପଡ଼ିରହିଲେ ଠିକ୍ ବାଟକୁ ଆସିଯିବ । ଜଗତର ନିୟମ ହଉଚି—ଲୁହାକୁ ଲୁହା କାଟେ । କୁମ୍ଭୀର ସହିତ କୁମ୍ଭୀର ହେଲେ ଠିକ୍ କାମ ଦବ । ଗୋସ୍ୱାମୀ ତୁଳସୀଦାସଙ୍କ ନାରୀମାନଙ୍କ ସମ୍ବନ୍ଧରେ ଯାହା ଲେଖିଥିଲେ ତାହା ବିଲ୍‌କୁଲ ଠିକ୍ ।

ବିଶାଳସିଂହ—ସିଏ ତ ସେଠାରେ ପଲଙ୍କରେ ପଡ଼ିରହିଲା, ତେଣେ ଭୋଗ ପାଇଁ ସବୁ ମିଠା ତିଆରି ହେବ କିପରି !

ବସୁମତୀ—ତେବେ କ'ଣ ସେଇଁଠି କୁଲୁଡ଼ା ନାହାନ୍ତି, ସେଠାରେ ସକାଳ ହୁଏ ନାହିଁ । ସିଏ ନ ଥିଲା ବେଳେ କଣ ଜନ୍ମାଷ୍ଟମୀ ଉତ୍ସବ ପାଳନ ହଉ ନ ଥିଲା ! ଏମିତି କୋଉ ବଡ଼ କାମଟେ ସେ ! ମୁଁ ତିଆରି କରି ଦଉଚି ।

ବିଶାଳସିଂହ—ବାଃ, ତୁମ କଥା ଶୁଣି ମୋ ପିଣ୍ଡରେ ପ୍ରାଣ ପଶିଲା ଜାଣ । କୁଳବତୀ ସ୍ତ୍ରୀମାନଙ୍କର ଏଇ ସିନା ଧର୍ମ । ଆଜି ତୁମେ ଯେଉଁ ଶାଢ଼ି ପିନ୍ଧିଛ ସିଏ ତ ତମ ବୟସ ବହୁତ କମେଇ ଦେଇଛି । କବିମାନେ ସତ କହିଛନ୍ତି ପତ୍ନୀ—ଯୌବନ ପ୍ରୌଢ଼ ହେଲେ ଚମକି ଉଠେ । ଚନ୍ଦ୍ରର ପୂର୍ଣ୍ଣତା ତ ପୂର୍ଣ୍ଣିମୀରେ ।

ବସୁମତୀ—ଖୁସାମଦ କରିବାଟା ତୁମଠୁ ସମସ୍ତେ ଶିଖିବା କଥା ।

ବିଶାଳସିଂହ—ହଉ ଯାଅ ଯାଅ, ଯାହା ଜିନିଷ କମ ହେବ, ମଗେଇ ନବ ।

ବିଜୟ ଗର୍ବରେ ଫୁଲି ଉଠି ବସୁମତୀ ଅଧିଗୃହ ଯାଇଁ ବିଭିନ୍ନ ପ୍ରକାର ଜିନିଷ ତିଆରି କରିବାକୁ ଲାଗିଲେ । କେତେବର୍ଷ ହେଲା ଅନୁଷ୍ଠାନ ହୋଇ ନ ଥିବା କୃଷ୍ଣଭକ୍ତିକୁ ସେ ହିଁ ଜାଗ୍ରତ କରିଦେଲା । ବସୁମତୀ ଏ ସବୁ କାମରେ ନିପୁଣା । ରୋହିଣୀ ଯେଉଁ କାମକୁ ଦିନସାରା ଲାଗିବେ, ବସୁମତୀ କେତେ ଘଣ୍ଟା ମଧ୍ୟରେ ଏହା ଶେଷ କରିଦେବେ । ରାମପ୍ରିୟା ଯାଙ୍କୁ ଖୁବ୍ ବ୍ୟସ୍ତଥିବାର ଦେଖି ଆସି ଯୋଗଦେଲେ ।

ବିଶାଳସିଂହ ଗୀତ ଶୁଣିବାକୁ ଗଲେ । କିନ୍ତୁ ମନ ଲାଗିଲାନି । ଫେରିଆସି ବୈଠକଖାନା ଘର ଦୁଆରେ ଚୌକି ପକେଇ ବସିରହିଲେ । ତାଙ୍କର ଭୟ ରୋହିଣୀ ଆସି ପୁଣି ଯଦି ଅଡୁଆ କରିବ, ତେବେ ଅସୁବିଧା ହେବ ।

ବସୁମତୀ—ମହାରାଣୀ କ'ଣ ଉଠି ନାହାନ୍ତି ! ଲୁଚି ଲୁଚି କଥା ଶୁଣିବା ତ ତାର ଅଭ୍ୟାସ । ଅନେକ ମାଇପି ଦେଖିଚି, କିନ୍ତୁ ଇମିତି କୁଉଠି ନ ଥିବ । ତୁମେ କିନ୍ତୁ ସବୁ ଦେଖି ନ ଦେଖିଲା ପରି ରହୁଚ । ହସି ହସି, ଅଟିମାରି କଥା କହିଦେଲେ ମୋହି ହୋଇ ଯାଉଛ । ସେମିତ କୋଉ ସୁନ୍ଦରୀଟେ ହୋଇଥାନ୍ତା ହେଲେ !

ରାମପ୍ରିୟା—ଯୌବନେ ମର୍କଟୀ ରମ୍ୟା । ଯୁବତୀ ସମୟରେ କିଏ ସୁନ୍ଦର ଦେଖା ନ ଯାଏ !

ବସୁମତୀ—ତମେ ତାକୁ ମୁହଁ ଦେଇଛ ।

ବିଶାଳ—ମୁଁ କ'ଣ ରାଗ, ବିରକ୍ତ ହଉନି ନା ଗାଳି ଦଉନି ?

ବସୁମତୀ—ହଁ ଗାଳି ଦଉଥିବ ସେ, ହସି ହସି । ବୟସ ବେଶି ହୋଇଗଲେ ସବୁ ମରଦ ଏମିତ ହୋଇଯାଆନ୍ତି । ଇଏ କିଛି ନୂଆ କଥା ନୁହେଁ । କେବେ କେବେ ତୁମର ଲମ୍ପଟତା ଦେଖି ହସଲାଗେ । ମରଦ କଡ଼ାହବା ଉଚିତ । ଯାହାର ଅନ୍ୟାୟ ଦେଖିବ, ମରଦ ଦଣ୍ଡ

ଦେବ, ଘରରେ ଲାଲ ଲାଲ ହୋଇଯିବ । ସେଇ ମରଦକୁ ସ୍ତ୍ରୀ ପ୍ରେମ କରେ । ଭୟ ବିନା ପ୍ରେମ ହୁଏ ନାହିଁ । ଯେଉଁ ମରଦ ସ୍ତ୍ରୀକୁ ପୂଜା କରେ, ସେ ସ୍ତ୍ରୀ ତାକୁ ହୀନ ଦୃଷ୍ଟିରେ ଦେଖେ । ଘୋଡ଼ା ଯେପରି ସଇସ ଆଉ ପଦଚଲା ଲୋକକୁ ଚହ୍ନେ, ମାଇପି ସେପରି ମରଦ ଆଉ ଭକୁଆକୁ ଚହ୍ନିପାରେ ।

ରାମପ୍ରିୟା—ନାନୀ, ତୁମକୁ ତ ଗୁରୁ କରିବା କଥା ।

ହଠାତ୍ କାହାର ପାଦ ଶବ୍ଦ ଶୁଭିଲା । ବସୁମତୀ ଦେଖିଲେ ରୋହିଣୀ ରୋଷେଇ ଦୁଆର ବାଟେ ଚାଲିଯାଉଛି । ମୁହଁ ଫିକା ପଡ଼ିଗଲା । ଦବିଲା କଣ୍ଠରେ କହିଲେ—ଲୁଚି କରି ଶୁଣୁଥିଲା ଲୋ । ଆଉ ଇଲେ ଘରେ ରହିବା ମୁସ୍କିଲ୍ ହେବ । କି କାଣ୍ଡ ଘଟେଇବ କେଜାଣି ।

ବିଶାଳସିଂହ ସଶଙ୍କ କଣ୍ଠରେ କହିଲେ—ବଡ଼ ଅନର୍ଥ ହେଲା । ଜାଣିନଥିଲି ଏଇଠି ଠିଆ ହେଇଚି ବୋଲି ।

ବସୁମତୀ—କଉଁ ଅନର୍ଥ ହୋଇଯିବ ! ଡାକିଲା ଲୋକଙ୍କୁ, ଜିନିଷ ନେଇଯିବେ ।

ଭାଦ୍ରବମାସର ଅନ୍ଧକାର ରାତି । ମୁହଁକୁ ମୁହଁ ଦିଶୁନି । ବିଶାଳସିଂହ ଭୋଗ ପଦାର୍ଥମାନ ଥାଳିମାନଙ୍କରେ ପୂରାଇ ଯଥାସ୍ଥାନରେ ନେଇ ରଖାଉଥିଲେ । ହଠାତ୍ ରୋହିଣୀ ଝଣ୍ଟେ ଚାଦରି ଘୋଡ଼େଇ ହୋଇ ସେଇ ଅନ୍ଧାର ଭିତରେ ବାହାରକୁ ଚାଲିଗଲେ । ବିଶାଳସିଂହ ଦୁଆରେ ଠିଆ ହୋଇଥିଲେ । ପଚାରିଲେନି କୁଆଡ଼େ ଯାଉଛ ବୋଲି । ମୂର୍ତ୍ତିବତ୍ ଠିଆ ହୋଇ ରହିଲେ । ଲୋକେ ନିଜ ନିଜ କାମରେ ଲାଗିଥିଲେ । ରୋହିଣୀଙ୍କ ଆଡ଼କୁ କାହାରି ଦୃଷ୍ଟି ନ ଥିଲା ।

ଚକ୍ରଧର ଏହି ସମୟରେ ବିଶାଳସିଂହଙ୍କୁ କ'ଣ ପଚାରିବାକୁ ଆସିଲେ । ଦେଖିଲେ—ସମ୍ମୁଖରେ ମହନ୍ତ ଠିଆ ହୋଇଛନ୍ତି । ବିଶାଳସିଂହ କ୍ରୋଧରେ ତାଙ୍କୁ କହିଚାଲିଛନ୍ତି—ଯଦି ସେ ମୋର ଦାସୀ ନୁହେଁ, ତେବେ ମୁଁ ମଧ୍ୟ ତାର ଚାକର ନୁହେଁ । ଯଦି ସେ ସ୍ତ୍ରୀ ହୋଇ ଏତେ ରାଗିପାରେ, ତେବେ ମୁଁ ପୁରୁଷ ହୋଇ କ'ଣ ତାକୁ ମୁଣ୍ଡିଆ ମାରିବି ! ଯୁଆଡ଼େ ଇଚ୍ଛା ହଉଚି ଯାଉ । ମୁଁ ତାକୁ ତ୍ୟାଗ କଲି । ଆଉ ଏ ଘରେ ସେ ପାଦ ପକାଇ ପାରିବ ନାହିଁ । (ଚକ୍ରଧରଙ୍କୁ ଦେଖି) ଆପଣ ତ ତାକୁ ଯିବାର ଦେଖିଥିବେ ।

ଚକ୍ରଧର—କାହାକୁ ? ମୁଁ କଦଳୀରୁ ଚୋପା ଛଡ଼ଉଥିଲି । କିଏ ଗଲା !

ବିଶାଳସିଂହ—ମୋର ଜ୍ୟେଷ୍ଠ ପତ୍ନୀ ରୋହିଣୀ ରୁଷିକରି ବାହାରକୁ ଚାଲିଯାଇଛି । ତୁମର ତ ଏ ଘର ସହ ଉତ୍ତମ ସମ୍ପର୍କ । ଲୁଚେଇଚ କ'ଣ ? ଆଜି ମାଇପିମାନଙ୍କ ମଝରେ କଳି ଲାଗିଗଲା । ଏ ଯାଏଁ ତ ମୁହଁ ଫୁଲେଇ ପଡ଼ିରହିଲା । ଏବେ ପୁଣି ଏ ଭୂତ ମୁଣ୍ଡରେ ପଶିଲାଣି ?

ଚକ୍ରଧର—କୁଆଡ଼େ ଗଲେ, ମହନ୍ତ ?

ମହନ୍ତ—ମୁଁ କିମିତ କହିବ ବାବୁ, ମୁଁ ତ ବାହାନ ଦେଖା କରୁଥିଲି । ଏଇ ଆଡ଼େ ତ ଯାଇଥିବେ ।

ଚକ୍ରଧର ଲଣ୍ଠନଟେ ଧରି ଚ୍ଚରିଆଡ଼କୁ ଖୋଜି ଖୋଜି ଦୌଡ଼ିଲେ । ଦୂଇଶହ ପାହୁଣ୍ଡ ଯାଇଛନ୍ତି ଗୋଟାଏ ଗଛ ମୂଳେ ବ୍ରାହ୍ମଣୀଙ୍କୁ ଦେଖିଲେ । ଚକ୍ରଧର ଡରେ ଡରେ ଯାଇ ପାଖରେ ଠିଆ ହୋଇ କ'ଣ କହିବାକୁ ଯାଉଥିଲେ, ବ୍ରାହ୍ମଣୀ କହିଲେ—କ'ଣ ମୋତେ ଧରିନେବାକୁ ଆସିଛ ! ନିଜର ମଙ୍ଗଳ ଖୋଜୁଁ ତ ଫେରିଯାଅ । ମୁଁ ସେ ପାପୀମାନଙ୍କର ମୁହଁ ଦେଖିବାକୁ ଚାହେଁନା ।

ଚକ୍ରଧର—ଆପଣ ଏ ଅନ୍ଧାରରେ କୁଆଡ଼େ ଯିବେ !

ବ୍ରାହ୍ମଣୀ—ଯାହାର କିଛି ଅବଲମ୍ବନ ଥିବ, ତାକୁ ଅନ୍ଧାର ଭୟ ଲାଗିବ । ଯାହାର ସଂସାରରେ କେହି ନାହିଁ, ତା'ର ଭୟ କାହାକୁ ! ଯାଇ କହିଦିଅ—ଏବେ ଆରାମରେ ରହନ୍ତୁ, କଣ୍ଟା ଚାଲିଗଲା ।

ଚକ୍ରଧର—ଆପଣ କୁମାର ସାହେବଙ୍କ ପ୍ରତି ଅନ୍ୟାୟ କରୁଛନ୍ତି । ବିଚରା ଲଜ୍ଜା ଓ ଦୁଃଖରେ ଠିଆ ହୋଇ କାନ୍ଦୁଛନ୍ତି ।

ବ୍ରାହ୍ମଣୀ—କାହିଁକି ଫେଗୁଡ଼ାକ କହୁଛ ! ମୋ ପାଇଁ ସେ କାନ୍ଦିବେ ! ମୁଁ ଯେଉଁଦିନ ମରିଯିବି, ସେ ଘିଅଦୀପ ଜାଳିବେ । ନିଜର ବାପମାଆଙ୍କୁ ବା କ'ଣ କହିବ ! ଭଗବାନ ତାଙ୍କୁ ନର୍କରେ ମଧ ଶାନ୍ତି ନ ଦିଅନ୍ତୁ । ଭାବିଥିଲେ, ଝିଅ ରାଣୀ ହେବ । ଆମେ ଖୁସିରେ ମଜା କରିବୁ । ଯେଉଁଦିନୁ ଏବାରିକୁ ଓହ୍ଲାଇଛି ସେହିଦିନୁ ବିପତ୍ତି ମାଡ଼ିବସିଛି । ପୁରୁଷ ରୋଗୀ ହେଉ, ବୁଢ଼ା ହେଉ, ଦରିଦ୍ର ହେଉ—କିନ୍ତୁ ନୀଚ ନ ହେଉ । ଏପରି ନୀଚ ବ୍ୟକ୍ତି ସଂସାରରେ ନଥିବେ ।

ଚକ୍ରଧର—ଆପଣ ଏଠାରେ ଠିଆ ହେବା ଦ୍ୱାରା କୁମାର ସାହେବଙ୍କୁ କେତେ ଅପମାନ ହେଉଛି, ତାହା ଆପଣ ଜାଣିପାରୁ ନାହାନ୍ତି ।

ବ୍ରାହ୍ମଣୀ—ତୁମେ ତ ମୋତେ ଏଠାରେ ଠିଆ କରେଇଚ ।

ଚକ୍ରଧର—ଆପଣ ଯାଉଛନ୍ତି କୁଆଡେ ?

ବ୍ରାହ୍ମଣୀ—ତୁମେ ପଚାରିବାକୁ କିଏ ! ମୋର ଇଚ୍ଛା ଯୁଆଡ଼େ ହେବ, ମୁଁ ସିଆଡ଼େ ଯିବି । ଗାଳି ଶୁଣିବା ଅପେକ୍ଷା ମରିଯିବା ବରଂ ଭଲ ।

ଚକ୍ରଧର—ଆପଣଙ୍କୁ ମୋ ସହିତ ଯିବାକୁ ହେବ ।

ବ୍ରାହ୍ମଣୀ—ଏହା କହିବାର ଅଧିକାର ତୁମକୁ କିଏ ଦେଲା ?

ଚକ୍ରଧର—ସଚେତର ଅଚେତ ଉପରେ, ସଜ୍ଞାନର ଅଜ୍ଞାନ ଉପରେ ଯେପରି ଅଧିକାର ଥାଏ, ସେହିପରି ଅଧିକାର ମୋର ଆପଣଙ୍କ ଉପରେ ଅଛି । ଅନ୍ଧକୁ କୂଅରେ ପଡ଼ିଯାଉଥିବା ବେଳେ ତାକୁ ରକ୍ଷା କରିବା ପ୍ରତ୍ୟେକଙ୍କର ଧର୍ମ ।

ରୋହିଣୀ—ମୁଁ ଅଚେତ ନୁହେଁ, ଅଜ୍ଞାନ ନୁହେଁ କି ଅନ୍ଧ ନୁହେଁ । ସ୍ତ୍ରୀ ହେଲେ ମଧ୍ୟ ମୁଁ ପାଗଳୀ ନୁହେଁ । ଯେଉଁ ଘରେ ମୋର ହସିବା-ଗାଇବା, ପିନ୍ଧିବା-ଘୋଡ଼େଇ ହେବା ଦେଖି ଦେଖି ଅନ୍ୟମାନଙ୍କର ଛାତି ଫାଟିଯାଏ, ଯେଉଁଠି ପ୍ରକାର ପ୍ରକାର ଆକ୍ଷେପ କରାଯାଏ, ସେ ଘରେ ପାଦ ଦେବନାହିଁ ।

ଏହା କହି ରୋହିଣୀ ଆଗକୁ ଚାଲିଲେ । ଚନ୍ଦ୍ରଧର ତାଙ୍କ ସମ୍ମୁଖକୁ ଯାଇ କହିଲେ—ଆପଣ ଆଗକୁ ଯାଇପାରିବେ ନାହିଁ ।

ରୋହିଣୀ—କ'ଣ ମୋତେ ଜବରଦସ୍ତି ଅଟକେଇବ ?

ଚନ୍ଦ୍ରଧର—ହଁ ଜବରଦସ୍ତି ।

ରୋହିଣୀ—ହଟିଯାଅ ସାମନାରୁ ।

ଚନ୍ଦ୍ରଧର—ଆଗକୁ ଆପଣ ପାଦ ବଢ଼େଇ ପାରିବେ ନାହିଁ । ଚିନ୍ତା କରନ୍ତୁ—ଆପଣ ଅନ୍ୟ ଭଉଣୀମାନଙ୍କୁ କ'ଣ ଶିକ୍ଷା ଦେଉଛନ୍ତି । ସେମାନେ ଯଦି ଦେଖିବେ ବଡ଼ଘରର ସ୍ତ୍ରୀଲୋକେ ରୁଷିକରି ଘରୁ ଚାଲି ଯାଉଛନ୍ତି ତେବେ ସାମାନ୍ୟ ଘଟଣାରେ ସେମାନଙ୍କର ସାହସ ବଢ଼ିଯିବ କି ନାହିଁ ! ଅବିଚାରବୁଦ୍ଧିରେ କାମକଲେ ତା'ର ଫଳ କେବଳ ନିଜଠାରେ ସୀମିତ ରହିବ ନାହିଁ, ଅନ୍ୟମାନଙ୍କ ଉପରେ ତାର କୁପ୍ରଭାବ ପଡ଼ିବ ।

ରୋହିଣୀ—ମୁଁ ତ ନୀରବରେ ଚାଲି ଯାଉଥିଲି । ତୁମେ ଡ଼େଙ୍ଗୁରା ପିଟୁଛ ।

ଚନ୍ଦ୍ରଧର—ଯୁଦ୍ଧକ୍ଷେତ୍ରରୁ ପଶ୍ଚାଦ୍‌ଧାବନ କରି ପଳାଇଯାଇଥିବା ସୈନିକଙ୍କୁ ଦେଖିଲେ ଲୋକେ ଘୃଣା କରନ୍ତି—ଏପରିକି ତାକୁ ବଧ କରିବାକୁ ମଧ୍ୟ ପାପ ବୋଲି ମନେ କରନ୍ତି ନାହିଁ । ସେହିପରି କୁଳରେ କଳଙ୍କ ଲଗାଉଥିବା ସ୍ତ୍ରୀକୁ ମଧ୍ୟ ଲୋକେ ଘୃଣା କରିଥା'ନ୍ତି ଏବଂ ତାର ମୁହଁ ଚାହିଁବାକୁ ଇଚ୍ଛା କରନ୍ତି ନାହିଁ । ଆମେ ଚାହୁଁ, ସୈନିକ ଗୁଳି ସମ୍ମୁଖରେ ଅଟଳ ହୋଇ ଦଣ୍ଡାୟମାନ ହେଉ । ସେହିଭଳି ଆମେ ଚାହୁଁ, ସ୍ତ୍ରୀ ସବୁ କଷ୍ଟ ସହି ନିଜର ମର୍ଯ୍ୟାଦା ପାଳନ କରୁ । ନାରୀମାନଙ୍କ ଦ୍ୱାରାହିଁ ଆମ ପରିବାର ମୁଖ ଉଜ୍ଜ୍ୱଳ ହୁଏ । ଯେଉଁଦିନ ଆମର କୁଳ ଭୂଆସୁଣୀମାନେ ଏହି ମର୍ଯ୍ୟାଦାକୁ ତ୍ୟାଗ କରିବେ, ସେହିଦିନ ଆମର ସର୍ବନାଶ ଘଟିବ ।

ରୋହିଣୀ ରୁଦ୍ଧ କଣ୍ଠରେ କହିଲେ—ତେବେ କ'ଣ ତୁମେ ଚାହୁଁଛ, ମୁଁ ସେହି ଅଗ୍ନିରେ ଜଳିବି ?

ଚନ୍ଦ୍ରଧର—ହଁ ତାହାହିଁ ଚାହେଁ । ରଣକ୍ଷେତ୍ର ଫୁଲର ଶଯ୍ୟା ନୁହେଁ । ମର୍ଯ୍ୟାଦା ରକ୍ଷା କରିବା ସେହିଭଳି କମ୍ପା ତା'ଠାରୁ କଠିନ ଅଟେ ।

ରୋହିଣୀ—ଲୋକେ କିନ୍ତୁ ହସିବେ ।

ଚନ୍ଦ୍ରଧର—ଯିଏ ନୀଚ, ଦୁର୍ଜନ ସେ ହିଁ ହସିବ । ବିଜ୍ଞ ବ୍ୟକ୍ତି ତ ଆପଣଙ୍କୁ ପ୍ରଶଂସା କରିବେ ।

ରୋହିଣୀ କେତେ ସମୟ ଯାଏଁ ଚିନ୍ତାକରି କହିଲେ—କିଏ ଭଲ କହୁ ବା ମନ୍ଦ କହୁ, ଚାଲନ୍ତୁ । ହଁ, କୁମାର ସାହେବଙ୍କୁ ଏତିକି ବୁଝେଇ ଦେବେ ଯେ ସେଉଁ ମହାରାଣୀଙ୍କୁ

ମେ ଘରର ଲକ୍ଷ୍ମୀ ବୋଲି ମନେକରନ୍ତି, ସେ ହେନେ ନା ହେନେ ଧୋକା ଦେବ । ମୁଁ ଯେତେଢ଼େ ଲାଗିଲେ ବି ତାଙ୍କ ପାଇଁ ପ୍ରାଣ ଦେବି ।

ଏହା କହି ହେହ୍ଣୀ ଫେରିଲେ । ଉଭୟେ ଘରେ ପହଞ୍ଚିଲା ଯାଏଁ ବଣାଳସିଂହ ଦେହଳି ଦୁଆରେ ମୂର୍ତ୍ତିବତ୍ ଠିଆ ହୋଇଥିଲେ । ମହଣ୍ଟ ମଧ୍ୟ ପାଖରେ ଠିଆ ହୋଇଥିଲା । ଭକ୍ତଜନ ନିଜ ନିଜ କାମ ଛାଡ଼ି ଲଣ୍ଠନ ଆଡ଼କୁ ଅନାଇଁ ରହିଥିଲେ । ନିସ୍ତବ୍ଧତା ଛାଇ ରହିଥିଲା ।

କୁମାର ସାହେବ ତାଙ୍କ ଆଡ଼କୁ ଚାହିଁଲେ ବି ନାହିଁ । ହେହ୍ଣୀ ଭିତରକୁ ଚାଲିଯିବା ପରେ ଚକ୍ରଧରଙ୍କର ହାତକୁ ଧରିପକାଇ କହିଲେ—ମୁଁ ଭାବିଥିଲି କୌଣସିମତେ ଫେରିବ ନାହିଁ ବୋଲି । ଯାହାହେଉ, ଆପଣ ଭିଡ଼ି ଆଣିଲେ । କ'ଣ ବେଶି ବିଗିଡ଼ି ଯାଇଥିଲା !

ଚକ୍ରଧର—ଆପଣଙ୍କୁ କିଛି କହି ନାହାନ୍ତି । ମୁଁ ତ ତାଙ୍କୁ ବଙ୍କା ମନେ କରୁଛି । କଥା କିନ୍ତୁ ସହି ପାରିବେ ନାହିଁ ।

ବଣାଳସିଂହ—ସତ କହିବାକୁ ଗଲେ ମୋର ଭୁଲ । ମୋର କ୍ରୋଧ ବଡ଼ ଝଗ୍ରପ କରୁଛି । ଯଦି ଆପଣ ପହଞ୍ଚିଯାଇ ନ ଥା'ନ୍ତେ, ତେବେ ବଡ଼ ଅସୁବିଧା ହୋଇ ଥାଆନ୍ତା । କେବଳ ଜିଦ୍ଖୋରୀ ସ୍ତ୍ରୀ ସେ । ଆପଣଙ୍କ ଉପକାର ଭୁଲି ପାରିବି ନାହିଁ । ଆଚ୍ଛା ଦେଖନ୍ତୁ ତ, ତେଣେ କ'ଣ ଗୁଡ଼ାଏ ଆଲୋକ ଦେଖା ଯାଉଛି । ବ୍ୟାଣ୍ଡ୍ ମଧ୍ୟ ବାଜୁଛି । ଘଟଣା କ'ଣ !

ଚକ୍ରଧର—ହଁ ମଶାଲ ଏବଂ ଗ୍ୟାସ୍‌ଲାଇଟ୍ ମଧ୍ୟ । ବହୁ ଲୋକ ଆସୁଥିବା ଦେଖାଯାଉଛି ।

ଲୋକମାନେ ଆସି ଦ୍ୱାର ପାଖାପାଖି ପହଞ୍ଚିଗଲେ । ଶହ ଶହ ଲୋକ ଧାଡ଼ିବାନ୍ଧି ମଶାଲ ଓ ଲାଇଟ୍ ଧରି ଆସୁଥିଲେ । ଆଗରେ ଦୁଇଜଣ ଅଶ୍ୱାରୋହୀ ଥିଲେ । ବ୍ୟାଣ୍ଡ୍‌ର ମନୋହର ଧ୍ୱନି ଶୁଣାଯାଉଥିଲା । ସମସ୍ତେ ଏଣେ ଠିଆ ହୋଇ ଦେଖୁଥିଲେ, କିନ୍ତୁ ଘଟଣା କ'ଣ କେହି ବୁଝିପାରୁ ନ ଥିଲେ ।

( ୧୧ )

ସମସ୍ତେ କୌତୂହଳୀ ହୋଇ ଆଗନ୍ତୁକମାନଙ୍କୁ ଚାହିଁ ରହିଥିଲେ । ଦଶ ବାର ମିନିଟ୍ ମଧ୍ୟରେ ସେମାନେ ଆସି ବଣାଳସିଂହଙ୍କ ଦ୍ୱାର ଦେଶରେ ପହଞ୍ଚିଲେ । ଆଗରେ ଦୁଇଟି ଘୋଡ଼ାରେ ମୁନ୍‌ସୀ ବଜ୍ରଧର ଓ ଠାକୁର ହରିଦେବକସିଂହ । ତାଙ୍କ ପଛରେ ପ୍ରାୟ ପଚଶିଜଣ ବ୍ୟକ୍ତି ଶ୍ୱେତବସ୍ତ୍ର ପରିଧାନ କରି ଆସୁଥିଲେ । ଉଭୟ ପାର୍ଶ୍ୱରେ କେତେକ ପତାକାଧାରୀ । ସର୍ବପଛରେ ବାଜାବାଲା । ଘର ସାମନାରେ ପହଞ୍ଚି ଉଭୟ ସବାର ଘୋଡ଼ାରୁ ଓହ୍ଲାଇ ପଡ଼ିଲେ ଏବଂ ହାତଯୋଡ଼ି କୁମାର ବଣାଳସିଂହଙ୍କ ନିକଟରେ ପହଞ୍ଚିଲେ । ମୁନ୍‌ସୀଙ୍କର

ବେଶଭୂଷା ବିଚନ୍ଦ୍ରଧରଙ୍କରେ ଥିଲା । ଠାକୁର ସାହେବ ମଧ୍ୟ ହିନ୍ଦୁସ୍ଥାନୀ ପୋଷାକରେ ସୁସଜ୍ଜିତ ହୋଇଥିଲେ । ମୁନ୍‌ସୀଜୀ ଖୁସିଥିଲେ କିନ୍ତୁ ଠାକୁର ସାହେବଙ୍କ ମୁହଁ ମଳିନ ଦେଖାଯାଉଥିଲା ।

ଠାକୁର ସାହେବ କହିଲେ—ଦୀନବନ୍ଧୁ, ଆମେ ସମସ୍ତେ ଆପଣଙ୍କ ସେବକ ଆପଣଙ୍କ ସେବାରେ ଏହି ଶୁଭ ସୂଚନା ଦେବାକୁ ଉପସ୍ଥିତ ହୋଇଅଛୁଁ କି ମହାରାଣୀ ରାଜ୍ୟ ପ୍ରତି ବୀତସ୍ପୃହା ପ୍ରକାଶ କରି ତୀର୍ଥଯାତ୍ରାକୁ ପ୍ରସ୍ଥାନ କରିଅଛନ୍ତି ଏବଂ ବର୍ତ୍ତମାନ ଆମ୍ଭେମାନେ ଶ୍ରୀମାନଙ୍କ ଛତ୍ରଚ୍ଛାୟାରେ ଆଶ୍ରୟ ଗ୍ରହଣ କରିବାର ସ୍ୱର୍ଣ୍ଣ-ଅବସର ପ୍ରାପ୍ତ ହୋଇଅଛୁଁ—ଯେଉଁଥିପାଇଁ ଆମ୍ଭେମାନେ ସର୍ବଦା ଈଶ୍ୱରଙ୍କୁ ପ୍ରାର୍ଥନା କରୁଥିଲୁଁ । ଏହା ଆମର ପରମ ସୌଭାଗ୍ୟ ଯେ, ଆଜିଠାରୁ ଶ୍ରୀମାନ୍ ଆମ୍ଭମାନଙ୍କର ଭାଗ୍ୟବିଧାତା । ମହାରାଣୀ ଶ୍ରୀମାନଙ୍କ ନାମରେ ଲେଖିଥିବା ଏହି ପତ୍ର ଗ୍ରହଣ କରନ୍ତୁ ।

ଏହା କହି ଠାକୁର ସାହେବ ରାଣୀଙ୍କର ପତ୍ର ବିଶାଳସିଂହଙ୍କ ହସ୍ତରେ ପ୍ରଦାନ କଲେ । କୁମାର ସାହେବ ଏକ ନିଶ୍ୱାସରେ ପତ୍ରଟି ମୂଳରୁ ଶେଷଯାଏ ପଢ଼ିନେଲେ । ତାଙ୍କ ମୁଖମଣ୍ଡଳରେ ହରଷର ଆଭା ଝଲକି ଉଠିଲା । ପତ୍ରଟି ପକେଟ୍‌ରେ ରଖି କହିଲେ—ମହାରାଣୀଙ୍କର ତୀର୍ଥଯାତ୍ରା ସମାଚାର ଶୁଣି ମୋର ଦୁଃଖ ହେଉଅଛି । ତଥାପି ଏଥିରେ ଆନନ୍ଦ ମଧ୍ୟ ଜାତ ହେଉଅଛି । ସେ ନିବୃତ୍ତି ମାର୍ଗରେ ପଦ ଦେଇଛନ୍ତି । ଜ୍ଞାନ ଦ୍ୱାରା ମୁକ୍ତି ପ୍ରାପ୍ତ ହୋଇଥାଏ । ଈଶ୍ୱରଙ୍କଠାରେ ମୋର ପ୍ରାର୍ଥନା, ସେ ମୋ ମୁଣ୍ଡରେ ଯେଉଁ କର୍ତ୍ତବ୍ୟର ବୋଝ ଲଦିଦେଇଛନ୍ତି, ତାକୁ ସମ୍ଭାଳିବାର ଶକ୍ତି ମୋତେ ଦିଅନ୍ତୁ ଏବଂ ପ୍ରଜାମାନଙ୍କ ପ୍ରତି ମୋର ଯେଉଁ କର୍ତ୍ତବ୍ୟ ଅଛି, ତାହା ପାଳନ କରିବାର ସାମର୍ଥ୍ୟ ଦିଅନ୍ତୁ । ଆପଣମାନଙ୍କୁ ମୁଁ ବିଶ୍ୱାସ ଦେଉଅଛି ଯଥାସାଧ୍ୟ ନିଜର କର୍ତ୍ତବ୍ୟ ପାଳନ କରି ଉଚ୍ଚ ଆଦର୍ଶ ସ୍ଥାପନ କରିବି । କିନ୍ତୁ ମୋର ସଫଳତା ଅନେକ ପରିମାଣରେ ଆପଣମାନଙ୍କର ସହାନୁଭୂତି ଓ ସହଯୋଗିତା ଉପରେ ନିର୍ଭର କରେ । ମୋର ଆଶା, ଆପଣମାନେ ମୋତେ ସାହାଯ୍ୟ କରିବାରେ କୁଣ୍ଠିତ ହେବେ ନାହିଁ । ମୁଁ ବର୍ତ୍ତମାନ ସୂଚେଇ ଦେବାକୁ ନିଜର କର୍ତ୍ତବ୍ୟ ମନେକରେ କି—ମୁଁ ଅତ୍ୟାଚାରର ଘୋର ଶତ୍ରୁ । ଯେଉଁମାନେ ଏଭଳି କର୍ମରେ ଲିପ୍ତ, ସେମାନଙ୍କୁ ମୁଁ ଦୃଢ଼-ହସ୍ତରେ ଦମନ କରିବି ।

ଏହି କଥାରେ ଶିଷ୍ଟାଚାର ଅଧିକ ଏବଂ ନୀତି ଖୁବ୍ କମ୍ ଥିଲା । ରାଜକର୍ମଚାରୀମାନଙ୍କୁ କଥାଟା ଅପ୍ରିୟ ଲାଗିଲା । ହରିସେବକ ଭାବିନେଲେ ଏ ସଙ୍କେତ ମୋ ପ୍ରତି ଉଦ୍ଦିଷ୍ଟ, ତାଙ୍କ ପ୍ରାଣ ଶୁଖିଗଲା । ସମସ୍ତେ ଫୁସ୍‌ଫାସ ହେଲେ ।

କୁମାର ସାହେବ ସମସ୍ତଙ୍କୁ ନେଇ ବଇଠକରେ ବସାଇଲେ । ବ୍ୟାଣ୍ଡପାର୍ଟି ବାଜି ଉଠିଲା । ଚକ୍ରଧର ସମସ୍ତଙ୍କୁ ପାନ ଓ ଅଳେଇଚ ବାଣ୍ଟିଲେ । ମୁନ୍‌ସୀ ବଜ୍ରଧର କହିଲେ—ହଜୁର୍, ଆଜି ସର୍ବପ୍ରଥମେ ମୁଁ ଏ ଖବର ଜାଣି ପାରିଥିଲି ।

ହରିସେବକସିଂହ କଥାକୁ ଖଣ୍ଡନ କରି କହିଲେ—ମୁଁ ମଧ୍ୟ ଆପଣଙ୍କ ସଙ୍ଗରେ ଥିଲି । ବଜ୍ରଧର କହିଲେ—ଆପଣ ଟିକିଏ ଡେରିରେ ପହଞ୍ଚିଲେ । ମୋର ସବୁଦିନ ଅଭ୍ୟାସ ଶୀଘ୍ର

ଉଠିବା ଅଭ୍ୟାସ । ଯାଇ ଦେଖିଲି—ସବୁଆଡ଼ ନିସ୍ତବ୍ଧ । ଦେଓ୍ୱାନ ନାହିଁ, ସିପାହି ନାହାନ୍ତି । କଥା କ'ଣ ! ନିଃସଙ୍କୋଚରେ ଭିତରକୁ ଚାଲିଗଲି । ମୋତେ ଦେଖି ଗୁଜୁରାଟୀ କାନ୍ଦି ଉଠିଲା । ତୁରନ୍ତ ଆଣି ରାଣୀସାହେବାଙ୍କର ଚିଠି ମୋତେ ଦେଲା । ରାଣୀ ସମ୍ଭବତଃ ଚିଠିଟା ମୋତେ ଦେବାକୁ ତାକୁ କହିଥିଲେ ।

ହରିସେବକ—ଏଥିରେ କିଛି କଥା ନାହିଁ । ମୁଁ ପ୍ରଥମେ ପହଞ୍ଚିଲେ, ମୋତେ ମଧ୍ୟ ଦେଇଥାଆନ୍ତା । ଆପଣ ପ୍ରଥମେ ପହଞ୍ଚିଲେ । ଆପଣଙ୍କୁ ଦେଇଦେଲା ।

ବଜ୍ରଧର—ଆପଣ ବିରକ୍ତ କାହିଁକି ହେଉଛନ୍ତି ! ମୁଁ କେବଳ ଯାହା ଘଟିଛି, ତା' କହୁଛି । ସେ ଚିଠି ପଢ଼ି ମୋର ଅବସ୍ଥା ଯାହାହେଲା, କହି ପାରିବି ନାହିଁ । ହସ ମାଡୁଥିଲା । କାନ୍ଦ ବି ମାଡୁଥିଲା । ମନ ଚାହୁଁଥିଲା, ଉଡ଼ିକରି ଆସି ହଜୁରଙ୍କ ପାଖରେ ପହଞ୍ଚି ଖବର ଦେବାକୁ । ଠିକ୍ ଏଇ ସମୟରେ ଠାକୁର ସାହେବ ଆସି ପହଞ୍ଚିଗଲେ । ଏବେଆ ନା ଦେଓ୍ୱାନ୍ ସାହେବ !

ହରିସେବକ—ମୋତେ ବାହାରେ ଖବର ମିଳି ଯାଇଥିଲା । ଲୋକଙ୍କୁ ସତର୍କରହିବା ପାଇଁ ତାଗିଦ୍ କରି ଦେଲି ।

ବଜ୍ରଧର—ଆପଣ ବାହାରେ କ'ଣ କଲେ ମୁଁ ଜାଣିନାହିଁ । କିନ୍ତୁ ମୁଁ ଚିଠି ଧରି ଠିଆ ହୋଇଥିବା ବେଳେ ଆପଣ ଭିତରେ ଆସି ପହଞ୍ଚିଲେ । ମୁଁ ଆପଣଙ୍କୁ ଦେଖି ସଙ୍ଗେ ସଙ୍ଗେ କହିଲି—ଦପ୍ତରକୁ କାହାରକୁ ଯିବାକୁ ଦିଅନ୍ତୁ ନାହିଁ ଏବଂ ସବୁ ଘରେ ତାଲା ପକାଇ ଦିଅନ୍ତୁ ।

ହରିସେବକ—ଏଇ ସାମାନ୍ୟ କଥା ପାଇଁ ମୁଁ ଆପଣଙ୍କ ପରାମର୍ଶ ଚାହୁଁ ନ ଥିଲି ।

ବଜ୍ରଧର—ମୋ ଉଦ୍ଦେଶ୍ୟ ତା' ନୁହେଁ । ମୁଁ ତହସିଲଦାରୀ କରୁଛି, ଆପଣ ମଧ୍ୟ ଦେଓ୍ୱାନଗିରି କରୁଛନ୍ତି । ସରକାରୀ ଚାକିରି ନ ହେଲେ ବି, କାମ ଏକା । ଯେତେବେଳେ ପ୍ରତ୍ୟେକ କୋଠରୀରେ ତାଲା ପଡ଼ିଗଲା, ଦପ୍ତର ଦରଜା ବନ୍ଦ କରି ଦିଆଗଲା—ତା'ପରେ ପରାମର୍ଶ ଚାଲିଲା, ହଜୁରଙ୍କୁ ଖବର କିପରି ଦିଆଯିବ । କିଏ କହିଲା, ଲୋକ ପଠେଇ ଦିବା, କିଏ ମଟର ଗାଡ଼ି ପଠେଇବାକୁ କହିଲେ । ମୁଁ କିନ୍ତୁ ଏ ସବୁକୁ ଠିକ୍ ମନେକଲି ନାହିଁ । ସମସ୍ତ କର୍ମଚାରୀଙ୍କୁ ଏକଜୁଟ ହେବାପାଇଁ ପରାମର୍ଶ ଦେଲି । ଦେଓ୍ୱାନ୍ ସାହେବଙ୍କ ମନକୁ ବି ଏକଥା ପାଇଲା । ସେହି ହେତୁ ଏତେ ଡେରି । ହଜୁର୍, ସାରାଦିନ ଦୌଡ଼ି ଦୌଡ଼ି କରି ପାଦରେ ଫୋଟକା ହୋଇଯାଇଛି । ଆଜି ଡବଲ୍ ଖୁସିଦିନ । ମାଫ୍ କରିବେ—ମିଠାଇ ଖୁଆନ୍ତୁ, ଗାଉଣା ବାଜଣା ହେଉ । ଏକ ସପ୍ତାହ ଯାଏ ସବୁ ପାଳନ ହେବା ଦରକାର ।

ବିଶାଲସିଂହ—ବର୍ତ୍ତମାନ ଭଜନ ହେବ । କାଲି ଏଠାରେ ମହଫିଲ ଜମିବ ।

ବଜ୍ରଧର—ହଜୁର୍, ମୁଁ ଗାଉଣା ବାଜଣାର ବ୍ୟବସ୍ଥା କରି ସାରିଛି । ସେମାନେ ଏଇ ଆସୁଥିବେ । ସାରା ସହରର ଓସ୍ତାଦମାନଙ୍କୁ ଡକେଇଛି । ସମସ୍ତେ ନିଜ ନିଜର କଳା ପରିବେଷଣ କରିବେ ।

ତହସିଲଦାରଙ୍କ କଥା ସରିଚ କି ନାହିଁ ଟିନ୍‌କୁ ଭିତରକୁ ଆସି ସଲାମ୍ କଲା ଏବଂ କହିଲା— ଦୀନନାଥ, ଓସ୍ତାଦ୍‌ମାନେ ଆସି ଗଲେଣି । ହୁକୁମ୍ ହେଲେ ହାଜର ହେବେ ।

ମୁନ୍‌ସୀଜୀ ବାହାରକୁ ଯାଇ ସମସ୍ତଙ୍କୁ ସଙ୍ଗରେ ନେଇ ଆସିଲେ, ୧୦/୧୨ଜଣ ଓସ୍ତାଦ୍ । ସମସ୍ତେ ବୁଢ଼ା ! କାହାର ଅଣ୍ଟା ନଇଁଲାଣି; କାଏ ସମ୍ପୂର୍ଣ୍ଣ ପାକୁଆ; କାହା ଆଖିକୁ ଦେଖାଯାଉ ନାହିଁ । ସେମାନଙ୍କୁ ଦେଖିଲେ ଯେ କେହି ଅନୁମାନ କରିବ—ପ୍ରାୟ ତିନି ଶତାବ୍ଦୀ ପୂର୍ବର ମଣିଷ ଏମାନେ, ବେଶଭୂଷା ମଧ୍ୟ ଅଦ୍‌ଭୁତ । ପୋଷାକ ମଧ୍ୟ କୋଉ ପୂର୍ବକାଳେ ତିଆରି ହୋଇ ଥିଲା । ଚିରି ଗଲାଣି । ତାଳି ପଡ଼ିଛି । ବିଭିନ୍ନ ରଙ୍ଗର ପୋଷାକ । ପାଇଜାମା ଗୋଡ଼ଜଙ୍ଘ ଗୁଳଖଣ୍ଡ ଉପରକୁ ଟେକି ହୋଇ ରହିଛି । ପଗଡ଼ି ଚିରି ଗଲାଣି । ଦୁଇ ତିନି ଜଣ ଓସ୍ତାଦଙ୍କ ଦେହରେ ପୋଷାକ ଆଦୌ ନାହିଁ । ଏଇ ମାନେ ସରସ୍ୱତୀଙ୍କ ଉପାସକ ଏବଂ ଏମାନଙ୍କ ଉପରେ ସରସ୍ୱତୀଙ୍କର କୃପାଦୃଷ୍ଟି ।

ଓସ୍ତାଦମାନେ ଭିତରକୁ ଆସି ବିଶାଳସିଂହ ଏବଂ ଅନ୍ୟ ସଜ୍ଜନମାନଙ୍କୁ ନଇଁ ନଇଁ ସଲାମ କଲେ । ମୁନ୍‌ସୀଜୀ ପ୍ରତ୍ୟେକ ଓସ୍ତାଦ୍‌ଙ୍କର ପରିଚୟ ବିଶାଳସିଂହଙ୍କୁ ଦେଲେ । ମୁନ୍‌ସୀଜୀଙ୍କ ପରିଚୟ ପ୍ରଦାନରୁ ଜଣାଗଲା—ଏଇମାନେ ହିଁ ବର୍ତ୍ତମାନ ଭାରତର ସର୍ବଶ୍ରେଷ୍ଠ ଓସ୍ତାଦ୍ । ସିତାର ବାଦକ ମେଡ଼ୁଖାଁ, ପଖୋଜ ଓସ୍ତାଦ୍ ଚନ୍ଦୁ ମହାରାଜ, ଜଳ-ତରଙ୍ଗ ଓସ୍ତାଦ୍ ଫଜଲୁ ଇତ୍ୟାଦି ଇତ୍ୟାଦି । ପରିଚୟ ପରେ ଗାଉଣା ବାଜଣା ଆରମ୍ଭ ହେଲା । ଫଜଲୁ ମହ୍ଲାର ରାଗ ଆରମ୍ଭ କଲେ । ସେ ରାଗର ପ୍ରଭାବରେ ମୁନ୍‌ସୀଜୀ ଝୁଲିବାକୁ ଲାଗିଲେ । କିନ୍ତୁ ମହଫିଲ୍‌ରେ ବସିଥିବା ଲୋକେ କ୍ରମେ ଜଣକପରେ ଜଣେ ବାହାରକୁ ଚାଲି ଯାଉଥିବାର ଦେଖାଗଲା । ଲୋକେ ତା'ର ଗାନକୁ ପସନ୍ଦ କରୁଛନ୍ତି କି ନାହିଁ ସେଥିପ୍ରତି ଫଜଲୁର ଖାତିର ନାହିଁ । ଓସ୍ତାଦ୍ ଓସ୍ତାଦ୍‌ମାନଙ୍କ ପାଇଁ ଗାଆନ୍ତି । ଗୁଣୀମାନେ ଗୁଣୀମାନଙ୍କ ଦୃଷ୍ଟିରେ ସମ୍ମାନ ପାଇବାର ଇଚ୍ଛାରଖି ଥାଆନ୍ତି । ଜନତା ସହିତ ସମ୍ପର୍କ କ'ଣ ! ମହଫିଲ୍‌ରେ ମୁନ୍‌ସୀଜୀଙ୍କ ଭଳି ଜଣେ ଗୁଣୀ ଥିଲେ ବି ଫଜଲୁ ଏହିପରି ମଧ୍ୟ ମସ୍ତ ହୋଇ ଥାଆନ୍ତା ।' ଧନୀଲୋକେ କ'ଣ ଗରିବଙ୍କୁ ଖାତିର କରନ୍ତି ! ବିଦ୍ୱାନ୍ ଲୋକେ ମୂର୍ଖଙ୍କୁ କ'ଣ ପାଖରେ କେବେ ପକାନ୍ତି ! ସେହିପରି ଗୁଣୀଜନ ଅନାଡ଼ିମାନଙ୍କୁ ପରୁଆ କରନ୍ତି ନାହିଁ ।

ମହ୍ଲାର ପରେ ଫଜଲୁ 'ସଗୁଣ' ସ୍ୱର ଆରମ୍ଭିଲେ । ରାଗ ରାଗିଣୀର ନାମ ତ କେବଳ ଓସ୍ତାଦ୍ ହିଁ ଜାଣନ୍ତି । ଓସ୍ତାଦ୍‌ଙ୍କ ମୁହଁରୁ ସବୁ ରାଗିଣୀ ସମାନରୂପ ଧାରଣ କରୁଥିବା ଭଳି ଆମକୁ ଜଣାପଡ଼େ । ସବୁ ଧାତୁଙ୍କୁ ନିଆଁରେ ପକାଇ ଦେଲେ ସେଗୁଡ଼ିକ ତରଳି ଏକ ହୋଇଯାଆନ୍ତି । କିନ୍ତୁ ମୁନ୍‌ସୀଜୀଙ୍କୁ ଏ ରାଗ ତନ୍ମୟ କରିଦେଲା । ସେ ଯାହା ବସି ବସି ଝୁଲୁଥିଲେ, ଏବେ ଠିଆ ହୋଇ ଝୁଲିବାକୁ ଲାଗିଲେ । ସ୍ୱତଃ ତାଙ୍କର ହାତ ପାଦ ମଧ୍ୟ ଗତିଶୀଳ ହେବାକୁ ଲାଗିଲା । ଲୋକେ କ'ଣ ଭାବିବେ ସେଥିପ୍ରତି ତାଙ୍କ ଦୃଷ୍ଟି ନୋହିଁ । କ୍ରମେ ସେ ନାଚିବା ଆରମ୍ଭ କରିଦେଲେ । ଗୁଣୀଙ୍କୁ ନିଜର ଗୁଣ ଦେଖାଇବାରେ ଲଜ୍ଜା କ'ଣ ! ପହିଲମାନ ଆଖଡ଼ାରୁ ଦାହାଷ୍ଟୋଟ ମାରି ଫେରିବାରେ କ'ଣ ଲାଜ ! ସିଏ ନାଚିବା

ଜାଣେନାହିଁ, ତାକୁ ତ ଧକ୍କା ମାରି ମାରି ପଠେଇଲେ ବି ସେ ଅଂଟେଡ଼ାକୁ ଯିବ ନାହିଁ । ସବୁ କର୍ମଚାରୀ ମୁହଁବୁଲାଇ ହସିବାକୁ ଲାଗିଲେ । ଯେଉଁ ଲୋକେ ବାହାରକୁ ଚାଲି ଯାଇଥିଲେ, ସେମାନେ ମଧ୍ୟ ଏ ତାଣ୍ଡବନୃତ୍ୟ ଦେଖିବାକୁ ଫେରି ଆସିଲେ । ବିଶାଳସିଂହ ମଧ୍ୟ ହସୁଥିଲେ । ମୁନ୍‌ସୀଙ୍କ ନାଚି ନାଚି ଆନନ୍ଦ ବିହ୍ୱଳ ହୋଇ ଗାଇବା ଆରମ୍ଭ କଲେ । ତାଙ୍କର ବୁଢ଼ା ହାଡ଼ ଗୁଡ଼ିକରେ ଏତେ ଚପଳତା କୁଆଡ଼ୁ ଆସିଲା ଜାଣିବା କଠିନ । ଡେଇଁ କରି ଆଗକୁ ଯିବା, ପୁଣି ଡେଇଁ କରି ପଛକୁ ଆସିବା, ନଇଁବା, ମୋଡ଼ିହେବା, ପ୍ରତ୍ୟେକ ଅଙ୍ଗ ଚାଳନା କରିବା ବାସ୍ତବିକ ଆଶ୍ଚର୍ଯ୍ୟଜନକ ।

ଏହାପରେ ଶ୍ରୀକୃଷ୍ଣଙ୍କ ଜନ୍ମ ସମୟ ଆସି ପହଞ୍ଚିଗଲା । ସମସ୍ତେ ଠିଆ ହୋଇ ମଙ୍ଗଳଗାନ ଗାଇଲେ । ସମସ୍ତେ ଖୁସି । କେବଳ ଦୁଇଜଣ ବ୍ୟକ୍ତି ଚିନ୍ତିତ ଦେଖାଯାଉଥିଲେ । ଜଣେ ଠାକୁର ହରଦେବକସିଂହ ଓ ଅନ୍ୟ ଜଣେ ବିଶାଳସିଂହ ଜଣେ ଚିନ୍ତିତ—କାଲି କି ବିପଦ ତାଙ୍କ ଉପରେ ପଡ଼ିବ । ଅନ୍ୟ ଜଣେ ଚିନ୍ତିତ—କିପରି ଏ ପୁରୁଣା ମୂଷାକୁ ଧାବାଡ଼ କରିବ । ଚକ୍ରଧର ବାହାରେ ଯାଇ ଲୁଚି ଠିଆ ହୋଇଥାଆନ୍ତି । ମଙ୍ଗଳଗାନ ସମାପ୍ତ ହେଲା । ଚକ୍ରଧର ଆସି ପ୍ରସାଦ ବାଣ୍ଟିଲେ । କିଏ ମୋହନଭୋଗ ବାଣ୍ଟିଲା ତ କିଏ ଫଳ ବାଣ୍ଟିଲା । ସୁବିଧା ଦେଖି କୁମାର ସାହେବ ବଜ୍ରଧରଙ୍କୁ ବାହାରକୁ ଡାକିନେଇ ପଚାରିଲେ—ଦେଓ୍ୱାନ୍ ସାହେବ ତ ସୁବିଧା ପାଇ ଖୁବ୍ ଲୁଟି କରିଥିବେ !

ବଜ୍ରଧର—ମୁଁ ତ ସେସବୁ କିଛି ଦେଖିନାହିଁ । ବିଚାରୀ ଦିନରାତି କାଗଜ ପତ୍ର ସବୁ ଯାଞ୍ଚ କରୁଥିଲେ । ଘରକୁ ମଧ୍ୟ ଯାଉନାହାନ୍ତି ।

ବିଶାଳସିଂହ—ସେ ସବୁ ଆପଣ କହିବାରୁ କଲେ । ଆପଣ ନ ଥିଲେ କ'ଣ ସେ ସେ କରିଥାନ୍ତେ !

ବଜ୍ରଧର—ଆପଣଙ୍କ ପ୍ରତି ତାଙ୍କର ଦ୍ୱେଷ ଥିବାର ମୁଁ ଦେଖିନାହିଁ । ଏସବୁ ଛୋଟ କଥାରେ ଧ୍ୟାନ ଦେବା ଆପଣଙ୍କର କାମ ନୁହେଁ । ମୁଁ ଚାହୁଁଥିଲି ଦପ୍ତରର କାଗଜ ପତ୍ର ସବୁ ଠିକ୍ ରହୁ । ଦେଓ୍ୱାନ ସାହେବଙ୍କର ଆପଣଙ୍କ ପ୍ରତି ଶତ୍ରୁତା ଥିଲା, ଏହା ମୁଁ ମାନୁଛି । ସେତେବେଳେ ସେ ରାଣୀଙ୍କର ଖାଉଥିଲେ ଏବଂ ଆପଣଙ୍କର ମଙ୍ଗଳ ନ ଚାହିଁବା ଥିଲା ତାଙ୍କର ଧର୍ମ । କିନ୍ତୁ ଏବେ ସେ ଆପଣଙ୍କର ସେବକ ଏବଂ ମୋର ପୂରା ବିଶ୍ୱାସ ସେ ସେହିଭଳି ସଚ୍ଚୋଟ ହୋଇ ଆପଣଙ୍କର ସେବା କରିବେ ।

ଚକ୍ରଧର—ଆପଣ ପୁରୁଣା କଥା ଜାଣନ୍ତି ନାହିଁ । ତାଙ୍କର ଯୋଗୁଁ ମୁଁ ଜଗଦୀଶପୁର ଛାଡ଼ିଲି । ସୁଯୋଗ ପାଇଥିଲେ ସେ ମୋତେ ହତ୍ୟା କରିଥାଆନ୍ତେ ।

ବଜ୍ରଧର—କ୍ଷମା କରିବେ—ଆପଣ ସୁଯୋଗ ପାଇଥିଲେ ରାଣୀ କିମ୍ବା ଦେଓ୍ୱାନ୍ ସାହେବ କରିଥାଆନ୍ତେ କି ? ସେ ପଛକଥା ସବୁ ଭୁଲିଯାଆନ୍ତୁ । ଭଗବାନ ଆପଣଙ୍କୁ ଉଚ୍ଚ ସ୍ଥାନ ଦେଇଛନ୍ତି । ବର୍ତ୍ତମାନ ଆପଣ ଉଦାର ହେବା ଉଚିତ । ଏଭଳି ଚିନ୍ତା ଆପଣଙ୍କ ହୃଦୟରେ

ପ୍ରବେଶ ନ କରିବା କଥା । ଆପଣଙ୍କ ପରି ଶତ୍ରୁତା ଆଚରଣ ଭଳି କୌଣସି ଆଚରଣ ମୁଁ ଦେଓ୍ୱାନ୍ ସାହେବଙ୍କଠାରେ ଦେଖିନାହିଁ ।

ବଣାଲସିଂହ ଟିକିଏ ଲଜ୍ଜିତ ହୋଇ କହିଲେ—ମୁଁ ଠାକୁର ସାହେବଙ୍କୁ ଆପଣଙ୍କ ଭଳି ମନେକରେ ନାହିଁ । ମୁଁ ଆପଣଙ୍କୁ ମିତ୍ର ବୋଲି ମନେକରେ । ତେଣୁ ଏକଥା ଅପଣଙ୍କୁ ପଚାରିଲି । ମୁଁ ଠିକ୍ କରି ନେଇଥିଲି ମୋର ପ୍ରଥମ ଆକ୍ରମଣ ତାଙ୍କରି ଉପରେ ହେବ । କିନ୍ତୁ ଆପଣଙ୍କଠାରୁ ଶୁଣି ମୋର ବିଚାର ବଦଳିଲେ । ଆପଣ ମଧ୍ୟ ତାଙ୍କୁ ବୁଝେଇ ଦିଅନ୍ତୁ ଯେ, ସେ ମୋ ଅଞ୍ଚଳେ କୌଣସି ବିପଦରେ ଆଙ୍କୋ ନ ଦେନ୍ତୁ । ହଁ, ପ୍ରଜାମାନଙ୍କ ପ୍ରତି ଅତ୍ୟାଚାର କରିବେ ନାହିଁ ।

ବଜ୍ରଧର—କର୍ମଗୁଣ୍ଡ ନିଜ ଅଧିକାରର ମନୋଭାବ ବୁଝି କାମକରେ । ଧର୍ମଙ୍କର ହବୁବେଳେ ଟଙ୍କା ଦରକାର ଥିଲା । ଦଶଲକ୍ଷ ଅୟ ତାଙ୍କୁ ଅଣ୍ଟୁ ନଥିଲା । ତେଣୁ ଠାକୁର ସାହେବ ବାଧ୍ୟ ହୋଇ ପ୍ରଜାମାନଙ୍କ ଉପରେ ଅତ୍ୟାଚାର କରୁଥିଲେ । ସେ ଦେବେନ୍ଦ୍ରେହେଲେ ଅସ୍ୱାସ୍ଥ୍ୟ ସ୍ୱଭାବ ଦେଖୁ ନ ଥିଲେ । ଯେତେବେଳେ ତାଙ୍କର ଧନ ଦରକାର ପଡୁଥିଲା, ଠାକୁର ସାହେବ ଦେବାକୁ ବାଧ୍ୟ ହେଉଥିଲେ । ମୁଁ ଯେତେଦୂର ଜାଣେ, ବର୍ତ୍ତମାନ ଜମା ଏକ ପଇସା ବି ନାହିଁ । ଅଭିଷେକ ଉତ୍ସବ ପାଇଁ ଟଙ୍କାର ଅନ୍ୟ କିଛି ବ୍ୟବସ୍ଥା କରିବାକୁ ପଡ଼ିବ । ଦୁଇଟି ଉପାୟ ଅଛି—କରଜ ଅଣାଯିବ, କିମ୍ବା ପ୍ରଜାମାନଙ୍କଠାରୁ ଜବରଦସ୍ତି ଅଦାୟ କରାଯିବ । ଏହା ବ୍ୟତୀତ ଠାକୁର ସାହେବଙ୍କର ଅନ୍ୟ ଉପାୟ କ'ଣ ଅଛି !

ବଣାଲସିଂହ—ଅଭିଷେକ ଉତ୍ସବରେ ପ୍ରଜାମାନଙ୍କ ତଣ୍ଟି ଚିପିବ ନାହିଁ । ବରଂ ଅଭିଷେକ ପାଇଁ ଉତ୍ସବ ଆଡ଼ମ୍ବର ବନ୍ଦ କରିଦେବା ଭଲ ହେବ ।

ବଜ୍ରଧର—ହଜୁର, କ'ଣ କହୁଛନ୍ତି ! ଏହା କ'ଣ ହୋଇପାରେ !

ବଣାଲସିଂହ—ଗୁଡ଼ନ୍ତୁ, ଦେଖାଯିବ ।

ଏହାପରେ ବଣାଲସିଂହ ଏ ଖୁସିଖବର ଦେବାକୁ ଘର ଭିତରକୁ ଚଲେ । ଘରେ ପ୍ରତ୍ୟେକେ ଉତ୍ତମ ରୂପେ ଜାଣି ନିଜ ନିଜ ଅବସ୍ଥା କଥା କହିଲେ । ପ୍ରଥମେ ସେ ରୋହିଣୀ କୋଠରୀକୁ ଯାଇ କହିବାରୁ ସେ କହିଲେ—ଯେତେବେଳେ କିଛି ନ ଥିଲା, ଯେତେବେଳେ ତ ଗର୍ବରେ ଫାଟି ପଡୁଥିଲ, ଏବେ ତ ଘରେ ରହିବା ସମ୍ପୂର୍ଣ୍ଣ ଅସମ୍ଭବ ହେବ । ଏଥର ସେ ଆକାଶରେ ଉଡ଼ିବ । ମୁଁ ଏ ରାଜପାଟ ନେଇ କ'ଣ ଗୁଣିବି !

ବସୁମତୀ କହିଲେ—ଅଗ ତା'ପାଖକୁ ଯାଇ ଏରେ ମୋତେ ଶୁଣେଇବାକୁ ଅଇଲ କାହିଁକି ! ଯାଅ ରାଟରୁଣୀଙ୍କୁ କହ, ମୁଁ ଶୁଣି କ'ଣ କରିବି ! ତୁମକୁ ଈଶ୍ୱର ମିଛରେ ନଶ ଦେଇଛନ୍ତି । ସିଏ ଅତି ଅଧରେ ଘରୁ ବାହାରି ଗଲା, ତା'ର ମୁଣ୍ଡ ନ କାଟି ତାକୁ ପୁଣି ଖୁସାମତ କରି ଘରେ ପୂରେଇଛ ! ଯିଏ ଗୋଟେ ସ୍ତ୍ରୀକୁ ଅଧିନରେ ରଖିପାରୁନ, ସିଏ ଦେଶ ଶାସନ କିପରି ?

ରାମପ୍ରିୟା ହେଉଛନ୍ତି ରାଣୀଙ୍କ ସାନ ଭଉଣୀ । ତାଙ୍କ କୋଠରିକୁ ଯାଇ ଦେଖିଲେ ସେ କ'ଣ ଲେଖୁଛନ୍ତି । ଆଖିରୁ ତାଙ୍କର ଲୁହ ବାହାରୁଛି । ବିଶାଳସିଂହ ଟେକି ପଡ଼ି କହିଲେ—ଆଜିପରି ଦିନେ କାନ୍ଦୁଛ ! ମୁଁ ତୁମକୁ ଏକ ଖୁସି ଖବର ଶୁଣାଇବାକୁ ଆସିଛି । ରାମପ୍ରିୟା ଆଖିରୁ ଲୁହ ପୋଛି କହିଲେ—ଶୁଣିଛି । କିନ୍ତୁ ଆପଣ ଏହାକୁ ଖୁସି ଖବର କିପରି କହୁଛନ୍ତି ! ମୋ ପ୍ରିୟ ଭଗିନୀ ସବୁଦିନ ପାଇଁ ଚାଲିଗଲା—ଏହା କ'ଣ ଖୁସି ଖବର ! ତା'ର ଜନ୍ମଟା ବ୍ୟର୍ଥରେ ଗଲା । କାନ୍ଦି କାନ୍ଦି ସାରା ଜୀବନ କଟାଇଲା । ଏହା କହି ରାମପ୍ରିୟା କାନ୍ଦିଲେ । ବିଶାଳସିଂହ କହିଲେ—ସେ ତ ଚିଠିରେ ଲେଖିଛନ୍ତି—ସଂସାର ପ୍ରତି ବିରାଗ ଆସିବାରୁ ସେ ତୀର୍ଥସ୍ଥାନକୁ ଚାଲିଗଲେ ।

ରାମପ୍ରିୟାଙ୍କର କ୍ରନ୍ଦନ ବିଶାଳସିଂହଙ୍କୁ ଭଲ ଲାଗିଲା ନାହିଁ । ସେ ବାହାରକୁ ଚାଲି ଆସିଲେ । ଏଣେ ମହଫିଲ୍‌ରେ ମେହ୍‌ରଖାଁ ସିତାର ବଜାଉଥିଲା । ସମସ୍ତେ ତନ୍ମୟ ହୋଇ ଶୁଣୁଥିଲେ । ଫଜଲୁର ରାଗିଣୀ ସମୟରେ ଯେଉଁମାନେ ବାହାରକୁ ଚାଲି ଯାଇଥିଲେ, ବୁମୁଉଥିଲେ ସେମାନେ ସମସ୍ତେ ଆସି ବସିଛନ୍ତି । ସିତାର ବାଦନରୁ ଜଣାଯାଉଥିଲା ସତେ ଯେପରି ଅମୃତ ବୃଷ୍ଟି ହେଉଛି । ବାୟୁମଣ୍ଡଳ ସତେ ଯେପରି ନାଚି ଉଠୁଛି । ସେଠାରେ ଆସି କିଛି ସମୟ ବସିଲେ ।

କିନ୍ତୁ ଏ ଆନନ୍ଦ ଏବଂ ଅମୃତର ଅନନ୍ତ ପ୍ରବାହରେ ରାଜା ବିଶାଳସିଂହ ଉତ୍ତାପର ପ୍ରବାହରେ ବିକଳ ହେଉଥିଲେ । ସାରା ଦରଯାନ୍ ଆନନ୍ଦରେ ନାଚୁଥିବାବେଳେ ବର ବସି କାନ୍ଦୁଥିଲା ।

( ୧୬ )

ଦ୍ୱିତୀୟ ବର୍ଷ ଅଧାରୁ ଅଧିକ ବିତିଗଲା । କିନ୍ତୁ ଚନ୍ଦ୍ରଧରର ଅହଲ୍ୟା ବୃତ୍ତାନ୍ତ ପିତାମାତାଙ୍କ ନିକଟରେ ଗୁପ୍ତ ରଖିଲେ । ମୁନ୍‌ସୀଜୀ ପଚାରିଲେ—କ'ଣ କଥାବାର୍ତ୍ତା କରି ଆସିଲୁ ? ଯଶୋଦାନନ୍ଦନ ବିଭାଘର କରିବେ କି ନାହିଁ ? ଆସୁ ନାହାନ୍ତି କି ଚିଠିପତ୍ର ନାହିଁ—ବିଚିତ୍ର ଲୋକ ତ ! ନ କରିବା କଥା ଯଦି ସଫା ସଫା କହିଦିଅ । ନାହିଁ ଯଦି କରିବା କଥା ତେବେ ତା'ର ବ୍ୟବସ୍ଥା କର । ଚନ୍ଦ୍ରଧର କିନ୍ତୁ ଏଣୁ ତେଣୁ କହି କଥାକୁ ଟାଳି ଦିଅନ୍ତି । ଏଣେ ଯଶୋଦାନନ୍ଦନ ଚନ୍ଦ୍ରଧରଙ୍କ ପାଖକୁ ବାରମ୍ବାର ଚିଠି ଲେଖନ୍ତି—ତୁମେ ମୁନ୍‌ସୀଙ୍କ ସଙ୍ଗେ ପରାମର୍ଶ କଲ କି ନାହିଁ ? ଯଦି କହିବାକୁ ସଙ୍କୋଚ ବୋଧ କରୁଛ, ତେବେ ମୁଁ ଯାଇ କହିବି । ସମୟ ଗଡ଼ିଯାଉଛି । ଅହଲ୍ୟା ତୁମ ବ୍ୟତୀତ ଅନ୍ୟ କାହାରିକୁ ବିବାହ କରିବାକୁ ଚାହେଁନା । ଏ ପତ୍ରର ଉତ୍ତର ସେ ଚନ୍ଦ୍ରଧର ଲେଖିଦିଅନ୍ତି—ସୁଯୋଗ ପାଇଲେ କହିବି । ମୋର ବିଶ୍ୱାସ ବାପା ରାଜି ହେବେ ।

ଜନ୍ମାଷ୍ଟମୀ ଉତ୍ସବ ଶେଷରେ ମୁନ୍‌ସିଙ୍କ ଖୁସିଥିଲେ । ଗଜାଧରେବଙ୍କ ସହ ତାଙ୍କର ମଧ୍ୟ ସୌଭାଗ୍ୟ ସୂର୍ଯ୍ୟ ଉଦୟ ହେଲା ବୋଲି ସେ ମନେକଲେ । ଏବେ ସେ ନିଜ ସହରରେ କୌଣସି ଧନାଢ୍ୟ ପରିବାରରେ ନିଜ ପୁଅର ବିବାହ କରି ପାରିବେ । ଏବେ ସେ ମନଇଚ୍ଛା ଯୌତୁକ ଆଣି ଖୁବ୍ ଧୂମଧାମରେ ବିବାହ କରିଇବେ । ଚକ୍ରଧରେବ ନିଶ୍ଚୟ ତାଙ୍କୁ ସାହାଯ୍ୟ କରିବେ । କିନ୍ତୁ ମୁନ୍‌ସୀ ଯଶୋଦାନନ୍ଦନଙ୍କୁ ଜବାବ ଦେଇଛନ୍ତି । ତାଙ୍କୁ ଅନ୍ତତଃ ଥରେ ପଗ୍ଚରିଦେବା ଭଲ । ତାଙ୍କ ଆଡୁ ସାମାନ୍ୟ ବିଳମ୍ବ ଦେଖିଲେ, ପୁଣି ମନା କରି ଦେବି । ସେଦିନ ଭୋଜନ ସମୟରେ ସେ ଚକ୍ରଧରକୁ କହିଲେ—ମୁନ୍‌ସୀ ଯଶୋଦାନନ୍ଦନ ବଡ଼ ଅଳସୁଆ ଲୋକ । ଏ ଯାଏଁ ଆରମ୍ଭରେ ବସିଯାଇଛନ୍ତି । ଭାବିଛନ୍ତି ମୁଁ ଯାଇ ତାଙ୍କୁ ଖୁସାମଦ କରିବି ।

ଚକ୍ରଧର—ତାଙ୍କ ଆଡୁ ତ ଡେରି ନାହିଁ । ସେ ତ ମୋ ଚିଠିକୁ ଅପେକ୍ଷା କରିଛନ୍ତି ।

ବଜ୍ରଧର—ମୁଁ ତ ପ୍ରସ୍ତୁତ । କିନ୍ତୁ ତାଙ୍କ ଆଡୁ ଯଦି କିଛି ଅସୁବିଧା ଥାଏ, ତେବେ ମୁଁ ତାଙ୍କୁ ବାଧ୍ୟ କରୁନାହିଁ । ସେ ଯେଉଁଠି ଇଚ୍ଛା କରନ୍ତୁ । ଏଠାରେ ଶହ ଶହ ବ୍ୟକ୍ତି ଅପେକ୍ଷା କରି ବସିଛନ୍ତି । ଏବେ ତାଙ୍କ ପାଖକୁ ଲେଖିବେ, ଏଇ ତିଥିରେ ଯଦି ବିବାହ କରିବାକୁ ଇଚ୍ଛା କରନ୍ତି ତେବେ କରନ୍ତୁ । ନଚେତ୍ ଅନ୍ୟତ୍ର ଦେଖନ୍ତୁ ।

ଚକ୍ରଧର ଦେଖିଲେ, ବର୍ତ୍ତମାନ ଠିକ୍ ସମୟ । କହିଲେ—ସେ କିଛି ଟାଳଟୁଳ କରୁନାହାନ୍ତି । କଥା ହେଉଛି—ସେ କନ୍ୟା ମୁନ୍‌ସୀ ଯଶୋଦାନନ୍ଦନଙ୍କର ନୁହେଁ ।

ବଜ୍ରଧର—ନୁହେଁ ! ସେ ତ ସେ କଥା କହୁ ନ ଥିଲେ । ଓହୋ, ଝିଅ ନ ହେଲେ ଝିଆରୀ, ଭଣିଜୀ, ନାତୁଣୀ କି ଭଉଣୀ ହୋଇଥିବ । ମୋର ଆମ୍ବ ଖାଇବା ଇଚ୍ଛା, ଗଛ ଗଣିବା ନୁହେଁ । ଯଦି ଝିଅଟି ତୋର ପସନ୍ଦ ହେଉଛି ଏବଂ ଭଲ ଯୌତୁକ ଦେଇ ପାରିବେ—ତେବେ ମୋର ଆଉ କିଛି ଚିନ୍ତା ନାହିଁ ।

ଚକ୍ରଧର—ସେ ଝିଅଟିକୁ ସେ ଏକ ମେଳାରୁ ପାଇଥିଲେ । ସେତେବେଳେ ତା'ର ବୟସ ତିନିବର୍ଷ ଥିଲା । ସେ ଝିଅଟି ଉପରେ ତାଙ୍କର ଦୟା ହେଲା । ଘରେ ନେଇ ପାଳିଲେ ।

ବଜ୍ରଧର—(ସ୍ତ୍ରୀକୁ) ଆହେ କେଡ଼େ ଦଗାବାଜ୍ ଶୁଣିଲଣି ! ଏ ଯାଏଁ କ'ଣ ସେ ପିଲାର ମା' ବାପ କିଏ ଜଣା ପଡ଼ୁନାହିଁ ।

ଚକ୍ରଧର—ନାହିଁ ।

ବଜ୍ରଧର—ଆଚ୍ଛା, ତା'ହେଲେ ଏମିତ କଥା ! ଗୋଟାଏ ମିଥ୍ୟାବାଦୀ ।

ନିର୍ମଳା—ଯେଉଁମାନେ ମିଠା ମିଠା କଥା କହନ୍ତି, ସେମାନଙ୍କ ପେଟରେ ବିଷଥାଏ । କେଉଁ ଜାତିର ପିଲା କିଏ ଜାଣେ ! ତୁମେ ସଫା ମନାକରି ଲେଖିଦିଅ ।

ବଜ୍ରଧର—ମୁଁ ତୁମ ପରାମର୍ଶ ଲୋଡୁନାହିଁ । ମୁଁ ଜାଣେ, ଏଭଳି ଦଗାବାଜଙ୍କ ସଙ୍ଗେ କପରି ବ୍ୟବହାର କରିବାକୁ ହୁଏ। ଏଇ ସଙ୍ଗେ ସଙ୍ଗେ ଲେଖୁଛି ।

ଏହା କହି ମୁନ୍‌ସୀଜୀ ଭୋଜନ ପରେ ଟହିଲେଇବାକୁ ଉଦ୍ୟତ ହେଲେ । ଚନ୍ଦ୍ରଧର ଆରକ୍ତ ମୁଖ ଏବଂ ସଙ୍କୋଚରୁଦ୍ଧ କଣ୍ଠରେ କହିଲେ—ମୁଁ ତ ଜବାବ ଦେଇ କରି ଆସିଛି ।

ନିର୍ମଳା—ଏଁ ! ମୋ ତୁଣ ପକେଇ କହିଲୁ !

ଚନ୍ଦ୍ରଧର—ହଁ ମା, ତୁମ ତୁଣ ପକେଇ କହୁଛି ।

ବଜ୍ରଧର—ତୋର ତୁ ମନକୁ ମନ ସବୁ ଠିକ୍ କରି ଦେଇଛୁ ତାହେଲେ ! ଆଉ ମୋତେ କିଆଁ ପଚାରୁଛୁ ! ତୁ ବିଦ୍ୱାନ, ସାବାଳକ, ନିଜର ଭଲ ମନ୍ଦ ସବୁ ଜାଣି ପାରୁଛୁ । ଆଉ ମୋତେ ପଚାରିବାର ଆବଶ୍ୟକତା କ'ଣ ଅଛି ! ଏଥିପାଇଁ ସେ କପଟୀ ତତେ ସାଙ୍ଗରେନେଇ ପଳେଇଥିଲା । ତୁ ଝିଅଟାକୁ ସୁନ୍ଦର ଦେଖି ଭୁଲିଗଲୁ ? କିନ୍ତୁ ମନେରଖି ସ୍ତ୍ରୀଠାରେ ସୁନ୍ଦରତା ସବୁଠାରୁ ବଡ଼ଗୁଣ ନୁହେଁ । ସେଠାରେ ମୁଁ କଦାପି ବିବାହ କରେଇ ଦେବି ନାହିଁ ।

ଚନ୍ଦ୍ରଧର—ସେ ବାଳିକାର ଅବସ୍ଥା କ'ଣ ହେବ ?

ବଜ୍ରଧର—ତୁ କ'ଣ ବିଚାରପତି ! ତା'ର କ'ଣ ହେଲା ! କହିଦେଲି ଖାଇଦେଉ । ତୋତେ ତା' ବିଷୟରେ ଏତେ ଚିନ୍ତା କାହିଁକି !

ଚନ୍ଦ୍ରଧର—ଅନ୍ୟ କେହି ନିଜ କର୍ତ୍ତବ୍ୟ ନ ଜାଣିଲେ ବି, ମୁଁ ତ ମୋ କର୍ତ୍ତବ୍ୟ କରିବି ।

ବଜ୍ରଧର—କ'ଣ ବାଜେ କଥା ଗୁଡ଼େ କହୁଛୁ ! ଯେଉଁ ଝିଅର ବାପ ମା' କିଏ କିଛି ଜଣା ନାହିଁ, ତାକୁ ବିବାହ କରି ଖାନ୍‌ଦାନର ନାଁ ବୁଡ଼େଇବୁ ! ଏପରି କହିବାକୁ ତୋତେ ଲଜ୍ଜାଲାଗୁ ନାହିଁ !

ଚନ୍ଦ୍ରଧର—ମୋର ମତ—ସ୍ତ୍ରୀ ହେଉ ବା ପୁରୁଷ, ଗୁଣ ଏବଂ ସ୍ୱଭାବ ହେଉଛି ମୁଖ୍ୟ ବସ୍ତୁ । ଏତଦ୍ଭିନ୍ନ ଅନ୍ୟ ସବୁ ଗୌଣ ।

ବଜ୍ରଧର—ତୋ ମୁଣ୍ଡରେ ତ ନୂଆ ଚଳଣିର ଭୂତ ଚଢ଼ି ନ ଥିଲା । ହଠାତ୍ ଏପରି ପରିବର୍ତ୍ତନ ହୋଇଗଲା କିପରି !

ଚନ୍ଦ୍ରଧର—ମୋ ଇଚ୍ଛା ବିରୋଧରେ କୌଣସି କାର୍ଯ୍ୟ କରିବି ନାହିଁ । କିନ୍ତୁ ସିଦ୍ଧାନ୍ତ ବିଷୟରେ ମୁଁ ସ୍ୱାଧୀନ ।

ବଜ୍ରଧର—ଏ ତ ହେବା ନୁହେଁ, ମୋ ମୁହଁରେ କଳା ବୋଳିବା କଥା । କିନ୍ତୁ ମନେରଖ, ତୁ ଏ ବିବାହ କଲେ କିଛି ଭଲ ହେବନାହିଁ । ଭଗବାନ ମୋତେ ମୋ କୁଳରେ କଳଙ୍କ ଲାଗିବା ନ ଦେଖାନ୍ତୁ ।

ଚନ୍ଦ୍ରଧର—ଅନ୍ୟ କୌଣସିଠାରେ ମୁଁ ବିବାହ କରିବି ନାହିଁ ।

ଏହା କହି ଚନ୍ଦ୍ରଧର ବାହାରକୁ ଚାଲି ଆସିଲେ । ଯଶୋଦାନନ୍ଦନଙ୍କ ପାଖକୁ ସମସ୍ତ କଥା ଲେଖି ଏକ ପତ୍ର ଦେଲେ । ଶେଷରେ ସେ ଲେଖିଲେ—ବାପା ରାଜି ହେଉ ନାହାନ୍ତି ।

ଯଦିଓ ମୁଁ ମୋ ସିଦ୍ଧାନ୍ତରେ ଦବିବା ପ୍ରକୃତି ନାହିଁ, ତଥାପି ତାଙ୍କଠାରୁ ଅଲଗା ରହିବା ଏବଂ ତାଙ୍କର ବୃଦ୍ଧାବସ୍ଥାରେ ତାଙ୍କୁ ଦୁଃଖ ଦେବାର କଳ୍ପନା କରିପାରୁ ନାହିଁ । ମୁଁ ବଡ଼ ଲଜ୍ଜିତ ହୋଇ ଆପଣଙ୍କଠାରୁ କ୍ଷମା ଚାହୁଁଛି । ନିଜ ଇଚ୍ଛାରେ ବିବାହ କରି ପିତାମାତାଙ୍କୁ ଦୁଃଖୀ କରିବାର କଳ୍ପନା ଯେପରି ମୁଁ କରି ପାରୁନାହିଁ, ସେହିପରି ପିତାମାତାଙ୍କ ଇଚ୍ଛାରେ ବିବାହ କରି ଜୀବନ କଟାଇବା କଳ୍ପନା ମୋ ପାଇଁ ଅସହ୍ୟ ।

ଏହାପରେ ଅନ୍ୟଏକ ପତ୍ର ଅହଲ୍ୟା ନିକଟକୁ ଲେଖିଲେ । ପ୍ରେମପତ୍ର ରଚନା କବିତା ରଚନା ଅପେକ୍ଷା କଠିନ । କବି ଚଉଡ଼ା ସଡ଼କରେ ଚାଲେ । ପ୍ରେମିକ କିନ୍ତୁ ଖଣ୍ଡାଧାରରେ ଚାଲେ । ତିନି ଘଣ୍ଟାରେ ଯାଇ ସେ ଚିଠି ପୂର୍ଣ୍ଣ କଲେ । ତହିଁରେ ଶେଷକୁ ସେ ଲେଖିଲେ— 'ହେ ପ୍ରିୟେ', ଅନ୍ୟ ପୁତ୍ର ଭଳି ମୁଁ ମୋ ମାତା ପିତାଙ୍କର ଭକ୍ତ । ତାଙ୍କର ସେବାରେ ଜୀବନ ଦେଇପାରେ । କିନ୍ତୁ ଯଦି ଏହି ଭକ୍ତି ଏବଂ ଆତ୍ମାର ସ୍ୱାଧୀନତାରେ ବିରୋଧ ଆସିଯାଏ, ତେବେ ଆତ୍ମାକୁ ରକ୍ଷାକରିବା ପାଇଁ ଟିକିଏ ହେଲେ ମୁଁ ସଙ୍କୋଚ କରିବି ନାହିଁ । କିନ୍ତୁ ସବୁର ଫଇସଲା ମୁଁ ତୁମ ଉପରେ ଛାଡ଼ୁଛି । କେବଳ ଏତିକ ମୋର ଯାଚନା—ତୁମେ ମୋ ପ୍ରତି ଦୟାକର ।

ଚିଠି ଦୁଇଟି ଡାକ ବାକ୍ସରେ ପକାଇ ସେ ମନୋରମାକୁ ପଢ଼ାଇବା ପାଇଁ ଚାଲିଗଲେ । ମନୋରମା କହିଲା—ଆଜି ଆପଣ ବଡ଼ ଶୀଘ୍ର ଆସିଗଲେ । କିନ୍ତୁ ମୁଁ ପ୍ରସ୍ତୁତ ହୋଇଯାଇଛି । ମୁଁ ଜାଣିଥିଲି ଆପଣ ଆସୁଥିବେ ବୋଲି ।

ଚକ୍ରଧର ହସି ହସି କହିଲେ—ମୁଁ ଆସୁଛି ବୋଲି ତୁମକୁ କିପରି ଜଣାପଡ଼ିଲା ?

ମନୋରମା—ତା' କହିବି ନାହିଁ । କିନ୍ତୁ ମୁଁ ଜାଣିଥିଲି । ଆଚ୍ଛା ଆପଣଙ୍କ ବିଷୟରେ ଅଉ କିଛି କହିବି ! ଆଜି ଆପଣ କୌଣସି ବିଷୟ ନେଇ କାନ୍ଦିଛନ୍ତି । କହନ୍ତୁ, ସତ କି ନାହିଁ ?

ଚକ୍ରଧର ଚକିତ ହୋଇ କହିଲେ—ମିଛ କଥା, ମୁଁ କାହିଁକି କାନ୍ଦିବି ! ମୁଁ କ'ଣ ବାଳକ ହେଇଚି !

ମନୋରମା ଖିଲ୍‌ଖିଲ୍ ହୋଇ ହସିଲା । ତାପରେ କହିଲା—ବାବୁଜୀ, କେବେ କେବେ ଆପଣ ବଡ଼ ଝାଣ୍ଟି କଥା କହନ୍ତି । କାନ୍ଦିବା ଓ ହସିବା କ'ଣ କେବଳ ବାଳକମାନଙ୍କ ପାଇଁ ! ଯୁବକ ଓ ବୃଦ୍ଧ କ'ଣ କାନ୍ଦନ୍ତି ନାହିଁ !

ଉଦାସ ଭାବରେ ଚକ୍ରଧର ହସିବାକୁ ଚେଷ୍ଟା କରି କହିଲେ—ତୁମେ କ'ଣ ଚାହୁଁଛ, ମୁଁ ତୁମର ଦିବ୍ୟଜ୍ଞାନକୁ ପ୍ରଶଂସା କରିବି ବୋଲି !

ମନୋରମା—କିନ୍ତୁ ଆପଣଙ୍କ ଆଖି କହି ଦେଉଛି, ଆପଣ କାନ୍ଦୁଥିଲେ (ହସି ହସି) ଏବେ ଆପଣ ସେ ବିଦ୍ୟା ପଢ଼ି ନାହାନ୍ତି—ଯେଉଁ ବିଦ୍ୟା ହସକୁ କାନ୍ଦ ଏବଂ କାନ୍ଦକୁ ହସ କରିଦେଇ ପାରେ ।

ଚକ୍ରଧର—ତୁମେ କ'ଣ ଆଜିକାଲି ସେ ବିଦ୍ୟା ଅଭ୍ୟାସ କରୁଛ କି ?

ମନୋରମା—କରୁନ, କିନ୍ତୁ କରିବାକୁ ଇଚ୍ଛା କରୁଛି ।

ଚକ୍ରଧର—ନା ମନୋରମା, ତୁମେ ସେ ବିଦ୍ୟା ଶିଖ ନାହିଁ ।

ମନୋରମା—ଆପଣ ମହାରାଣୀଙ୍କ ତୀର୍ଥଯାତ୍ରା କଥା ଶୁଣିଥିବେ । ଅଚ୍ଛା, କହନ୍ତୁ ତ, ଆପଣ ଏ ରହସ୍ୟ ଜାଣିଛନ୍ତି !

ଚକ୍ରଧର—କ'ଣ ତହିଁରେ କିଛି ରହସ୍ୟ ଅଛି ?

ମନୋରମା—ହିଁ । ମୁଁ ପଅର ଦିନ ବହୁ ବେଳଯାଏଁ ସେଠାରେ ଥିଲି । ହର୍ଷପୁର ରାଜକୁମାର ଆସିଥିଲେ । ତାଙ୍କ ସଙ୍ଗରେ ଯାଇଛନ୍ତି ।

ଚକ୍ରଧର—ଛାଡ଼, ହୋଇଥିବ । ତୁମେ ଆଜି କ'ଣ କାମ କରିଛ ଆଣ, ଦେଖିବି ।

ମନୋରମା—ଗୋଟିଏ ଶ୍ରେଷ୍ଠ ରଚନା ଲେଖିଛି । କିନ୍ତୁ ଆପଣଙ୍କୁ ଦେଖେଇବାକୁ ଲଜ୍ଜା ଲାଗୁଛି ।

ଏହି ସମୟରେ ଠାକୁର ହରସେବକସିଂହ ଆସି ପହଞ୍ଚିଲେ । ରଚନାଟି ଚକ୍ରଧରଙ୍କୁ ଦେଇ ମନୋରମା ଘର ଭିତରକୁ ଚାଲିଗଲା । ରଚନାଟି ମୂଳରୁ ଶେଷଯାଏ ପଢ଼ାସରିଲା ବେଳକୁ ଦେଖିଲେ ହରସେବକସିଂହ ତାଙ୍କ ନିକଟରେ ଚୌକିରେ ଆସି ବସିଛନ୍ତି । ଆଜି ସେ ଖୁବ୍ ପ୍ରସନ୍ନ ଦେଖାଯାଉଛନ୍ତି । ଚକ୍ରଧରଙ୍କୁ କହିଲେ—ଆପଣ କାଲି ମହାରାଜାଙ୍କ ଉତ୍ସବର ବ୍ୟବସ୍ଥା ଯେପରି ସୁନ୍ଦର ଭାବେ ସମ୍ପନ୍ନ କଲେ, ସେଥିପାଇଁ ଆପଣଙ୍କୁ ଧନ୍ୟବାଦ ଦେଉଛି । ମହାରାଜା ବଡ଼ ଉଦାର ବ୍ୟକ୍ତି । ଏ ଯାଏଁ ମୁଁ ତାଙ୍କୁ ଭୁଲ ବୁଝିଥିଲି । କାଲି ମୋର ସନ୍ଦେହ ଦୂର ହୋଇଗଲା । ଆପଣଙ୍କ ସହ ତ ସେ ମିତ୍ରବତ୍ ବ୍ୟବହାର କରନ୍ତି ।

ଚକ୍ରଧର—ହିଁ ଆଜ୍ଞା, ଏ ଯାଏଁ ତାଙ୍କ ସମ୍ପର୍କରେ ଦୋଷ ବାଛିବାକୁ କିଛି ନାହିଁ ।

ହରସେବକ—ମହାରାଜାଙ୍କର ଜଣେ ପ୍ରାଇଭେଟ୍ ସେକ୍ରେଟେରୀ ନିଶ୍ଚୟ ଦରକାର ପଡ଼ିବ । ଆପଣ ଚେଷ୍ଟାକଲେ ପାଇ ପାରିବେ । ଜଣେ ସେକ୍ରେଟେରୀ ବ୍ୟତୀତ ମହାରାଜାଙ୍କର କାମ ଚଳି ପାରିବ ନାହିଁ । ଯଦି କହିବେ, ଚେଷ୍ଟା କରିବି ।

ଚକ୍ରଧର—ନାହିଁ ଆଜ୍ଞା—ଏବେ ତ ମୋର କୌଣସି ସ୍ଥାୟୀ ଚାକିରିର ଅଭିପ୍ରାୟ ନାହିଁ । ଦ୍ୱିତୀୟରେ ସେ କାର୍ଯ୍ୟ ମୁଁ ସମ୍ଭାଳିପାରିବି, ଏ ବିଶ୍ୱାସ ମୋର ନାହିଁ ।

ହରସେବକ—କାମ କଲେ ସବୁ ଆସିଯିବ । ମନୋରମାକୁ ପଢ଼େଇବା ପାଇଁ ଅନେକ ମାଷ୍ଟର ଆସିଛନ୍ତି । କେହିହେଲେ ଦୁଇମାସରୁ ଅଧିକ ରହିପାରି ନ ଥିଲେ । ଆପଣ ଆସିବା ଦିନଠାରୁ ସେ ଖୁବ୍ ଉନ୍ନତ କରିଛି । ଏହି ମାସଠାରୁ ମୁଁ ଆପଣଙ୍କୁ ୫୦ ଟଙ୍କା ଲେଖାଏଁ ଦେବି । ତଥାପି ଏହା ଆପଣଙ୍କ ଯୋଗ୍ୟତା ଓ ପରିଶ୍ରମକୁ ଚାହିଁ କମ୍ ବୋଲି ମନେକରେ ।

ଏହି ଭଳି କଥାବାର୍ତ୍ତା ପରେ ହରସେବକ ଭିତରକୁ ଚାଲିଗଲେ । ମନୋରମା ଦୁଇଜଣଙ୍କ ମଧ୍ୟରେ ଚାଲିଥିବା କଥାବାର୍ତ୍ତା ଶୁଣୁଥିଲା । ତା' ମନରେ ଆଶଙ୍କା ହେଲା । କୌଣସି ବ୍ୟକ୍ତିର

ସ୍ୱଭାବ ବିପରୀତ ଆଚରଣ ଦେଖିଲେ ଶଙ୍କା ଜାତହେବା ସ୍ୱାଭାବିକ । ଆଜି ବାବା ଏତେ ଉଦାର କାହିଁକି ! ଅଙ୍ଗ ବିନୟ ଓ ଦୟାର୍ଦ୍ର ମୂର୍ତ୍ତି କାହିଁକି ହୋଇଯାଇଛନ୍ତି ! ଏଥିରେ ଅବଶ୍ୟ କିଛି ରହସ୍ୟ ଅଛି ।

ମନୋରମା ଏପରି ଭାବୁଥିବା ସମୟରେ ଗୁରୁଦେବକଙ୍କସିଂହ ବାହାରେ ବନ୍ଧୁକ ଧରାଇ ଶିକାରୀ ବେଶରେ ପହଞ୍ଚି କହିଲେ—କହନ୍ତୁ ମହାଶୟ, ବାବା କ'ଣ ଆଜି ଆପଣଙ୍କ ଉପରେ ଭାରି ପ୍ରସନ୍ନ !

ଚକ୍ରଧର—ତାହା ତାଙ୍କର ଦୟା ।

ଗୁରୁଦେବକ—କୃପା ବା ଦୟା ଭାବନ୍ତୁ ନାହିଁ । ସେ ଆଦୌ ଦୟାଳୁ ନୁହନ୍ତି । ସତର୍କ ରହିବେ । ଏହାକହି ସେ ବନ୍ଧୁକ ଧରି ଶିକାର ଉଦ୍ଦେଶ୍ୟରେ ଚାଲିଗଲେ ।

ଆକାଶରେ ମେଘ ଛାଙ୍କିଥିଲା । ବର୍ଷା ହେବା ପୂର୍ବରୁ ଘରେ ପହଞ୍ଚିବା ଦରକାର । ଚକ୍ରଧର ବାହାରକୁ ଚାଲି ଆସିଲେ ।

( ୧୩ )

ଜଗଦୀଶ ପୁରର ଭାଗ୍ୟ ଖୋଲିଲା । ରାଜମହଲ ଗହଳ ଚହଳ ହେଲା । ବର୍ଷା ଦିନେ ମରାମତି ହୋଇ ନ ପାରିବାରୁ କୁମାର ପୂର୍ଣ୍ଣିମାଯାଏ ସହରରେ ରହିବାକୁ ହେଲା । କାର୍ତ୍ତିକ ଆରମ୍ଭରୁ ଏଣେ ରାଜମହଲ ମରାମତି ହେଲା, ତେଣେ ଅଭିଷେକ ଉତ୍ସବର ଯୋଗାଡ଼ ଚାଲିଲା । ସହରରୁ ଜିନିଷ ପତ୍ର ଜଗଦୀଶପୁରକୁ ବୁହାଚାଲିଲା । ରାଜାସାହେବ ପ୍ରତିଦିନ ଜଗଦୀଶପୁର ଯାଇ ସହରକୁ ଫେରି ଆସନ୍ତି । ରାଣୀମାନେ ଜଗଦୀଶପୁର ଚାଲି ଯାଇଥିଲେ । ରାଜା ସାହେବ ଘଣ୍ଟେ ଦ'ଘଣ୍ଟା ପାଇଁ ଗଲେ ବି ଗୃହକଳହ ଶୁଣିବାକୁ ମିଳେ । ରାଣୀମାନଙ୍କ ପ୍ରତି ତାଙ୍କର ବିରକ୍ତି ଆସିଗଲାଣି । ରାଜାସାହେବ ଜୀବନର ନୂତନ ଅଧ୍ୟାୟ ଆରମ୍ଭ କରି ଦେଇଥିଲେ ।

ପ୍ରଜାମାନଙ୍କ ଉପରେ ଅତ୍ୟାଚାର ବା ଜବରଦସ୍ତି ନ କରିବାକୁ ରାଜା ସାହେବଙ୍କର ତାଗିଦା । ପ୍ରଜାମାନେ ଭାବିଲେ, ରାଜା ସାହେବ ଉତ୍ତମ ଲୋକ । ରାଣୀଙ୍କ ଭଳି ଅତ୍ୟାଚାର ଆଉ ହେବ ନାହିଁ । ତେଣୁ ସେମାନେ ଖୁସିରେ ଅଭିଷେକ ଉତ୍ସବ ପାଇଁ ସ୍ୱତଃପ୍ରବୃତ୍ତ ହୋଇ କାମକଲେ ।

ଉଦ୍ୟାନମାର୍ଗ ପର୍ଯ୍ୟନ୍ତ ରାଜାର ବଢ଼େଇ, ମିସ୍ତ୍ରି, ଦରଜୀ ପ୍ରଭୃତି କଠିନ ପରିଶ୍ରମ ଦେଇଠିରେ କଲେ । କର୍ମଚାରୀମାନଙ୍କ ପ୍ରକୃତି ବଦଳିଲା ନାହିଁ । ଚକ୍ରଧରଙ୍କ ପାଖରେ ପ୍ରତିଦିନ

ପ୍ରଜାମାନଙ୍କ ଉପରେ ହେଉଥିବା ଅତ୍ୟାଚାରର ଖବର ଆସି ପହଞ୍ଚେ । ରାଜା ସାହେବଙ୍କ ପାଖରେ ଅଭିଯୋଗ କରି ତାଙ୍କୁ ଅସୁବିଧାରେ ପକାଇବାକୁ ବର୍ତ୍ତମାନ ସେ ଠିକ୍ ମନେକରୁ ନ ଥିଲେ । ବରଂ ପ୍ରତିଦିନ ଯାଇ ମଜୁରିଆ ଏବଂ କାରିଗରମାନଙ୍କୁ ବୁଝାଉଥିଲେ । ରାଜଭବନର କଳେବର ନୂଆ ହୋଇଗଲା । ତିଲକ ଉତ୍ସବ ପାଇଁ ବିରାଟ ପେଣ୍ଡାଲ ତିଆରି ହୋଇଗଲା । କର୍ମଚାରୀମାନଙ୍କ ପାଇଁ ନୂଆ ୟୁନିଫର୍ମ୍ ତିଆରି ହେଲା । ରାଜ୍ୟର ସବୁ ଭଦ୍ରବ୍ୟକ୍ତିଙ୍କ ପାଖକୁ ନିମନ୍ତ୍ରଣ ପଠାଗଲା ।

ବସନ୍ତ ଋତୁ । ରାଜଭବନ, ପେଣ୍ଡାଲ ବସନ୍ତ ରଙ୍ଗରେ ରଞ୍ଜିତ । ଅତିଥିମାନଙ୍କ ପାଇଁ କ୍ୟାମ୍ପ୍ ତିଆରି କରାଗଲେ ମଧ୍ୟ ବସନ୍ତ ରଙ୍ଗରେ । କର୍ମଚାରୀମାନଙ୍କର ୟୁନିଫର୍ମ୍ ମଧ୍ୟ ବସନ୍ତ ରଙ୍ଗରେ ପ୍ରସ୍ତୁତ ହେଲା—ସତେ ଯେପରି ବସନ୍ତର ଅଭିଷେକ ହେଉଛି ।

ଏପର୍ଯ୍ୟନ୍ତ ସମସ୍ତ କାର୍ଯ୍ୟ ବେଠିରେ ଚାଲିଥିଲା । ଏଣିକି ପଇସାର ଆବଶ୍ୟକ ପଡ଼ିଲା । ରାଜାମାନଙ୍କର ଚର୍ଚ୍ଚା, ଇଂରେଜ ଅତିଥିମାନଙ୍କର ସତ୍କାର ବେଠିରେ ହୋଇପାରିବ ନାହିଁ । କଲିକତାରୁ ଥିଏଟର କମ୍ପାନୀକୁ ଡକାଗଲା । ମଥୁରାର ରାସଲୀଳାକୁ ନିମନ୍ତ୍ରଣ ଦିଆଗଲା । ଖର୍ଚ୍ଚର ଅଟକଳ ପାଞ୍ଚ ଲକ୍ଷରୁ କମ୍ ନୁହେଁ । ପ୍ରଶ୍ନ ଥିଲା—ଏ ଟଙ୍କା ଆସିବ କେଉଁଠୁ । ପାଖରେ ଫଟା ପାହୁଲଟାଏ ନାହିଁ ଲୋକମାନଙ୍କଠାରୁ ଛଅମାସର ଦେୟ ଆଗୁଆ ଅସୁଲ ହୋଇ ଯାଇଥିଲା । ଦିନ ଆସୁଥିଲା, ଚାଲିଯାଉଥିଲା । କିଛି ସ୍ଥିର ହୋଇ ପାରୁ ନ ଥିଲା । ଆଉ ମାତ୍ର ୧୫ ଦିନ ରହିଲା ।

ସନ୍ଧ୍ୟା ସମୟ । ରାଜା ସାହେବ ଓସ୍ତାଦ ମେହଦୂଖାଁ ପାଖରେ ବସି ସିତାର ଅଭ୍ୟାସ କରୁଛନ୍ତି । ରାଜ୍ୟ ପାଇବା ପରେ ତାଙ୍କର ଏଇ ଏକମାତ୍ର ବ୍ୟସନ । ଶ୍ରେଷ୍ଠବଡ଼ ସମସ୍ତଙ୍କ ସଙ୍ଗେ ବଡ଼ ନମ୍ରତାର ସହ କଥାବାର୍ତ୍ତା କରୁଥିଲେ । ମେହଦୂଖାଁ ତାଙ୍କ ସିତାର ବଜେଇବା ପିଲାଖେଳ ନୁହେଁ ବୋଲି ବିରକ୍ତ ହେଉଥିଲା । ଏହି ସମୟରେ ଦେଓ୍ୱାନ୍ ସାହେବ ଏବଂ ମୁନ୍‌ସୀ ବଜ୍ରଧର ଆସି ପହଞ୍ଚିଲେ ।

ବିଶାଳସିଂହ ପଚାରିଲେ—କ'ଣ କିଛି ଜରୁରୀ କାମ ଅଛି ?

ଦେଓ୍ୱାନ୍—ଜରୁରୀ କାମ ନ ଥିଲେ ହଜୁରଙ୍କୁ ଏବେ କଷ୍ଟ ଦେବାକୁ ଆସି ନ ଥା'ନ୍ତୁ ।

ମୁନ୍‌ସୀ—ଦେଓ୍ୱାନ ସାହେବ ଆସିବାକୁ ଆଗପଛ ହେଉଥିଲେ । ମୁଁ କହିଲି—ନ ଗଲେ କିମିତି କାମ ହବ ! ଡରି ଡରି ଆସିଛୁ ।

ଦେଓ୍ୱାନ୍—ହଜୁର୍ ଉତ୍ସବ ଆଉ ସପ୍ତାହେ ରହିଲା । ଏ ଯାଏଁ ଟଙ୍କାର ବନ୍ଦୋବସ୍ତ ହୋଇ ପାରିଲା ନାହିଁ । ଯଦି ଆଦେଶ ହେବ, ତେବେ କୌଣସି ଢ୍ୟାଙ୍କରୁ ୫ ଲକ୍ଷ କରଜ ଆଣିବା ।

ରାଜା—ଆଦୌ ନୁହେଁ । କହିଥିଲି ମୁନ୍‌ସୀଜୀ, ପଇସା ପାଇଁ ଯେତେବେଳେ ମୁଁ ଭାଇମାନଙ୍କର ଅସୁବିଧା ଭୋଗୁଥିଲି, ସେତେବେଳେ କରଜ କରି ନଥିଲି । କରଜ କରିବା କଥା କହନ୍ତୁ ନାହିଁ ।

ଦେଓ୍ୱାନ୍—ତେବେ ମହାରାଜ କ'ଣ ହୁକୁମ ଦେଉଛନ୍ତି !

ରାଜା—ହରି, ମାଲ ଆଦି ରେନ୍ ଯଥେଷ୍ଟ ଅଛି । କେ ଏହି ବଣିଆଙ୍କୁ ଡାକ ତାଙ୍କୁ ବିକ୍ରି କରିବାର ବ୍ୟବସ୍ଥା କରନ୍ତୁ ।

ଦେଓ୍ୱାନ୍—ମହାରାଜ, ଏହାଦ୍ୱାରା ରାଜ୍ୟର ବଦନାମ ହେବ ।

ମୁନ୍‌ସୀ—ରତ୍ନ-ଅଳଙ୍କାର ହେଉଛି ଘରର ମର୍ଯ୍ୟାଦା । ସେ ଗୁଡ଼ିକ ଘରୁ ଚାଲିଗଲେ ଘରର ମର୍ଯ୍ୟାଦା ଚାଲିଗଲା ।

ରାଜା—ବଦନାମ ତ ହେବ, କିନ୍ତୁ ଏହା ବ୍ୟତୀତ ଅନ୍ୟ ଉପାୟ କ'ଣ !

ଦେଓ୍ୱାନ୍—ମୋ ମତରେ ରାଜ୍ୟରେ ହଳ ପିଛା ୧୦ ଟଙ୍କା ଚାନ୍ଦା ଅସୁଲ ହେଉ ।

ରାଜା—ମୁଁ ମୋ ତିଲକ ଉତ୍ସବ ପାଇଁ ପ୍ରଜାମାନଙ୍କୁ କଷ୍ଟ ଦେବି ନାହିଁ । ବରଂ ଉତ୍ସବ ବନ୍ଦ ହେଉ ।

ଦେଓ୍ୱାନ୍—ମହାରାଜ, ରାଜ୍ୟର ଏଇ ହେଉଛି ପୁରୁଣା ପ୍ରଥା । ପ୍ରଜାମାନେ ଖୁସିରେ ଦେବେ ।

ମୁନ୍‌ସୀ—କେହି ଆପତ୍ତି କରିବେ ନାହିଁ । ବରଂ ଖୁସିରେ ଅଧିକ ଦେଇଦେବେ ।

ରାଜା—କେଉଁ ମୁହଁରେ ମୁଁ ଟଙ୍କା ମାଗିବି ! ମୋ ଉତ୍ସବ ପାଇଁ ଲୋକେ କାହିଁ କଷ୍ଟ ପାଇବେ, ଅଧିକାଂଶ ଲୋକେ ଗରିବ !

ମୁନ୍‌ସୀ—ହଜୁର୍, ସେମାନଙ୍କୁ ଆପଣ ଯେତେ ଗରିବ ବୋଲି ମନେ କରୁଛନ୍ତି, ବାସ୍ତବରେ ସେମାନେ ସେପରି ନୁହନ୍ତି । ପିଲା-ଝିଲାଙ୍କ ବାହାଘରମାନଙ୍କରେ ହଜାର ହଜାର ଉଡ଼ାଇ ଦେଉଛନ୍ତି । ଦଶଟଙ୍କା ଏତେ ବେଶି ନୁହେଁ ଯେ କଷ୍ଟହେବ । ମୋର ଅନୁଭୂତି ଅଛି—ତହସିଲଦାରୀ ସମୟରେ ହାକିମ ହୁକୁମାଙ୍କୁ ଭେଟି ଦେବାରେ ହଜାର ହଜାର ଅସୁଲ ହୋଇଯାଏ ।

ରାଜା—କୌଣସି ପ୍ରକାରେ ମୁଁ ପ୍ରଜାମାନଙ୍କୁ କଷ୍ଟଦେଇ ନ ପାରେ । ଯଦି ଆପଣ ମନେକରନ୍ତି, ପ୍ରଜାମାନେ କିଛି ଆପତ୍ତି କରିବେ ନାହିଁ, ଖୁସିରେ ସାହାଯ୍ୟ କରିବେ, ତେବେ ଆପଣ ନିଜ ଦାୟିତ୍ୱରେ ସେ କାମ କରି ପାରନ୍ତି । ମୋ କାନରେ କୌଣସି ଅଭିଯୋଗ ଯେପରି ନ ପହଞ୍ଚେ ।

ଦେଓ୍ୱାନ୍—ହଜୁର୍, ଅଭିଯୋଗ ତ ଅଳ୍ପବହୁତ ପ୍ରତି କଥାରେ ହେଉଛି । ତହିଁରୁ ଉଦ୍ଧାର ପାଇବା ଅସମ୍ଭବ । ଯଦି ଆପଣ କିଛି ନ ଶୁଣି, କେବଳ ତିଲକ ଉତ୍ସବରେ

ଯୋଗଦେବା ପାଇଁ ଡକେଇବେ, ତେବେ ମଧ ଲୋକେ ଅଭିଯୋଗରୁ କ୍ଷାନ୍ତ ହେବେନାହିଁ । କର୍ମଚାରୀ କିଏ ଗଲେ ପଚାରିବେ ନାହିଁ । ଯଦି କଣେ କଚାଳକ୍ରଧାରୀ ଅସି ପହଞ୍ଚିଯାଏ, ମାସେ ଯାଏଁ ତାକୁ ଆଦର ସତ୍କାର କରିବେ । ରାଜା-ପ୍ରଜାଙ୍କର ସମ୍ବନ୍ଧ ଏଇଆ । ହଳ ପିଛୁ ୧୦ ଟଙ୍କା ବସେଇଲେ ପ୍ରାୟ ପାଞ୍ଚଲକ୍ଷ ମିଳିବ । ବାକି ଖାଦ୍ୟ ପାଇଁ ଜିନିଷପତ୍ର ଭେଟିରେ ମିଳିବ । ଆପଣଙ୍କ ଆଦେଶକୁ କେବଳ ଅପେକ୍ଷା ।

ମୁନ୍‌ସୀ—ସରକାର ତ କହିଲେ ଆପଣ ନିଜ କ୍ଷମାରେ ଅସୂଲ କରି ପାରନ୍ତି, ଆଉ ଆଦେଶର ପ୍ରଶ୍ନ କାହିଁକି ଉଠୁଛି ! ଚାଲନ୍ତୁ, ହଜୁରଙ୍କୁ ଆଉ ବ୍ୟସ୍ତ କରନ୍ତୁ ନାହିଁ ।

ରାଜା—କିନ୍ତୁ ମନେରଖିବେ, କାହାକୁ ଯେପରି ତିଳେମାତ୍ର କଷ୍ଟ ନ ହୁଏ । ଆପଣ ଏପରି ବ୍ୟବସ୍ଥା କରିବେ—ଯେପରି ଲୋକେ ଆନନ୍ଦରେ ସବୁ ଅସି ସହଯୋଗ କରିବେ ।

ଉଭୟେ ରାଜାଙ୍କ ପାଖରୁ ଫେରି ଆସିବା ରାସ୍ତାରେ ଦେଓ୍ୱାନ୍ ସାହେବ କହିଲେ—ହୋ ହାଲ୍ଲା ଯେବେ ଆରମ୍ଭ ହେବ, ଆମ ଜୀବନ ଖାଇବେ ।

ମୁନ୍‌ସୀଜୀ କହିଲେ—ଏ ସବୁ ବଗୁଲି ଭଗତ ପଣିଆ । ଆମର ପଇସାଟାଏ ହାତରୁ ଗଲେ କେତେ ଖରାପ ନ ଲାଗେ ! ଯାହାଠାରୁ ଆପଣ ଦଶଟଙ୍କା ଅସୂଲ କରିବେ, ସେ କ'ଣ ଖୁସିରେ ଦେଇଦବ ! କୌଣସି ରାଜା ଆଜିଯାଏଁ ପ୍ରଜାଙ୍କଠାରୁ ଜବରଦସ୍ତି ଆଦାୟ କର ବୋଲି କହି ନାହାନ୍ତି । କିନ୍ତୁ ଚାନ୍ଦା ଅସୂଲ ହେଲେ ଯଦି ପାଟିତୁଣ୍ଡ ହୁଏ, ତେବେ ରାଜା କର୍ମଚାରୀମାନଙ୍କର କିଛି କ୍ଷତି କରନ୍ତି କି ! ଏମିତି ସବୁବେଳେ ହେଉଛି ଓ ହେବ ।

କର୍ମଚାରୀମାନେ କେବଳ ହୁକୁମକୁ ଅପେକ୍ଷା କରିଥିଲେ । ଅସୁଲ ହୁକୁମ ପାଇଲା ମାତ୍ରେ ଖୁବ୍ ଖୁସି ହୋଇଗଲେ । ଏମିତି ଅବସ୍ଥା ହେଲା ଯେ ଇଲାକାରେ ହାହାକାର ପଡ଼ିଗଲା । ଲୋକେ ନୂଆ ରାଜାଙ୍କଠାରୁ ଉତ୍ତମ ଶାସନ ଆଶା କରିଥିଲେ । ଅବସ୍ଥା ଏପରି ହେଲା ଯେ, କର୍ମଚାରୀମାନଙ୍କର ଅତ୍ୟାଚାର ଦେଖି ଚକ୍ରଧର ମଧ ରାଗରେ ପାଚିଗଲେ । ରାଜାସାହେବଙ୍କୁ କର୍ମଚାରୀମାନେ କାବୁ କରି ଦେଲେଣି ବୋଲି ମନେକଲେ । ଚୋରିଆଡ଼େ ଲୁଟି ଚାଲିଛି । ଗାଳିମାଡ଼ ତ ସାଧାରଣ କଥା । କାହାର ବଳଦ ଫିଟେଇ ନିଆଗଲାଣି ତ କାହାକୁ ବେଦଖଲ ଧମକ ଦିଆଗଲାଣି । ଯିଏ ଖୁସିରେ ଦଶଟଙ୍କା ଦେଇଦେଲା, ସେ ମୁକ୍ତି ପାଇଲା, ଯିଏ ଟାଳଟୁଲ, ପାଟିତୁଣ୍ଡ କଲା ତା'ଠାରୁ ଦଶ ପରିବର୍ତ୍ତେ ୨୦, ୩୦, ୪୦ ଟଙ୍କା ଅସୁଲ କରାଗଲା । ଶେଷରେ ବାଧ ହୋଇ ସନେ ଚକ୍ରଧର ରାଜାସାହେବଙ୍କ ପାଖରେ ଅଭିଯୋଗ କଲେ ।

ରାଜାସାହେବ ରୁକ୍ଷକଣ୍ଠରେ କହିଲେ—ଆଜିଯାଏଁ ତ ମୋ ପାଖରେ କେହି ପ୍ରଜା ଅଭିଯୋଗ କରି ନାହାନ୍ତି । ଯଦି ସେମାନଙ୍କର କିଛି ଅଭିଯୋଗ ନାହିଁ, ଆପଣ ସେମାନଙ୍କ ତରଫରୁ ଓକିଲାତି କରୁଛନ୍ତି କାହିଁକି ?

ଚକ୍ରଧର—ଆପଣ ତ ଲୋକମାନଙ୍କ ସ୍ୱଭାବ ଜାଣିଥିଲେ । ଆପଣଙ୍କ ପାଖକୁ ଆସି ଅଭିଯୋଗ କରିବାର ସାହସ ସେମାନଙ୍କର କାହିଁ !

ରାଜା—ଏ କଥା ମୁଁ ମାନିବାକୁ ପ୍ରସ୍ତୁତ ନୁହେ । ଲୋକେ ଶିଙ୍ଗଧାନ ଗାଈ ନୁହନ୍ତି । ଯାହାକୁ କୌଣସି କଥାରେ କଷ୍ଟହୁଏ, ସେ କେବେ ଚୁପ୍ ହୋଇ ବସିପାରେ ନାହିଁ । ଆପଣଙ୍କ ବାପା ଓ ଦେଓ୍ୱାନ୍ ସାହେବ ଏ କାମ ତ କରୁଛନ୍ତି । ଆପଣ ତାଙ୍କୁ କହୁନାହାନ୍ତି କାହିଁକି !

ଚକ୍ରଧର—ତେବେ ଆପଣଙ୍କଠାରୁ କିଛି ଆଶା କରି ପାରିବି ନାହିଁ !

ରାଜା—ମୁଁ ମୋ କର୍ମଚାରୀମାନଙ୍କଠାରୁ ଭିନ୍ନ ନୁହେ ।

ଚକ୍ରଧର ଆଉ କିଛି କହିଲେ ନାହିଁ । ଦେଓ୍ୱାନ୍ ସାହେବ କିମ୍ବା ମୁନ୍‌ସୀଙ୍କୁ ଏ ସମ୍ପର୍କରେ ସାହାଯ୍ୟ କରିବାକୁ ଅନୁରୋଧ କରିବା ଅନ୍ଧ ଆଗରେ କାନ୍ଦିବା ସଙ୍ଗେ ସମାନ । ନାନା ପ୍ରକାର ବୈପ୍ଳବିକ ଚିନ୍ତା କରୁଥିବା ସମୟରେ ମୁନ୍‌ସୀଜୀ ତାଙ୍କର ପୁରୁଣା ତହସିଲଦାରୀ ଓଭର୍‌କୋଟ୍ ମଡ଼େଇ ମଟରକାର୍‌ରୁ ଓହ୍ଲାଇଲେ । ଚକ୍ରଧରଙ୍କୁ ଦେଖି କହିଲେ—ନିଜ ପାଇଁ କିଛି କହିଲୁ !

ଚକ୍ରଧର—ନିଜପାଇଁ କ'ଣ କହିବି ! ମୁଁ ଶୁଣୁଛି, ରାଜ୍ୟରେ ବଡ ଅତ୍ୟାଚାର କରାଯାଉଛି ।

ବଜ୍ରଧର—ଏ ସବୁ ତମର ସମିତି ଲୋକଙ୍କ ବଦ୍‌ମାସି । ସେମାନେ ଯାଇ ଲୋକଙ୍କୁ ଉତ୍ତେଜିତ କରୁଛନ୍ତି । ସେମାନଙ୍କ ବହପ ପାଇ ଲୋକେ ଷଣ୍ଢ ଭଳି ହେଉଛନ୍ତି । ନ ହେଲେ ଉଁ ଚୁଁ କରନ୍ତେନାହିଁ । ତୋର ବୁଦ୍ଧି ଭ୍ରଷ୍ଟ କାହିଁକି ହେଉଛି !

ଚକ୍ରଧର—ଆମେ ତ କେବଳ ଏତିକି ଚାହୁଁ ଯେ ଲୋକଙ୍କୁ ଜବରଦସ୍ତି କରାନଯାଉ ଏବଂ ଆପଣମାନେ ମଧ୍ୟ ଏଇ ପ୍ରତିଶ୍ରୁତି ଦେଇଥିଲେ । ପୁଣି ଏ ମାର ଧର କାହିଁକି !

ବଜ୍ରଧର—କାରଣ ହେଉଛି—ଲୋକମାନଙ୍କୁ କହିଦିଆଗଲା ଯେ, ରାଜା ସାହେବ କାହାକୁ ଜବରଦସ୍ତି କରୁନାହାନ୍ତି ; ଯାହାର ଖୁସି ହେଉଚି ସେ ଦେଉ, ଯାହାର ଖୁସି ନ ହେଉଚି ସେ ନ ଦେଉ । ତୁମେ ତୁମ ଲୋକଙ୍କୁ ଫେରାଇ ଆଣ—ଦେଖିବ କେତେ ସହଜରେ କାମ ହେଉଛି । ବ୍ୟକ୍ତି ଠାରେ ଶକ୍ତି ନ ଥିଲେ ନିଶାର ପ୍ରକୋପ କେବେ ଶକ୍ତି ଦେଇ ପାରେ ନାହିଁ । ବ୍ୟକ୍ତି ନିଜେ ନିଜକୁ ସମ୍ଭାଳି ନ ପାରିଲେ କେହି ତାକୁ ରକ୍ଷା କରି ପାରିବେନାହିଁ । ଚୌକିଦାର ଠାରୁ ବଡ଼ ହାକିମ ଯାଏଁ ସମସ୍ତେ ସେମାନଙ୍କର ଶତ୍ରୁ । ତୁମେ ସବୁ କେଉଁ କେଉଁ କ୍ଷେତ୍ରରେ ରକ୍ଷା କରିପାରିବ ! ଧରି ନିଅ ଅମେ ଛାଡ଼ି ଦେଲୁ, ଥାନାଦାର ଅଛନ୍ତି, କାନଗୋଇ, ପଟୁଆରୀ, ସରବରାକାର, କାର୍ଜି ସମସ୍ତେ ଅଛନ୍ତି । ସମସ୍ତେ ଆଁ କରି ଚାହିଁବସିଛନ୍ତି । ତୁ ଫକୀର ହୋଇ ଗଲେ ସାରା ଦୁନିଆଁ ତୋ ପାଇଁ ସନ୍ନ୍ୟାସୀ ହେଇ ଯିବେନାହିଁ ।।

କ'ଣ କରିବେ, ଚକ୍ରଧରଙ୍କ ମୁଣ୍ଡକୁ କିଛି ଚୁଝିଲାନାହିଁ । ଯାଇ ମନୋରମା ପାଖରେ ପହଞ୍ଚିଲେ । ମନୋରମା ତାଙ୍କୁ ଉଦାସ ଦେଖି ପଚାରିଲା—ଚିନ୍ତିତ ଦେଖାଯାଉଛନ୍ତି; ଘରେ ସବୁ କୁଶଳ ତ ?

ଚନ୍ଦ୍ରଧର—ହିଁ ସବୁ କୁଶଳ । କ'ଣ ପଢ଼ା କରୁଛ ଆଣ ଦେଖିବ ।

ମନୋରମା—ଆପଣ ମୋତେ ଲୁଚଉଛନ୍ତି । ନ କହିଲେ ପଢ଼ିବିନାହିଁ । ଆପଣ ତ କେବେ ଏପରି ଶୁଖିଲା ଦେଖାଯାଆନ୍ତି ନାହିଁ ।

ଚନ୍ଦ୍ରଧର—କ'ଣ କହିବି ମନୋରମା, ନିଜ ଅବସ୍ଥା ଦେଖି କେବେକେବେ କାନ୍ଦ ମାଡୁଛି ସାରା ଦେଶ ଗୋଲାମି ଶିକୁଳିରେ ବନ୍ଧା ହୋଇଛି । ତଥାପି ଆମେ ନିଜ ଭାଇ ବେକରେ ଛୁରି ଚଳେଇବାକୁ ଟିକେ ହେଲେ କୁଣ୍ଠା ବୋଧ କରୁନାହୁଁ । ଏତେ ଦୁର୍ଦ୍ଦଶା ପରେ ମଧ୍ୟ ଆମ ଆଖି ଖୋଲୁନାହିଁ । ଯାହା ସହିତ ଲଢ଼ିବା ଉଚିତ, ଆମେ ତା'ର ପାଦ ଘଷୁଛୁ ଏବଂ ଯାହାକୁ ଆଲିଙ୍ଗନ କରିବା ଉଚିତ, ତା'ର ଚୋଟି ଚପୁଚୁ । ଏ ସବୁ କାମ ଆମ ଶିକ୍ଷିତ ଲୋକେହିଁ କରୁଛନ୍ତି । ବିଦ୍ୟା ଦ୍ୱାରା ବିବେକ ଆସେ । କିନ୍ତୁ ରୋଗୀର ରୋଗ ଅସାଧ୍ୟ ହୋଇଗଲେ, ଔଷଧ ମଧ୍ୟ ବିଷ ଭଳି କାମ କରେ । ଆମର ଶିକ୍ଷା ଆମକୁ ପଶୁ କରି-ଦେଇଛି । ରାଜା ସାହେବଙ୍କଠାରେ ଲୋକଙ୍କର ଅନେକ ଆଶା ଥିଲା । କିନ୍ତୁ ଗାଦି ପାଇବାର ଛଅମାସ ହୋଇନାହିଁ, ସେ ସେଇ ପୁରୁଣା ଢଙ୍ଗ ଗ୍ରହଣ କରି ନେଲେଣି । ଠେଙ୍ଗା ଦ୍ୱାରା ପ୍ରଜାମାନଙ୍କଠୁ ଟଙ୍କା ଆଦାୟ କରାଯାଉଛି, ଗୁହାରି ଶୁଣିବାକୁ କେହି ନାହିଁ । ସବୁଠାରୁ ବେଶି ଦୁଃଖର କଥା, ଦେୱାନ୍ ସାହେବ ଏବଂ ମୋର ପିତା ଏ ଅତ୍ୟାଚାରର ମୁଖ୍ୟ ।

ସରଳ ହୃଦୟ ପ୍ରାଣୀ ଅନ୍ୟାୟ କଥା ଶୁଣିଲେ ଉତ୍ତେଜିତ ହୋଇଯାଏ । ମନୋରମା କହିଲା—ଆପଣ ଲୋକମାନଙ୍କୁ ଗୋଟିଏ ପଇସା କେହି ଦିଅନ୍ତୁନାହିଁ ବୋଲି କହୁ ନାହାନ୍ତି ! କେହି ନ ଦେଲେ ସେମାନେ ନେବେ କପରି ?

ଚନ୍ଦ୍ରଧରଙ୍କୁ ହସ ଲାଗିଲା । ତୁମେ ମୋ ସ୍ଥାନରେ ଥିଲେ ଲୋକମାନଙ୍କୁ ମନା କରି ଦେଇ ଥାଆନ୍ତ !

ମନୋରମା—ନିଶ୍ଚୟ । ମୁଁ ତ ରାଜାଙ୍କ ଲୋକଙ୍କୁ ଏପରି ପିଟାନ୍ତି ଯେ, ଇଲାକାକୁ ଯିବା ନାଁ ସେମାନେ ଧରନ୍ତେନାହିଁ ।

ଚନ୍ଦ୍ରଧର ପୁଣି ହସି ହସି କହିଲେ—ଦେୱାନ୍ ସାହେବଙ୍କୁ କ'ଣ କହନ୍ତ ?

ମନୋରମା—ତାଙ୍କୁ ମଧ୍ୟ କହନ୍ତି—ଆପଣ ଚୁପ୍ ହୋଇ ଘରକୁ ଚାଲିଯାଆନ୍ତୁ । ନହେଲେ ଭଲ ହବନାହିଁ । ଆପଣ ମୋର ପୂଜ୍ୟ ପିତା, ମୁଁ ଆପଣଙ୍କ ସେବା କରିବି, କିନ୍ତୁ ଆପଣଙ୍କୁ ଅନ୍ୟର ରକ୍ତ ଶୋଷିବା ପାଇଁ ଦେବି ନାହିଁ, ଗୋରା ଲୋକଟେ ଆସିଲେ ଲାଙ୍ଗୁଡ଼ି ଜାକି ଘରକୁ ଦୌଡୁଛ । ପାଟିରୁ କଥା ବାହାରୁନାହିଁ । ବିଚାରା ଗରିବଙ୍କୁ ମାରୁଛ ! ଇଏ ତ ଶାସନ ନୁହେ ।

ଚନ୍ଦ୍ରଧର ଏ କଥା ଶୁଣି ଖୁସି ହେଲେ । ହସି ହସି କହିଲେ—ଯଦି ଦେୱାନ୍ ସାହେବ ରାଗି ଯାଆନ୍ତେ ।

ମନୋରମା—କିଏ ରାଗିଗଲେ କ'ଣ ବାସ୍ତବ କଥାକୁ ଲୁଚେଇବା ଠିକ୍ ! ଆଜି ଆସିଲେ ମୁଁ ତ ତାଙ୍କୁ ଏ କଥା କହିବି ।

ଏହା କହି ମନୋରମା ଚନ୍ତ୍ତ ଦେଖାଗଲେ । ଉଭୟଙ୍କ ମନରେ ଏକାକଥା— ଏହାର ଫଳ କ'ଣ ହେବ । ଚକ୍ରଧର ପଢ଼ୋଇ ଯାଇ ଫେରିଗଲେ । ମନରେ ତାଙ୍କର ପ୍ରଶ୍ନ ଉଠିଲା—ଏଣିକି ଏଠାକୁ ଆସିବା କ'ଣ ମୋର ଉଚିତ ହେବ !

( ୧୪ )

ଅଭିଷେକର କିଛିଦିନ ପୂର୍ବରୁ ଅତିଥିମାନଙ୍କର ଆଗମନ ଆରମ୍ଭ ହୋଇ ଗଲା । ଆଉ ତିନିଦିନ ବାକି ଅଛି । ସବୁ କ୍ୟାମ୍ପ ପୂର୍ଣ୍ଣ ହୋଇଗଲା ଦେଓ୍ୱାନ୍ ସାହେବ କ୍ୟାମ୍ପ ଭିତରେ ବଜାର ଖୋଲି ଦେଲେ । କ୍ୟାମ୍ପ ଭିତରେ ସବୁ ମିଳି ପାରିବାର ବନ୍ଦୋବସ୍ତ ହୋଇଥିଲା । ହେକାସାହେବ ସ୍ୱୟଂ ଅତିଥିମାନଙ୍କର କ୍ୟାମ୍ପ ବୁଲୁଥିଲେ । କାହିରେ ଖୁବ୍ ଭିଡ଼ ।

ବଡ଼ ବଡ଼ ରାଜାମାନେ ଆସିଥିଲେ । କେହି ସଙ୍ଗରେ ଦରବାରୀମାନଙ୍କୁ ଧରି ଆସିଥିଲେ ତ କିଏ ସୈନ୍ୟସାମନ୍ତ ସହ ଆସିଥିଲେ । କାହାର ରତ୍ନଜଡିତ ବେଶଭୂଷା । କାହାର ଇଂରେଜ ସୁଟ୍ । କିଏ ବିଦ୍ୱାନ ଶିରୋମଣି ତ କିଏ ଏକଦମ ମୂର୍ଖ । କିଏ ପାଞ୍ଚଘଣ୍ଟା ସ୍ନାନରେ କଟାଏ ତ କିଏ ସାତଘଣ୍ଟା ପୂଜା ପାଠରେ ବ୍ୟସ୍ତ କରେ । ଦିନସାରା ଇଂରେଜ କ୍ୟାମ୍ପରେ ଟହଲ ମାରିବାରେ କିଏ ସମୟ କଟାଉଥିଲା । ଚକ୍ରଧର ଏବଂ ତାଙ୍କ ସେବା-ସମିତିର ଲୋକେ ଏ ସମସ୍ତଙ୍କ ସେବା ସମ୍ମାନର ବ୍ୟବସ୍ଥା ବୁଝୁଥିଲେ । ସମସ୍ତେ ନିଜକୁ ଈଶ୍ୱରଙ୍କ ଅବତାର ବୋଲି ମନେ କରୁଥିଲେ । ସମସ୍ତେ ନିଶାଖୋର । ସମସ୍ତେ ବିଳାସରେ ବ୍ୟସ୍ତ । ଏ ମାନଙ୍କ ମଧ୍ୟରେ ଜଣେ କେହି ଚରିତ୍ରବାନ୍ କିମ୍ବା ମର୍ଯ୍ୟାଦାର ଭକ୍ତ ନ ଥିଲେ ।

ସମସ୍ତେ ସମ୍ମାନ ଲାଳସୀ । ସେ ମୋ ପଛରେ ଚାଲିବା ଲୋକ, ଆଗରେ କାହିଁକି ଚାଲିବ ! ତା'ର ପୂର୍ବପୁରୁଷ ଆମର କରଦାତା ଥିଲା । କଥାବାର୍ତ୍ତା କରିବାରେ, ଅଭିବାଦନରେ, ଭୋଜନ କରିବାକୁ ବସିବାରେ, ପାନ-ଅଳେଇଚ ନେବାରେ ଏଇ ଅନୈକ୍ୟ ଏବଂ ଦ୍ୱେଷ ଭାବ ପ୍ରକାଶ ପାଉଥିଲା । ରାଜା ବିଶାଳସିଂହ ଏବଂ କର୍ମଚାରୀମାନଙ୍କର ବହୁ ସମୟ କାଲୁନ୍ଥମିନ୍ଧିରେ କଟୁଥିଲା । କେତେବେଳେ ହାତ ଯୋଡ଼ିବା, ମୁଣ୍ଡିଆ ମାରିବା ପର୍ଯ୍ୟନ୍ତ ଯାଉଥିଲା । ବିଶାଳସିଂହ ଭାବୁଥିଲେ—ବୃଥାରେ ଏ ଆଡ଼ମ୍ବର କଲି । ଭଗବାନ କେମିତି କୁଶଳରେ ଏହା ଶୀଘ୍ର ସମାପ୍ତ କରନ୍ତୁ । କାନମୋଡ଼ି ହେଉଚି-ଆଉ ଏ ଭୁଲ କେବେ କରିବିନାହିଁ ।

କେବଳ ଶାନ୍ତ ଥିଲା ଇଂରେଜଙ୍କ କ୍ୟାମ୍ପରେ । ସେମାନଙ୍କର ଏକ ସମୟରେ ଚା' ପାନ, ଏକ ସମୟରେ ଡ଼ିନର୍, ଏକ ସମୟରେ ମନୋରଂଜନ ଏବଂ ଏକ ସମୟରେ ବିଶ୍ରାମ ।

ଏକଥା ଭୁଲିବା ଏକଥା ବସି ଥିଏଟର ଦେଖିବା ସମସ୍ତଙ୍କର ବାହାରେ କମ୍ପା ଭିତରେ ଅଲଗା ଆବର୍ଜନା ନାହିଁ । ରାଜାମାନଙ୍କ କ୍ୟାମ୍ପ୍‌ରେ ପରାଧୀନତାର ଏବଂ ଇଂରେଜଙ୍କ କ୍ୟାମ୍ପ୍‌ରେ ସ୍ୱାଧୀନତାର ରାଜତ୍ୱ ଥିଲା । ସ୍ୱାଧୀନତା ସଦ୍‌ଗୁଣକୁ ଏବଂ ପରାଧୀନତା ଦୁର୍ଗୁଣକୁ ଜାଗ୍ରତ କରୁଥିଲା ।

ତେଣେ ରାଣୀ ମହଲରେ ଶାଢ଼ି, ଅଳଙ୍କାର, ଆମ୍ବବଡ଼ିମାର ସୁଅ ଛୁଟୁଥିଲା । କେହି କେହି ପାରସୀ, ଇଂରେଜୀ ବେଶ ପୋଷାକରେ ଝଲ୍‌ହଲ ମାରୁଥିଲେ । ଏ ଫେସନବାଲୀମାନେ ଅନ୍ୟମାନଙ୍କୁ କପଟ ମରହଟ୍ଠୀ ବୋଲି ମନେ କରୁଥିଲେ । ଦେଶୀ ପୋଷାକବାଲୀମାନେ ଏମାନଙ୍କୁ କୁଳଟା ବୋଲି ଗାଳି ଦେଉଥିଲେ । ଏପରି ଜଣା ପଡ଼ୁଥିଲା—ଯେପରି ଈଶ୍ୱର ସ୍ତ୍ରୀଲୋକଙ୍କୁ ନିନ୍ଦା ଓ ପରିହାସ କରିବା ପାଇଁ ସୃଷ୍ଟି କରିଛନ୍ତି ! ମନୋରମା ମହିଳାମାନଙ୍କ ସେବା ସତ୍କାର ପାଇଁ ନିଯୁକ୍ତ ଥିଲା । ସେମାନଙ୍କ ପାଖରେ ବସିବାକୁ ଘୃଣା କରୁଥିଲା । କେବଳ ରାମପ୍ରିୟାଙ୍କୁ ଏ କାଚ ମଧ୍ୟରେ ରତ୍ନଟିଏ ବୋଲି ମନେ କରୁଥିଲା ।

ଅତିଥିମାନଙ୍କ ଆଦର ସତ୍କାରର ସୁଅ ଛୁଟୁଥିଲା, ତେଣେ ହାଡ଼ଭଙ୍ଗା ପରିଶ୍ରମ କରୁଥିବା ମଜୁରିଆମାନେ ଭୋକରେ ମରୁଥିଲେ । ସେମାନଙ୍କ କଥା ବୁଝିବାକୁ କେହି ନାହିଁ । ପହରେ ରାତି ଆଗରୁ ମୋର ଘାସକାଟି ଆଣିବାକୁ ଯାଉଥିଲେ । ମେହେନ୍ତର ପହରେ ରାତି ଥାଇ ସଫେଇ କରୁଥିଲେ । ବାରିକ ପହରେ ରାତିଥାଇ ପାଣି ପୂର୍ତ୍ତି କରୁଥିଲେ । କିନ୍ତୁ ସେମାନେ ଖାଇଲେ କି ନ ଖାଇଲେ ସେକଥା କେହି ବୁଝୁ ନ ଥିଲେ । ଚପରାଶିମାନେ ସେମାନଙ୍କୁ କଥା କଥାକେ ଗାଳି ଦଉଥିଲେ, କାରଣ ସେମାନେ ମଧ୍ୟ ଖୁବ୍ ଗାଳି ଶୁଣୁଥିଲେ । ଚପରାଶିମାନେ ସହୁଥିଲେ, କାରଣ ସେମାନଙ୍କ ରାଗ ଅନ୍ୟମାନଙ୍କୁ ଗାଳିଦେଇ ଦୂର ହୋଇ ଯାଉଥିଲା । କିନ୍ତୁ ଅନ୍ୟମାନେ ସହିପାରୁ ନ ଥିଲେ । ସେମାନଙ୍କର ଦେହ ଜଳୁଥିଲା । ଦିନସାରା ପ୍ରଚଣ୍ଡ ଖରାରେ ଜଳୁଥିଲେ । ରାତିରେ କ୍ଷୁଧାର ଜ୍ୱାଳାରେ ଜଳୁଥିଲେ । ରାଣୀଙ୍କ ସମୟରେ ଏହିପରି ବେଠି ଖଟିବାକୁ ପଡ଼ୁଥିଲା, କିନ୍ତୁ ରାଣୀ ସେମାନଙ୍କ ଖାଇବା ପିଇବା କଥା ନିଜେ ବୁଝୁଥିଲେ । ସେଦିନକୁ ମନେ ପକେଇ ସେମାନେ କାନ୍ଦୁଥିଲେ । କ'ଣ ଭାବୁଥିଲେ, କ'ଣ ହେଲା !

ରାଜାମାନଙ୍କ ସତ୍କାରରୁ ରାଜାସାହେବଙ୍କୁ ଫୁରୁସତ ମିଳୁ ନ ଥିଲା—ଏକଥା ସତ୍ୟ । କିନ୍ତୁ ଏ ବାହାନା ତ ରାଜାଙ୍କ ପାଇଁ ଶୋଭନୀୟ ନୁହେଁ । ତାଙ୍କ ଦୃଷ୍ଟି ଗରିଅଡ଼କୁ ରହିବା ଦରକାର । ଯଦି ତାଙ୍କର ଏ ଯୋଗ୍ୟତା ନାହିଁ, ତେବେ ରାଜ୍ୟ ଶାସନ କରିବାର ଅଧିକାର ତାଙ୍କର ନାହିଁ । ଏଣେ କେତେବେଳେ ଯେ ବାରୁଦରେ ନିଆଁ ଲାଗିଯିବ, କିଏ କହିବ !

ସନ୍ଧ୍ୟା ସମୟ । ଅଭିଷେକ ମୁହୂର୍ତ୍ତ ନିକଟେଇ ଆସିଲା । ହୋମର ପ୍ରସ୍ତୁତି ଚାଲିଲା । ବର୍ଦ୍ଦି ପିନ୍ଧି ସିପାହୀମାନେ ଠିଆ ହୋଇ ଯିବାକୁ ଆଦେଶ ହେଲା । ହଠାତ୍ ମଜୁରିଆମାନେ ରହିଥିବା ପଡ଼ାରୁ କ୍ରନ୍ଦନ ଶୁଣାଗଲା । କୌଣସି କ୍ୟାମ୍ପ୍‌ରେ ଘାଇ ହରିଗଲା । ତେଣୁ ଠାକୁର

ହରସେବକ ହଣ୍ଟର ନେଇ ଚମାରମାନଙ୍କୁ ପିଟୁଥିଲେ । ମୁନ୍‌ସୀ ବଜ୍ରଧର କ୍ରୋଧରେ ମଧ କମ୍ପି ଉଠୁଥିଲେ । କି ଅନର୍ଥ ! ସାରାଦିନ ବିତିଗଲା, ଘାସ ଆସିପାରିଲା ନାହିଁ ! ଚମାରଙ୍କର ଏଡ଼େ ବଡ଼େଇ ! ଏପରି ବଦମାସଙ୍କୁ ଗୁଳିମାରିଦେବା ଉଚିତ ।

ଜଣେ ଚମାର କହିଲା—ହଜୁର୍, ଆପଣଙ୍କର ଅଧିକାର ଅଛି, ମାରି ଦିଅନ୍ତୁ । କିନ୍ତୁ ଖାଲିପେଟରେ କାମ କରି ହେବନାହିଁ ।

ମୁଖିଆ କହିଲା—ହଜୁର୍, ଘାସ ତ ଆସିଥିଲା । ମୁଁ ନିଜେ ଯାଇ ରଖି ଆସିଥିଲି । ହିଁ ଏବେଲା ଘାସ ଆସିନାହିଁ । ଲୋକତ ଖାଇବାକୁ ନ ପାଇ ଛଟପଟ ହେଉଛନ୍ତି । କ'ଣ କରିବି !

ମୁନ୍‌ସୀ—ବଦମାସ, ମିଥ୍ୟାବାଦୀ, ଘୁଷ୍‌ଖୋର୍, ଡେମ୍‌ଫୁଲ୍, ବ୍ଲଡ଼, ରାସ୍‌କେଲ୍, ସଇତାନ୍— ଏବେ ଘୋଡ଼ାଦୌଡ଼ ଆରମ୍ଭ ହେବ । ଘୋଡ଼ାମାନେ କ'ଣ କିଛି ନ ଖାଇ ଦୌଡ଼ିବେ ?

ଜଣେ ଯୁବକ କହିଲା—ଅମେ ତ କିଛି ନ ଖାଇ ଅଠଦିନ ହେଲା ଘାସକାଟି ଆଣି ଦେଉଛୁ । ଘୋଡ଼ାମାନେ କ'ଣ ଦିନେ ନ ଖାଇ ଦୌଡ଼ି ପାରିବେ ନାହିଁ ! ଅମେ କ'ଣ ଘୋଡ଼ାଠାରୁ ହୀନ !

ମୁଖିଆ ଠେଙ୍ଗାଧରି ଯୁବକଙ୍କୁ ମାରିବା ପାଇଁ ଦୌଡ଼ିଲା । କିନ୍ତୁ ହରିସେବକସିଂହ ତାକୁ ଆଗୁଳି ପକାଇ ହଣ୍ଟରରେ ଚାରି ପାଞ୍ଚ ପାହାର ପିଟି ଦେଇଗଲେ । ଖାଲି ଦେହ—ଚମଡ଼ା ଫାଟି ରକ୍ତ ବୋହିବାକୁ ଲାଗିଲା ।

ମୁଖିଆ ଉଭୟଙ୍କ ମଧ୍ୟରେ ଠିଆ ହୋଇ କହିଲା—ହଜୁର୍ କ'ଣ ଜୀବନରେ ମାରିଦେବେ ! ଛୋଟାଲୋକ, କ'ଣ ଅନୁଚିତ କଥା ମୁହଁରୁ ବାହାରି ପଡ଼ିଲା । ସେଥିପାଇଁ କ'ଣ କ୍ଷମା ନାହିଁ ! ରାଜା ଦୟାବାନ୍ ହେବା ଉଚିତ ।

· ଠାକୁର ସାହେବ ଅସମ୍ଭାଳ ହୋଇ ଉଠିଲେ । ଗୋଟେ ଚମାରର ଏଡ଼େ ସାହସ ଯେ ମୋ ସାମନାରେ ମୁହଁ ଖୋଲିବ ! ଚଳେଇଲେ ଚୌଧୁରୀ ଉପରେ ହଣ୍ଟର । ବୁଢ଼ା ଲୋକ, ପେଟରେ ଦାନା ନାହିଁ । ହଣ୍ଟର ପାହାରରେ ତଳେ ଲୋଟିପଡ଼ିଲା । ସାରା ପଡ଼ାରେ ହଇଚଇ ପଡ଼ିଗଲା । ଶହ ଶହ ଲୋକ ଆସି ଜମା ହୋଇଗଲେ । କେତେଜଣ ଚମାର ମାଡ଼ ଭୟରେ ଦାଆଧରି ଘାସ କାଟିବାକୁ ଚାଲି ଯାଉଥିଲେ । ମୁଖିଆ ଉପରେ ମାଡ଼ ବସିବା ଦେଖି ଦାଆ ଦଉଡ଼ି ଫିଙ୍ଗିଦେଇ ଚୌଧୁରୀ (ମୁଖିଆ) ପାଖରେ ପହଞ୍ଚିଲେ ।

ଠାକୁର ସାହେବ ଗର୍ଜନ କରି କହିଲେ—ଘଣ୍ଟାଏ ଭିତରେ ଘାସ ଆଣ, ନ ହେଲେ ପ୍ରତ୍ୟେକଙ୍କର ହାଡ଼ ଭାଙ୍ଗିଦେବି ।

ଜଣେ ଚମାର—ଅମେ ଏଠାକୁ କାମ କରିବାକୁ ଆସିଛୁ, ଜୀବନ ଦେବାକୁ ନୁହେଁ । ଏଣେ ଭୋକରେ ମରିବୁ, ପୁଣି ମାଡ଼ ଖାଇବୁ ! ଆମେ କ'ଣ ଏଇପାଇଁ ଜନ୍ମ ହୋଇଛୁ ! ଅନ୍ୟ କାହାଦ୍ୱାରା କାମ କରାନ୍ତୁ । ଆମେ ଘରକୁ ଯାଉଛୁ ।

ଠାକୁର ସାହେବ ହସ୍ତରେ ଉଠାଇ କହିଲେ—କୁଆଡ଼େ ପଳେଇ ଯିବ ! ଗାଆଁରେ ପଶିପାଶିବ ନାହିଁ । ସରକାରୀ କାମକୁ କ'ଣ ହସ ଖେଳ ମନେକରିଛ !

ଚମାର—ସରକାର, ନିଜ ଗାଁ ନେଇଯାଆନ୍ତୁ । ଆମେ ଗାଁ ଛାଡ଼ି ଚାଲିଯାଉଛୁ । ଆପଣଙ୍କର ଅଧିକାର ଅଛି । ଯାହାଇଚ୍ଛା କରୁଛନ୍ତି ତା' କରନ୍ତୁ । ଆମେ ଆଉ ଏ ରାଜ୍ୟରେ ରହିବାକୁ ଚାହୁଁନୁ ।

ମୁନ୍‌ସୀ—ଯିଏ ପଡ଼ା ବାହାରକୁ ପାଦ ପକେଇବ, ତୋପରେ ଉଡ଼େଇ ଦିଆଯିବ ।

କିନ୍ତୁ ଚମାରମାନେ ଶୁଣିବା ଅବସ୍ଥାରେ ନ ଥିଲେ । ବୁଢ଼ା ଚୌଧୁରୀଙ୍କୁ ଉଠାଇ ସମସ୍ତେ ପଡ଼ା ଦୁଆରକୁ ଚାଲିଲେ । ସୈନିକମାନଙ୍କର ପରେଡ଼ ହେଉଥିଲା । ଠାକୁର ସାହେବ ଖବର ପଠାଇଲେ । ସମସ୍ତେ ଆସି ପଡ଼ାଦୁଆରେ ହାଜର ହୋଇଗଲେ । ସବୁ କ୍ୟାମ୍ପରେ ହୁଲସ୍ଥୁଲ ପଡ଼ିଗଲା । ପ୍ରକାର ପ୍ରକାର ଖବର ଶୁଣାଗଲା । କିଏ କହିଲା ଦେଓ୍ୱାନ୍ ସାହେବଙ୍କୁ ଚମାରମାନେ ମାରି ପକାଇଲେ । କିଏ କହିଲା—ସିପାହୀମାନେ ଗୁଳିକରି ପଚାଶ ଚମାରଙ୍କୁ ମାରିଦେଲେଣି ।

ରାଜା ସାହେବ ଅଭିଷେକ ପାଇଁ ବେଶଭୂଷା ହେଉଥିଲେ । ଜଣେ ବ୍ୟକ୍ତି ତାଙ୍କ ପଗଡ଼ି ସଜାଉଥିଲା । ଏ ବେଶରେ ତାଙ୍କର ରୂପ ଚମକି ଉଠୁଥିଲା । ଏ ଖବର ଶୁଣି ଇତଃସ୍ତତଃ ହୋଇ ପଡ଼ିଲେ । ସେ ନିଜକୁ ଜଣେ ସଚ୍ଚା ପ୍ରଜାଭକ୍ତ ବୋଲି ଭାବୁଥିଲେ । ସେମାନଙ୍କ ପ୍ରତି ଅତ୍ୟାଚାର ହେବା ସେ ଚାହୁଁ ନ ଥିଲେ । ଲୁଣ୍ଠନ ନ କରି ପାଳନ କରିବାକୁ ଚାହୁଁଥିଲେ । ସେ ଯେତେବେଳେ ପ୍ରଜାମାନଙ୍କ ପାଇଁ ପ୍ରାଣ ଦେବାକୁ ଚାହାନ୍ତି, ପ୍ରଜାମାନଙ୍କର କ'ଣ ତାଙ୍କ ପାଇଁ ପ୍ରାଣ ଦେବା ଧର୍ମ ନୁହେଁ ! ପୁଣି ଏ ଶୁଭ ଅବସରରେ ଏ କାଣ୍ଡ । ଯେଉଁମାନେ ଏତେ କୃତଘ୍ନ, ସେମାନଙ୍କ ପ୍ରତି ଦୟାମାୟା କ'ଣ ! ସିଧା ମୁହଁ କୁତା ଚାଟେ । ମୁଁ ଏ ଲୋକଗୁଡ଼ାଙ୍କୁ ଯେତେ ସନ୍ତୁଷ୍ଟ ରଖିବାକୁ ଚାହୁଁଛି, ଏଗୁଡ଼ାକ ସେତିକି ଉପରେ ଚଢୁଛନ୍ତି । ଏବେ ପିଲାଙ୍କୁ ମଜା ଚଖାଉଛି ।

କ୍ରୋଧରେ ଉନ୍ମତ୍ତ ହୋଇ ନିଜର ବନ୍ଧୁକ ଧରି ବାହାରି ପଡ଼ିଲେ । ଚୌଧୁରୀ ଝଡ଼ାଝଡ଼ି ହୋଇ ବସିଥିଲା । ରାଜାଙ୍କୁ ଦେଖି କାନ୍ଦି ପକାଇ କହିଲା—ଜୁହାର ମହାରାଜ ! ସରକାର ଘୋର ଅତ୍ୟାଚାର । ଗରିବ ଲୋକେ ମରିଯାଉଛୁ ।

ରାଜା—ତୁମ୍ଭେ ସବୁ ପଡ଼ା ଦୁଆରୁ ହଟିଯାଅ । ତା'ପରେ ଯାହା କିଛି କହିବା କଥା ମୋତେ କହ । ଯଦି କେହି ବାଡ଼ ବାହାରକୁ ବାହାରିବ, ଜୀବନ ନେଇଯିବି । ଦଙ୍ଗା କରୁଛ । ଜୀବନକୁ କ'ଣ ଭୟ ନାହିଁ !

ଚୌଧୁରୀ—ସରକାର ଆମକୁ କାମ କରିବାକୁ ଡାକିଛନ୍ତି ନା ଜୀବନ ନେବାକୁ !

ରାଜା—କାମ ନ କଲେ, ଜୀବନ ନିଆଯିବ ।

ଚୌଧୁରୀ—କାମ ତ ଆପଣଙ୍କର କରିବୁ, ଖାଇବା ପାଇଁ କାହାଘରକୁ ଯିବୁ ?

ରାଜା—କ'ଣ ବାଜେ କଥା ଗୁଡ଼ାଏ କହୁଚୁ ବେ, ଚୌଧୁରୀ ! ତୁମେ ସମସ୍ତେ ମୋର ବଦନାମ କରିବାକୁ ଚାହୁଁଛ । ସବୁବେଳେ ଲାଭ ଖାଉଥିଲ, ତାହା ତୁମକୁ ଭଲ ଲାଗୁଥିଲା । ମୁଁ ତୁମ ସହିତ ଭଲ ବ୍ୟବହାର କରିବାକୁ ଚାହିଁଥିଲି । କିନ୍ତୁ ମୁଅଁଖିଆ ଦେବତାଙ୍କୁ କଥାରେ ପାରିହବ ନାହିଁ ।

ଚୌଧୁରୀ—ସେତେବେଳେ ମୁଅ ଖାଉଥିଲୁ, ଏବେ କିନ୍ତୁ ନୁହେଁ ।

ରାଜା—କାହିଁକି ! ଏବେ କ'ଣ ହୋଇଗଲା କି ?

ଚୌଧୁରୀ—ସେବାସମିତି ଅଛି ଆଜ୍ଞା, ସିଏ ନ୍ୟାୟ କରିବ ।

ରାଜା—ଆଚ୍ଛା, ତେବେ— ।

ରାଜା ସାହେବ ଓଠ ଚାପିବାଇ ଭାବିଲେ—ତେବେ ସମିତିବାଲାଙ୍କର ଏ କାଣ୍ଡ ! ଚକ୍ରଧର ମୋ ସହିତ କପଟ କରୁଛି ! ଯାହାର ବାପ ମୋତେ ଖୁସାମତ କରି ଚଳୁଚି ତା'ର ପୁଅ—ଯାହାକୁ ମୁଁ ମିତ୍ର ମନେ କରିଥିଲି, ସେ କୃତଘ୍ନତା କରୁଛି ! ଦେଖିବି ମୋର ସେ କ'ଣ କରିବ ! ବଡ଼ ସାହେବକୁ ଲେଖି ତାକୁ ଟିକେଣା ଫୌଜକୁ ଅଣିବାକୁ ପଡ଼ିବ । ନଚେତ ଏ ବିପଜ୍ଜନକ ବିପଦ ସୃଷ୍ଟି କରିବ ।

ଚୌଧୁରୀ ଏଣେ କଥାବାର୍ତ୍ତା କରୁଥିଲା, ତେଣେ ପଡ଼ାର ଗୋରୁପଟେ ରୁଜା ହୋଇଥିବା ବାଡ଼ ଭିତରେ ଘୋର କୋଳାହଳ ହେଲା । ସରକାରୀ ଲୋକଙ୍କୁ ଦେଖି ଯେଉଁମାନେ ଭୟରେ କମ୍ପି ଉଠୁଥିଲେ, ସେମାନେ ଏବେ ନିର୍ଭୟ ଓ ନିଃଶଙ୍କରେ ବନ୍ଧୁକ ସାମନାରେ ମରିବାକୁ ପ୍ରସ୍ତୁତ ହୋଇ ଠିଆ ହୋଇଥିଲେ । ଦୁଆର ବାଟେ ବାହାରକୁ ଆସିବାର ବାଟ ନ ପାଇ କେତେ ଲୋକ ବାଡ଼ ଭାଙ୍ଗି ବାହାରକୁ ବାହାରି ଆସିଲେ । ଯେତେ ଯେପରି ନଦୀ ବନ୍ଧ ଭାଙ୍ଗି ବହିଆସୁଛି । ଗୋଟିଏ ପାଖରେ ସଶସ୍ତ୍ର ପୁଲିସ୍ ଏବଂ ଅନ୍ୟ ପାଖରୁ ସମିତିର କେତେକ ଯୁବକଙ୍କ ସହ ଚକ୍ରଧର ଆସୁଥିବାର ଦେଖାଗଲା । ସେ ତ ଆଗେ ଲୋକମାନଙ୍କୁ ଧୈର୍ଯ୍ୟ ଧରିବାକୁ କହୁଥିଲେ । କିନ୍ତୁ ଆଜିର ହାଲ ଦେଖି ସେ ସ୍ୱୟଂ ଏଠାକୁ ଆସିବାକୁ ବାଧ୍ୟ ହେଲେ ।

ତାଙ୍କୁ ଦେଖି ହରତାଳକାରୀମାନଙ୍କର ସାହସ ଆସିଲା । ହଜାର ହଜାର ଲୋକ ତାଙ୍କୁ ଘେରିଗଲେ । 'ଭାଇ ଆସିଗଲେ, ଭାଇ ଆସିଗଲେ' ଧ୍ୱନିରେ ବାୟୁମଣ୍ଡଳ ଗୁଞ୍ଜରି ଉଠିଲା ।

ଅବସ୍ଥା ଯେତେ ଭୟାବହ ବୋଲି ଚକ୍ରଧର ଭାବିଥିଲେ, ଏଠାରେ ପହଞ୍ଚି ତାଠାରୁ ଅଧିକ ଭୟାବହ ମନେକଲେ । ରାଜା ସାହେବଙ୍କର ଜିଦ୍—କେହିହେଲେ ଏଠାରୁ ଯାଇପାରିବେ ନାହିଁ । ଲୋକମାନଙ୍କର ଜିଦ୍ ଏଠାରେ ମୁହୂର୍ତ୍ତେ ରହିବେ ନାହିଁ । ସଶସ୍ତ୍ର ପୁଲିସ୍ ଜାଗ୍ରତ । ସବୁଠାରୁ ବଡ଼ କଥା ହେଲା—ମୁନ୍‌ସୀ ବଜ୍ରଧର ସ୍ୱୟଂ ବନ୍ଧୁକ ଧରି ପଇଁତରା ମାରୁଛନ୍ତି—ଯେତେ ଯେମିତି ଲୋକଙ୍କୁ କଞ୍ଚା ଖାଇଯିବେ ।

ଚକ୍ରଧର ବଡ଼ ପାଟିରେ କହିଲେ—କ'ଣ ଭାଇମାନେ, ତୁମ୍ଭେମାନେ ମୋତେ ମିତ୍ର ବୋଲି ମନେକର ନା ଶତ୍ରୁ !

ଚୈଧୁରୀ—ଭାଇ, ଏମିତ କ'ଣ କହୁଛ ! ତୁମେ ଆମର ମାଲିକ, ସ୍ୱାମୀ, ସହାୟ । ଆଜି କ'ଣ ତୁମକୁ ପ୍ରଥମବାର ଆମେ ଦେଖୁଛୁ ?

ଚକ୍ରଧର—ତେବେ ମୁଁ ଯାହା କହିବ ଏବଂ କରିବ ତାହା ତୁମର ଭଲ ପାଇଁ ବୋଲି ତୁମ୍ଭେମାନେ ବିଶ୍ୱାସ କରୁଛ ?

ଚୈଧୁରୀ—ମାଲିକ୍, ତୁମ ଉପରେ ବିଶ୍ୱାସ କରିବୁ ନାହିଁ ତ ଆଉ କାହା ଉପରେ ବିଶ୍ୱାସ କରିବୁ ! କିନ୍ତୁ ଏତିକି ବୁଝନ୍ତୁ, ଆମେ ଆଉ ସବୁ କରିବୁ, ଏଠାରେ ରହିବୁ ନାହିଁ । ଏଇ ଦେଖନ୍ତୁ (ପିଠି ଦେଖାଇ), କୋରଡ଼ା ଖାଇ ରହିପାରିବୁ ନାହିଁ ।

ଚକ୍ରଧର ସେ ଭିଡ଼ ଭିତରୁ ବାହାରି ସିଧାଯାଇ ରାଜା ସାହେବଙ୍କ ନିକଟରେ ପହଞ୍ଚି କହିଲେ—ମହାରାଜ, ମୁଁ ଆପଣଙ୍କୁ କିଛି ଅନୁରୋଧ କରିବାକୁ ଆସିଛି ।

ରାଜା ସାହେବ ତୀକ୍ଷ୍ଣ ସ୍ୱରରେ କହିଲେ—ମୁଁ କିଛି ଶୁଣିବାକୁ ଚାହେଁନା ।

ଚକ୍ରଧର—ଆପଣ କିଛି ନ ଶୁଣିଲେ, ପଶ୍ଚାତ୍ତାପ କରିବେ ।

ରାଜା—ମୁଁ ଏ ସମସ୍ତଙ୍କୁ ଠିକ କରିଦେବି ।

ଚକ୍ରଧର—ଦୀନ ପ୍ରଜାଙ୍କ ରକ୍ତରେ ଅଭିଷେକ କରିବା କୌଣସି ରାଜା ପକ୍ଷେ ମଙ୍ଗଳକାରୀ ହୋଇ ପାରେନା । ପ୍ରଜାଙ୍କର ଆଶୀର୍ବାଦହିଁ ରାଜାର ବଡ଼ ଶକ୍ତି । ମୁଁ ଆପଣଙ୍କର ସେବକ ଏବଂ ଶୁଭଚିନ୍ତକ । ପ୍ରଜାମାନଙ୍କ ପ୍ରତି ଆପଣଙ୍କ ହୃଦୟରେ କେତେ ଦୟା ଓ ସ୍ନେହ ମୋତେ ଜଣା । ଏ ସମସ୍ତ କାଣ୍ଡ ଅଯୋଗ୍ୟ କର୍ମଚାରୀମାନେ ସୃଷ୍ଟି କରିଛନ୍ତି । ଗୁଳିମାରି ଆପଣ ସେମାନଙ୍କର ରକ୍ତ ନେଇପାରନ୍ତି, କିନ୍ତୁ ସେମାନଙ୍କର ରକ୍ତ ଏଇ ବାଡ଼ ଭିତରେ ଶୁଖିବ ନାହିଁ, ସମସ୍ତ କ୍ୟାମ୍ପ୍ ସେହି ରକ୍ତରେ ବୁଡ଼ିଯିବ । ସେ ରକ୍ତର ତରଙ୍ଗରେ ଏ ବିଶାଳ ମଣ୍ଡପ ଭାସିଯିବ ଏବଂ ଆକାଶରେ ଉଡୁଥିବା ଧ୍ୱଜା ଭୂମି ଉପରେ ଛିଣ୍ଡି ପଡ଼ିବ । ଅଭିଷେକ ଦିନଟି ଦାନ ଓ ଦୟାର ଦିନ, ରକ୍ତପାତ ପାଇଁ ଉଦ୍ଦିଷ୍ଟ ନୁହେଁ । ଏ ଶୁଭ ଅବସରରେ ଗୋଟିଏ ହତ୍ୟା ହେଲେ ତାହା ସହସ୍ର ରୂପ ଧାରଣ କରି ଏପରି ଭୟଙ୍କର ହୋଇ ଉଠିବ, ଯାହା ଦ୍ୱାରା ସମଗ୍ର ରାଜ୍ୟରେ ହାହାକାର ପଡ଼ିଯିବ ।

ରାଜା ସାହେବ ନିଜ ଜିଦ୍‌ରେ ଦୃଢ଼ଥିଲେ, କିନ୍ତୁ ବର୍ତ୍ତମାନ ଅବସ୍ଥାରେ ତାଙ୍କ ହୃଦୟ କମ୍ପି ଉଠିଲା । କିଛିଟା ନରମ ହୋଇ କହିଲେ—ଏମାନଙ୍କର ଯଦି କିଛି ଅଭିଯୋଗ ଥିଲା, ତେବେ ମୋତେ ଆସି କହିବା ଉଚିତ ଥିଲା । ଯଦି ମୁଁ ଶୁଣି ନ ଥା'ନ୍ତି, ତେବେ ଯାହାଇଚ୍ଛା ତାହା କରିଥାଆନ୍ତେ । କିନ୍ତୁ ମୋତେ କିଛି ନ କହି ଏ ଲୋକେ ଗଣ୍ଡଗୋଳ କଲେ, ରାତିରେ ଘୋଡ଼ାମାନଙ୍କୁ ଘାସ ଦେଲେ ନାହିଁ । ଏବେ ପୁଣି ବାଡ଼ ଛାଡ଼ି ଚାଲିଯାଉଛନ୍ତି । ଏ ଘୋର ଅପମାନ ମୁଁ ସହିପାରିବି ନାହିଁ ।

ଚକ୍ରଧର—ଏମାନଙ୍କୁ ଆପଣଙ୍କ ପାଖକୁ ଯିବାପାଇଁ ଆପଣ ସୁଯୋଗ ଦେଇ ନାହାନ୍ତି । ମଜୁରିଆମାନଙ୍କୁ ପେଟପୂରି ଭୋଜନ ଦେବାକୁ କଡ଼ା ନିର୍ଦ୍ଦେଶ ଦିଆଯାଇଥିଲା । କ'ଣ ଦେଓ୍ୱାନ୍ ସାହେବ, ଏଇଆ ନା ?

ହରସେବକ—ଧର୍ମାବତାର, ଆପଣ ଏ ମହାଶୟଙ୍କ କଥାରେ ଭୁଲି ଯାଆନ୍ତୁ ନାହିଁ । ଏ ନିଆଁ ଏଇ ଲଗେଇଛନ୍ତି । ଏଠାରେ ପ୍ରତ୍ୟେକ ଲୋକଙ୍କୁ ଦୁଇ ବକ୍ତ ଭୋଜନ ଦିଆଯାଉଛି ।

ମୁନସୀ—ଦୀନବନ୍ଧୁ, ଏ ମିଛଟା କିଛି ବୁଝିପାରୁ ନାହିଁ । ଅନ୍ୟମାନେ ଯାହା କହିଦଉଛନ୍ତି, ତାକୁ ସତ ବୋଲି ମନେକରୁଛି । ତୋତେ କିଏ କହିଲାରେ ପୁଅ, ଲୋକମାନଙ୍କୁ ଭୋଜନ ମିଳୁନାହିଁ ବୋଲି ! ଭଣ୍ଡାରୀ ତ ମୁଁ । ମୋ ଆଗରେ ଜିନଷ ଓଜନ କରିହୋଇ ଦିଆଯାଉଛି । ପଗ୍ୱର, ବୁଝି ମୁଁ ଜିନଷ ଦଉଛି । ବରଯାତ୍ରୀମାନଙ୍କର ମଧ୍ୟ ଏତେ ଯତ୍ନ ନିଆଯାଇ ପାରିବ ନାହିଁ ।

ରାଜା—ମୁଁ ଏହା ଅନୁସନ୍ଧାନ କରିବ ।

ହରସେବକ—ହଜୁର୍, ଏଇମାନେ ଲୋକମାନଙ୍କୁ ମତେଇଛନ୍ତି । ଏମାନେ କହି ବୁଲୁଛନ୍ତି ଯେ ଭଗବାନ ସମସ୍ତଙ୍କୁ ସମାନ ଭାବେ ଗଢ଼ିଛନ୍ତି । ତୁମ ଉପରେ ହୁକୁମ୍ ଜାରି କରିବାର ଅଧିକାର କାହାରି ନାହିଁ । ତୁମଠାରୁ ବେଠିରେ କାମ ନେବାର ଅଧିକାର କାହାରି ନାହିଁ । ପ୍ରଜାମାନେ ଏମାନଙ୍କ କଥା ଶୁଣି ବାଘ ଭଳି ହେଉଛନ୍ତି ।

ରାଜା—ଏ କଥାରେ କିଛି ଖରାପ ତ ମୁଁ ଦେଖୁନାହିଁ । ମୁଁ ତ ନିଜେ ପ୍ରଜାମାନଙ୍କୁ ଏକଥା କହିବାକୁ ଗ୍ୱହେଁ ।

ହରସେବକ—ହଜୁର୍, ଏମାନେ କହୁଛନ୍ତି, ଜମିର ମାଲିକ ହେଉଛ ତୁମେ । ଯିଏ ଜମି ଚାଷ କରିବ, ସେ ହେବ ଜମିର ମାଲିକ । ରାଜା ତ ତୁମର ଚାକର ।

ରାଜା—ଠିକ୍ ତ କହୁଛନ୍ତି । ଏଥିରେ ତ ବିଗିଡ଼ିବାର କିଛି ନାହିଁ । ବାସ୍ତବରେ ମୁଁ ପ୍ରଜାଙ୍କର ଚାକର ।

ହରସେବକ—ହଜୁର୍, ଏମାନଙ୍କ କଥା କେତେ ବା କହିବି ! କହୁଛନ୍ତି, ଏତେ ବଡ଼ ମହଲରେ ରହିବାର ଅଧିକାର ରାଜାଙ୍କର ନାହିଁ । ସଂସାରରେ ଏମାନଙ୍କର ଆବଶ୍ୟକତା ନାହିଁ । ଏ ସଂସାରରେ ରହିବାର ଅଧିକାର ନାହିଁ ।

ରାଜା—ଠିକ୍ ତ । ଖାଲି ବସି ବସି ଖାଇବା ବ୍ୟତୀତ ଆଉ କ'ଣ ବା ମୁଁ କରୁଛି !

ଚକ୍ରଧର ବିରକ୍ତ ହୋଇ କହିଲେ—ଠାକୁର ସାହେବ, ଆପଣ ମୋର ମାଲିକ । କିନ୍ତୁ କ୍ଷମା କରିବେ—ଆପଣ ମୋ ପ୍ରତି ଅନ୍ୟାୟ କରୁଛନ୍ତି । ମୁଁ ପ୍ରଜାଙ୍କୁ ସେମାନଙ୍କ ଅଧିକାର ସମ୍ପର୍କରେ କହୁଛି । କିନ୍ତୁ ମୁଁ ତ କଦାପି କହୁନାହିଁ ଯେ ଏ ସଂସାରରେ ରହିବାର ଅଧିକାର

ରାଜାଙ୍କର ନାହିଁ ବୋଲି । ମୁଁ ଜାଣେ—ଯେତେବେଳେ ରାଜାଙ୍କର ଆବଶ୍ୟକତା ପଡ଼ିବନାହିଁ, ସେହିଦିନ ଏ ପ୍ରଥା ସମାପ୍ତ ହୋଇଯିବ ।

ରାଜା—ମୁଁ ତ ଖରାପ ଭାବୁନାହିଁ । ଠିକ୍ଏ ହେଲେ ବି ନୁହେଁ । ବାସ୍ତବରେ ଯିଏ ରାଜ୍ୟପ୍ରତି ନିଜର କର୍ତ୍ତବ୍ୟ ପାଳନ ନ କରେ, ତାହାର ବଞ୍ଚିବା ବୃଥା ।

ଚକ୍ରଧର ଭାବିଲେ—ରାଜା ବିଦ୍ରୂପ କରୁଛନ୍ତି । ଏହା ଥଟ୍ଟା କରିବାର ସମୟ ନୁହେଁ । ହଜାର ହଜାର ଲୋକ ନିଶ୍ୱାସ ବନ୍ଦ କରି ଶୁଣୁଛନ୍ତି କ'ଣ ଫଇସଲା ହବ । ରାଗିଯାଇ କହିଲେ—ଯଦି ଏହା ସତ୍ୟ ମନେ କରୁଥାଆନ୍ତେ ପ୍ରଜାଙ୍କ ଉପରେ ଏ ବିପତ୍ତି ପଡ଼ି ନ ଥା'ନ୍ତା । ପ୍ରଜାମାନଙ୍କୁ ମିଠା ମିଠା କଥା କହି କର୍ମଚାରୀମାନଙ୍କୁ ମନଇଚ୍ଛା ଅତ୍ୟାଚାର କରିବାକୁ ଅନୁମତି ଦେବା ହେଉଛି ରାଜାମାନଙ୍କର ନୀତି । ପ୍ରଜାମାନଙ୍କ ଗୁହାରି ଯେଉଁ ରାଜାଙ୍କ କାନରେ ପଡୁନାହିଁ, ତାଙ୍କୁ ରାଜା କୁହାଯାଇ ନ ପାରେ ।

ରାଜା—ହଁ, ଆଦୌ ନୁହେଁ । ତାଙ୍କୁ ଗୁଳି ମାରିଦେବା ଉଚିତ । ପ୍ରଜାଙ୍କର ଚାକର ସେ । କିଛି ଥଟ୍ଟା ତାମସା ନୁହେଁ ।

ଚକ୍ରଧର ବ୍ୟଙ୍ଗ ସହି ପାରିଲେ ନାହିଁ । ସହନଶୀଳତା ତାଙ୍କର ଶେଷ ହୋଇଗଲା । କ୍ରୋଧରେ କହିଲେ—ଯେଉଁ ଆଦର୍ଶ ସମ୍ମୁଖରେ ଆପଣ ନତମସ୍ତକ ହେବା କଥା, ତାହାକୁ ଉପହାସ କରିବା ଶୋଭନୀୟ ନୁହେଁ । ସମାଜର ଏ ବ୍ୟବସ୍ଥା ଆଉ ବେଶିକାଳ ରହିବନାହିଁ । ଦିନ ଆସୁଛି, ହୁଏତ ରାଜା ପ୍ରଜାର ସେବକ ହେବ, ନାହିଁ ତ ମୂଳରୁ ଯିବ । ଆପଣଙ୍କ ବଚନ ଓ କର୍ମରେ ଏତେ ତଫାତ୍ ହେବ ବୋଲି ମୁଁ ଅନୁମାନ କରି ନ ଥିଲି ।

କ୍ରୋଧ ବର୍ତ୍ତମାନ ଯଥାର୍ଥ ରୂପ ଧାରଣ କଲା । ରାଜା ସାହେବ ଏ ପର୍ଯ୍ୟନ୍ତ ବ୍ୟଙ୍ଗ ବିଦ୍ରୂପରେ ଚକ୍ରଧରଙ୍କୁ ପରାସ୍ତ କରିବା ଚାହୁଁଥିଲେ । କିନ୍ତୁ ଯେତେବେଳେ ଚକ୍ରଧରଙ୍କର ଆକ୍ରମଣ ମର୍ମସ୍ଥଳ ଭେଦିକଲା, ସେତେବେଳେ ସେ ମଧ୍ୟ ଶସ୍ତ୍ର ଧାରଣ କରି କହିଲେ—ଆଚ୍ଛା ବାବୁଜୀ, ମୁଖ ବନ୍ଦକର । ମୁଁ ଯେତେ ନରମ ହେଉଛି, ଆପଣ ସେତିକ ମୁଣ୍ଡରେ ଚଢ଼ୁଛନ୍ତି । ମିତ୍ରତା ହେତୁ ଯେତିକ ସହିବା କଥା ସହିଲି । ଆଉ ନୁହେଁ । ମୁଁ ପ୍ରଜାଙ୍କର ଚାକର ନୁହେଁ । ପ୍ରଜା ଗୁଡ଼ାକ ମୋ ଗୋଡ଼ର ଧୂଳି । ସେମାନଙ୍କ ପ୍ରତି ମୁଁ ଯେପରି ଇଚ୍ଛା କରିବି ସେପରି ବ୍ୟବହାର କରିବାର ଅଧିକାର ମୋର ଅଛି । ରାଜା ଓ ପ୍ରଜା ମଝିରେ କାହାରି କହିବାର ଅଧିକାର ନାହିଁ । ଆପଣ ଏବେ କୃପାକରି ଏଠାରୁ ଚାଲିଯାଆନ୍ତୁ । ପୁଣି କେବେ ଏ ରାଜ୍ୟରେ ପାଦ ଦେବେ ତ ପଶ୍ଚାତ୍ତାପ କରିବେ । ଯାଆନ୍ତୁ ।

ମୁନ୍‌ସୀ ବଜ୍ରଧରଙ୍କ ଛାତି ଧପ୍‌ଧପ୍ ହେଲା । ଚକ୍ରଧରଙ୍କୁ ହାତରେ ପଛକୁ ଠେଲି ଦେଇ କହିଲେ—ହଜୁରଙ୍କର କୃପା-ଦୃଷ୍ଟି ତାଙ୍କୁ ମୁହଁ ଦେଇଛି । ବଡ଼ଲୋକଙ୍କ ସଙ୍ଗରେ ଚଳିବାର ସୁଯୋଗ ତ ମିଳିନାହିଁ, କଥା କହିବାର ଢଙ୍ଗ ଆସିବ କୁଆଡ଼ୁ !

କିନ୍ତୁ ଚକ୍ରଧର ସିଦ୍ଧାନ୍ତ-ବିଶ୍ୱାସୀ । ଆଦର୍ଶ ପାଇଁ ଜୀବନ ଦେବାବାଲା, ଅଧିକାର ଏବଂ ପ୍ରଭୁତ୍ୱର ଶତ୍ରୁ । ସେ ରାଜା ସାହେବଙ୍କ ଉଦ୍ଧତ ପ୍ରଳାପ ଦ୍ୱାରା ଟିକିଏ ହେଲେ ଭୟଭୀତ ହେଲେ ନାହିଁ । ଦାନ୍ତ ଓ ନଖ ନ ଥିବା ସିଂହଗର୍ଜନ ବୋଲି ମନେକଲେ । ଖୁବ ଜୋରରେ ଆଗକୁ ଆସି କହିଲେ—ଏପରି କଥା କହିବାରେ ଆପଣ ଲଜ୍ଜିତ ହେବା ଉଚିତ । ଆପଣଙ୍କର ଭାବନା କେତେ ପବିତ୍ର, କେତେ ଉନ୍ନତଥିଲା ! ଆପଣ ପ୍ରଜାମାନଙ୍କ ପାଇଁ ନିଜକୁ ସମର୍ପଣ କରିଦେବାକୁ କହୁଥିଲେ । ଆପଣ କହୁଥିଲେ—ମୁଁ ପ୍ରଜାଙ୍କୁ ମୋ ପାଖକୁ ଅବାଧରେ ଆସିବାକୁ ଦେବି । ସେମାନଙ୍କ ପାଇଁ ମୋ ଦୁଆର ସର୍ବଦା ଖୋଲାରହିବ । ଆପଣ କହୁଥିଲେ ମୋ କର୍ମଚାରୀମାନେ ପ୍ରଜାମାନଙ୍କୁ କ୍ରୂର ଦୃଷ୍ଟିରେ ଦେଖିଲେ, ସେମାନଙ୍କର କାର୍ଯ୍ୟଭୂକ୍ତି ସେମାନେ ଡାକିଆଣିବେ ବୋଲି । ଏସବୁ କଥା କ'ଣ ଆପଣ ଭୁଲିଗଲେ ! ପୁଣି ଏତେ ଶୀଘ୍ର ! ଏବେ ଆପଣ କହୁଛନ୍ତି, ପ୍ରଜାଗୁଡ଼ାକ ପାଦର ଧୂଳି ! ଈଶ୍ୱର ଆପଣଙ୍କୁ ସଦ୍‌ବୁଦ୍ଧି ଦିଅନ୍ତୁ ।

ରାଜା ସାହେବ ତ କ୍ରୋଧରେ ଉନ୍ମତ୍ତ ହୋଇଥିଲେ । ଚକ୍ରଧରଙ୍କର ହୃଦୟସ୍ପର୍ଶୀ କଥାଶୁଣି କାନ୍ଦି ପକାଇଲେ । କ୍ରୋଧ ନିରୁତ୍ତର ହୋଇ ପାଣି ହୋଇଯାଏ । ଅଶ୍ରୁ ଅବ୍ୟକ୍ତ ଭାବର ରୂପ ଧାରଣ କରେ । ତାଙ୍କର ଏ ଭାବ ଗ୍ଲାନି କି ପଶ୍ଚାତ୍ତାପ, ନିଜ ଦୁର୍ବଳତାର ଦୁଃଖ କି ବିବଶତାର କ୍ଲେଶ, କିମ୍ବା ଏ ଦୁଷ୍ଟ ମୋତେ କେତେ ଅପମାନ ଦେଉଛି ଭାବି ତାଙ୍କର ଏ ଭାବାନ୍ତର ହେଲା—ନିର୍ଣ୍ଣୟ କରିବା କଠିନ ।

ଅଳ୍ପକ୍ଷଣ ମଧ୍ୟରେ ରାଜା ସଚେତ ହୋଇଗଲେ । ପ୍ରଭୁତ୍ୱ ଅଶ୍ରୁକୁ ଦମନକଲା । ରାଗି ହୋଇ କହିଲେ—ମୁଁ କହୁଛି, ଏଠାରୁ ଚାଲିଯାଅ ।

ହରସେବକ—ଆପଣଙ୍କୁ ଲଜ୍ଜାଲାଗୁନାହିଁ ! କାହା ସହିତ ଆପଣ କଥାବାର୍ତ୍ତା କରୁଛନ୍ତି, ଜାଣିପାରୁ ନାହାନ୍ତି !

ବଜ୍ରଧର—ବାପ, କାହିଁକି ମୋ ମୁହଁରେ କଳା ବୋଳୁଛୁ ?

ଚକ୍ରଧର—ଯେ ପର୍ଯ୍ୟନ୍ତ ଆପଣ ଏ ଲୋକମାନଙ୍କୁ ଏଠାରୁ ଯିବାକୁ ନ ଦେଉଛନ୍ତି, ସେ ପର୍ଯ୍ୟନ୍ତ ମୁଁ ଯାଇପାରିବି ନାହିଁ ।

ରାଜା—ମୋ ଲୋକଙ୍କୁ ତୁମର କହିବା ଅଧିକାର ନାହିଁ । ସେମାନଙ୍କ ମଧ୍ୟରୁ ଜଣେ କେହି ଆଗେଇବ ତ, ଭୂମିରେ ତା'ର ଲାସ୍ ପଡ଼ିବ ।

ଚକ୍ରଧର—ସେମାନଙ୍କୁ ଏଠାରୁ ନେବା ବ୍ୟତୀତ ମୋର ଅନ୍ୟ କିଛି ଉପାୟ ନାହିଁ ।

ଏହା କହି ଚକ୍ରଧର ମଜୁରିଆମାନଙ୍କ ଆଡ଼କୁ ଚାଲିଲେ । ରାଜା ସାହେବ ଜାଣିଥିଲେ, ଏହାର ଇଙ୍ଗିତରେ ସବୁ ମଜୁରିଆ ଚାଲିଯିବେ । ସଶସ୍ତ୍ର ସୈନ୍ୟ ମଧ୍ୟ ସେମାନଙ୍କୁ ଅଟକେଇ ପାରିବ ନାହିଁ । ଅଧୀର ହୋଇ ବନ୍ଧୁକ ଧରି ଚକ୍ରଧର ପଛରେ ଦୌଡ଼ିଲେ । ଏତେ ଜୋରରେ କୁଦାମାରିଲେ ଯେ, ତା'ର ଧକ୍‌କାରେ ଚକ୍ରଧର କେତେ ହାତ ଦୂରରେ ଯାଇ କଚାଡ଼ି ହୋଇ ପଡ଼ିଲେ । ମୁଣ୍ଡରେ ବାଜିଥିଲେ ସେଇଠି ଖତମ ହୋଇଥା'ନ୍ତେ, ସୌଭାଗ୍ୟକୁ

କୁଦା ପିଠିରେ ବସିଲା । ଗୃହୁଁ ଗୃହୁଁ ପାଞ୍ଚହଜାର ଲୋକ, ବାଡ଼ ଭର୍ଜି ସଶସ୍ତ୍ର ସିପାହୀଙ୍କୁ ଠେଲି ମାଡ଼ି ଅସିଲେ । ସ୍ରୋତାରେ ଯେଉଁ କର୍ମଗୃଣ୍ଡା ହାବୁଡ଼େ ପଡ଼ିଲେ, ପିଟିଲେ । ମାଡ଼ିଗଲେ କ୍ୟାମ୍ପ ଆଡ଼େ । ସତେ ଯେମିତ କ୍ୟାମ୍ପ ଲୁଟି ହେଉଛି । ଦୋକାନମାନେ ନିଜ ନିଜର ଦୋକାନ ବନ୍ଦ କରି ଦେଲେ । ଦର୍ଶକମାନେ ଆଣ୍ଠୁ ଯାଏଁ ଲୁଗା ଟେକି ଯିଏ ଯୁଆଡ଼େ ପାଇଲା ଦୌଡ଼ିଲେ । ଚାରିଆଡ଼େ ହାହାକାର ପଡ଼ିଗଲା ଯେଉଁ କେତେକ ଗୁଣ୍ଡା, ଛୁଣ୍ଡା, ଲଗାମ୍‌ଛଡ଼ା ତାମସା ଦେଖିବାକୁ ଆସିଥିଲେ, ସେମାନେ ଉପଦ୍ରବକାରୀମାନଙ୍କ ସହ ମିଶିଗଲେ । ଏପଟେ କି— ମକୁରିଆମାନେ ରାଜାମାନଙ୍କ କ୍ୟାମ୍ପ ପାଖରେ ପହଞ୍ଚିଲା ବେଳକୁ ସେମାନଙ୍କର ସଂଖ୍ୟା ଦୁଇ-ଗୁଣ ହୋଇଯାଇଥିଲା ।

ରାଜା-ଜମିଦାର ନିଜର ବିଳାସ-ବାସନା ବ୍ୟତୀତ ଅନ୍ୟ କାହାର ଗୋଲାମ୍ ହୁଅନ୍ତି ନାହିଁ । ସମୟର ଗୋଲାମିକୁ ମଧ୍ୟ ପସନ୍ଦ କରନ୍ତି ନାହିଁ । ସକାଳ ହେଉ କି ସନ୍ଧ୍ୟା ହେଉ, ତାଙ୍କର କିଛି ପରୁଆ ନାହିଁ । କିଏ ଆରାମରେ ଶୋଇଥିଲା । କିଏ ଗୀତ ଶୁଣୁଥିଲା । କିଏ ସ୍ନାନଧ୍ୟାନରେ ମଗ୍ନଥିଲା । ଝୁଲକ ମଣ୍ଡପକୁ ଯିବା ପାଇଁ କେତେକ ପ୍ରସ୍ତୁତ ହେଉଥିଲେ । କେଉଁଠି ଭାଙ୍ଗ ଘୋଟା ହେଉଥିଲା । କେଉଁଠି କବିତା ଚର୍ଚ୍ଚା ଓ ନାଚ ହେଉଥିଲା । କିଏ ଜଳପାନ କରୁଥିଲା । ଦାୟିତ୍ୱହୀନ ସ୍ୱାଧୀନତା ନିଜର ବିବିଧ ଲୀଳା ଦେଖାଉଥିଲା । ଯଦି ଉପଦ୍ରବକାରୀ-ମାନେ ସେଇ କ୍ୟାମ୍ପରେ ପହଞ୍ଚି ଯାଇଥାଆନ୍ତେ, ତେବେ ମହାଅନର୍ଥ ସୃଷ୍ଟି ହୋଇ ଯାଇଥାଆନ୍ତା । କେତେ ରାଜବଂଶ ଲୋପ ପାଇ ଯାଇଥାଆନ୍ତା । ଇଂରେଜଙ୍କ କ୍ୟାମ୍ପରେ ଦଶବାର ଜଣ ଇଂରେଜ ଶିକାରରୁ ସାଙ୍ଗେ ସାଙ୍ଗେ ଫେରିଥିଲେ । ସେମାନେ ଏ ହଙ୍ଗାମା ଦେଖି ବାହାରକୁ ବାହାରି ଆସିଲେ ଏବଂ ଆଖିବୁଜା ବନ୍ଧୁକ ଚଳେଇଲେ । ପ୍ରଥମେ ତ ଉତ୍ତେଜିତ ଜନତା ବନ୍ଧୁକକୁ ଖାତିର କଲେ ନାହିଁ । ସେମାନଙ୍କର ସଂଖ୍ୟାବଳଥିଲା । ସେମାନେ ଭାବୁଥିଲେ କେତେଜଣ ମଲେ ମଧ୍ୟ ଆମ ଭିତରୁ ଏତେ ଲୋକ ଯାଇ ରାଜାମାନଙ୍କ କ୍ୟାମ୍ପରେ ପହଞ୍ଚିଯିବେ ଯେ, ସେମାନେ କୁଆଡ଼େ ପଳେଇ ଯିବାକୁ ବାଟ ପାଇବେ ନାହିଁ । ଆମେ ସାରା ରାଜ୍ୟକୁ ଏଇ ଅତ୍ୟାଚାରୀମାନଙ୍କ କବଳରୁ ମୁକ୍ତ କରିଦେବୁ, ସେମାନେ ସବୁ ତ ନିଜ ନିଜ ପ୍ରଜାମାନଙ୍କ ଉପରେ ଏହିପରି ଅତ୍ୟାଚାର କରୁଛନ୍ତି ।

ଜନତା ଉତ୍ତେଜିତ ହୋଇ ଆଦର୍ଶବାଦୀ ହୋଇଯାଏ ।

ଗୁଳିର ପ୍ରଥମ ବନ୍ୟାରେ କେତେଲୋକ ଧରାଶାୟୀ ହୋଇଗଲେ—

ଚୌଧୁରୀ—ଦେଖ ଭାଇ, ଡରିଯାଅ ନାହିଁ । ଯିଏ ପଡ଼ିଗଲା, ତାକୁ ଛାଡ଼ିଦିଅ । ଆଗେଇ ଚାଲ—ଜୟ ହନୁମାନଜୀ କୀ—

ଜଣେ ମକୁରିଆ—ଆଗେଇ ଆସ, ଆଗେଇ ଆସ । ଆଜହିଁ—

ମୁହଁରୁ କଥା ସରିଛି କି ନାହିଁ, ଗୁଳିର ଦ୍ୱିତୀୟ ବର୍ଷା ଆସିଲା । କେତେଜଣଙ୍କ ସହ ଦୁଇ ନେତାଙ୍କ ଦେହ ଲୋଟି ପଡ଼ିଲା । ମୁଦ୍ଦୁଲିକ ପାଇଁ ସମସ୍ତେ ଠିଆ ହୋଇଗଲେ ।

ସମସ୍ୟାଥିଲା—ଆଗକୁ ଯିବା ନା ପଛକୁ । ସହସା ଜଣେ ଯୁବକ କହିଲା—ମାର, ହେଲେ କାହିଁକି ! ସାମନାକୁ ଆସି ସାହସ ହରେଇ ଦଉଚ କିଆଁ ! ବଢ଼ିଚାଲ । ଜୟ ହନୁମାନଙ୍କ ଜୀ—

ଦ୍ୱିତୀୟ କହିଲା—ଆଜ ଯିଏ ମରିବ ସିଏ ବୈକୁଣ୍ଠକୁ ଯିବ । ବୋଲ—ଜୟ ହନୁମାନଙ୍କ ଜୀ—

ତା’ଠାରେ ମଧ୍ୟ ଗୁଳି ବାଜିଲା ଏବଂ ସେ’ଠେଇଁ ବୁଲିପଡ଼ି ତଳେ ଲୋଟିଗଲା ।

ଏହି ସମୟରେ ଦେଓ୍ୱାନ୍ ସାହେବ ବନ୍ଧୁକ ଧରି ପଛରୁ ଦୌଡ଼ି ଆସିଲେ । ଗୁରୁସେବକ ମଧ୍ୟ ତାଙ୍କ ସଙ୍ଗେଥିଲେ । ଉଭୟେ କ୍ୟାମ୍ପ ଦୁଆରେ ପହଞ୍ଚିଗଲେ ।

ହରସେବକ—ତୁମେ ମୋ ପଛରେ ଠିଆ ହୋଇ ଗୁଳି ଚଳାଅ ।

ଗୁରୁସେବକ—ହେଉ । ମୁଁ ଟିକିଏ ବୁଝାଇ ଦିଏ । ଯଦି ବୁଝିଯିବେ ତେବେ ରକ୍ତପାତ ଅଉ କାହିଁକି କରିବା !

ହରସେବକ—ଆଉ ବୁଝେଇବାକୁ ସମୟ ନାହିଁ । ସମସ୍ତେ ଆସି କ୍ୟାମ୍ପ ଭିତରେ ପଶିଗଲେ ପ୍ରଳୟ ହୋଇଯିବ ।

କିନ୍ତୁ ଗୁରୁସେବକଙ୍କ ହୃଦୟରେ ଦୟାଥିଲା । ଆଗକୁ ଆସି ପାଟିକରି କହିଲେ,—ତୁମ୍ଭେମାନେ ସବୁ ଏଠାକୁ କାହିଁକି ଆସୁଛ ! କ୍ୟାମ୍ପ ଦୁଆରେ ପହଞ୍ଚୁ ପହଞ୍ଚୁ ତୁମେ ଅଧା ହୋଇଯିବ ।

ଜଣେ ମଜୁରିଆ—କିଛି ଚିନ୍ତା ନାହିଁ । ମରି ମରି ବଞ୍ଚିବା ଅପେକ୍ଷା ପୁରା ମରିଯିବା ଭଲ । ମାର, ଆଗେଇ ଚାଲ ।

ଗୁରୁସେବକ—ଆଗକୁ ପାଦେ ଆସିବ ତ ମରିବ । ବୁଝି ନିଅ ଯେ ମୃତ୍ୟୁ ସାମନାରେ ଠିଆ ହୋଇଛି ।

ମଜୁରିଆ—ଅମେ ଆଜ ମରିବା ପାଇଁ···

ଇଂରେଜ କ୍ୟାମ୍ପରୁ ଧମାଧମ୍ ଗୁଳି ମାଡ଼ ହେଲା, ଅନ୍ୟ କେତେକଙ୍କ ସହ ଇଏ ମଧ୍ୟ ଟଳି ପଡ଼ିଲା । ସାରା ଜନତା ମଧ୍ୟରେ ହଇଚଇ ପଡ଼ିଗଲା—ଏ ପର୍ଯ୍ୟନ୍ତ ଏମାନେ ଜାଣିପାରୁ ନ ଥିଲେ, ଗୁଳି କୁଆଡ଼ୁ ଆସୁଛି । ସେମାନେ ଜାଣୁଥିଲେ କ୍ୟାମ୍ପ ଭିତରୁ ଗୁଳି ଆସୁଛି । ଏବେ ଶିକାରୀମାନେ ଆଗକୁ ମାଡ଼ି ଆସିବାର ସମସ୍ତେ ଦେଖିଲେ ।

ଜଣେ ଚମାର କହିଲା—ଆରେ, ସାହେବ ଲୋକେ ଗୁଳି ମାରୁଛନ୍ତି ।

ଦ୍ୱିତୀୟ—ଗୋରା ଫଉଜ ।

ତୃତୀୟ—ଚାଲ ସିଆଡ଼େ । କୁକୁଡ଼ା ଅଣ୍ଡା ଖାଇ ଖାଇ ମୋଟା ହେଇଚନ୍ତି ।

ଚତୁର୍ଥ — ଏଇ ଗୁଡାକ ରାଜାମାନଙ୍କୁ ବିଗାଡ଼ୁଛନ୍ତି ।

ସମସ୍ତେ ଦୌଡ଼ିଲେ ଇଂରେଜ କ୍ୟାମ୍ପ୍ ଆଡ଼େ । ଏଣେ ରାଜାମାନଙ୍କ କ୍ୟାମ୍ପ୍‌ରୁ ପଟ୍‌ପଟ୍ ଶବ୍ଦରେ ମଟରମାନ ବାହାରି କ୍ୟାମ୍ପ୍ ଖାଲି ହେବାକୁ ଲାଗିଲା । ତେଣେ ଇଂରେଜ କ୍ୟାମ୍ପ୍‌ରୁ ମଟର ବାହାରିବା ଆରମ୍ଭ ହେଲା । ମୁହୂର୍ତ୍ତକ ମଧ୍ୟରେ ସବୁ ଲେଉଡ଼ି ଚାଲିଗଲେ । ପୁରୁଷମାନଙ୍କ ମଧ୍ୟରୁ ଅଧେ ଚାଲିଗଲେଣି । ଯେଉଁମାନେ ଅଛନ୍ତି, ସେମାନେ ହାତରେ ମାର୍କିନ ବନ୍ଧୁକ ଧରି ଯୁଦ୍ଧରେ ଠିଆ ହୋଇଛନ୍ତି । ଏପଟୁ ଠେଙ୍ଗା ଓ ଢେଲା ଚାଲିଛି । ଇଂରେଜ କ୍ୟାମ୍ପ ପାଖରେ ପହଞ୍ଚୁ ପହଞ୍ଚୁ କୋଡ଼ିଏ ଜଣ ଟଳି ପଡ଼ିଲେଣି । ଏମାନଙ୍କ ମୁହଁରେ ହିଂସା ଜଳୁଥିଲା । ସେମାନଙ୍କୁ ଏ ଅବସ୍ଥାରେ ଦେଖିଲେ କେହି କଳ୍ପନା କରିପାରିବେ ନାହିଁ — ଏମାନେ ସରଳ ନିରୀହ ଲୋକ । ଇଂରେଜ ଯୋଦ୍ଧା ଏସାଏଁ ଦମ୍ଭରେ ଠିଆ ହୋଇ ଗୁଳି ଚଳାଉଥିଲେ । କିନ୍ତୁ ଏ ଭୟଙ୍କର ଦଳକୁ ଦେଖି ସେମାନଙ୍କର ସାହସ କମିଗଲା । ଦି'ଚାରି ଜଣ ଛାଡ଼ି ଚାଲିଗଲେ । ତିନି ଜଣ ମୂର୍ଚ୍ଛା ହୋଇ ପଡ଼ିଲେ । କେବଳ ପାଞ୍ଚଜଣ ଫୌଜ ଅଫିସର ବନ୍ଧୁକ ଧରି ଦୃଢ଼ତାର ସହିତ ଠିଆ ହୋଇ ରହିଲେ । ବଞ୍ଚିବାର ଆଶା ସେମାନେ ଛାଡ଼ି ଦେଇଥିଲେ । ପ୍ରତି ମୁହୂର୍ତ୍ତରେ ସେମାନଙ୍କ ବନ୍ଧୁକରୁ ଗୁଳି ଚାଲିଥିଲା । ଜୀବନକୁ ପାଣି ଛଡ଼େଇ ଲୋକେ ଯାଇ ଫାଟକ ପାଖରେ ପହଞ୍ଚିଗଲେ ଏବଂ ଢେଲା ପଥର ବୃଷ୍ଟି କରିବାକୁ ଲାଗିଲେ । ସେ ମାଡ଼ରେ ପାଞ୍ଚଜଣ ଇଂରେଜ ଫଉଜ ମଧ୍ୟରୁ ଦୁଇ ଜଣ ମୂର୍ଚ୍ଛା ହୋଇ ପଡ଼ିଗଲେ । ବାକି ତିନିଜଣ ଏ ସମସ୍ତ ଲୋକଙ୍କୁ ଅଟକେଇ ରଖିବା ଯଥେଷ୍ଟ । କିନ୍ତୁ ସେମାନଙ୍କ ପାଖରେ ଆଉ ଗୁଳି ନାହିଁ କି ପ୍ରାଣ ବଞ୍ଚାଇବାର ଆଉ କୌଣସି ଉପାୟ ନାହିଁ । ସମସ୍ତେ ଏ ତିନିଙ୍କ ଉପରକୁ ମାଡ଼ି ଆସିଲେ ।

ସହସା ଭିଡ଼କୁ ଚିରି ଜଣେ ବ୍ୟକ୍ତି କ୍ଷିପ୍ର ଗତିରେ ଦୌଡ଼ି ଆସି ପାଟିକରି କହିଲା — ବନ୍ଦକର । ଆଗକୁ ବଢ଼ନାହିଁ । ଈଶ୍ୱରଙ୍କ ରାଣ, ଠିଆ ହୁଅ । ଲୋକେ ଆଶ୍ଚର୍ଯ୍ୟ ହୋଇ ଦେଖିଲେ — ଚକ୍ରଧର । ଶହ ଶହ ଲୋକ ଦୌଡ଼ି ଆସି ତାଙ୍କୁ ଘେରିଗଲେ । ଜୟ ଜୟକାର ଧ୍ୱନିରେ ଆକାଶ କମ୍ପି ଉଠିଲା ।

ଜଣେ କହିଲା — ଆମେ ଏ ଖୁନ୍‌ର ପ୍ରତିଶୋଧ ନେବୁ ।

ଚକ୍ରଧର ଦୁଇହାତ ଉପରକୁ ଉଠାଇ କହିଲେ — ଖବରଦାର୍, କେହି ପାଦେ ହେଲେ ଆଗକୁ ବଢ଼ ନାହିଁ ।

ଜଣେ ମଜୁରିଆ — ଭଇମାନେ, ଖାଲି ଏଇ ତିନିଜଣ, ବାସ୍ ।

ଚକ୍ରଧର — ମୁଁ ପୁଣି କହିରଖୁଛି, ଆଉ ପାଦେ ହେଲେ ଆଗକୁ ଆସନାହିଁ ।

ଜଏଣ୍ଟମାଜିଷ୍ଟ୍ରେଟ୍ ମି· ଜିମ୍ କହିଲେ — ବାବୁ ସାହେବ, ଆମକୁ ବଞ୍ଚାନ୍ତୁ ।

ମିଲିଟାରି କାପ୍ଟେନ୍ ମିଷ୍ଟର ମିମ୍ କହିଲେ — ଆମେ ସବୁବେଳେ ଆପଣଙ୍କ ନିକଟରେ କୃତଜ୍ଞ ରହିବୁ । ଆମେ ସରକାରଙ୍କଠାରେ ଆପଣଙ୍କ ପାଇଁ ସୁପାରିସ କରିବୁ, ଆମକୁ ବଞ୍ଚାନ୍ତୁ ।

ଜଣେ ମଜୁରିଆ—ଆମର ଏତେ ଲୋକଙ୍କୁ ଗୁଳିକରି ମାରିଦେବା ବେଳେ ଆପଣ କୁଆଡ଼େ ଥିଲେ ! ଏଇମାନେ ଗୁଣ୍ଡ୍ ଚ କ'ଣ ! ବାବୁଙ୍କର କ'ଣ ହେଇଯାଉଛି କି ! ମରିଛେ ତ ଅମେ । ମାର ।

ଚକ୍ରଧର ଆଗରେ ଠିଆ ହୋଇ କହିଲେ—ଯଦି ତୁମର ରକ୍ତ ଦରକାର ତେବେ ଆଗ ମୋତେ ମାର ।

ମଜୁରିଆ—ବାବୁଜୀ, ହଟିଯାଅ । ଅମେ ଖୁବ୍ ମାଡ଼ ଖାଇଲୁଣି । ମନର କ୍ରୋଧ ଶାନ୍ତ ହେବାକୁ ଦିଅ ।

ଅନ୍ୟଜଣେ—ହଇ ସାହେବ, ତୁମେ ଶାନ୍ତ ଶାନ୍ତ କହୁଚ ଯେ, ତା'ର ଫଳ କ'ଣ ହଉଚି ! ଯିଏ ଗୁଣ୍ଡ୍ ଚ ସିଏ ଆମକୁ ମାରୁଛି, ପିଟୁଛି । ଅମେ ଶାନ୍ତ ହୋଇ ବସିଥିବୁ ! ଆଉ ଅମକୁ ଶାନ୍ତରହିବା ଶିଖାଅ ନାହିଁ । ଆମକୁ ମାରିବା ଶିଖାଅ ।

ଅନ୍ୟଜଣେ—ଫାଶୀ ତ ଅମକୁ ନିଶ୍ଚୟ ହେବ । ତମେ ତ ଆମକୁ ରକ୍ଷା କରିପାରିବ ନାହିଁ ।

ମିଷ୍ଟର ଜିମ୍—ଅମେ କାହାରିକୁ ଦଣ୍ଡ ଦେବୁ ନାହିଁ ।

ମିଷ୍ଟର ସିମ୍—ଅମେ ସମସ୍ତଙ୍କୁ ପୁରସ୍କାର ଦେବୁ ।

ଚକ୍ରଧର—ପୁରସ୍କାର ମିଳୁ କିମ୍ବା ଫାଶ ମିଳୁ । ଈଶ୍ୱରଙ୍କ ଦୃଷ୍ଟିରେ ତୁମେମାନେ ନିର୍ଦ୍ଦୋଷ । ଆଉ ନିଜକୁ କଳଙ୍କିତ କରନାହିଁ ।

ଚକ୍ରଧର ବନ୍ଧୁକ କୁନ୍ଦା ଚୋଟରେ କିଛି ସମୟ ଅଚେତ ହୋଇ ପଡ଼ି ଯାଇଥିଲେ । ଚେତା ଆସିବା ପରେ ଦେଖିଲେ ଇଂରେଜ କ୍ୟାମ୍ପ ଆଗରେ ଦଳେ ଉପଦ୍ରବ ପାଇଁ ଠିଆ ହୋଇଗଲେଣି । ତେଣେ ବଜାର ଲୁଟି ହେଉଛି । ପୁଲିସ୍ ସିପାହୀମାନେ ଉପଦ୍ରବକାରୀଙ୍କ ସହ ମିଶି ଦୋକାନ ଲୁଟି କରିବାରେ ଲାଗିଛନ୍ତି । ବିଶାଳ ଅଭିଷେକ ମଣ୍ଡପ ଧୁ ଧୁ ହୋଇ ଜଳୁଛି । ସେ ଉଠିପଡ଼ି ଇଂରେଜ କ୍ୟାମ୍ପ ଆଡ଼କୁ ଦୌଡ଼ିଲେ । ବଜାରରେ ରକ୍ତପାତର ଭୟ ନ ଥିଲା । ସେଠାରେ ରକ୍ଷକ ସ୍ୱୟଂ ଲୁଣ୍ଠନକାରୀ ହୋଇଯାଇଥିଲେ । ହରତାଳକାରୀଙ୍କୁ ଶିକାର କରିବା ପାଇଁ ସେମାନଙ୍କୁ ଫୁରୁସତ କାହିଁ ! ଇଂରେଜ କ୍ୟାମ୍ପ ର ଅବସ୍ଥା ସବୁଠାରୁ ଭୟାବହ ଥିଲା । ସେଇ ମୁହୂର୍ତ୍ତରେ ସେ ସେଠାରେ ପହଞ୍ଚି ନଥିଲେ କୌଣସି ଇଂରେଜ ବଞ୍ଚି ନ ଥା'ନ୍ତେ । ସାରା କ୍ୟାମ୍ପ ଜଳି ପାଉଁଶ ଗଦାରେ ପରିଣତ ହୋଇଥାଆନ୍ତା । ବିଦେଶୀମାନଙ୍କ ଜୀବନ ବଞ୍ଚିଗଲା । କ୍ଷଣକ ମଧ୍ୟରେ କ୍ୟାମ୍ପ ଖାଲି ହୋଇଗଲା ।

ସବୁ କ୍ୟାମ୍ପ ଖାଲି । ଚତୁର୍ଦ୍ଦିଗରେ ନିସ୍ତବ୍ଧତା । କେବଳ ଅଭିଷେକ ମଣ୍ଡପ ଏ ଯାଏଁ ଲିଭିନାହିଁ । ରାଜା ଏବଂ ତାଙ୍କ ସଙ୍ଗରେ କେତେଜଣ କୌଣସି ମୃତକର ଦାହ କିୟା ଦେଖିଲା ଭଳି ସେଠାରେ ଠିଆ ହୋଇଛନ୍ତି । ବଜାର ଲୁଟି ହୋଇଗଲା, ଗୁଳି ଚାଲି ଲୋକେ ମଶା ମାଛିଙ୍କ ଭଳି ମରି ପଡ଼ିଥିଲେ । କିନ୍ତୁ ରାଜା ସାହେବ ସେହିଠାରେ ସେହିପରି ଠିଆ ହୋଇ ରହିଥିଲେ ।

ରାତ୍ର ହେଲା । ଗୃହଆଡ଼େ ଅନ୍ଧକାର ଘୋଟି ହୋଇଗଲା । ଘାଇଲା ଲୋକଙ୍କର କରୁଣ ଚିତ୍କାର ଶୁଣିବାକୁ ମିଳୁଥିଲା । ଚନ୍ଦ୍ରଧର ଏବଂ ତାଙ୍କ ସାଥୀମାନେ ସେମାନଙ୍କୁ ସାବଧାନତା ସହ ଉଠେଇ ଆଣି ଗୋଟିଏ ଗଛମୂଳେ ରଖୁଥିଲେ । କେତେ ଲୋକଙ୍କୁ ଟେକି ଆଣିବା ସମୟରେ ସେମାନେ ସ୍ୱର୍ଗଲୋକ ଗମନ କଲେ । ରାଜ୍ୟ ଡାକ୍ତରଖାନାର ଡାକ୍ତର ଜଣେ ଥିଲେ। ବ୍ୟସ୍ତଥିଲେ ! ଖବର ପାଇ ଆସି ପହଞ୍ଚିଗଲେ । ଲଣ୍ଠନ ଧରି ସେଇମାନଙ୍କୁ ହସ୍ପାତାଳକୁ ନେବାର କଥା ନଆଗଲା ।

ହଠାତ୍ କେତେଜଣ ସିପାହି ଆସି ଚନ୍ଦ୍ରଧରଙ୍କୁ ଧରନେଇ ଇଂରେଜ କ୍ୟାମ୍ପରେ ପହଞ୍ଚାଇଲେ । ପଚାରିବାରୁ କହିଲେ—ଜମ୍ ସାହେବଙ୍କ ହୁକୁମ୍ । ସେଠାରେ ଯାଇ ଚନ୍ଦ୍ରଧର ଦେଖିଲେ କୋର୍ଟ ବସିଛି । ସଶସ୍ତ୍ର ସିପାହି ଲୁଟ୍‌ପାଟ ସାରି ଏଠାରେ ସଙ୍ଗିନ୍ ଧରି ଜଗି ରହିଛନ୍ତି । ମିଷ୍ଟର ଜମ୍ ଏବଂ ମିଷ୍ଟର ସିମ୍ ଦ୍ୱୈତ ରୂପ ଧାରଣ କରି ସିଗାରେଟ୍ ପିଉଛନ୍ତି । ରାଜା ସାହେବ ମିଷ୍ଟର ଜମ୍‌ଙ୍କ ପାଖରେ ବସିଛନ୍ତି । ଦେଓ୍ୱାନ୍ ସାହେବ କ୍ରୋଧରେ ଆଖିଲାଲ କରିଛନ୍ତି ଏବଂ ବଜ୍ରଧର ହାତ ଯୋଡ଼ି ଗୋଟେ କଣରେ ଛିଡା ହୋଇଛନ୍ତି ।

ଚନ୍ଦ୍ରଧରଙ୍କୁ ଦେଖି ମି. ଜମ୍ କହିଲେ—ରାଜା ସାହେବ କହୁଛି ଏ ସବୁ ତୁମର କାଣ୍ଡ । ତୁମେ ଏବଂ ତୁମର ଲୋକେ ଅନେକ ଦିନ ହେଲା ରାଜ୍ୟରେ ଭୁଲ ଲୋକମାନଙ୍କୁ ମତାଉଥିଲ ଏବଂ ଆଜି ତୁମେ ନ ଆସିଥିଲେ ଏ ଦଙ୍ଗା ହୋଇ ନ ଥା'ନ୍ତା ।

ଚନ୍ଦ୍ରଧର—ଆମେ ଜନତାଙ୍କର ଜାଗ୍ରତ ଆଣୁଥିଲୁ । ସେମାନଙ୍କ ମଧ୍ୟରେ ଶିକ୍ଷାର ପ୍ରସାର କରୁଥିଲୁ । ସ୍ୱାର୍ଥାନ୍ଧ ଅମଲାମାନଙ୍କ କବଳରୁ କିପରି ମୁକ୍ତ ହେବେ, ତା'ର ଉପାୟ ବତାଉଥିଲୁ ଏବଂ ସେମାନେ ନିଜର ଆତ୍ମସମ୍ମାନ କିପରି ରକ୍ଷା କରିପାରିବେ ତା'ର ବ୍ୟବସ୍ଥା କହୁଥିଲୁ । ଆମେ ଚାହୁଁଥିଲୁ—ମନୁଷ୍ୟ, ମନୁଷ୍ୟ ଭଳି ସଂସାରରେ ରହୁ । ଏହାକୁ ଯଦି କେହି ମତେଇବା ମନେକରେ କରୁ । ଆମେ କିନ୍ତୁ ଏହାକୁ ନିଜର କର୍ତ୍ତବ୍ୟ ମନେକରୁ ।

ଜମ୍—ତୁମ ଉପଦେଶର ଏହି ଫଳ ଦେଖି କିଏ କହିବ ଯେ, ତୁମେ ଏମାନଙ୍କୁ ମତାଉ ନଥିଲ ବୋଲି !

ଚନ୍ଦ୍ରଧର—ଏଠାରେ ସେହି ଲୋକଙ୍କ ଉପରେ ଅତ୍ୟାଚାର ହେଉଥିଲା । ଏଠାରୁ ଚାଲିଯିବା ବା କାମ ନ କରିବାର ଅଧିକାର ସେମାନଙ୍କର ଥିଲା । ଯଦି ସେମାନଙ୍କୁ ଶାନ୍ତିରେ ଯିବାକୁ ଦିଆଯାଇ ଥାଆନ୍ତା, ତେବେ ଏ ଅବସ୍ଥା ଘଟି ନ ଥା'ନ୍ତା ।

ରାଜା—ପରମ୍ପରା ଅନୁସାରେ ବେଠି ଅସୁଲ କରିବା ଆମର ଅଧିକାର ଏବଂ ସେ ଅଧିକାର ଆମେ ତ୍ୟାଗ କରି ନ ପାରୁ । ଆପଣ ଲୋକମାନଙ୍କୁ ବେଠି ଖଟିବାକୁ ମନା କରୁଛନ୍ତି ଏବଂ ଆଜିର ହତ୍ୟାକାଣ୍ଡ ପାଇଁ ଆପଣ ଦାୟୀ ।

ଚନ୍ଦ୍ରଧର—କୌଣସି ଅନ୍ୟାୟ ପରମ୍ପରା ଚଳେ ଅଛି ବୋଲି ତାହାକୁ ସମ୍ମାନ ଦିଆଯାଇ ନ ପାରେ ।

ଜମ୍—ବିଦ୍ରୋହ କରିଥିବା ହେତୁ ଆମେ ତୁମ ନାମରେ ମକଦ୍ଦମା କରିବୁ । ତୁମେ ଏକ ଡେଞ୍ଜରସ୍ ଲୋକ ।

ରାଜା—ହଜୁର୍, ମୁଁ ଏହାଙ୍କ ନାମରେ ମକଦ୍ଦମା କରିବାକୁ ଚାହେଁନା । କେବଳ ଏହି ଶପଥ ପତ୍ର ଚାହେଁ ଯେ, ସେ କିମ୍ବା ତାଙ୍କ ଲୋକ ମୋ ରାଜ୍ୟରେ ରହିବେ ନାହିଁ ।

ଚନ୍ଦ୍ରଧର—ଏପରି ଶପଥ ମୁଁ କରି ପାରିବି ନାହିଁ ।

ମି. ଜମ୍ ସବ୍‌ଇନସ୍‌ପେକ୍ଟରଙ୍କୁ କହିଲେ—ଏହାକୁ ନଜର ବନ୍ଦୀ କରି ରଖ । କାଲି ଇଜିଲାସ୍‌ରେ ହାଜର କରେଇବ ।

ମୁନ୍‌ସୀ ବଜ୍ରଧର ଜମ୍‌ଙ୍କ ପାଦତଳେ ପଗଡ଼ିରଖି କହିଲେ—ହଜୁର୍, ଏ ଗୋଲାମ୍‌ର ପୁଅ ଇଏ । ହଜୁର୍‌ଙ୍କ ପୁରୁଣା ଗୋଲାମ । ମୁଁ ତହସିଲ୍‌ଦାରିଥିବା ସମୟରେ ହଜୁର୍ ମୋତେ ପୁରସ୍କାର ଦେଇଥିଲେ ।

ମି. ଜମ୍—ଓ ତହସିଲଦାର ସାହେବ, ଇଏ ତୁମର ପୁଅ ! ତୁମେ ଏହାକୁ ଘରୁ ନିକାଲି ଦଉନ କାହିଁକି ! ଅପରାଧୀମାନଙ୍କୁ ପାଳନ ପୋଷଣ କରିବା ପାଇଁ କଣ ସରକାର ତୁମକୁ ପେନ୍‌ସନ୍ ଦେଉଛନ୍ତି ? ତୁମର ପେନ୍‌ସନ୍ ବନ୍ଦକରିଦେବି ।

ବଜ୍ରଧର—ହଜୁର୍ ମୋର ମାଲିକ । ଆଜି ତା'ର ଦୋଷ ମାଫ୍‌କରିଦିଅନ୍ତୁ । ଆଜିଠାରୁ ମୁଁ ତାକୁ ଘରୁ ବାହାରକୁ ଯିବାକୁ ଦେବି ନାହିଁ ।

ଚନ୍ଦ୍ରଧର ପିତାଙ୍କୁ ଘୃଣା ଦୃଷ୍ଟିରେ ଚାହିଁ କହିଲେ—ଆପଣ କାହିଁକି ଏପରି କହି ମୋତେ ଲଜ୍ଜିତ କରୁଛନ୍ତି ! ମିଷ୍ଟର ଜମ୍ ଏବଂ ରାଜାସାହେବ ମୋତେ ନଜରବନ୍ଦୀ କରିବାକୁ ଚାହୁଁଛନ୍ତି – ଜେଲ ନୁହେ ।

ବଜ୍ରଧର—ବାପ, ମୋ ଅନ୍ତ୍ରେ ତୁ ଯାହା କରୁଛୁ କରେ ।

ହରିସେବକ—ତହସିଲ୍‌ଦାର ସାହେବ, ଆପଣ ବୃଥାରେ ହଇରାଣ ହେଉଛନ୍ତି । ପୁଅକୁ ବୁଝେଇ ଦବା ଆପଣଙ୍କର କାମ । ସେ ଜାଣିବା ଶୁଣିବା ପିଲା । ଯଦି ସେ ନିଜେ ନିଆଁରେ ଡେଇଁବାକୁ ଚାହେ, ଆପଣ ତାକୁ ରୋକିବେ କିପରି ?

ବଜ୍ରଧର—ହଜୁର୍, ମୋ ପେନ୍‌ସନ୍‌ରେ କିଛି ଆଞ୍ଚ ଆଣିବେ ନାହିଁ ।

ଜମ୍—ତୁମକୁ ଏ ମୋକଦ୍ଦମାରେ ସାକ୍ଷୀ ହେବାକୁ ପଡ଼ିବ । ତୁମେ ଠିକ୍ ସାକ୍ଷ୍ୟଦେଲେ ତୁମର ପେନ୍‌ସନ୍‌ରେ କିଛି ଆଞ୍ଚ ଆସିବ ନାହିଁ !

ଚନ୍ଦ୍ରଧର—ବାସ, ହେଇଚି ଗଲା !

ରାଜା—ବାବୁ ଚନ୍ଦ୍ରଧର, ଅବସ୍ଥା ଏବେ ବି ବିଗିଡ଼ିନି । ଆପଣ ଶପଥ ପତ୍ରଲେଖି ଖୁସିରେ ଘରକୁ ଯାଆନ୍ତୁ । ମୁଁ ଆପଣଙ୍କୁ ହଇରାଣ କରିବାକୁ ଚାହେଁନା । କେବଳ ଏତିକି ଚାହେ, ଏପରି ହଙ୍ଗାମା ଆଉ ଯେପରି ନ ହୁଏ ।

ଚନ୍ଦ୍ରଧର--ରାଜାସାହେବ, କ୍ଷମା କରିବେ, ଯେ ପର୍ଯ୍ୟନ୍ତ ଅସନ୍ତୋଷର କାରଣ ଦୂର ନ ହୋଇଛି, ସେ ଯାଏଁ ଏପରି ଦୁର୍ଘଟଣା ହେବ । ଆପଣ ମୋତେ ବାନ୍ଧି ପାରନ୍ତି, ବନ୍ଦୀ କରିପାରନ୍ତି । ଏହାଦ୍ୱାରା ଆପଣ ଶାନ୍ତି ପାଇପାରନ୍ତି, କିନ୍ତୁ ଅସନ୍ତୋଷ ଦୂର ହେବନାହିଁ । ଏହି ଅସନ୍ତୋଷଦ୍ୱାରା ପ୍ରଜାମାନଙ୍କ ଜୀବନ ଅସହ୍ୟ ହୋଇଗଲାଣି । ଅସନ୍ତୋଷ ବୃଦ୍ଧି କରି ଆପଣ ପ୍ରଜାମାନଙ୍କୁ ଶାନ୍ତି ଦେଇ ପାରିବେ ନାହିଁ । ଯଦି ଆପଣ ସେମାନଙ୍କୁ ଭୀରୁ, କର୍ମହୀନ, ବୁଦ୍ଧିହୀନ, ପୁରୁଷାର୍ଥହୀନ ମନେକରୁଥାଆନ୍ତି—କିନ୍ତୁ । ମନୁଷ୍ୟ ଶରୀର ଧାରଣ କରିଥିବା ଏଲୋକଙ୍କୁ ଶୃଗାଳ କିମ୍ବା ମୂଷିକ ଭଳି ରଖିବାକୁ ଚାହାଁନ୍ତି, ଏହା ଦ୍ୱାରା କିନ୍ତୁ ଆପଣଙ୍କର କୀର୍ତ୍ତି ବଢ଼ିବ ନାହିଁ କି ଈଶ୍ୱର ଆପଣଙ୍କ ପ୍ରତି ପ୍ରସନ୍ନ ହେବେନାହିଁ । ଆପଣଙ୍କ ଆତ୍ମା ସନ୍ତୁଷ୍ଟ ହେବ ନାହିଁ ।

( ୧୪ )

ରାଜା-ମହାରାଜାମାନେ ରାଗିଥିବା ସମୟରେ ସେମାନଙ୍କ ପାଖକୁ ଯିବାପାଇଁ କେହି ସାହସ କରନ୍ତି ନାହିଁ । ବିଶାଳସିଂହ କାହାକୁ ଫାଶୀ ଦେଇପାରିବେ ନାହିଁ । ଏପରି କି ଆଇନ୍ ଅନୁସାରେ କାହାରିକୁ ଗାଳି ଦେଇ ପାରିବେ ନାହିଁ । ସେ ମଧ୍ୟ ସରକାରଙ୍କ ପ୍ରଜା । କିନ୍ତୁ ଚାକିରିରୁ ବାହାର ତ କରିଦେଇ ପାରିବେ, ଜୋରିମାନା ତ କରିଦେଇ ପାରିବେ ।

ସାରା ରାତି କଟିଗଲା, ରାଜାସାହେବ ନିଜ କୋଠରିରୁ ବାହାରକୁ ବାହାରିଲେ ନାହିଁ । ଆଖି ମଧ୍ୟ ପତା ପଡ଼ିଲା ନାହିଁ । ଅଧରାତିଯାଏଁ ତାଙ୍କ ତରବାରୀ ହରିସେବକଙ୍କ ଉପରେ ଚାଲିଲା—ଏଇ ବୁଢ଼ାହାଡ଼ାର କୁବ୍ୟବସ୍ଥା ହେତୁ ଏ କାଣ୍ଡ ଘଟିଗଲା । ତା'ପରେ ନିଜ ଉପରେ ତରବାରୀ ପଡ଼ିଲା । ମୋର ଏ ଉତ୍ସବ କ'ଣ ଦରକାରଥିଲା ! ରାଜ୍ୟ ତ ମୋତେ ମିଳିଯାଇଥିଲା । ଅଭିଷେକ ପୁଣି କ'ଣ ! ରାତି ଶେଷ ପ୍ରହରରେ କ୍ରୋଧର ମୋଡ଼ ଚନ୍ଦ୍ରଧରଙ୍କ ଆଡ଼କୁ ହେଲା । ଏ ସବୁ ପାଇଁ ସେଇ ଲୋକହିଁ ଦାୟୀ । ନ୍ୟାୟ, ଧର୍ମ ଓ ପରୋପକାର— ଏ ସବୁ ଭଲ । କିନ୍ତୁ ପ୍ରତ୍ୟେକ କାର୍ଯ୍ୟ ପାଇଁ ସ୍ୱତନ୍ତ୍ର ଅବସର ଦରକାର । ଏତେ ପ୍ରଜାଙ୍କ ମଧ୍ୟରେ ଅସନ୍ତୋଷର ନିଆଁ ଲଗେଇ ଦେଲା ! ଦି' ଚାରିଦିନ ଅଧାପେଟ ଖାଇ ରହିଯାଇଥିଲେ କ'ଣ ମଜୁରିଆମାନେ ମରିଯାଇଥାଆନ୍ତେ ! ନିଜ ଘରେ କୁଟିଏ ଦି'ଦିନ ମିଳିଯାଉଛି ! ଯଦି ବର୍ଷସାରା ଏକ ବେଳ ଅଧାପେଟ ଖାଇ କାଟୁଛି, ଏଠାରେ ସେଇ କଥାକୁ ନେଇ ଏପରି ଦଙ୍ଗା କରିବା କେବଳ ତା'ରି ମନ୍ତ୍ରଣା । ବାପ ଏଣେ ପାଦ ଘଷୁଛି, ପୁଅ ପରୋପକାରୀ ଦେଖେଇ ହଉଚି । ପାଞ୍ଚ ବର୍ଷ ଯାଏଁ ପୁଅକୁ ଯଦି ଚକି ନ ପେଷେଇଚି, ମୋ ନାଁ ନାହିଁ ।

ରାତି ପାହିଲା । ରାଜଭବନ ନିସ୍ତବ୍ଧ । ରାଣୀ ଜନ୍ମାଷ୍ଟମୀ ଦିନଠାରୁ ରାଜାସାହେବଙ୍କ ସଙ୍ଗେ କଥାବାର୍ତ୍ତା କହିବା ଛାଡ଼ି ଦେଇଥିଲେ । ପକ୍ଷୀ ପଞ୍ଜୁରୀରେ ପଡ଼ିରହିଲା ଭଳି ପଡ଼ିଥିଲେ । ବସୁମତୀଙ୍କୁ ନିଜ ପୂଜାପାଠରୁ ଫୁରୁସତ ମିଳୁ ନ ଥିଲା । ଏବେ ସେ ରାମ ଏବଂ କୃଷ୍ଣ ଉଭୟଙ୍କର ପୂଜା ଅର୍ଚ୍ଚନାରେ ବ୍ୟସ୍ତ । କେବଳ ରାମପ୍ରିୟା ଡର ଡର ଏଣେ ତେଣେ ଯିବା ଆସିବା କରୁଥିଲେ । ସେ ଚନ୍ତାରେ ବସିଥିବା ବେଳେ ମନୋରମା ଆସି ଆଗରେ ଠିଆ ହେଲା । ଆଖିରେ କ୍ରୋଧର ଝଲକ ।

ରାମପ୍ରିୟା ପଚାରିଲେ—କ'ଣ ମନୋରମା ?

ମନୋରମା—ରାଜାସାହେବ କେଉଁଠାରେ ?

ରାମପ୍ରିୟା—କାମ କ'ଣ ?

ମନୋରମା—ତାଙ୍କୁ କିଛି କହିବାର ଅଛି ।

ରାମପ୍ରିୟା—ତାଙ୍କ ସାମନାକୁ ଯାଅନାହିଁ । କୋପଭବନରେ ଅଛନ୍ତି । ମୁଁ ନିଜେ ତାଙ୍କ ନିକଟକୁ ଯିବାକୁ ଡରୁଚି ।

ମନୋରମା—କୋପଭବନ କୁଆଡ଼ି ?

ରାମପ୍ରିୟା—କହିବ ନାହିଁ । ପ୍ରଚଣ୍ଡ ରାଗିଛନ୍ତି । ଶୁଣୁଛି, ତୁମର ଗୁରୁଙ୍କର ଏ ସବୁ କାଣ୍ଡକାରଖାନା ବୋଲି । ଦେଖିବାକୁ ଖୁବ୍ ସଜ୍ଜନ – କିନ୍ତୁ ବଡ଼ ଚୁପ୍ ସଇତାନ !

ମନୋରମା ଡରଭଳି ସେଠାରୁ ବାହାରିଯାଇ ବସୁମତୀଙ୍କ ପାଖରେ ପହଞ୍ଚିଲେ । ବସୁମତୀ ସ୍ନାନସାରି ପୂଜାପାଠ କରିବାକୁ ଯାଉଥିଲେ । ମନୋରମାକୁ ହଠାତ୍ ଦେଖି ଚମକିପଡ଼ିଲେ । ମନୋରମା ପଚାରିଲେ—ରାଜାସାହେବ କେଉଁଠି ଅଛନ୍ତି ଆପଣ ଜାଣିଛନ୍ତି ? ବସୁମତୀ ରୁକ୍ଷ କଣ୍ଠରେ କହିଲେ—ଯୁଉଠି ତାଙ୍କର ଇଚ୍ଛା, ସେଇଠି ଥିବେ । ମୋର କ'ଣ ଯାଏ ଆସେ ! ରାମ ସହିତ ରାଧାର ସମ୍ବନ୍ଧ କ'ଣ ?

ମନୋରମା—ଆପଣଙ୍କୁ ଜଣାନାହିଁ !

ବସୁମତୀ—ମୁଁ ବା ଜାଣିବାକୁ କିଏ ? ପରଲୋକ ଭଳି ପଡ଼ିରହିଛି । ସିଏ ହେଇଟି ବସିଛି, ତାକୁ ପଚାର ।

ମନୋରମା ରାଣୀଙ୍କ ପାଖକୁ ଗଲା । ସେ ତକିଆକୁ ଆଉଜି ବସିଥିଲେ । ସାମନାରେ ଆଇନା । ବାଳକାଣି ମୁଣ୍ଡ ବାନ୍ଧଦେଉଥିଲା । ମନୋରମାକୁ ଦେଖି ହସି ହସି କହିଲେ— କୁଆଡ଼େ ଭୁଲିଆସିଲି ?

ମନୋରମା—ରାଜାସାହେବ ଏବେ କୁଉଠି ଥିବେ ଆପଣ ଜାଣନ୍ତି ? ତାଙ୍କୁ କିଛି କହିବାକୁ ଆସିଛି ।

ରାଣୀ—କୁଉଠି ବସି ଭାଗ୍ୟକୁ ଦୋଷ ଦେଉଥିବେ । ମୋ ନିଶ୍ୱାସର ଇଏ ଫଳ । ଏମିତ ମାଡ଼େ ବସିଚ ଯେ, ଜୀବନସାରା ମନେରହିବ । ଭଗବାନ ବଡ଼ଲୋକ । ମୁଁ ତ ଚନ୍ତା କରିବା ଛାଡ଼ି ଦେଲିଣି । ଏବେ ମୁଁ ଭାରି ସୁଖୀ । ଘରେ ନିଆଁ ଲାଗୁ କି ବଜ୍ର ପଡୁ, ମୋର୍ କ'ଣ ଅଛି ?

ମନୋରମା—ମୋତେ ଖାଲି ଏତିକି କହନ୍ତୁ, ରାଜାସାହେବ କେଉଁଠି !

ଗୃହିଣୀ—ମୋ ହୃଦୟ ଭିତରେ ବସି କରତଟେ କରୁଛନ୍ତି ।

ମନୋରମା କିରଣ ନ୍ୟାଇ ସେଠାରୁ ଚାଲି ଆସିଲା । ସେ ଦେଓ୍ୱାନ୍‌ଖାନା ଆଡକୁ ଅନ୍ଦାଜରେ ଚାଲିଲା । ଦୁଆରେ ପହଞ୍ଚି ଭିତରକୁ ଚାହିଁ ଦେଖିଲା—ରାଜାସାହେବ କୋଠରୀ ଭିତରେ ଟହଲି ଟହଲି କିଣ ମୋଡୁଛନ୍ତି । ମନୋରମା ଭିତରକୁ ପଶିଗଲା । ରାଜାସାହେବ ତାକୁ ଦେଖି ଆଶ୍ଚର୍ଯ୍ୟ ହୋଇଗଲେ । ଅନ୍ୟ କେହି ହୋଇଥିଲେ ଧକ୍କା ଦେଇ ବାହାର କରିଥାଆନ୍ତେ । କିନ୍ତୁ ମନୋରମାର ପ୍ରଦୀପ୍ତ ସୌନ୍ଦର୍ଯ୍ୟ ତାଙ୍କୁ ପରାସ୍ତ କରିଦେଲା । ତରଙ୍ଗାୟିତ ପାଣି ଜଳୁଥିବା ଅଗ୍ନିକୁ ଶାନ୍ତ କରି ଦେଲା । କିଛି ଦିନ ପୂର୍ବେ ସେ ତାକୁ ଦେଖିଥିଲେ । ସେତେବେଳେ ସେ ବାଳିକା ଥିଲା—ଆଜି ସେ ନବଯୁବତୀ ।

ନିଃସଙ୍କୋଚରେ ସେ ରାଜାସାହେବଙ୍କ ସାମନାକୁ ଯାଇ ସରୋଷ ନେତ୍ରରେ ପଚାରିଲେ—ମହାରାଜ, ମୁଁ ଆପଣଙ୍କୁ ପଚାରିବାକୁ ଆସିଛି—ପ୍ରଭୁତ୍ୱ ଏବଂ ପାଶବିକତା କ'ଣ ଏକ ବସ୍ତୁ ନା ଉଭୟରେ କିଛି ପ୍ରଭେଦ ଅଛି ?

ରାଜା ବିସ୍ମିତ ହୋଇ କହିଲେ—ମୁଁ ତୁମର ଉଦ୍ଦେଶ୍ୟ ବୁଝିପାରିଲି ନାହିଁ ମନୋରମା । କଥା କ'ଣ ? ତୁମେ ଏତେ ରୁଷ୍ଟା କାହିଁକି ?

ମନୋରମା—ମୁଁ ଆପଣଙ୍କ ପାଖରେ ଅଭିଯୋଗ କରିବାକୁ ଆସିଛି ।

ରାଜା—କେହି କ'ଣ ତୁମକୁ କିଛି କଟୁବଚନ କହିଛି ?

ମନୋରମା—ମୋତେ କେହି କ'ଣ କହିଥିଲେ ମୁଁ ଅଭିଯୋଗ କରିବାକୁ ଆସି ନଥା'ନ୍ତି । ନିଜ ସ୍ୱାର୍ଥପାଇଁ ଆପଣଙ୍କୁ କଷ୍ଟ ଦେଇ ନ ଥା'ନ୍ତି । କିନ୍ତୁ ଆପଣ ନିଜର ତିଳକ ଉତ୍ସବ ଦିନ ମୁଁ ଏପରି ଏକ ପ୍ରାଣୀ ଉପରେ ଅତ୍ୟାଚାର କରିଛନ୍ତି, ଯାହା ପ୍ରତି ମୋର ଅସୀମ ଭକ୍ତି ଏବଂ ଯାହାଙ୍କୁ ଦେବତା ସମାନ ମନେକରେ । ସେ କମଳପତ୍ର ପବିତ୍ର, ବାଳକ ଭଳି ସରଳ, ପ୍ରଚଣ୍ଡ ଯୋଦ୍ଧା ସମାନ ବୀର । ତାଙ୍କଠାରେ ସନ୍ନ୍ୟାସୀର ତ୍ୟାଗ ଏବଂ ମୁନିଋଷିଙ୍କ ସତ୍ୟ ନିହିତ । ଆପଣଙ୍କ ନ୍ୟାୟ-ଧର୍ମ ଚର୍ଚ୍ଚା ମୁଁ ତାଙ୍କର ମୁହଁରୁ ଶୁଣିଥିଲି । ଆଜିର ଅବସ୍ଥା ଯଦି ସେହି ନ୍ୟାୟ ଧର୍ମର ଯଥାର୍ଥ ରୂପ, ତେବେ ମୋର ଆଶଙ୍କା, ଏହି ଆତଙ୍କର ଆଧାର ଉପରେ ପ୍ରତିଷ୍ଠିତ ରାଜ୍ୟର ଶୀଘ୍ର ପତନ ଘଟିବ ଏବଂ ଆପଣଙ୍କର ସମସ୍ତ କୀର୍ତ୍ତି ସ୍ୱପ୍ନବତ୍ ମିଳାଇଯିବ । ଯେତେବେଳେ ଆପଣଙ୍କର ହାତ ବାବୁ ଚକ୍ରଧରଙ୍କ ଉପରକୁ ଉଠିଲା, ସେତେବେଳେ ମୁଁ ଯଦି ସେଠାରେ ଥାଆନ୍ତି, ବନ୍ଧୁକର କୁନ୍ଦା ମୋ ପିଠିରେ ପଡ଼ିଥାଆନ୍ତା । ମୁଁ ଆଶ୍ଚର୍ଯ୍ୟ ହେଉଛି—ଆପଣଙ୍କର ହାତ ଉଠିଲା କିପରି ?

ମନୋରମା ମୁଖରୁ ଏ ଉଦ୍ଦୀପ୍ତ ବାଣୀ ଶୁଣି ରାଜା ସ୍ତବ୍ଧ ହୋଇଗଲେ । ତାଙ୍କର କ୍ରୋଧ ଆକାଶରେ ଛାଇ ହୋଇ ରହିଥିବା ମେଘ ପ୍ରଚଣ୍ଡ ପବନରେ ଉଡ଼ିଗଲା । ସୌନ୍ଦର୍ଯ୍ୟ ସମ୍ମୁଖରେ

ପ୍ରଭୃତ୍ବ ଧୋଷା ବନ୍ଦୀଙ୍କ ହୃଦୟ ଦେଖାଯାଏ । ଅଯୁକ୍ତ ଶକ୍ତି ମଧ୍ୟ ସୌନ୍ଦର୍ଯ୍ୟ ସାମନାରେ ନତମସ୍ତକ ହୁଏ । ରାଜାସାହେବ ନମ୍ରତାର ଢଙ୍ଗ କହିଲେ—ଚକ୍ରଧରଙ୍କୁ ତୁମେ କିପରି ଜାଣ ?

ମନୋରମା—ସେ ମୋତେ ଇଂରାଜୀ ପଢ଼ାଉଥିଲେ ।

ରାଜା—କେତେ ଦିନ ହେଲା ?

ମନୋରମା—ବହୁତ ଦିନ ହେଲା ।

ରାଜା—ମନୋରମା, ମୋର ହୃଦୟରେ ବାବୁ ଚକ୍ରଧରଙ୍କ ପ୍ରତି ସମ୍ମାନ ଥିଲା ଏବଂ ଅଛି । ତାଙ୍କ ଉପରେ ଏ କଠୋର ହସ୍ତ ଦ୍ୱାରା ଆଘାତ କଲି, ଏ କଥା ଶୁଣି ଏବେ ବି ମୋର ବିଶ୍ୱାସ ହେଉନାହିଁ । ତୁମେ ଠିକ୍ କହୁଛ—ପ୍ରଭୁତ୍ୱ ଏବଂ ପଶୁତ୍ୱ ଏକ ବସ୍ତୁ । ଏକ ବସ୍ତୁ ହେଉ ବା ନ ହେଉ—ଏ ଦୁଇଟି ମଧ୍ୟରେ ପାଣି ଏବଂ ନିଆଁର ସମ୍ବନ୍ଧ ନିଶ୍ଚୟ ଅଛି । ଏବେ ମୋର ମନେପଡ଼ୁଛି, ମୁଁ ଯଦି ଧୈର୍ଯ୍ୟର ସହ କାମ କରିଥା'ନ୍ତି, ତେବେ ଚକ୍ରଧର ବିଦ୍ରୋହୀମାନଙ୍କୁ ନିଶ୍ଚୟ ଶାନ୍ତ କରିଦେଇଥା'ନ୍ତେ । ଯାହାଙ୍କଠାରେ ସେବାଗୁଣ ଥାଏ, ଜନତାଠାରେ ସେ ବ୍ୟକ୍ତିର ପ୍ରଭାବ ପଡ଼େ । ସେ ସର୍ବପ୍ରିୟ ହେବାର କାରଣ ବି ଏଇ ସେବାଭାବ । ଇଂରେଜ ବ୍ୟକ୍ତିଙ୍କର ପ୍ରାଣରକ୍ଷା ପାଇଁ ସେ ଯେଉଁପରି ବୀରତ୍ୱର ପରିଚୟ ଦେଲେ, ତାହା ଅଲୌକିକ । ସେ ଯଦି ବିଦ୍ରୋହୀମାନଙ୍କ ଆଗରେ ଠିଆ ହୋଇ ନ ଥା'ନ୍ତେ, ତେବେ ସମ୍ଭବତଃ ଏବେ ଜଗଦୀଶପୁରରେ ଗୁଳି ବର୍ଷା ହୋଇ ଯାହା ଅବସ୍ଥା ସୃଷ୍ଟି ହୋଇଥାଆନ୍ତା, ତାହା କଳ୍ପନା କଲେ ରୋମ ଟାଙ୍କୁର ଉଠୁଛି । ସେ ଦେବତା । ମୁଁ ତାଙ୍କ ପ୍ରତି ଅନ୍ୟାୟ କରିଛି—ଏ ଦୁଃଖ ମୋର ଆଜୀବନ ରହିବ ।

ବିନୟ କ୍ରୋଧକୁ ଗିଳିପକାଏ । ମନୋରମା ଶାନ୍ତ ହୋଇ କହିଲା—କେବଳ ଦୁଃଖ ପ୍ରକାଶ କଲେ ଅନ୍ୟାୟର ଘା' ଶୁଖିଯିବ ନାହିଁ ।

ରାଜା—କ'ଣ କରିବି ମନୋରମା, ମୋ ହାତର କଥା ହୋଇଥିଲେ ଏବେକ୍ଷଣି ଯାଇ ଚକ୍ରଧରଙ୍କୁ କାନ୍ଧରେ ବସାଇ ନେଇ ଆସନ୍ତି । କିନ୍ତୁ ମୋ ଅଖ୍ତିଆରରେ ନାହିଁ ।

ମନୋରମା—ଆପଣ ମି. ଜିମ୍‌ଙ୍କୁ କହିପାରିବେ ।

ରାଜା—ହଁ କହିପାରେ, କିନ୍ତୁ ସେ ମାନିବାର ଆଶା ନାହିଁ । ରାଜନୈତିକ ଅପରାଧୀମାନଙ୍କୁ ସେମାନେ ଟିକିଏ ହେଲେ ଦୟା ପ୍ରଦର୍ଶନ କରନ୍ତି ନାହିଁ । ସେମାନଙ୍କ ବିଷୟରେ କିଛି ଶୁଣିବାକୁ ବି ଚାହାନ୍ତି ନାହିଁ । ହଁ, ଗୋଟିଏ କଥା ହୋଇପାରିବ, ଯଦି ଚକ୍ରଧର ଶପଥପତ୍ର ଲେଖିଦେବେ ଯେ, ସେ ଆଉ ରାଜନୀତିକ କାର୍ଯ୍ୟରେ ଅଂଶ ଗ୍ରହଣ କରିବେ ନାହିଁ; ତେବେ ବା ମି. ଜିମ୍ ଛାଡ଼ିଦେଇ ପାରନ୍ତି । ତୁମେ କଣ ଆଶା କରୁଚ, ଚକ୍ରଧର ଶପଥପତ୍ର ଲେଖିଦେବେ ?

ମନୋରମା ସନ୍ଦିଗ୍ଧ ଭାବରେ ମୁଣ୍ଡହଲାଇ କହିଲା—ନା, ମୋର ଆଶା ନାହିଁ ।

ରାଜା—ତୁମେ କହିଲେ ମାନିବେ ନାହିଁ ?

ମନୋରମା—ମୁଁ କହିଲେ କ'ଣ, ଏ କଥା ଯଦି ସ୍ୱୟଂ ଈଶ୍ୱର କହିବେ, ତେବେ ବି ମାନିବେ ନାହିଁ । ଆଉ ଯଦି ସେ ମାନିଯିବେ, ତେବେ ମୋ ଆଖିରେ ତାଙ୍କର ପତନ ହୋଇଯିବ । ଈଶ୍ୱର ଯେଉଁ ଶକ୍ତି ତାଙ୍କୁ ଦେଇଛନ୍ତି, ସେ ତାହା ତ୍ୟାଗ କରନ୍ତୁ ଏହା ମୁଁ ଚାହେଁନା । ତାଙ୍କର ସେହି ବୀରତା, ସେହି ନିର୍ଭୀକତା ହିଁ ମୋତେ ତାଙ୍କର ଭକ୍ତ କରିଦେଲା ।

ରାଜା ବଡ଼ ଧୀନତାର ସହ ପଚାରିଲେ—ଏହା ଯଦି ଜାଣିଛ, ମୋତେ କାହିଁକି କିମ୍ ସାହେବ ପାଖକୁ ପଠାଉଛ ?

ମନୋରମା—ଏଇଥିପାଇଁ ଯେ, ଉତ୍ତମ ବ୍ୟକ୍ତି ସହ ଉତ୍ତମ ବ୍ୟବହାର ହେବା ଉଚିତ । ସଚୋଟତା ଏବଂ ସଜ୍ଜନତା ପାଇଁ କେହି ଦଣ୍ଡିତ ହେବା ଉଚିତ ନୁହେଁ । ଏଥିରେ ଆପଣଙ୍କର ମଧ୍ୟ ମଙ୍ଗଳ ହେବ । ଯଦି ଚକ୍ରଧରଙ୍କ ସହ ଅନ୍ୟାୟ କରିଯିବ, ତେବେ ଆପଣଙ୍କ ରାଜ୍ୟରେ ଶାନ୍ତି ରହିବ ନାହିଁ । ଆପଣଙ୍କଠାରେ କଲଙ୍କର ଦାଗ ଲଗିଯିବ ।

ରାଜା—କ'ଣ କରିବି ମନୋରମା—ଉତ୍ତମ ପରାମର୍ଶଦାତା ଅଭାବରୁ ମୋର ଏ ଦଶା ହେଲା । ମୁଁ ମୋ ରାଜ୍ୟରେ ରାମରାଜ୍ୟ କଳ୍ପନା କରିଥିଲି । କିନ୍ତୁ ଦୁର୍ଭାଗ୍ୟକୁ ପରିସ୍ଥିତି ଏପରି ହେଲା, ମୁଁ ଯେଉଁ କାର୍ଯ୍ୟକୁ ଘୃଣା କରେ, ସେ କାର୍ଯ୍ୟ ଅଜ୍ଞ ମୋତେ କରିବାକୁ ପଡ଼ିଲା । ମୁଁ ଜାଣିପାରୁ ନାହିଁ, କେଉଁ ଶକ୍ତି ମୋତେ ମୋ ଆତ୍ମାବିରୁଦ୍ଧ ଆଚରଣ କରିବାକୁ ବାଧ୍ୟ କରୁଛି । ମୋତେ ଉତ୍ତମ ମନ୍ତ୍ରଣା ଦେବାକୁ ମୋ ପାଖରେ ସେପରି ମନ୍ତ୍ରୀ ନାହାନ୍ତି । ମୁଁ ହିଂସ୍ରକ ଜନ୍ତୁମାନଙ୍କ ଘେର ଭିତରେ ଅଛି । ସମସ୍ତେ ସ୍ୱାର୍ଥପର । ମୋର ମିତ୍ର କେହି ନୁହନ୍ତି । ଏତେ ଲୋକଙ୍କ ଭିତରେ ମୁଁ ଏକାକୀ, ନିଃସହାୟ ଏବଂ ମିତ୍ରହୀନ । ମୁଁ ବର୍ତ୍ତମାନ ମି· କିମ୍‌ଙ୍କ ପାଖକୁ ଯିବି ଏବଂ ସଫା ସଫା କହିଦେବି ଯେ, ଚକ୍ରଧରଙ୍କ ଉପରେ ମୋର କୌଣସି ଅଭିଯୋଗ ନାହିଁ ।

ମନୋରମାର ସୌନ୍ଦର୍ଯ୍ୟ ରାଜାସାହେବଙ୍କ ଉପରେ ଯାଦୁର ପ୍ରଭାବ ପକାଇଲା । ମନୋରମା ମଧ୍ୟ ରାଜାଙ୍କର ବିନୟ ଓ ଶାଳୀନତା ଦ୍ୱାରା ପ୍ରଭାବିତ ହେଲା । ପରିସ୍ଥିତିକୁ ସେ ବୁଝିପାରିଲା । ନରମ ଗଳାରେ କହିଲା—ଯଦି ତାଙ୍କ ପାଖକୁ ଗଲେ କିଛି ଲାଭ ହେବନାହିଁ, ତେବେ ବୃଥାରେ କାହିଁକି କଷ୍ଟ କରିବେ ! ମୁଁ ଆପଣଙ୍କର ଏତେ ସମୟ ନଷ୍ଟକଲି, ସେଥିପାଇଁ କ୍ଷମା କରିବେ ! ମୋର କୌଣସି କଥା ଯଦି କଟୁ ବା ଅପ୍ରିୟ ଲାଗିଥିବ······

ରାଜା—ନା' ମନୋରମା । ସୁଧାବୃଷ୍ଟି କ'ଣ କାହାକୁ ଅପ୍ରିୟ ଲାଗେ ? ମୁଁ ଏପରି ମଧୁର ବାଣୀ କେବେ ଶୁଣି ନାହିଁ । ତୁମେ ମୋ ପ୍ରତି ଯେଉଁ ଅନୁଗ୍ରହ କଲ, ତାହା ଭୁଲିପାରିବି ନାହିଁ ।

ମନୋରମା ଚାଲିଗଲା । ବିଶାଳସିଂହ ତାକୁ ତୃଷିତ ନୟନରେ ଅନାଇଁ ରହିଲେ ।

( ୧୭ )

ସନ୍ଧ୍ୟା ସମୟ । ଏମିତି ଗରମ ଯେ ନିଶ୍ୱାସ ନେବା କଠିନ ହେଉଛି । ଜେଲ କୋଠରି ଗୁଡ଼ିକରେ ଏହି ଗରମ ଅହୁରି ଅସହ୍ୟ । ଗୋଟିଏ ହେଲେ ଝରକା ନାହିଁ । ମଶାମାନଙ୍କର ଅଖଣ୍ଡ ରାଜତ୍ୱ । ଏଇ କୋଠରି ମଧ୍ୟରୁ ଗୋଟିଏ ଚନ୍ଦ୍ରଧରଙ୍କୁ ଦିଆଯାଇଛି । ଦେଶ ସ୍ୱାଧୀନତା ନିଜର ବିଶ୍ୱସ୍ତ ସେବକଙ୍କୁ ଏହି ଭବନ ପ୍ରଦାନ କରିଥାଆନ୍ତି ।

ସେ ଭାବୁଛନ୍ତି—ଏ ଭୀଷଣ ଉତ୍ପାତ ହେଲା କାହିଁକି । ଆମେ ତ ଭୁଲରେ ମଧ୍ୟ କାହାକୁ ପ୍ରେରଣା ଦେଇନୁ । ଲୋକଙ୍କ ମନରେ ଏ ଭାବନା ଜାଗ୍ରତ ହେଲା କିପରି ? ଏ ପ୍ରଶ୍ନର ଉତ୍ତର ତାଙ୍କୁ ଏମିତି ମିଳିଲା—ଏହା ଆମ ସ୍ୱଭାବର ପରିଣାମ । ଆମେ ଲୋକଙ୍କୁ ଯେଉଁ ଶିକ୍ଷା ଦେଉଥିଲୁ, ତା ତଳେ ଦ୍ୱେଷ ଲୁକ୍କାୟିତ ଭାବରେ ଥିଲା । ସଂଗଠିତ ଶକ୍ତି ଆଗ୍ରହମୟ ହୁଏ ଏବଂ ଅତ୍ୟାଚାରର ଦ୍ୱାରା ଉତ୍ତେଜିତ ହୋଇଥାଏ ବୋଲି ଆମେ ଭୁଲିଯାଇଥିଲୁ । ଯଦି ଆମର ସ୍ୱଭାବ ଭଲ ଥାଆନ୍ତା, ତେବେ ଜନତାର କ୍ରୋଧ ରାଜାମାନଙ୍କ ବିରୋଧରେ ଯାଇ ନ ଥା'ନ୍ତା । କିନ୍ତୁ ଜନତା ଯଦି ରାଜାମାନଙ୍କ କ୍ୟାମ୍ପ ଆଡ଼କୁ ଯାଇନଥା'ନ୍ତେ, ତେବେ କ'ଣ ପୁଲିସ୍ ବିନା ଧରପଗଡ଼ରେ ସେମାନଙ୍କୁ ଘରକୁ ଯିବା ପାଇଁ ଛାଡ଼ି ଦେଇ ଥାଆନ୍ତା ? କେବେ ନୁହେଁ । ପ୍ରଜାମାନେ ଅତ୍ୟାଚାରର ବିରୋଧ ଯଦି ନ କରିବେ, ତେବେ ସଂଗଠନର ମୂଲ୍ୟ କ'ଣ ! ଏଇଥି ପାଇଁ ତ ସେମାନଙ୍କୁ ଉପଦେଶ ଦିଆଯାଉଛି । ବଡ଼ କଠିନ ସମସ୍ୟା । ପ୍ରଜାମାନଙ୍କୁ ସେମାନଙ୍କ ନିଜ ଦାୟିତ୍ୱରେ ଛାଡ଼ି ଦେବା, ସେମାନଙ୍କ ଉପରେ ଯେତେ ଅତ୍ୟାଚାର ହେଉ ପଛେ, ପାଟିକୁ ସିବାନି—ଇଏ ଗୋଟିଏ ବାଟ । ଅନ୍ୟ ବାଟ ହେଉଛି—ଏପରି ଉପଦ୍ରବ ପାଇଁ ପ୍ରସ୍ତୁତ ହେବା । ରାଜ୍ୟ ପଶୁବଳର ଉତ୍କୃଷ୍ଟ ରୂପ । ଧର୍ମବଳ ଥିବା ସାଧୁ ରାଜ୍ୟରେ ନାହାନ୍ତି । ତର୍କବଳ ଥିବା ବିଦ୍ୱାନ ନାହାନ୍ତି । ସିପାହୀ ଅଛନ୍ତି—ଯେଉଁମାନେ ଠେଙ୍ଗା ସାହାଯ୍ୟରେ ନିଜର ସ୍ୱାର୍ଥ ସିଦ୍ଧି ଜାଣନ୍ତି ।

ମୁଁ ତ ଆନ୍ଦୋଳନ କରୁ ନ ଥିଲି । କାହାରିକୁ ଉତ୍ତେଜିତ କରୁ ନ ଥିଲି । ଯେଉଁମାନଙ୍କର ପ୍ରାଣରକ୍ଷା ପାଇଁ ନିଜ ଜୀବନକୁ ପାଣି ଛଡ଼ାଇଥିଲି, ସେହିମାନେ ମୋ ପ୍ରତି ଏହି ବ୍ୟବହାର କରୁଛନ୍ତି । ସେମାନଙ୍କର ଇଚ୍ଛା—ସର୍ବଦା ଆଖିବୁଜି ରହନ୍ତୁ । ଆଗ, ପଛ, ବାମ, ଡାହାଣକୁ ଦେଖିବା ଅଧିକାର ସେମାନଙ୍କର ନ ରହୁ । ସେବା କରିବା ଯଦି ପାପ, ତେବେ ଏ ପାପ ତ ମୁଁ ବଞ୍ଚିଥିବା ଯାଏଁ କରିବି । ଜେଲ୍ ପାଇଁ ଚିନ୍ତା କ'ଣ ! ସେବା କରିବା ପାଇଁ ସବୁଠାରେ ସୁଯୋଗ ଅଛି । ଜେଲରେ ତ ବେଶି ଅଛି । ବାବାଙ୍କୁ ଦୁଃଖ ହେବ, ମା କାନ୍ଦିବ । ସେଥିପାଇଁ ମୁଁ ନିରୁପାୟ । ବାହାରେ ମୁଖବନ୍ଦ କରି, ହାତଗୋଡ଼ ବାନ୍ଧି ହୋଇ ରହିଗଲେ—ଜେଲ୍ ଓ ବାହାର ଭିତରେ ତଫାତ୍ କ'ଣ ? ସେ ମଧ୍ୟ ଜେଲ୍ । କେବଳ ତା'ର ପରିସର ଅଧିକ । ମୁଁ କୌଣସି ମତେ ଶପଥ କରି ପାରିବି ନାହିଁ ।

ଏପରି ବଡ଼ୁଦ୍ମେଗ୍ନ ଥିବା ସମୟରେ ହଠାତ୍ ମୁନ୍ସୀ ବଜ୍ରଧର କୋଠରି ଭିତରେ ପ୍ରବେଶ କଲେ । ଦେହରେ ସେଇ ତହସିଲଦାରଙ୍କ ଅମଳର ପୁରୁଣା ପାଞ୍ଜାବି ଓ କୋଟ୍ । ସେ ଚନ୍ଦ୍ରଧର ପାଖକୁ ଯାଇ କହିଲେ—କ'ଣ କରୁଛୁ ପୁଅ ? ଏଠି ତ ଘୋର ଅନ୍ଧାର । ଚାଲ୍, ବାହାରେ ଘୋଡ଼ାଗାଡ଼ି ଠିଆ ହୋଇଛି, ବସ୍ । ଏଠୁ ସିଧା ସାହେବ ବଙ୍ଗଳାକୁ ଯିବା । ଯାହା ସେ କହିବେ, ଲେଖିବେ । କୋଉ ବଡ଼ କଥାଟେ ଯେ ! କାଲିଠାରୁ ଦୌଡ଼ିବାରେ ଲଗିଛି । ଆଜ ଦୁପହରକୁ ଯାଇ ଶୁଣିଲି । ଏଣୁ ତେଣୁ ବହୁତ କହିଲି—ହେଲେ ମୁଁ ଗୁଡ଼ୁଚି କୋଉଠି ! ମେମ୍ ସାହେବ ପାଖରେ ଯାଇ କାନ୍ଦିଲି । ଏ ବିଦ୍ୟାରେ ମୁଁ ଓସ୍ତାଦ୍ । ଫିରିଙ୍ଗୀ କାଇଦା ଏବଂ ତହସିଲଦାରୀ ସବୁ କିଛି ଶିଖେଇ ଦେଇଛି । ଇଂରେଜଙ୍କୁ ତ ତୁ ଜାଣିଛୁ । ମେମ୍ମାନଙ୍କ ଗୋଲାମ । ମେମ୍ ସାହେବ ଯାଇ ଧଡ଼କେଇଲେ—କାହିଁକି ତହସିଲଦାର ସାହେବଙ୍କୁ ହଇରାଣ କରୁଛ ! ଏବେ ତା' ପୁଅକୁ ଛାଡ଼ିଦିଅ ନହେଲେ ଘରୁ ବାହାରି ଯାଅ । ମେମ୍ ସାହେବ ପାଟି ଶୁଣି ସାହେବ ବାଟକୁ ଆସିଲା । କହିଲା—ଓ୍ୱେଲ ତହସିଲଦାର ସାହେବ, ଆମେ ତୁମକୁ ବହୁତ ସମ୍ମାନ ଦେଉଛୁ । ଆପଣଙ୍କୁ ଆମେ ନିରାଶ କରିବା ଚାହୁଁନା । ଲେକିନ୍, ଯେ ଯାଏଁ ତୁମର ବେଟା ଗୋଲମାଲ୍ କରିବନି ବୋଲି ସ୍ୱୀକାର କରିବନି, ସେ ପର୍ଯ୍ୟନ୍ତ ଆମେ ତାକୁ ଛାଡ଼ି ପାରିବାନି । ଆମେ ଏବେ ଜେଲରକୁ ପଚାରୁଚି—ତାକୁ ପଚାର—ରାଜି ତ ! ମୁଁ କହିଲି—ହଜୁର ମୁଁ ନିଜେ ଯାଉଚି, ତାକୁ ଆଣି ଆପଣଙ୍କ ପାଖରେ ହାଜର କରେଇବି । ତୁ ଯେବେ ସେଠାକୁ ଯିବାକୁ ଚାହୁଁନାହୁଁ, ଏଇଠି ଗୋଟେ ହଲପ୍‌ନାମା ଲେଖିଦେ । ଡେରି କରି ଲଭ କ'ଣ ? ବୋଉ ତୋର କାନ୍ଦି କାନ୍ଦି ଥକିଗଲାଣି ।

ମୁଣ୍ଡ ତଳକୁ ପୋତି ଚନ୍ଦ୍ରଧର କହିଲେ—ଏବେ ତ ମୁଁ କିଛି ସ୍ଥିର କରିନି । ଭାବିକରି କହିବି । ଆପଣ ବୃଥାରେ ହଇରାଣ ହେଲେ ।

ବଜ୍ରଧର—କିମିତି କଥା କହୁଛୁ ମ ? ଏଠି ମୋ ମୁଣ୍ଡ ତଳକୁ ହୋଇ ଯାଉଛି । ଘରୁ ବାହାରିବା ବି ମୁସ୍କିଲ ହୋଇ ପଡ଼ୁଛି । ଆଉ ତୁ କହୁଛୁ କ'ଣ ନା—ଭାବିକରି କହିବି । ଏଥିରେ ଭାବିବାର କ'ଣ ଅଛି ? ଏଇ ତହସିଲଦାରୀର ସମ୍ମାନ ତ ରଖିବାକୁ ହେବ । ଇଲାକାକୁ ଆସୁଥିବା ହାକିମ ହୁକୁମା ମୋତେ ଇମିତି ପ୍ରଶଂସା କରୁଥିଲେ ଯେ, ସେ ସବୁ ପ୍ରଶଂସା-ପତ୍ର କମ୍ ସାହେବ ପଢ଼ି ଆଁ କରି ରହିଗଲେ । ସେଇ ଇଜ୍ଜତକୁ ତ ରକ୍ଷା କରିବାକୁ ହେବ । ଚାଲ, ହଲପ୍‌ନାମା ଲେଖିଦେ । ଘରେ କାଲଠୁ ଚୁଲି ଜଳୁନି ।

ଚନ୍ଦ୍ରଧର—ମୋର ଆତ୍ମା ନିଜ ଗୋଡ଼ରେ ନିଜେ ବେଡ଼ି ଦେବାକୁ ରାଜି ହେଉ ନାହିଁ ।

ବଜ୍ରଧର—ସୁଯୋଗ ଦେଖି ସବୁ କିଛି କରାଯାଏ, ବାପ । ଦୁନିଆରେ କେହି କାହାର ନୁହଁ । ଏଇ ରାଜା ସାହେବ, ପ୍ରଥମେ ତୋତେ କେଡ଼େ ଭଲପାଉଥିଲେ । ଏବେ ମୁଣ୍ଡ ଉପରେ ପଡ଼ିବାରୁ ସବୁ ଦୋଷ ତୋର ଆଡ଼କୁ ଢାଳି ଦେଲେ । ଦେଓ୍ୱାନ ସାହେବର ପୁଅ ଗୁରୁସେବକ । ଜାତି ପଛରେ ଦଉଡ଼ୁଥିଲା । ଆମ ପ୍ରତି ସହାନୁଭୂତି ଦେଖାଉଥିଲା । ଏବେ

ଦେଖ୍, ଡେପୁଟି କଲେକ୍ଟର ପଦ ପାଇଗଲା ପରେ ବିଦ୍ରୋହୀମାନଙ୍କ ବିରୋଧରେ ଦଣ୍ଡ କରୁଛୁ । ସାରା ଦୁନିଆ ନିଜ ନିଜ ମତଲବରେ ଅଛନ୍ତି, ଆଉ ତୁ ଦୁନିଆ ପାଇଁ ନିଜକୁ ବରବାଦ କରୁଛୁ । ଯାଉ ଦୁନିଆ ନର୍କକୁ । ଆମେ ନିଜ କାମ ଦେଖିବା ନା ଦୁନିଆ ଝଗଡ଼ାରେ ପଶିବା ।

ଚକ୍ରଧର—ଯଦି ଅନ୍ୟମାନେ ନିଜ ମତଲବରେ ଅଛନ୍ତି ଏବଂ ସ୍ୱାର୍ଥ ପାଇଁ ସିଦ୍ଧାନ୍ତକୁ ଭୁଲି ଯାଉଛନ୍ତି—ଥାଆନ୍ତୁ, ଭୁଲନ୍ତୁ । ମୁଁ ସେମାନଙ୍କୁ ଅନୁକରଣ କରିପାରିବି ନାହିଁ । ସେଭଳି ଲୋକଙ୍କୁ ମୁଁ ଆଦର୍ଶ ରୂପେ ଗ୍ରହଣ କରିପାରିବି ନାହିଁ । ମୋ ଆଦର୍ଶ ସେମାନଙ୍କଠାରୁ ବହୁତ ଉଚ୍ଚରେ ।

ବଜ୍ରଧର—ତୋର ଏ ଜିଦ୍ ପାଇଁ ମୋର କ୍ରୋଧ ଜାତ ହେଉଛି । ମୁଁ ମଧ୍ୟ ମୋ ଯୁବକ ସମୟରେ ଏମିତି ହବାକୁ ଯାଉଥିଲି । ଯେଉଁମାନେ ନିଜକୁ ଜାତି ସେବକ ବୋଲି କହନ୍ତି, ସେମାନଙ୍କୁ ମଧ୍ୟ ଜାଣିଛି । ବାସ୍, ଆଉ ମୋ ମୁହଁ ଖୋଲନା । ଦୁନିଆକୁ ଲୁଟି କରିବା ପାଇଁ ସେ ସବୁ ସୁଆଙ୍ଗ । ହଁ, ତୋର ଭଲ ଯଦି ଗୃହଜଣ ଓଲୁ ନିଜକୁ ନଷ୍ଟ କରିଥାଆନ୍ତି । ଯିଏ ନିଜ ଘର ଲୋକଙ୍କ ସେବା କରି ପାରେନା, ସେ ଜାତିସେବା କଦାପି କରି ପାରିବ ନାହିଁ । ଘର ସେବା ଜାତି ସେବାର ପ୍ରଥମ ସୋପାନ । ତାକୁ ଛାଡ଼ି ତୁ ଉପରକୁ ଉଠି ପାରିବୁ ନାହିଁ ।

ତଥାପି ଚକ୍ରଧର ପ୍ରତିଜ୍ଞାପତ୍ରରେ ଦସ୍ତଖତ କରିବାକୁ ରାଜି ନ ହେବାରୁ ମୁନ୍ସୀଜୀ ନିରାଶ ହୋଇ କହିଲେ—ଆଚ୍ଛା, ହେଉ । ଆଉ ମୁଁ କିଛି କହିବାକୁ ଯାଉନି । ଯାହା ତୋ'ର ଖୁସି କର । ପିଲାଦିନରୁ ତୁ ଜିଦ୍‌ଖୋର—ଏହା ମୁଁ ଜାଣିଛି । ସେଇଥିଯୋଗୁଁ ମୁଁ ଆସୁ ନ ଥିଲି । କିନ୍ତୁ ତୋର ବୋଉ ମୋତେ ପେଲି ପେଲି ପଠେଇଲା । ଯାଇ କହିଦେବି—ଆସିବନି । ଯେତେ କାନ୍ଦିବୁ କାନ୍ଦ୍ ।

କଠୋର ହୃଦୟରେ ମଧ୍ୟ ମାତୃସ୍ନେହର କୋମଳ ସ୍ମୃତି ସଞ୍ଚିତ ଥାଏ । ଚକ୍ରଧର କାତର ହୋଇ କହିଲେ—ଆପଣ ବୋଉକୁ ବୁଝେଇ ଦେବେ । କହିଦେବେ—ମୋର କିଛି ଅସୁବିଧା ହେଉ ନାହିଁ । ମୋ ପାଇଁ ଦୁଃଖ କରିବ ନାହିଁ ।

ବଜ୍ରଧର ଏତେ ବର୍ଷ ଧରି ତହସିଲଦାରୀ କ'ଣ ମିଛରେ କରିଥିଲେ ! ଲକ୍ଷ୍ୟ ଠିକ୍ ଜାଗାରେ ବାଜିଛି ବୋଲି ଧରିନେଲେ । ବେପରୁଆ ହୋଇ କହିଲେ—ମୋର କ'ଣ ଗରଜ ପଡ଼ିଛି ମିଛ କହିବାକୁ ! କିଛି ଉଦ୍ଦେଶ୍ୟ ନ ଥାଇ ମିଛ କହିବା ମୋର ନୀତି ନୁହେଁ । ଯାହା ଆଖିରେ ଦେଖୁଛି, ତାହାହିଁ କହିବି । କାନ୍ଦିବ, କାନ୍ଦୁ । କାନ୍ଦିବା ତ ତା' ଭାଗ୍ୟରେ ଲେଖା ଅଛି । ଯେତେବେଳୁ ତୁ ଆସିଲୁଣି, ପାଣି ଟୋପାଏ ପାଟିରେ ଦେଇନି । ଏଭଳି ଆଉ ଦି ଚାରିଦିନ ରହିଲେ ପ୍ରାଣ ଚାଲିଯିବ । ହେଇ—ଓ୍ୱାର୍ଡର ଡାକିବାକୁ ଆସିଲାଣି । ସମୟ ପୂରି ହୋଇଗଲା ।

ଚକ୍ରଧର ନମ୍ର ଭାବରେ ପଚାରିଲେ—ବୋଉକୁ ଟିକିଏ ଏଠାକୁ ଆଣିବେ ?

ବଜ୍ରଧର—ଯାହା ବି ଗୃହବନ୍ଦୀ ବଞ୍ଚିବ, ଏଠିକି ଆଣିଲେ ତା' ମଧ୍ୟ ହେବନି । କ'ଣ ଏଣୁ ତେଣୁ ଗୁଡ଼େ କହୁଚୁ ମ ! ଇକରାରନାମା ଲେଖିବୁ ତ ମୋ ସହିତ ଅଫିସ୍‌କୁ ଆ ।

ଚନ୍ଦ୍ରଧର କରୁଣା-ବିହ୍ୱଳ ହୋଇ ପଡ଼ିଲେ । ବଜ୍ରଧରଙ୍କ ପଛେ ନୀରବରେ ଅଫିସ ଆଡ଼କୁ ଚାଲିଲେ । ମୁନ୍‌ସୀଜୀ ଖୁସି ହୋଇଗଲେ । ଚନ୍ଦ୍ରଧରଙ୍କୁ କୁଣ୍ଢାଇ ପକାଇ କହିଲେ—ଦୀର୍ଘାୟୁ ହୁଅ ବାପା, ତୁ ମୋ କଥା ଶୁଣିଲୁ । ଏହାଠାରୁ ବଳି ଖୁସିର କଥା ଆଉ କିଛି ନାହିଁ ।

ଉଭୟେ ଦପ୍ତରକୁ ଆସିଯିବା ପରେ ଜେଲର କହିଲେ—କ'ଣ ତହସିଲଦାରଜୀ, ଆପଣ ହାରିଲେ ନା ! ମୁଁ କହୁଥିଲି ନା ମୋଟେ ଶୁଣିବେନି ବୋଲି । ଆଜି କାଲିର ପିଲେ ଅନ୍ୟ କାହା ଶୁଣିବା ଅବସ୍ଥାରେ ଅଛନ୍ତି !

ବଜ୍ରଧର—ଦୁଆତ କଲମ ଆଣିଲେ ।

ଜେଲର—(ଚନ୍ଦ୍ରଧରଙ୍କୁ) ଆପଣ ଇକରାର ନାମା ଲେଖିଦେବେ ! ଏଇଥି ପାଇଁ ଏତେ ଆଗ୍ରହ !

ଚନ୍ଦ୍ରଧର ମନର ଅସ୍ଥିରତା ହେତୁ ଲଜ୍ଜିତ ହେଲେ । ଜେଲରଙ୍କର କଟାକ୍ଷ ତାଙ୍କ ଆଖି ଖୋଲିଦେଲା । ସେ ତୁରନ୍ତ ଉତ୍ତର ଦେଲେ—ମୁଁ ସେ ପ୍ରତିଜ୍ଞାପତ୍ର ଦେଖିବାକୁ ଚାହେଁ ।

ତହସିଲଦାର ସାହେବ ଜେଲରଙ୍କ ଟେବୁଲ୍‌ରୁ ସେହି କାଗଜ ଉଠାଇ ଆଣି ଚନ୍ଦ୍ରଧରଙ୍କୁ ଦେଖାଇ କହିଲେ—ପୁଅ, ଏଥିରେ କିଛି ନାହିଁ, ମୁଁ ଯାହା କହୁଥିଲି ସେଇ କଥା କାନୁନି ଢଙ୍ଗରେ ଲେଖାଯାଇଛି ।

ଚନ୍ଦ୍ରଧର ସେ କାଗଜକୁ ତୀକ୍ଷ୍ଣ ଦୃଷ୍ଟିରେ ଦେଖି କହିଲେ—ଏଥିରେ ତ ମୋ ପାଇଁ ସ୍ଥାନ ନାହିଁ । ଘରେ ବନ୍ଦ ହୋଇ ରହିବି ! ନିଜ ହାତରେ ମୁଁ ନିଜେ ବେଡ଼ି ପିନ୍ଧାଇବି ? ଯେବେ ବାନ୍ଧି ହୋଇ ରହିବା କଥା, ତେବେ ଜେଲ୍ ଖରାପ କ'ଣ ? ମୁଁ ବିଚାର ପରେ ଅଦାଲତରୁ ମୁକ୍ତ ହେବି ନଚେତ୍ ଜେଲରେ ସଜା କାଟି ମୁକ୍ତ ହେବି ସିନା ଏପରି ମୁକ୍ତ ହେବାକୁ ଚାହେଁନା ।

ଏହା କହି ଚନ୍ଦ୍ରଧର ନିଜ କୋଠରିକୁ ଚାଲିଆସି ଏକାନ୍ତରେ ଖୁବ୍ କାନ୍ଦିଲେ ।

ସପ୍ତାହେ ପରେ ମିଷ୍ଟର ଜିମ୍‌ଙ୍କ ଇଜଲାସ୍‌ରେ ମୋକଦ୍ଦମା ଚାଲିଲା । ତହସିଲଦାର ସାହେବ କୌଣସି ଓକିଲ ଠିଆ କରେଇଲେ ନାହିଁ, କି ଅଦାଲତକୁ ଆସିଲେ ନାହିଁ । ଏଣେ ସାକ୍ଷୀ ପ୍ରମାଣ ନିଆ ହେଉଥିଲା, ତେଣେ ସେ ସାରା ଦିନ ଜିମ୍‌ଙ୍କ ବଙ୍ଗଳାରେ ବସି ରହୁଥିଲେ । ସାହେବ ବିଗୁଡ଼ୁଥିଲେ, ଧମକଉଥିଲେ କିନ୍ତୁ ସେ ଉଠିବାର ନାଁ ଧରୁ ନ ଥିଲେ । ଜିମ୍ ବଙ୍ଗଳାରୁ ବାହାରିଲା ବେଳେ ତାଙ୍କୁ ଦୁଆରେ ଠିଆ ହୋଇଥିବାର ଦେଖନ୍ତି । କଚେରୀରୁ ଫେରି ବଙ୍ଗଳାକୁ ଆସିଲେ ବି ସେ ସେମିତି ଦୁଆରେ ଠିଆ ହୋଇଥିବାର ଦେଖନ୍ତି । ଖୁବ୍ ରାଗିଲେ । ଦି ଚାରି ଧକ୍କା ବି ଦେଲେ । କିନ୍ତୁ ମୁନ୍‌ସୀଜୀ ତଳକୁ ମୁହଁ ପୋତି ସେମିତି ଠିଆ

ହୋଇଥିବାର ଦେଖି ଦୟା ହେଲା । ସେ ସାହେବଙ୍କର ଦୁଇ ପିଲାଙ୍କୁ ଖୁଆଇ ଦିଅନ୍ତି, କାନ୍ଧରେ ବସାଇ ବୁଲନ୍ତି । ମିଠେଇ ଆଣି ଦିଅନ୍ତି ଏବଂ ମେମ୍ ସାହେବଙ୍କୁ ହସ କଥାମାନ କହନ୍ତି ।

ଦିନେ ସାହେବ ପଚାରିଲେ—ତୁମେ ମୋ ଠାରୁ କ'ଣ ଚାହୁଁଛ !

ବଜ୍ରଧର ନିଜର ପଗଡ଼ି ବାହାର କରି ସାହେବଙ୍କ ଗୋଡ଼ ତଳେ ଥୋଇ ଦେଲେ ଏବଂ ହାତ ଯୋଡ଼ି କହିଲେ—ହଜୁର ତ ସବୁ ଜାଣନ୍ତି । ମୁଁ କ'ଣ କହିବି ! ସରକାରଙ୍କ ସେବାରେ ସାରା ଜୀବନ କଟିଗଲା । ମୋର ଦେବତା, ଈଶ୍ୱର—ସବୁ କିଛି ଆପଣ । ଆପଣଙ୍କ ବ୍ୟତୀତ ମୁଁ କାହା ଦୁଆରକୁ ଯିବି ! କାହା ପାଖେ କାନ୍ଦିବି ! ମରିଯିବି ହଜୁର, ଏତେ ବଡ଼ ଆଘାତ ସହି ପାରିବି ନାହିଁ ।

ଜିମ୍—ଆମେ ଛାଡ଼ି ପାରିବା ନାହିଁ । କୌଣସି ପ୍ରକାରେ ନୁହେଁ ।

ବଜ୍ରଧର—ହଜୁର ଯାହା ଇଚ୍ଛା ତା' କରନ୍ତୁ । ହଜୁର ମା ବାପ୍ ।

ଜିମ୍—ତୁମେ ପୁଅକୁ ବୁଝେଇ ଦଉନ କାହିଁକି !

ବଜ୍ରଧର—ହଜୁର, ମୂର୍ଖଟାଏ । ଭଗବାନ ଶତ୍ରୁ ଘରେ ମଧ୍ୟ ଏପରି ପିଲା ଜନ୍ମ ନ ଦିଅନ୍ତୁ । ଟୋକାଟାର ମୁହଁ ଚାହିଁବାକୁ ଇଚ୍ଛା ହଉ ନାହିଁ । କିନ୍ତୁ କ'ଣ କହିବି ହଜୁର୍ । ବାପ ମାଅଙ୍କ ମନ କଥା ତ ହଜୁର ଜାଣନ୍ତି ।

ଅଦାଲତରେ ପ୍ରତିଦିନ ଖୁବ୍ ଭିଡ଼ ହୁଏ । ଯେଉଁମାନେ ହରତାଳ କରିଥିଲେ— ସେମାନେ ସମସ୍ତେ ଚକ୍ରଧରଙ୍କୁ ଦେଖିବାକୁ ଆସୁଥିଲେ । ଚକ୍ରଧରଙ୍କୁ ଛାଡ଼ିବା ପାଇଁ ଯଦି ଶହେ ଲୋକଙ୍କୁ ଜାମିନ ମାଗନ୍ତେ, ଏମାନେ ସମସ୍ତେ ଆଗଭର ହୋଇ ବାହାରନ୍ତେ । ଆମର ପାପର ପ୍ରାୟଶ୍ଚିତ୍ତ ସେ କରୁଛନ୍ତି ବୋଲି ସେମାନେ ଜାଣୁଥିଲେ । ସହରରୁ ମଧ୍ୟ ହଜାର ହଜାର ଲୋକ ଜମା ହେଉଥିଲେ । କେବେ କେବେ ରାଜା ବିଶାଳ ସିଂହ ମଧ୍ୟ ଦର୍ଶକ ଆସି ଗ୍ୟାଲେରୀରେ ବସନ୍ତି । କେହି ଆସନ୍ତୁ କି ନ ଆସନ୍ତୁ—ଡେରିରେ ଆସନ୍ତୁ କି ସକାଳ ଆସନ୍ତୁ, କିନ୍ତୁ ମନୋରମା ଠିକ୍ ଦଶଟାରୁ କଚେରୀକୁ ଆସି ଶେଷ ଯାଏଁ ମୂର୍ତ୍ତିବତ୍ ବସି ରହୁଥିଲେ । ତା'ର ମୁଖମଣ୍ଡଳକୁ ଏବେ ଦୃଢ଼ ସଙ୍କଳ୍ପ, ବିଶାଳ କରୁଣା, ଅଲୌକିକ ଧୈର୍ଯ୍ୟ ଏବଂ ଗମ୍ଭୀର ଚିନ୍ତାର ଚିହ୍ନ ଅଳଙ୍କୃତ କରିଥିଲା । ସେ ଏବେ ସେହି ଆମୋଦପ୍ରିୟ ବାଳିକା ନ ଥିଲା । ଚକ୍ରଧରକୁ ସେ ମନୁଷ୍ୟ ନୁହେଁ, ଦେବତା ବୋଲି ମନେ କରୁଥିଲା ।

ସନ୍ଧ୍ୟା ସମୟ । ପୂରା ୧୫ ଦିନ ମକଦ୍ଦମା ଚାଲିଲା ପରେ ଆଜି ମି· ଜିମ୍ ଚକ୍ରଧରଙ୍କୁ ଦୁଇ ବର୍ଷ ଜେଲ୍‌ଦଣ୍ଡ ରାୟ ଶୁଣେଇଲେ । ମୋକଦ୍ଦମାର ଏହି ଧାରା ଅନୁସାରେ ଏହି ସଜା ସବୁଠାରୁ କମ୍ ।

ଚକ୍ରଧର ହସି ହସି ବନ୍ଧୁମାନଙ୍କଠାରୁ ବିଦାୟ ନେଉଥିଲେ । ସମସ୍ତଙ୍କ ଆଖିରେ ଲୁହ। ମଜୁରିଆମାନେ ଇଜଲାସ୍ ଦୁଆରେ ଠିଆ ହୋଇ ଜୟଧ୍ୱନି କରୁଥିଲେ । କେତେଜଣ

ସ୍ତ୍ରୀଲୋକ ଠିଆ ହୋଇ କାନ୍ଦୁଥିଲେ । ସହସା ମନୋରମା ଆସି ଚନ୍ଦ୍ରଧରଙ୍କ ସମ୍ମୁଖରେ ଠିଆ ହୋଇଗଲା । ତା' ହାତରେ ଏକ ଫୁଲହାର । ଚନ୍ଦ୍ରଧରଙ୍କ ବେକରେ ଲମ୍ବାଇ ଦେଇ କହିଲା—ଆପଣ ଆମ୍ଭମାନଙ୍କୁ ସାହସ, ଆତ୍ମବଳ ଏବଂ କର୍ତ୍ତବ୍ୟର ରାସ୍ତା ଦେଖେଇ ଦେଲେ । ଯାଆନ୍ତୁ, ଆମର ଶୁଭକାମନା ଗ୍ରହଣ କରନ୍ତୁ ।

ସମ୍ମୁଖରେ ରାଜା ବିଶାଳସିଂହ ଦେଓ୍ୱାନ ସାହେବ, ଗୁରୁସେବକ ଏବଂ ମୁନ୍‌ସୀ ବଜ୍ରଧର ଠିଆ ହୋଇଥିଲେ । ବାରଣ୍ଡାରେ ଓ ତଳେ ହଜାର ହଜାର ଲୋକ ।

ଚାହୁଁ ଚାହୁଁ ସିପାହୀମାନେ ଚନ୍ଦ୍ରଧରଙ୍କୁ ନେଇ ଜେଲ୍ ଗାଡ଼ି ଭିତରେ ବସେଇ ଦେଲେ । ଗାଡ଼ି ଚାଲିଗଲା । ଲୋକ ଗହଳି ଭାଙ୍ଗିଗଲା । ମି· କ୍ଲିମ୍ ମଧ୍ୟ ଯିବାକୁ ବାହାରିଲେ । କେବଳ ତହସିଲଦାର ସାହେବ ସେହି କୋଠରୀରେ ଥିଲେ । ଅଶ୍ରୁପୂର୍ଣ୍ଣ ଚକ୍ଷୁରେ ସେ ମିː କ୍ଲିମ୍‌ଙ୍କ ପାଖକୁ ଆସି କହିଲେ—ମିː କ୍ଲିମ୍, ମୁଁ ତୁମକୁ ମଣିଷ ବୋଲି ଭାବିଥିଲି, କିନ୍ତୁ ତୁମେ ପଥର । ମୁଁ ତୁମକୁ ଯେତେ ଖୋସାମତ କରିଛି, ଯଦି ସେତିକି ଈଶ୍ୱରଙ୍କୁ କରିଥା'ନ୍ତି ତେବେ ମୋକ୍ଷ ପାଇ ଯାଇଥା'ନ୍ତି । ତୁମର ଏ ଅତ୍ୟାଚାର ଏଠିକାର ଲୋକଙ୍କ ଆଖି ନ ଫିଟିବା ଯାଏ ହିଁ ଚାଲିବ । ଏ ମଜା ତୁମେ ବେଶିଦିନ ଆଉ କରି ପାରିବ ନାହିଁ ।

ଏହା କହି ସେ ବାହାରକୁ ଚାଲିଗଲେ । କ୍ଲିମ୍ ତାଙ୍କୁ କ୍ରୋଧପୂର୍ଣ୍ଣ ନେତ୍ରରେ ଚାହିଁଲେ । କିଛି କହିଲେ ନାହିଁ ।

## ( ୧୭ )

ରାଜା ବିଶାଳ ସିଂହଙ୍କର ଯୌବନ ସମୟ ଚାଲି ଯାଇଥିଲା । କିନ୍ତୁ ହୃଦୟ ତାଙ୍କର ଏ ଯାଏଁ ପ୍ରେମଲାଭ କରି ନ ଥିଲା । ପ୍ରେମକୁ ପିଆଲାରେ ଭରି ମନତୃପ୍ତ କରି ପିଇଗଲା ଭଳି ବସ୍ତୁ ନୁହେଁ । ହୃଦୟରେ ପ୍ରେମ-ତୃଷ୍ଣା ସର୍ବଦା ବିଦ୍ୟମାନ ରହେ । ବିଶାଳ ସିଂହଙ୍କର ତିନି ରାଣୀଙ୍କର ଏ ନୂତନ ପରିସ୍ଥିତିରେ ନିଜକୁ କିପରି ଖାପ ଖୁଆଇ ଚଳିବାକୁ ହେବ—ସେ ଜ୍ଞାନ ନ ଥିଲା । କେବଳ ଅଳଙ୍କାର ପାଇଁ ମରି ଯାଉଥିଲେ । ରାଜା ସାହେବ କି ଅବସ୍ଥାର ସମ୍ମୁଖୀନ ହେଉଛନ୍ତି । ରାଜ୍ୟର ଅବସ୍ଥା କ'ଣ—ସେ ସମ୍ପର୍କୀୟ ଚିନ୍ତା ସେମାନଙ୍କର ନ ଥିଲା । ରାଣୀ ଦେବପ୍ରିୟାଙ୍କର ବହୁ ମୂଲ୍ୟ ଆଭୂଷଣ ପାଇଁ ତିନିଙ୍କ ଭିତରେ ଭୀଷଣ ଝଗଡ଼ା । ସେମାନଙ୍କର ଏ ବ୍ୟବହାରରେ ରାଜାସାହେବଙ୍କର ମନ ସେମାନଙ୍କ ଆଡ଼ୁ କ୍ରମଶଃ କମି କମି ଯାଉଥିଲା । କେହି ହେଲେ ରାଜା ସାହେବଙ୍କ ଜୀବନକୁ ସୁଖମୟ କରିପାରୁ ନ ଥିଲେ । ତାଙ୍କର ପ୍ରେମ-ତୃଷ୍ଣାକୁ ତୃପ୍ତ କରି ପାରୁ ନ ଥିଲେ । ନିତାନ୍ତ ଅପରିଷ୍କାର ଜଳପୂର୍ଣ୍ଣ ପୁଷ୍କରିଣୀ ନିକଟରେ

ତୃଷିତ ପଥିକ ଠିଅ ହୋଇ, ତୃଷାରେ ଛଟପଟ ହେଲାଭଳି ରାଜାଙ୍କର ଅବସ୍ଥା ଥିଲା । ଏପରି ବ୍ୟାକୁଳ ଅବସ୍ଥାରେ ମନୋରମା ମିଠା ଓ ନିର୍ମଳ ଜଳ ପାତ୍ର ଧରି ତାଙ୍କ ସମ୍ମୁଖରେ ଯଦି ଦେଖା ଦିଏ—ନା, ଦେଖାଯିବା କଥା ନୁହେଁ, ଜଳ ପାନ କରିବାକୁ ସେ ଯଦି ନିମନ୍ତ୍ରଣ କରେ, ତା' ଆଡ଼କୁ ଦୌଡ଼ିଯିବା କିଛି ଆଶ୍ଚର୍ଯ୍ୟ କଥା ନୁହେଁ ।

ରାଜା ସାହେବଙ୍କ ହୃଦୟରେ ନୂଆ ନୂଆ ପ୍ରେମ-କଳ୍ପନାମାନ ଅଙ୍କୁରିତ ହେବାକୁ ଲାଗିଲା । ଯେଉଁ ବାଳିକା ଏକ ସାଧାରଣ ବ୍ୟକ୍ତି ପ୍ରତି ଏତେ ପ୍ରେମ ଓ ଭକ୍ତି ରଖିପାରେ ସେ ନିଜ ପତିକୁ କେତେ ପ୍ରେମ କରିବ—ଏହି କଳ୍ପନାରେ ସେ ପ୍ରଫୁଲ୍ଲିତ ହୋଇ ଉଠୁଥିଲେ । ଜୀବନ ସ୍ୱର୍ଗତୁଲ୍ୟ ହୋଇଯିବ ।

ଦେଓ୍ୱାନ ସାହେବଙ୍କ ଉପରେ ସେ ସବୁବେଳେ ବିରକ୍ତ ହେଉଥିଲେ । କିନ୍ତୁ ଏବେ ବିଶେଷ ଆଦର, ସତ୍କାର କରିବାକୁ ଲାଗିଲେ । ତାଙ୍କ ଇଚ୍ଛା ବିରୁଦ୍ଧରେ କୌଣସି କାମ କଲେ ନାହିଁ । ଦୁଇ ତିନି ଥର ତାଙ୍କ ଘରକୁ ବୁଲି ମଧ୍ୟ ଗଲେ । ପରସ୍ପର ମଧ୍ୟରେ ଘନିଷ୍ଠତା ବଢ଼ିଲା । ମନୋରମାର ବିବାହ ସମ୍ପର୍କରେ କୌଣସି ପ୍ରସ୍ତାବ ଏ ଯାଏଁ ଆସି ନ ଥିଲା । ଭୂମି ଖାଲି ପଡ଼ିଥିଲା । ଏ ମଧ୍ୟରେ ମନୋରମା ମଧ୍ୟ ରାଜା ସାହେବ ବୁଲି ଆସିଲେ ତାଙ୍କ ସହିତ ହସି ହସି ବେଧଡ଼କ କଥାବାର୍ତ୍ତା କରେ । ତାଙ୍କ ପାଖରେ ଆସି ବସେ, ତାଙ୍କ କଥା ମନ ଦେଇ ଶୁଣେ । ନୂଆ ନୂଆ ଚିଜ ଆଣି ଦେଖାଏ । ତା'ର ଏ ଢଙ୍ଗ ଦେଖି ରାଜା ସାହେବ ମନୋରମାର ମନୋଭାବ ଅନୁମାନ କରି ନେଉଥିଲେ । ବାକି ଦେଓ୍ୱାନ ସାହେବ । ସେ ତ ସାଂସାରିକ ଜୀବ । ସ୍ୱାର୍ଥସିଦ୍ଧି ଘଟିଲେ ହେଲା । ଆଶଙ୍କା କେବଳ ଲବଙ୍ଗ ଅଡ଼୍ୟୁ । ସେ ରାଜା ସାହେବଙ୍କ ଯିବା ଆସିବାକୁ ପସନ୍ଦ କରୁ ନ ଥିଲେ । ସେ ତାଙ୍କ ମନୋଭାବ ଜାଣି ପାରି ମନୋରମାକୁ ଘର ଭିତରକୁ ଯିବା ପାଇଁ ଠାରନ୍ତି । ତାଙ୍କୁ ଖୁସି କରିବା ପାଇଁ ରାଜା ସାହେବ ତା' ସହିତ ମିଠା ମିଠା କଥାବାର୍ତ୍ତା କଲେ । ମୂଲ୍ୟବାନ ଶାଢ଼ି ପଠେଇଲେ । କିନ୍ତୁ ଲବଙ୍ଗ ସେ ସବୁ ପ୍ରତି ଆଖି ନ ପକାଇ ଫେରାଇଲେ । ରାଜା ସାହେବଙ୍କ ବାଟରେ ଏଇ ଏକମାତ୍ର କଣ୍ଟା । ଶେଷରେ ସେ ମୁନ୍‌ସୀଙ୍କୁ ଧରିଲେ । ଏଇ ଏକମାତ୍ର ପ୍ରାଣୀ—ଯିଏ କଠିନ ସମସ୍ୟାକୁ ସମାଧାନ କରିଦେବେ । ଦିନେ ତାଙ୍କୁ ଏକୋନ୍ତକୁ ଡ଼ାକି କଥାବାର୍ତ୍ତା କଲେ ।

ରାଜା—ଇଲାକାର ଖବର କ'ଣ ? ଫସଲ୍ ଭଲ ହେଉଛି ନା ?

ମୁନ୍‌ସୀ—ହଜୁର୍, ମୋ ଜୀବନରେ ଏମିତି ଫସଲ ମୁଁ କେବେ ଦେଖିନାହିଁ । ଯଦି ପୂର୍ବ ପାଖରେ ଦୁଇ ଶହ କୂଅ ଖୋଳା ହୋଇଯାଆନ୍ତା, କେବେ ଫସଲ ଦଗୁଣା ହୋଇ ଯାଆନ୍ତା । ସେ ପାଖେ ପାଣିର ଅଭାବ ।

ରାଜା—ମୁଁ ତ ସେଇ ଚିନ୍ତାରେ ଅଛି । କୂଅ କ'ଣ ଗୋଟେ କେନାଲ ଖୋଳେଇବା ଭାବୁଛି । ବଡ଼ ବଡ଼ କଥା ତ ମନ ଭାବୁଛି । କିନ୍ତୁ ଆଗରେ ଅନ୍ଧକାର—କାହା ପାଇଁ ଏ

କଙ୍କାଳ ବଢ଼େଇବ ? ଈଶ୍ୱର ଏ ଯାଏଁ ଏକ ସନ୍ତାନ ଦେଲେନ । ଏବେ କ'ଣ ଆଉ ବିବାହ କରିବ !

ମୁନ୍‌ସୀ—ହଜୁର୍, ଏବେ କ'ଣ ବୟସ ବେଶି ହେଇ ଯାଇଚି ! ମୁଁ ତ ଦେଖିଚି—ଅଶି ବର୍ଷ ବୟସରେ ମଧ୍ୟ ଲୋକଙ୍କର ଭାଗ୍ୟ ଖୋଲିଛି ।

ରାଜା—ତଥାପି ମୋତେ ବା କିଏ କନ୍ୟା ଦେବ ?

ମୁନ୍‌ସୀ—ଯଦି ଆପଣଙ୍କଠାରୁ ଟିକିଏ ଇଶାର୍ ପାଇବି—ତେବେ ବୋହୂ ଘରକୁ ଆସିଗଲା ବୋଲି ଭାବନ୍ତୁ । ରାଜାଙ୍କ ସହ ନିଜ କନ୍ୟାର ବିବାହ କିଏ ନ ଚାହେଁ !

ରାଜା—କିନ୍ତୁ ମୋର ବର୍ତ୍ତମାନ ସୁଶିକ୍ଷିତା ଏବଂ ବିଚକ୍ଷଣୀଳା ସ୍ତ୍ରୀ ଦରକାର । ରାଜ୍ୟର ଖବର ବୁଝି ପାରୁଥିବ । ଇଂରେଜ ଚାଲିଚଳନ ସହିତ ପରିଚିତ ଥିବ । ବଡ ବଡ଼ ଅଫିସରମାନେ ଆସୁଛନ୍ତି । ସେମାନଙ୍କର ମେମ୍‌ମାନଙ୍କୁ ଆଦର ସତ୍କାର କରି ପାରୁଥିବ । ବାହାରକୁ ବାହାରିବା ପାଇଁ ସଙ୍କୋଚ ନ ଥିବ । କଥାବାର୍ତ୍ତାରେ ଚତୁର ହୋଇଥିବ । ଏଭଳି ସ୍ତ୍ରୀ ମିଳିବା ସହଜ ନୁହେଁ । ଅବଶ୍ୟ ଏପରି ଏକ କନ୍ୟା ମୋ ଦୃଷ୍ଟିରେ ଅଛି । କିନ୍ତୁ ସେ ବିଷୟ……

ମୁନ୍‌ସୀ—କ'ଣ ଏଇ ସହରରେ ଅଛି ?

ରାଜା—ସହର ନୁହେଁ, ଘରେ ବୋଲି ବୁଝନ୍ତୁ ।

ମୁନ୍‌ସୀ—ଆଚ୍ଛା, ବୁଝିଗଲି । ମୁଁ ଭୁଲିଗଲି । ଏ ସହରରେ ଏପରି ରାଜା ଜମିଦାର କିଏ ବା ଅଛି ! ସେ ତ ଶୁଣି ଆନନ୍ଦ-ବିହ୍ୱଳ ହୋଇଯିବେ । କନ୍ୟାଟି ପ୍ରକୃତରେ ଦେବୀ । ଭଗବାନ ତାକୁ ରାଣୀ ପାଇଁ ଗଢ଼ିଛନ୍ତି ।

ରାଜା—ଆପଣ ଟିକିଏ ଘରବାଲାଙ୍କୁ ମନେଇଲେ । ଆପଣ ତ ଜାଣନ୍ତି—ଦେଓ୍ୱାନ ସାହେବଙ୍କ ଘରେ ମାଲିକ ହେଉଛି ଲବଙ୍ଗ ।

ମୁନ୍‌ସୀ—ସିଏ କ'ଣ କରିବ ?

ରାଜା—ସିଏ ସବୁ କିଛି କରି ପାରିବ । ଦେଓ୍ୱାନ ସାହେବଙ୍କୁ ସେ ମେଣ୍ଢା କରି ରଖିଛି । ଲୋଭ ବା ଖୁସାମତ ତା' ପାଖରେ କାମ କରିବନି ।

ମୁନ୍‌ସୀ—ହଜୁର ତା'ର ଚାବିକାଠି ମୋ ପାଖରେ । ଖୁସାମତ କ'ଣ ! କେତେ ଉପରକୁ ପଳେଇଲେ କ'ଣ ହବ । ଜାଲରେ ତ ଅଛି । ତାକୁ ଧମକେଇ ମାଡ଼ ଭୟ ଦେଖାଇ କାମ ହାସଲ କରାଯାଇ ପାରିବ ।

ପରଦିନ ମୁନ୍‌ସୀଜୀ ଦେଓ୍ୱାନ ସାହେବଙ୍କ ଘରେ ପହଞ୍ଚିଲେ । ଦେଓ୍ୱାନ ସାହେବ ମନୋରମା-ସହ ଗଙ୍ଗାକୁ ସ୍ନାନ ଉଦ୍ଦେଶ୍ୟରେ ଯାଇଥିଲେ । ଲବଙ୍ଗ ଏକାକୀ ବସିଥିଲେ ।

ମୁନ୍‌ସୀଙ୍କ ଦେଖିଲେ, ଏଇ ହେଉଛି ଅସଲ ମଉକା । ପହଞ୍ଚୁ ପହଞ୍ଚୁ ବିବାହ କଥା ଆରମ୍ଭ କରିଦେଲେ ।

ଲବଙ୍ଗ କହିଲେ—ତହସିଲଦାର ସାହେବ, କି କଥା କହୁଚ ମ ! ଆମେ ଅମ ଟୋକୀକୁ ବିକିଦବୁ ! ବିବାହ ସମାନ ବୟସରେ ହୁଏ । ଝିଅକୁ ପଛେ କାଙ୍ଗାଳକୁ ଦେଇଦବ, କିନ୍ତୁ ବୁଢ଼ାକୁ ଦବନି । ଜୀବନସାରା କାନ୍ଦିବ ।

ମୁନ୍‌ସୀ—ତା' ହେଲେ ରାଜା କ'ଣ ବୁଢ଼ା !

ଲବଙ୍ଗ—ଆଉ କ'ଣ ଛନଛନିଆ ଟୋକା !

ମୁନ୍‌ସୀ—ଯଦି ଏ ବିବାହ ନ ହେବ, ତେବେ ବୁଝିନିଅ ଯେ, ଠାକୁର ସାହେବ ଧନ ପାଣ୍ଡିରୁ ଗଲେ । ତୁମେ ମତ ଜାଣ, ରାଜାମାନଙ୍କ ସ୍ୱଭାବ ସମ୍ବନ୍ଧରେ କ'ଣ ଜାଣ ! ରାଜା ଲୋକଙ୍କୁ କୌଣସି କାମ କରିବାକୁ ଇଚ୍ଛା ହେଲା ତ ଗୃହେଁ ରାଜ୍ୟ ଧ୍ୱଂସ ପାଇଯାଉ, ନ କରି ଛାଡ଼ିବେନି । ରାଜାଙ୍କ କଥାକୁ ଟାଳିବା ହସ କଥା ନୁହଁ । ସବୁ ଧାନ ବାଇଶି ପସୁରୀ ନୁହଁ ।

ଲବଙ୍ଗ—ଏତ ଆଶ୍ଚର୍ଯ୍ୟ କଥା—ଝିଅକୁ ଦିଏ ନ ହେଲେ ଗାଁ ଛାଡ଼େ ! ଏମିତି ଧମକ ଦେଇ କ'ଣ ବିଭାଘର ହୁଏ !

ମୁନ୍‌ସୀ—ରାଜା ମହାରାଜାଙ୍କ କାମ ଏଇଭଳି ହୋଇଥାଏ । ଏବେ ତୁମେ ଏ ରାଜା ସାହେବଙ୍କୁ ଜାଣିନ । ସେହି ସେହି ଲୋକଙ୍କୁ ମୀନ ଟିପିଲା ଭଳି ମାରି ପକେଇଲେ । କେହି ପଚାରିବାକୁ ନାହିଁ । ଅଫିସରମାନଙ୍କ ସେହି ଧଳାସୁତୁରୀ । କିଏ ତାଙ୍କର କ'ଣ କରିବ !

ଲବଙ୍ଗ—ତେବେ ତ ପୂରା ଡକାୟତି ।

ମୁନ୍‌ସୀ—ଡକାୟତି କହ, ଲୁଣ୍ଠନକାରୀ କହ—ସବୁ କିଛି ।

ଲବଙ୍ଗ—ତହସିଲଦାର ସାହେବ, ତୁମେ ଯେମିତି ଧମକଉଛ—ମନେ ହଉଚି—ସତେ ଯେପରି ଆମେ ରାଜା ପାଖରେ ବନ୍ଦୀ ହୋଇ ଯାଇଛୁ । ଚାକିରି ନେଇ ଦିବେତ ନେଇ ଯାଆନ୍ତୁ । ଭଗବାନ ଯାହା ଦେଇଛନ୍ତି, ସେଇଥିରେ ଦୁଃଖେ ସୁଖେ ଚଳିବୁ ।

ମୁନ୍‌ସୀ—ଭଲ କଥା । କିନ୍ତୁ ମନେରଖ—ଟାଳି ରଖିକରି ଦିବନି । ରାଜାମାନେ ଯାହାକୁ ଛାଡ଼ି ଦିଅନ୍ତି, ତାଠି କୌଣସି ନା କୌଣସି ଦାଗ ନିଶ୍ଚୟ ଲଗେଇ ଦିଅନ୍ତି । ଯଦି ସେ କହିବେ, ସରକାରୀ ଧନ ଚୋରି କରିଛି—ତେବେ ଅବସ୍ଥା କ'ଣ ହେବ ! ବୁଝି ବିଚାରି କାମ କର । ତୁମେ ତୁନି ହୋଇ ରହ—ମୁଁ ଦେଓ୍ୱାନ ସାହେବଙ୍କୁ ରାଜି କରେଇ ଦେବି । ଯଦି ତୁମେ ପାଟି କରିବ, ଦୋଷଯାକ ତୁମରି ମୁଣ୍ଡରେ ଛୁଟିବ । ଠାକୁର ସାହେବ ଏବେ ଅବା ତୁମ କଥା ମାନିଦିବେ—କିନ୍ତୁ ଯେତେବେଳେ ହରଡ଼ଘଣାରେ ପଡ଼ିବେ, ସେତେବେଳେ ସବୁ ରାଗ ତୁମରି ଉପରେ ପଡ଼ିବ । କହିବେ—ତୁମେ ସର୍ବନାଶ କରିଦେଲ । ଚିନ୍ତା କର ।

ଲବଙ୍ଗ ଗମ୍ଭୀର ଚିନ୍ତାରେ ବୁଡ଼ିଗଲେ । ସେ ସବୁ ସହି ପାରନ୍ତେ, କିନ୍ତୁ ଦେଓ୍ୱାନ ସାହେବଙ୍କ କ୍ରୋଧ ସମ୍ଭାଳି ପାରିବେନି । ତାଙ୍କ ମନରେ ମଧ୍ୟ ଏପରି ଖିଆଲ ଆସିବା ଅସମ୍ଭବ ନୁହେଁ । ମନୋରମାର ରଙ୍ଗଢ଼ଙ୍ଗରୁ ମଧ୍ୟ ସେ କିଛି ଅନୁମାନ କରିପାରିଲେ । ଯଦି ସମସ୍ତେ ରାଜି, ମୁଁ କଅାଁ ଘାଟି କରିବି ।

ଲବଙ୍ଗ କିଛି ଉତ୍ତର ଦେବା ପୂର୍ବରୁ ଦେଓ୍ୱାନ୍ ସାହେବ ସ୍ନାନ ସାରି ଫେରିଲେ । ତାଙ୍କୁ ଅସୁଅ୍ୱିଧାରେ ଦେଖି ଲବଙ୍ଗ ପାଖ କୋଠରୀକୁ ଆସିବା ପାଇଁ ଠାରିଲେ । ତାଙ୍କ କାନ୍ଦରେ କହିଲେ—ରାଜା ସାହେବ ମନୋରମାକୁ ବିଭାହେବା ପାଇଁ ଖବର ପଠେଇଛନ୍ତି ।

ଠାକୁର—ତୁମର ଇଚ୍ଛା କ'ଣ ?

ଲବଙ୍ଗ—ତୁମେ ଯାହା ଇଚ୍ଛା କରିବ ନା, ମୋତେ କ'ଣ ଇଚ୍ଛା କଥା ପଚାରୁଛ !

ଠାକୁର—ଇଏ କ'ଣ ମୋ କଥାର ଉତ୍ତର ! ମୋ ଇଚ୍ଛା ଅନୁସାରେ ଯଦି କରନ୍ତି, ତୁମକୁ ପଚାରନ୍ତି କାହିଁକି ?

ଲବଙ୍ଗ—ମୋ କଥା ମାନିଲେ ତ, ପଚାରି ଲାଭ କ'ଣ ?

ଠାକୁର—କ'ଣ କହିଲେ ସିନା ହବ !

ଲବଙ୍ଗ—ମାନିବ ? ମୁଁ କହୁଛି, ଏ ବିବାହ ମୋତେ ଆଦୌ ପସନ୍ଦ ହଉନି ।

ଠାକୁର—ହଁ ମାନୁଛି । ଯାଇ ମୁନ୍‌ସୀଙ୍କୁ ଏଇଆ କହିଦେବି ।

ଲବଙ୍ଗ—କିନ୍ତୁ ରାଜା ସାହେବ ଯେବେ ଖରାପ ଭାବିବେ ।

ଠାକୁର—କିଛି ଚିନ୍ତା ନାହିଁ ।

ଲବଙ୍ଗ—ଗୁଜରି ଯିବ ଯଦି ?

ଠାକୁର—ଚିନ୍ତା ନାହିଁ । ଈଶ୍ୱର ଢେର୍ ଦେଇଛନ୍ତି ।

ଲବଙ୍ଗ—ପଛକୁ ମୋ ଚୁଟି ଧରିବନି ତ—ତୋର ଯୋଗୁଁ ଏ ସବୁ ହେଲା ବୋଲି ?

ଠାକୁର—ମୋତେ କ'ଣ ବୋଲି ଭାବୁଚ କି ? ଯାହା ହୋଇଯିବ ପଛେ ହୋଇଯାଉ, କ୍ଷତ୍ରିୟ ମୁଁ, ବିଶାଳ ସିଂହ ସହ ଟିଏ ବାଘ କରିବି ?

ଦେଓ୍ୱାନ ସାହେବ ସିଧା ଆସି ମୁନ୍‌ସୀଙ୍କୁ କହିଲେ—ଆପଣ ରାଜା ସାହେବଙ୍କୁ କହି-ଦେବେ, ଏ ବିବାହ ପାଇଁ ଆମେ ଇଚ୍ଛୁକ ନୋହୁଁ ।

ମୁନ୍‌ସୀ ତାଙ୍କ ଆଡ଼କୁ ତିରସ୍କାରପୂର୍ଣ୍ଣ ଦୃଷ୍ଟିରେ ଚାହିଁ କହିଲେ—ଆପଣ ରାଗିଲା ଭଳି ଜଣା ପଡ଼ୁଛନ୍ତି । ରାଜା ସାହେବ ବହୁ ମିନତି କରି ଏବଂ ଡରି ଡରି ଏ ସନ୍ଦେଶ ଆପଣଙ୍କ ପାଖକୁ ପଠେଇଛନ୍ତି । ଆପଣ ଯେବେ ରାଜି ନ ହେବେ—ମୋର ଭୟ ହେଉଛି—କାଳେ ସେ ଜହର ଖାଇଦେବେ ।

ଲବଙ୍ଗ—ଆପଣ ଯାଇ ସେଇ କଥା କହି ଦିଅନ୍ତୁ ନା ।

ମୁନ୍‌ସୀ—ଦେଓ୍ୱାନ ସାହେବ, ଏ ମାମଲାରେ ଟିକିଏ ବୁଝି ବିଚାରି ଫଇସଲା କରନ୍ତୁ ।

ଲବଙ୍ଗ—ରାଜା ସାହେବଙ୍କ ପାଖରେ ଧନ ବଂଚିତ ଆଉ ଅଛି କ'ଣ ? ଧନ ତ ସଂସାରରେ ସବୁ କିଛି ନୁହେଁ ।

ମୁନ୍‌ସୀ—ସବୁ କିଛି ନ ହେଲେ ମଧ୍ୟ ଏତେ ତୁଚ୍ଛ ନୁହେଁ ।

ଲବଙ୍ଗ—ବାହାଘୋଳା ମାମଲାରେ ମୁଁ ତାକୁ ତୁଚ୍ଛ ବୋଲି ଭାବେ ।

ମୁନ୍‌ସୀ—ଧନ ସବୁଠାରୁ ବଡ ବୋଲି ମୁଁ ତ କହୁନି । ମୁଁ ଆପଣଙ୍କ ଆଶୀର୍ବାଦରେ ଜାଣିଛି ଯେ ସୁଖର ମୂଳ ହେଉଛି ସନ୍ତୋଷ ।

ସହସା ମନୋରମା ଆସି ଠିଆ ହେଲା । ଧନର ନିନ୍ଦା କଥା ତା' କାନରେ ପଡ଼ିଲା । ସେ କହିଲା—ଏଭଳି ସନ୍ତୋଷକୁ ମୂର୍ଖତା କୁହାଯିବ ।

ଠାକୁର—ଯଦି ସନ୍ତୋଷ ମୂର୍ଖତା ତେବେ ମାଢଗ୍ରନ୍ଥ, ଉପନିଷଦଠାରୁ ଆରମ୍ଭ କରି କୋରାନ ପର୍ଯ୍ୟନ୍ତ ଏ ସମସ୍ତଙ୍କୁ ମୂର୍ଖତାର ପର୍ବତ ବୋଲି କୁହାଯିବ ! ତହିଁରେ ସନ୍ତୋଷ ଠାରୁ ଅଧିକ ଅନ୍ୟ କିଛି ଉପର ମହିମା କୁହାଯାଇ ନାହିଁ । ଧନହିଁ ପାପ, ଦ୍ୱେଷ ଓ ଅନ୍ୟାୟର ମୂଳ ।

ମନୋରମା—ସଂସାରର ଧର୍ମଗ୍ରନ୍ଥ, ଉପନିଷଦଠାରୁ କୋରାନ୍ ଯାଏଁ—ଯେଉଁମାନେ ଖାଇବାକୁ ପାଉ ନ ଥିଲେ ସେହିମାନେ ରଚନା କରିଛନ୍ତି । ସେମାନେ ଅଙ୍ଗୁରକୁ ଖଟା ବୋଲି କହି ଧନକୁ ନିନ୍ଦା କଲେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ । ଯଦି ଧନୀ ହୋଇ କେହି ଧନକୁ ନିନ୍ଦା କରେ, ତେବେ ମୁଁ ତାକୁ ଧୂର୍ତ୍ତ ବୋଲି ମନେ କରେ । କାରଣ ନିଜ ସିଦ୍ଧାନ୍ତରେ ବ୍ୟବହାର କରିବାକୁ ତା'ର ସାହସ ନାହିଁ ।

ମୁନ୍‌ସୀଜୀ ଦେଖିଲେ ମନୋରମାଠାରୁ କଥା ନେବାର ଏଇ ହେଉଛି ଠିକ୍ ଅବସର । ଠାକୁର ସାହେବଙ୍କୁ ଆଖି ମାରି କହିଲେ—ମନୋରମା, ମୋ ବିଚାର ଏବଂ ତୁମ ବିଚାରରେ ବହୁ ସାମଞ୍ଜସ୍ୟ ଅଛି । ମୋ କନ୍ୟାର ବିବାହ ଠିକ୍ କରୁଛି । ଦୁଇଟି ପ୍ରସଙ୍ଗ ମୋ ଆଗରେ ଅଛି । ଗୋଟିଏ ହେଉଛି—ବର ଅଧାଳିଆ ବୟସ, କିନ୍ତୁ ଧନସମ୍ପତ୍ତି କାହିଁରୁ କ'ଣ । ଅନ୍ୟଟି ହେଉଛି—ବରଟି ସୁନ୍ଦର ଯୁବକ, ବୁଦ୍ଧିମାନ—କିନ୍ତୁ ଦରିଦ୍ର । କହ—କାହା ସହିତ ମୁଁ କନ୍ୟା ବିବାହ କରିବ ?

ଠାକୁର—ଯଦି କନ୍ୟା ମାମଲା—ତେବେ ମୁଁ କହିବ ଧନ ସମ୍ପତ୍ତି ଆଡ଼କୁ ଯାଅ ନାହିଁ ।

ଲବଙ୍ଗ—ବର ଯଦି ବାପ ବୟସର, ସେ ବିବାହର ମୂଲ୍ୟ କ'ଣ ? ଝିଅ କାନ୍ଦି କାନ୍ଦି ଦିନ କଟେଇବ ।

ମୁନ୍‌ସୀ—ତୁମେ କ'ଣ ପରାମର୍ଶ ଦେବ ମନୋରମା ?

ମନୋରମା ଟିକିଏ ଲଜ୍ଜିତ ହୋଇ କହିଲା—ଆପଣ ଯାହା ଉଚିତ କରିବେ ।

ମୁନ୍‌ସୀ—ନାଇଁ ନାଇଁ, ମୁଁ ତୁମ ରାୟକୁ ଠିକ୍ ମନେ କରିବି ।

ମନୋରମା—ମୁଁ ଭାବୁଚି—ଯେଉଁ ସମୟ୍ଟା ଖାଇବା-ପିଇବା, ବୁଲିବା-ମନଖୁସି କରିବାରେ କଟିବା କଥା, ସେ ବୟସରେ ଯଦି କୌଣସି ଦରିଦ୍ର ସହିତ ବା ହିଭାଗରେ କଟେ, ତେବେ ଜୀବନରେ ସୁଖ କ'ଣ ! ତଥାପି ମୁଁ କହିବି—ବୟସର ଗୋଟିଏ ବର୍ଷ ଏକ ଲକ୍ଷରୁ କମ୍ ନୁହେଁ ।

ଏହା କହି ମନୋରମା ଚାଲିଗଲା । ଦେଓ୍ୱାନ ସାହେବ କେତେ ମିନିଟ୍ ଯାଏଁ ତାଳକୁ ଚାହିଁ ରହିଲେ । ଶେଷରେ ଲବଙ୍ଗକୁ କହିଲେ—ଶୁଣିଲ ତ ?

ଲବଙ୍ଗ—ମୁଁ କଣ କାଲା ହୋଇଛି ?

ଠାକୁର—ତା' ହେଲେ ?

ଲବଙ୍ଗ—ତା' ହେଲେ କ'ଣ ! ପିଲେ ଯାହା ମୁହଁକୁ ଆସିଲା ବକିବେ । ସେଥିରୁ ଆମକୁ କଣ ମିଳିବ ! ପିଲେ ଯଦି ଜହର ମାଗିବେ, ମା ବାପା କଣ ଜହର ଦେଇଦେବେ ! କ'ଣ ମୁନ୍‌ସୀଜୀ ?

ମୁନ୍‌ସୀ—ହଁ ଯେ, ପିଲେ ଯଦି ନିଜର ଭଲ ମନ୍ଦ ବୁଝି ପାରୁଥିବେ, ତେବେ ସେମାନଙ୍କ ମନ ନେଇ କାମ କରିବା ଉଚିତ ।

ଲବଙ୍ଗ—ବାପ ମାଆ ବଞ୍ଚିଥିଲେ, ଏ ବିଷୟରେ ପିଲେ କିଛି କହିବାର ଅଧିକାର ନାହିଁ । ଆପଣ ଯାଇ ରାଜା ସାହେବଙ୍କୁ ସେଇଆ କହି ଦିଅନ୍ତୁ ।

ମୁନ୍‌ସୀ—ଦେଓ୍ୱାନ ସାହେବ, ଆପଣଙ୍କର କ'ଣ ଏହି ରାୟ ?

ଠାକୁର—ସାହେବ, ମୁଁ ଏ ବିଷୟରେ ଚିନ୍ତା କରି ଉତ୍ତର ଦେବି । ହଁ, ଆପଣ ମୋର ବନ୍ଧୁ । ଆପଣ ଏପରି ଭାବରେ କହିବେ, ଯେପରି ମୋ ଉପରେ କିଛି ଆଞ୍ଚ ଆସିବ ନାହିଁ ।

ମୁନ୍‌ସୀକୁ ମନେ ମନେ ଲବଙ୍ଗ ଗାଳି ଦେଇ ଚାଲିଗଲେ । ଫାଟକ ପାଖରେ ଦେଖିଲେ, ମନୋରମା ବୃକ୍ଷ ମୂଳେ ଘାସ ଉପରେ ଗଡ଼ପଡ଼ ହଉଚି । ମୁନ୍‌ସୀଙ୍କୁ ଦେଖି ସେ ଠିଆ ହୋଇ ପଡ଼ିଲା । ମୁନ୍‌ସୀଜୀ ଟିକିଏ ଠିଆ ହୋଇପଡ଼ି କହିଲେ—କ'ଣ ମନୋରମା ରାଣୀ, ତୁମେ ମୋତେ ଯେଉଁ ପରାମର୍ଶ ଦେଲ, ତାକୁ ନିଜେ ପାଳନ କରି ପାରିବ !

ମନୋରମା ଲାଜ ଲାଜ ହୋଇ କହିଲା—ତାହା ତ ମୋ ପିତା ମାତା ସ୍ଥିର କରିବା କଥା ।

ମୁନ୍‌ସୀଜୀ ରାଜାଙ୍କ ପାଖରେ ପହଞ୍ଚି କହିଲେ—ହଜୁର୍ ସେ ବୁଢ଼ାଟା ଗୋଟେ ପକ୍‌କା ଖଣ୍ଡାଖାଇ । ହାତକୁ ମୋଟେ ଆସୁନି । ଏପଟ କହୁଚି, ସେପଟ ବି କହୁଛି । ଦେଓ୍ୱାନ ସାହେବ ତ ଗୋଟେ ମାଟି ପିଣ୍ଡୁଳା ।

ରାଜା ସାହେବ ଅଧୀର ହୋଇ ପଚାରିଲେ—ଆପଣ ଶେଷରେ କ'ଣ ସ୍ଥିର କରି ଆସିଲେ ?'

ମୁନ୍‌ସୀ—ଆପଣଙ୍କ ଭାଗ୍ୟର ବିଜୟ ହୋଇଛି । କିନ୍ତୁ ଦେଓ୍ୱାନ ସାହେବ ନିଜେ ଆପଣଙ୍କ ସହ ବିବାହ ସମ୍ପର୍କରେ କଥାବାର୍ତ୍ତା କରିବାକୁ ସଙ୍କୁଚିତ ହେଉଛନ୍ତି । ଆପଣଙ୍କ ତରଫରୁ କଥାବାର୍ତ୍ତା ଆରମ୍ଭ ହେଲେ ସମ୍ଭବତଃ ସେ ନାସ୍ତି କରି ପାରିବେ ନାହିଁ । ମନୋରମା ରାଣୀ ତ ଶୁଣି ଖୁବ୍ ଖୁସି ହେଲେ ।

ରାଜା—ସତେ ! ମନୋରମା ଖୁସି ହେଲା ! ଆପଣ କିପରି ଜାଣିଲେ ?

ମୁନ୍‌ସୀ—ହଜୁର, ସେ ସଫା ସଫା କହିଲେ—ବୟସର ତାରତମ୍ୟ ବଡ଼ କଥା ନୁହେଁ, ପରସ୍ପର ସ୍ନେହ ରହିବା ଦରକାର । ପ୍ରେମ ସହିତ ଧନ ଯଦି ଥିବ ଖୁବ୍ ଭଲ । ଏଇଭଳି ଅନେକ କଥା କହିଲେ । ହସ ହସ ମୁଖ !

ରାଜା—ତା'ହେଲେ ମନୋରମା ପସନ୍ଦ କରୁଛି ତ ?

ମୁନ୍‌ସୀ—ତାଙ୍କ କଥା ଶୁଣି ତ ଲବଙ୍ଗ ଆଶ୍ଚର୍ଯ୍ୟ ହେଲା ।

ରାଜା—ତା'ହେଲେ ଆଜି ମୁଁ କଥାବାର୍ତ୍ତା କରୁଛି । ଆଜି ଠାକୁର ସାହେବଙ୍କୁ ନିମନ୍ତ୍ରଣ କରିବି ଏବଂ ମନୋରମାକୁ ମଧ୍ୟ ଡାକିବି । ଆପଣ ମଧ୍ୟ ଦୟା କରି ଆସିବେ ।

ରାଜା ସାହେବ ଯୋଗାଡ଼ରେ ଲାଗିଗଲେ । ବାଳକାଟି କ୍ଷୌର ହେଲେ । ଗୋଟିଏ ହେଲେ ଧଳା ବାଳ ରଖିଲେ ନାହିଁ । ପ୍ରସାଧନ ସାମଗ୍ରୀର ଯଥାଯଥ ଉପଯୋଗ କରି ପ୍ରଲେପ ମାଖି ଦେଲେ । ବାଛି ବାଛି ବଢ଼ିଆ ପୋଷାକ ପରିଧାନ କଲେ । ଗଳାରେ ମୁକ୍ତାମାଳା ଲମ୍ବାଇଲେ । ବେଶଭୂଷା ହୋଇ ସାରିଲେ ପରେ ଗୋଟିଏ ଛନଛନିଆ ଟୋକା ଭଳି ଦେଖାଗଲେ । ତାଙ୍କର ସୌମ୍ୟ ସ୍ୱରୂପ ଏବଂ ସୁଗଠିତ ଶରୀରରେ ଏ ବସ୍ତ୍ର ଏବଂ ଅଳଙ୍କାର ଚମକି ଉଠିଲା ।

ନିମନ୍ତ୍ରଣ ପଠାଯାଇଥିଲା । ରାତି ୯ଟା ବେଳକୁ ଦେଓ୍ୱାନ ସାହେବ ଓ ମନୋରମା ଆସିଗଲେ । ରାଜା ସାହେବ ତାଙ୍କୁ ସ୍ୱାଗତ କରିବାକୁ ଦୌଡ଼ିଲେ । ମନୋରମା ଦେହରେ କୌଣସି ଆଭୂଷଣ ନ ଥିଲା । ସେ ଖଣ୍ଡିଏ ଧଳା ଶାଢ଼ି ପରିଧାନ କରିଥିଲା । ସୁନ୍ଦରତାକୁ ଅଳଙ୍କାରର ଆବଶ୍ୟକତା ନାହିଁ ।

ଦେଓ୍ୱାନ ସାହେବ ଚିନ୍ତିତ ଜଣାପଡ଼ୁଥିଲେ । ଏକ ଭୀଷଣ ସମସ୍ୟାର ସମ୍ମୁଖୀନ ହେବାକୁ ପଡ଼ିବ । କ'ଣ କହିବେ କିଛି ଭାବି ପାରୁ ନ ଥିଲେ । ଆସିଲାବେଳେ ଲବଙ୍ଗ ତାଗିଦ କରି ଦେଇଥିଲେ—'ହଁ' କରିବନି । ସଫା ସଫା ମନା କରିଦେବ ! କିନ୍ତୁ ଦେଓ୍ୱାନଙ୍କ ମୁଣ୍ଡକୁ କିଛି ଚ଼ୁକୁ ନ ଥିଲା । ସହସା ମୁନ୍‌ସୀ ବଜ୍ରଧର ଆସି ପହଞ୍ଚିଲେ । ସତେ ଯେମିତି ଦେଓ୍ୱାନ ସାହେବଙ୍କୁ ଅଙ୍କି ମିଳିଗଲେ । ତାଙ୍କୁ ଧରି ଗୋଟେ ଅଲଗା କୋଠରିକୁ ପରାମର୍ଶ କରିବାକୁ

ଚାଲିଗଲେ । ମନୋରମା ଦୋଳି ଘରକୁ ଯାଇ ବୁଲିଲା । କିନ୍ତୁ ଦୋଳି ଘରର ସେ ଆଡ଼ମ୍ବର ଆଉ ନ ଥିଲା ।

ରାଜା ସାହେବ ମନୋରମାକୁ ଦୋଳି ଘରକୁ ଯିବାର ଦେଖିଲେ । ଏକାନ୍ତରେ କଥାବାର୍ତ୍ତା ହେବାକୁ ସେ ଚାହୁଁଥିଲେ । ସୁଯୋଗ ମିଳିଗଲା । ଦୋଳି ଘରକୁ ଯାଇ ମନୋରମା ପାଖରେ ପହଞ୍ଚିଲେ ।

ମନୋରମା କହିଲା—ରାଣୀଙ୍କ ବେଳେ ଏ ଘର ବଡ଼ ସୁନ୍ଦର ଦେଖାଯାଉଥିଲା । ଏବେ ଖାଲି ଖାଲି ଲାଗୁଛି ।

ରାଜା—ତୁମ ଦ୍ୱାରା ଏ ଘରର ସୌନ୍ଦର୍ଯ୍ୟ ଫେରି ଆସିବ ମନୋରମା । ଏ ଘର ସିଧି ମୋ ହୃଦୟ ଭଳି ତୁମକୁ ଅପେକ୍ଷା କରି ରହିଛି ।

ଏହି ପ୍ରଣୟପୂର୍ଣ୍ଣ କଥା ପ୍ରଥମ ଥର ପାଇଁ ମନୋରମା ଶୁଣିଲା । ତା'ର ମୁଖମଣ୍ଡଳ ଲଜ୍ଜାରେ ଆରକ୍ତ ହୋଇଗଲା । ସେ କିଛି କହି ପାରିଲା ନାହିଁ ।

ରାଜା ସାହେବ ପୁଣି କହିଲେ—ମନୋରମା, ମୋର ତିନି ରାଣୀ ଅଛନ୍ତି । କିନ୍ତୁ ଏ ଯାଏଁ ଏ ହୃଦୟକୁ କେହି ଅଧିକାର କରି ପାରିଲେ ନାହିଁ । ତୁମେ ମୋର ରାଣୀମାନଙ୍କୁ ଦେଖିଛ, ସେମାନଙ୍କ କଥା ମଧ୍ୟ ଶୁଣିଛ । ସେମାନଙ୍କ ମଧ୍ୟରେ ଏପରି କିଏ ଅଛି, ଯାହାର ପ୍ରେମୋପାସନା କରାଯିବ !

ମନୋରମା ଗମ୍ଭୀର ହୋଇ କହିଲା—ଆପଣଙ୍କର ପ୍ରେମପାତ୍ରୀ ହେବା; ମୋ ପାଇଁ ସୌଭାଗ୍ୟର କଥା । କିନ୍ତୁ···ମୋର ଭୟ ଯେ—ମୁଁ ଆଦର୍ଶ ପତ୍ନୀ ହୋଇ ପାରିବି ନାହିଁ । କାରଣ କହି ପାରିବି ନାହିଁ, କାରଣ ମୁଁ ନିଜେ ଜାଣେନା । ମୋର ଆନ୍ତରିକ ଇଚ୍ଛା—କୌଣସି ବନ୍ଧନରେ ପଡ଼ିବି ନାହିଁ । ପକ୍ଷୀମାନଙ୍କ ଭଳି ସ୍ୱାଧୀନ ରହିବାକୁ ଚାହେଁ ।

ରାଜା ଈଷତ୍ ହସି କହିଲେ—ମନୋରମା, ପ୍ରେମ ତ ବନ୍ଧନ ନୁହେଁ ।

ମନୋରମା—ପ୍ରେମ ବନ୍ଧନ ନ ହୋଇପାରେ, କିନ୍ତୁ ଧର୍ମ ତ ବନ୍ଧନ । ମୁଁ ପ୍ରେମ ବନ୍ଧନକୁ ଭୟ କରୁନି, ଭୟ କରୁଛି ଧର୍ମ ବନ୍ଧନକୁ । ଆପଣଙ୍କୁ କଠୋରତାର ସହ ଶାସନ କରିବାକୁ ପଡ଼ିବ । ମୁଁ ଆପଣଙ୍କୁ ପ୍ରଥମରୁ କହି ଦଉଛି । ମୁଁ ଆପଣଙ୍କୁ ଧୋକା ଦେବାକୁ ଚାହୁଁ ନାହିଁ । ଆପଣ ପ୍ରତି ମୋର ପ୍ରେମ ନାହିଁ କି ହୋଇ ପାରିବା ମଧ୍ୟ ସମ୍ଭବ ନୁହେଁ । (ହସିହସି) ମୁଁ ରାଣୀ ହେବାକୁ ଚାହୁଁଛି ଅବଶ୍ୟ । କିନ୍ତୁ କୌଣସି ରାଜାର ହେବାକୁ ଚାହେଁନା । ହଁ, ଆପଣଙ୍କୁ ଖୁସି ରଖିବାକୁ ଚେଷ୍ଟା କରିବି । ମୁଁ ଭୁଲ ରାସ୍ତାରେ ଯିବାର ଦେଖିଲେ, ଆପଣ ମୋତେ ସତର୍କ କରିଦେବେ । ମୁଁ ଭାବୁଛି—ଭଗବାନ ମୋତେ ପ୍ରେମ କରିବା ପାଇଁ ନୁହେଁ, କେବଳ ବିଳାସ ପାଇଁ ଜନ୍ମ ଦେଇଛନ୍ତି ।

ରାଜା—ତୁମେ ନିଜ ଉପରେ ଅତ୍ୟାଚାର କରୁଛ ମନୋରମା । ତୁମର ବେଶ ତୁମ କଥାକୁ ବିରୋଧ କରୁଛି । ତୁମ ହୃଦୟରେ ଏପରି ଆଲୋକ ଅଛି ଯାହାର ସାମାନ୍ୟ ଜ୍ୟୋତିରେ ମୋ ଜୀବନର ଅନ୍ଧକାର ଦୂର କରି ଦେବ ।

ମନୋରମା—ମୁଁ ମନ ଇଚ୍ଛା ଧନ ଉଡ଼େଇବି । ଆପଣଙ୍କୁ କ'ଣ ତାହା ଖରାପ ଲାଗିବନି ? ମୁଁ ଧନର ଦାସୀ ହୋଇ ନୁହେଁ, ରାଣୀ ହୋଇ ରହିବି ।

ରାଜା—ମନୋରମା, ଏ ରାଜ୍ୟ ତୁମର, ଧନ ତୁମର, ମୁଁ ତୁମର । ସମସ୍ତେ ତୁମ ଇଚ୍ଛାର ଦାସ ହୋଇ ରହିବେ ।

ମନୋରମା—ମୋତେ କଥା କହିବାର କଳା ଜଣା ନାହିଁ । ଲବଙ୍ଗ ମା କହେ—ତୁ କଥାବାର୍ତ୍ତା କରୁଛୁ ନା ଗୁଳିଗୁଣ୍ଡା ମାରୁଛୁ ?

ରାଜା—ମନୋରମା, ଉଷାର ସଙ୍ଗୀତ ମଧ୍ୟ ଏତେ କୋମଳ ନୁହେଁ ।

ମନୋରମା—ବାବାଙ୍କ ସଙ୍ଗେ ଆପଣ କଥାବାର୍ତ୍ତା କରି ନାହାନ୍ତି ।

ରାଜା—ଅବସର ମିଳିଲେ କରିବି । କିନ୍ତୁ ଯଦି ସେ ନାସ୍ତି କରିଦେବେ ।

ମନୋରମା—ମୋ ଭାଗ୍ୟର ନିର୍ଣ୍ଣୟ ସେହି କରିବେ । ମୁଁ ତାଙ୍କ ଅଧିକାର ଛିନ୍ନ କରି କରି ପାରିବି ନାହିଁ ।

ଉଭୟେ ଆସି ବାରଣ୍ଡାରେ ପହଞ୍ଚିଲେ । ଦେୱାନ ସାହେବ ଏବଂ ମୁନ୍‌ସୀଙ୍କ ଠିଆ ହୋଇଥିଲେ । ମୁନ୍‌ସୀଙ୍କ କହିଲେ—ବଧାଇ ହଜୁର୍ ।

ଦେୱାନ୍—ମୁନ୍‌ସୀଜୀ……

ମୁନ୍‌ସୀ—ହଜୁର୍, ଆଜି ଶାଢ଼ୁଣା ବାଜଣା ହେବା ଉଚିତ । ମନୋରମାକୁ ଚାହିଁ କହିଲେ—ମହାରାଣୀ, ଆପଣଙ୍କ ସିନ୍ଦୁର ସର୍ବଦା ଉଜ୍ଜ୍ୱଳ ରହୁ ।

ଦେୱାନ—ମୋତେ ଟିକିଏ ଚିନ୍ତା କରିବାକୁ……

ମୁନ୍‌ସୀ—ସାହେବ, ଶୁଭ କାର୍ଯ୍ୟରେ ଚିନ୍ତା, ବିଚାର କ'ଣ !

ସହସା ବଗିଚାରେ ବ୍ୟାଣ୍ଡ ବାଜି ଉଠିଲା । ରାଜକର୍ମଚାରୀମାନେ ଆସି ରାଜା ସାହେବଙ୍କୁ ବଧେଇ ଦେଲେ । ଦେୱାନ ସାହେବ ମୁଣ୍ଡ ପୋତି ଠିଆ ହୋଇଥିଲେ । ମନେ ମନେ ମୁନ୍‌ସୀଙ୍କୁ ଗାଳି ବର୍ଷଣ କରୁଥିଲେ ।

ରାତି ବାରଟାରେ ସମସ୍ତେ ଫେରିଲେ । ରାଜା ସାହେବଙ୍କ ପାଦ ଭୂଇଁରେ ପଡ଼ୁ ନ ଥିଲା । ସମସ୍ତେ ଶୋଇଲେ । କିନ୍ତୁ ସେ ବଗିଚାରେ ଟହଲିବାକୁ ଲାଗିଲେ । ମନ୍ଦ ପବନରେ, ଚନ୍ଦ୍ର କିରଣରେ, ଶୀତଳ ସୁଗନ୍ଧରେ ସେ ସର୍ବତ୍ର ମନୋରମାକୁ ଦେଖୁଥିଲେ । ସାରା ବିଶ୍ୱ ତାଙ୍କ ଦୃଷ୍ଟିରେ ମନୋରମାମୟ ଦେଖାଯାଉଥିଲା ।

( ୧୮ )

ଚକ୍ରଧର ଜେଲରେ ପହଞ୍ଚି ଏକ ନୂଆ ଦୁନିଆ ଦେଖିଲେ । ଏଠାରେ ଈଶ୍ୱର ନାହାନ୍ତି—କେବଳ ମନୁଷ୍ୟ ଅଛନ୍ତି । ଈଶ୍ୱର ପ୍ରଦତ୍ତ ବାୟୁ ଓ ଆଲୋକ ବ ଏମାନଙ୍କୁ ସହଜରେ ମିଳୁ ନାହିଁ । ଭୋଜନ ଏପରି ଯେ, କୁକୁର ମଧ୍ୟ ଛୁଇଁବ ନାହିଁ । ପିନ୍ଧିବା ପାଇଁ ମିଳୁଥିବା ବସ୍ତ୍ର ମଧ୍ୟ ଭିକାରୀ ଫିଙ୍ଗିଦେବ । ପରିଶ୍ରମ ଏତେ କରିବାକୁ ପଡ଼ୁଥିଲା ଯେ, ବଳଦ ମଧ୍ୟ କରି ପାରିବନି । ଜେଲ ଶାସନର ଏକ ବିଭାଗ ନୁହେଁ, ଏକ ପାଶବିକ ବ୍ୟବସାୟ, ଅତ୍ୟାଚାରର ଏକ ନଷ୍ଟଣ୍ଟକ ସାଧନ । ପ୍ରତ୍ୟହ ଦୁଇ ଟଙ୍କାର କାମ ନେଇ ଦୁଇ ଅଣାର ଖାଦ୍ୟ ଦେବା—ଏପରି ଅନ୍ୟାୟର ଉଦାହରଣ ନାହିଁ ।

କିନ୍ତୁ ଏଠାରେ ଏପରି ଭାଗ୍ୟବାନ ଅଛନ୍ତି, ଯେଉଁମାନଙ୍କ ପାଇଁ ଜେଲ ଏକ କଳ୍ପବୃକ୍ଷ । ବଳଦ ଶସ୍ୟ ଉତ୍ପାଦନ କରେ ଏବଂ ଖାଏ କୁଣ୍ଡା । କଇଦୀ ବଳଦଠାରୁ ମଧ୍ୟ ହୀନ । ସେ ନାନା ପ୍ରକାର ପନିପରିବା ଉତ୍ପାଦନ କରେ । କିନ୍ତୁ ତାର ଗନ୍ଧ ମଧ୍ୟ ତା'ପାଖରେ ପହଞ୍ଚେ ନାହିଁ । ପ୍ରତିଦିନ ଫଳ, ଫୁଲ, ପନିପରିବା ପୂର୍ଣ୍ଣ ବୋଝ ଯାଏ ବଙ୍ଗଳାକୁ । କଇଦୀ ଦେଖେ ଏବଂ ଭାଗ୍ୟକୁ ନିନ୍ଦାକରି ରହିଯାଏ ।

ଚକ୍ରଧରଙ୍କୁ ଚକି ପେଷିବା କାମ ଦିଆଗଲା । ସକାଳୁ ଗହମ ଓଜନ କରି ଦେଇ ଦିଆଯାଏ । ସଂଧ୍ୟା ସୁଦ୍ଧା ତାକୁ ପେଷିବାକୁ ହେବ । କିଛି ଶୁଣା ଯିବ ନାହିଁ । ପ୍ରତିଦିନ ଗାଳି ଶୁଣିବା ନିଶ୍ଚିତ । ରାତିରେ ଶୋଇବା ପରିବର୍ତ୍ତେ କଇଦୀ କାନ୍ଦେ । ମନକୁ ଶାନ୍ତ କରିବାରେ ରାତି କଟେ ।

ଏତକରେ ତାଙ୍କର ବିପଦ ଶେଷ ହୁଏ ନାହିଁ । କଇଦୀମାନେ ତାଙ୍କୁ ଏପରି ଅଶ୍ଳୀଳ ଓ ଅପମାନଜନକ କଥା କହନ୍ତି ଯେ କ୍ରୋଧ ଓ ଘୃଣାରେ ରକ୍ତ ତାଙ୍କର ଗରମ ହୋଇଯାଏ । ତାନ୍ତ କାମୁଡ଼ି ରହିଯା'ନ୍ତି । ଶୁଣିବାକୁ କେହି ନାହିଁ । ତେଣୁ ଅଭିଯୋଗ କରିବ କାହା ଆଗରେ ! ସବୁଠାରୁ ବେଶି କଷ୍ଟ ହୁଏ ରାତିରେ । ତାଙ୍କ କୋଠରିରେ ପାଞ୍ଚଜଣ କଇଦୀ ଥିଲେ । ଧନାସିଂହ ମହାଜୁକ୍ଷ ଓ ବଳିଷ୍ଠ । ସେ ହେଉଛି ନେତା । ସେମାନେ ଏତେ ପାଟି କରୁଥିଲେ, ଏପରି କଦର୍ଯ୍ୟ ଏବଂ ଘୃଣା ଉତ୍ପାଦନ କଥାମାନ କହୁଥିଲେ ଯେ, ଚକ୍ରଧର କାନରେ ଆଙ୍ଗୁଠି ଦେଇ ରହୁଥିଲେ । ହୁକୁମ ଥିଲା--କେହି ନିଶାଦ୍ରବ୍ୟ ବ୍ୟବହାର କରି ପାରିବେନି । କିନ୍ତୁ ଏଠାରେ ଅଫିମ, ଗଞ୍ଜେଇ, ଭାଙ୍ଗ, ମଦ—ଏପରି କି କୋକେନ ମଧ୍ୟ କିମିତି ଆସି ପହଞ୍ଚି ଯାଉଥିଲା । ନିଶାରେ ଏମାନେ ନରଭକ୍ଷୀ ରାକ୍ଷସଙ୍କ ଭଳି ଉଦ୍ଦଣ୍ଡତା ପ୍ରକାଶ କରୁଥିଲେ ।

ଧୀରେ ଧୀରେ ଚକ୍ରଧରଙ୍କର ସେମାନଙ୍କ ପ୍ରତି ସହାନୁଭୂତି ଜାଗ୍ରତ ହେଲା । ସେ ସବୁ ଶ୍ରେଣୀର ଲୋକଙ୍କ ସେବା କରିଥିଲେ । କିନ୍ତୁ ଏପରି ନିର୍ଲଜ୍ଜ, ଦୁର୍ବ୍ୟସନୀ, ବେହିଆ ଲୋକ ସେ କେବେ ଦେଖି ନ ଥିଲେ । ସେମାନଙ୍କୁ ଗାଳି ଖାଇଲେ ଲାଜ ଲାଗେନି କି ମାଡ଼କୁ

ସେମାନଙ୍କର ଭୟ ନାହିଁ । କେବେ କେବେ ଏପରି ଅସ୍ୱାଭାବିକ ତାଡ଼ନା ମିଳୁଥିଲା ଯେ ଚନ୍ଦ୍ରଧରଙ୍କର ଲୋମ ଠାଙ୍କୁରି ଉଠୁଥିଲା । ସେମାନଙ୍କ ଆଖିରୁ ଲୁହ ବାହାରିବା ଦୂରର କଥା, ବରଂ ଦାନ୍ତ ଦେଖାଉଥିଲେ । ଏ ବ୍ୟାପାର ଦେଖି ଚନ୍ଦ୍ରଧର ନିଜ କଷ୍ଟ ଭୁଲି ଯାଉଥିଲେ ।

ଜେଲ ଅଫିସ ସହ ତହସିଲଦାର ସାହେବଙ୍କର ପରିଚୟ ଥିଲା । ତେଣୁ ସେ ଚନ୍ଦ୍ରଧରଙ୍କ ପାଖକୁ କୌଣସି ଖାଦ୍ୟ ପଦାର୍ଥ ପଠାଇବାରେ କିଛି ଅସୁବିଧା ହେଉ ନ ଥିଲା । ଚନ୍ଦ୍ରଧର ସେ ସବୁ ପାଇ କଇଦୀମାନଙ୍କ ମଧ୍ୟରେ ବାଣ୍ଟି ଦେଉଥିଲେ । ତାଙ୍କର ସୁଜନତା କଇଦୀମାନଙ୍କ ଉପରେ ଅବଶ୍ୟ କିଛି ପ୍ରଭାବ ପକାଉଥିଲା । ପ୍ରଥମେ ଚନ୍ଦ୍ରଧରଙ୍କୁ ଖତେଇ ହେଉଥିଲେ, ଥଟ୍ଟା କରୁଥିଲେ—ଏବେ କିନ୍ତୁ ତାଙ୍କ କଥା ପ୍ରତି ସେମାନେ ଧ୍ୟାନ ଦେଲେ । ଆତ୍ମାକୁ ଆତ୍ମା ଜାଗ୍ରତ କରିପାରେ । ସମୟ ପାଇଲେ ଚନ୍ଦ୍ରଧର ସେମାନଙ୍କୁ ଧର୍ମ କଥା ଶୁଣାନ୍ତି । ଅଜାମିଳ ଓ ବାଲ୍ମୀକିଙ୍କ କଥା ଶୁଣାନ୍ତି । ତାଙ୍କ କଥାକୁ ସେମାନେ ଶୁଣନ୍ତି ଏବଂ ସଙ୍ଗେ ସଙ୍ଗେ ଭୁଲି-ଯାଆନ୍ତି । କଥା ଚାଲିଥିବା ବେଳେ, ସେମାନେ ପରସ୍ପରକୁ ବାଧା, ଗୁପୁଚୁପ, ଗୋଇଠା ମରାମରି ହେଉଥା'ନ୍ତି । କେବେ କେବେ ସେହି କଥା ଉପରେ ଅବିଶ୍ୱାସପୂର୍ଣ୍ଣ ଟିକା ଟିପ୍ପଣୀ କରନ୍ତି । କେହି କହେ—ଧନାସିଂହ, ଆଉ ଭୟ ନାହିଁ, ଏଥର ଆମେ ସିଧା ବୈକୁଣ୍ଠକୁ ଚାଲିଯିବା, ଭଗବାନ କ୍ଷମା କରିଦେବେ । ସେଠାରେ ଖୁବ୍ ଖାଇବାକୁ ମିଳିବ । କେହି କହେ—ଧନାସିଂହ, ମୁଁ ତତେ ଯିବାକୁ ଦେବିନି । ତୁ ସ୍ୱର୍ଗକୁ ଗଲାବେଳେ ଠାଙ୍କ ଧରି ଏମିତି ଭିଡ଼ିଦେବି ଯେ ହାଡ଼-ଗୋଡ଼ ସବୁ ଭାଙ୍ଗିଯିବ । କେହି କହେ—ଆରେ, ସେଠାରେ ଲୁଙ୍ଗ, ଗଞ୍ଜେଇ ମିଳିବ କି ନାହିଁ ! ଯଦି ନ ମିଳିବ, ତେବେ ମୋର ସେଠାକୁ ଯିବା ଦରକାର ନାହିଁ । କିଏ କହେ—ଆରେ, ଦି ତିନି ବସ୍ତା ଲୁଚେଇ ନେଇଯିବା । ସେଠାରେ ଯିଏ ଜଗୁଆଳି ଥିବେ, ତାଙ୍କୁ ଘୁସ୍ ଦେଇ ରଖିଥିବା ।

ଏଭଳି ଭକ୍ତିଶୂନ୍ୟ ଆଲୋଚନା ଶୁଣି ମଧ୍ୟ ଚନ୍ଦ୍ରଧର ହତାଶ ହେଉ ନ ଥିଲେ । ଧୀରେ ଧୀରେ ସେମାନଙ୍କର ଭକ୍ତି-ଚେତନା ଦୃଢ଼ ହେଉଥିବାର ଲକ୍ଷ୍ୟ କରୁଥିଲେ ।

ପ୍ରତିକୂଳ ଅବସ୍ଥାରେହିଁ ବଳବାନ ଆତ୍ମା ଉତ୍ପନ୍ନ ହୋଇଥାନ୍ତି । କଠିନ ପରିସ୍ଥିତିରେ ସେମାନଙ୍କର ଧୈର୍ଯ୍ୟ ଓ ସାହସ, ସହୃଦୟତା ଏବଂ ସହିଷ୍ଣୁତା, ବୁଦ୍ଧି ଓ ପ୍ରତିଭା ନିଜର ମୌଳିକ ରୂପ ଦେଖାଇଥାଅନ୍ତି । ଆତ୍ମୋନ୍ନତି ପାଇଁ କଠିନ ପରିସ୍ଥିତିରୁ ବଳି କୌଣସି ବିଦ୍ୟାଳୟ ନାହିଁ । କଠିନ ପରିସ୍ଥିତିରେହିଁ ଈଶ୍ୱର ଦର୍ଶନ ହୋଇଥାଏ । ଚନ୍ଦ୍ରଧର ଏ ପରିସ୍ଥିତିକୁ ଏକ ଶିକ୍ଷାର୍ଥୀ ଦୃଷ୍ଟିରେ ଦେଖୁଥିଲେ । ସେ ବିଚଳିତ ହେଉ ନ ଥିଲେ ।

ଏହି ଭଳି କେତେ ମାସ କଟିଗଲା । ଦିନେ ସନ୍ଧ୍ୟାବେଳେ କଠିନ ଶ୍ରମ ପରେ ସନ୍ଧ୍ୟା ବନ୍ଦନା କରୁଥାନ୍ତି । କେତେଜଣ କଇଦୀ ପରସ୍ପର ମଧ୍ୟରେ କଥାବାର୍ତ୍ତା ହେବାର ଶୁଣିଲେ । —ଆଜି ଏ ସାଧୁଟାକୁ ଦେଖିଦେବା । ଯେତେବେଳେ ଦେଖିବ ଗାଳି, କଥା କଥାକେ ମାଡ଼ । ଆମେ ମଣିଷ ନା ପଶୁ ! କେତେ ସହିବ ! ଏଣିକି ସେମିତି କିଛି କଲେ ଏମିତି ପିଟିବା ଯେ, ସାରା ଜୀବନ ପାଇଁ ପିଲାର ମନେ ରହିବ । ଆରେ, ଆଉ ବର୍ଷେ ଦି ବର୍ଷ ସଜା ବଢ଼ିଯିବ, ବଢ଼ୁ ।

ଏଭଳି କଥା ତ ଚକ୍ରଧର ସବୁବେଳେ ଶୁଣୁଥିଲେ । ତେଣୁ ସେ ସେଥିପ୍ରତି ବିଶେଷ ଦୃଷ୍ଟି ଦେଲେନି । ଭୋଜନ ସମୟରେ ଦାରୋଗା ସାହେବ ଆସି ଠିଆ ହୋଇଗଲେ । ଜଣେ କଇଦୀ ଟିକିଏ ଡେରିରେ ପହଞ୍ଚିବାରୁ ତାକୁ ମାରିବାକୁ ଦୌଡ଼ିଲେ । ଆଉ ସମ୍ଭାଳେ କିଏ ! ଚାରିଆଡ଼ୁ 'ମାରମାର' ଧାଡି ଶୁଭିଲା । ଦାରୋଗାଙ୍କ କୁଆଡ଼େ ପଳେଇଯିବାକୁ ବାଟ ପାଇଲେନି । ଚାରି ଆଡ଼କୁ କରୁଣ ନେତ୍ରରେ ଚାହିଁଲେ—ସତେ ଯେମିତି ଛେଳିଟାଏ ଗଧିଆ ଦଳ ଭିତରେ ପଶି ଯାଇଛି । ସହସା ଧନାସିଂହ ଝପଟି ଆସି ଦାରୋଗାଙ୍କ ବେକକୁ ଧରି ଏମିତି ଚପିଲା ଯେ, ଆଖିବାଟେ ତାଙ୍କର ଜୁଳୁଜୁଳିଆ ପୋକ ବାହାରି ପଡ଼ିଲା । ଚକ୍ରଧର ଦେଖିଲେ—ବଡ଼ ଅନର୍ଥ ଘଟିବ । ସେ ଦୌଡ଼ି ଆସି ଧନାସିଂହର ହାତକୁ ଧରି ପକାଇ କହିଲେ—କଣ କରୁଛ ! ହଟିଯାଅ ।

ଧନାସିଂହ ହାତ ଢ଼ିଲା ହୋଇଗଲା—କିନ୍ତୁ ବେକକୁ ଛାଡ଼ୁନି ।

ଚକ୍ରଧର—ଛାଡ଼, ଭଗବାନଙ୍କ ରାଣ—ଛାଡ଼ ।

ଧନାସିଂହ—ଯାଆ ମ, ବଡ଼ ଈଶ୍ୱର—ଲାଙ୍ଗୁଡ଼ ଦେଖେଇ ହଉଚ । ଯେତେବେଳେ ଇଏ ସବୁଦିନ ଗାଳି ଦଉଚ, କଥା କଥାକେ ହଣ୍ଟର ଚଳଉଚ । ସେତେବେଳେ ଭଗବାନ୍ କୋଉଠି ଶୋଇଥିଲେ ! ହଟିଯାଅ ସାମନାରୁ, ନ ହେଲେ ବାବୁପଣ ଛଡ଼େଇଦେବ । ପଚ୍ଚଲେ ୟାକୁ ପଚାର, ଏଣିକି ଆଉ କାହାକୁ ଗାଳି ଦବନି ତ ! ମାରିବାକୁ ଦଉଡ଼ିବନି ତ !

ଦାରୋଗା—କୋଉନ୍ ରାଣ ପକେଇ କହୁଚ, ମୋ ମୁହଁରୁ ଆଉ ଗାଳି କଥା ପଦେ ପଦେ ହେଲେ ଶୁଣିବନି ।

ଧନାସିଂହ—କାନ ଧର୍ ।

ଦାରୋଗା—କାନ ଧରୁଚ ।

ଧନାସିଂହ—ଯା ବେଟା । ଶଙ୍କରଲା ମୁହଁଚାହିଁ ଆଜି ଉଠିଥିଲୁ । ନ ହେଲେ ଆଜି ଜୀବନ ଯାଇଥାଆନ୍ତା ।

ଚକ୍ରଧର—ଦାରୋଗାଙ୍କ, ଏଠାରୁ ଯାଇ ସିପାହୀମାନଙ୍କୁ ଡାକଆଣି ଏ ଗରିବମାନଙ୍କୁ ଭୁଣି ଦବନି ତ !

ଦାରୋଗା—ନାଇଁ ନାଇଁ, ଆମେ ସେମିତି ହେଇନୁ ମ ମହାତ୍ମା !

ଦାରୋଗାଙ୍କ ତ ଏଠାରୁ ଜୀବନ ଧରି ଚାଲିଗଲେ । କିନ୍ତୁ ଦପ୍ତରରେ ପହଞ୍ଚି ସିପାହୀମାନଙ୍କୁ ହୁରିକଲେ । ଜିଲା ହାକିମଙ୍କୁ ଟେଲିଫୋନ କରିଦେଲେ । କିଏ ବନ୍ଧୁକ ଧରି ଯୁଦ୍ଧ ପାଇଁ ପ୍ରସ୍ତୁତ ହୋଇଗଲେ । ଚାହୁଁ ଚାହୁଁ ସିପାହିଦଳ ସଙ୍ଗୀନ୍ ଧରି ଭିତରକୁ ମାଡ଼ି ଚାଲିଲେ । ପଛେ ପଛେ ଦାରୋଗାଙ୍କ ଯାଇ କଇଦୀମାନଙ୍କୁ ଚାରିପଟୁ ଘେରିଗଲେ ।

ଚକ୍ରଧରଙ୍କ ଉପରେ ଚାରିଆଡ଼ୁ ବ୍ୟଙ୍ଗବାଣୀ ବର୍ଷା ହେଲା ।

ଧନାସିଂହ—ଏବେ କହ ଭଗତଙ୍କ, ଛଡ଼େଇ ତ ଦେଲ । ଏବେ ଯାଇ ବୁଝ୍, ନ କାହିଁକି ? ଯଦ ଗୁଳ ଗୃଳବ !

୧ମ କଇଦ—ଯଦ ଗୁଳ ଗୃଳବ, ପଛୁଲେ ଯ୍ୟାକୁଇ ଚଟଣି କର ଦବା ।

ଚନ୍ଦ୍ରଧର— ତୁମେମାନେ ଶାନ୍ତ ରହିଲେ ଗୁଳ ଗୃଳବନ । ସେଥିପାଇଁ ମୁଁ ଦାୟୀ ।

ଧନାସିଂହ—ତୁମେ ତାଙ୍କ ସହିତ ସଲସୁତୁରା କରଛ ।

୨ୟ କଇଦ—ଦଗାବାଜ୍ । ପକା ଥାପଡ଼େ ।

ଚନ୍ଦ୍ରଧର—ମୋତେ ମାଇଲେ ତୁମର ଯଦ ମଙ୍ଗଳ ହବ, ତେବେ ତାହାହିଁ କର ।

୩ୟ କଇଦ—ତୁମେ କଣ ନଜ ଭଲ ଦମସ୍ତଙ୍କୁ ଭାବଚ ! ଏବେ ତୁମ ଯୋଗୁଁ ଆମେ ମରବୁ କ ନାହିଁ !

ଚନ୍ଦ୍ରଧର ଆଗକୁ ଆସି କହିଲେ—ଦାରୋଗାଙ୍କ, ଆପଣ କ'ଣ ଚାହାନ୍ତି ? ଏ ଗରିବମାନଙ୍କୁ କାହିଁକି ଘେର ରହିଛନ୍ତି ?

ଦାରୋଗାଙ୍କ ସିପାହିମାନଙ୍କ ଆଡ଼କୁ ଚାହିଁ କହିଲେ—ଏଇ ହଉଚ ମେର ଝୁଣ୍ଟ । ଅଗେ ଯ୍ୟାକୁ ଗିରଫଦାର କର । ବାକ ଦବୁଗୁଡ଼ାଙ୍କୁ ଖୁବ୍ ପିଟ । ପିଟିପିଟି ଏ କୁକୁରଗୁଡ଼ାଙ୍କର ଅଦାରସ ନକାଲ ଦଅ । ଏଡ଼େ ସାହସ, ମୋ ଦେହରେ ଟିପ ଦେବେ ?

ଚନ୍ଦ୍ରଧର—ଆପଣମାନେ କଇଦମାନଙ୍କୁ ମାରବା କଛ ମଜା କଥା ବୋଲ ଭାବନ୍ତୁ ନାହିଁ ।

ଧନାସିଂହ—ମୁହଁ ସମ୍ଭାଳ କଥାବାର୍ତ୍ତା କର ଦାରୋଗାଙ୍କ ।

ଦାରୋଗା—ମାର ଏ ସୁଅରୁ ଗୁଡ଼ାକୁ ।

ସିପାହିମାନେ କଇଦମାନଙ୍କ ଉପରକୁ ମାଡ଼ ଆସିଲେ । ବନ୍ଧୁକ କୁନ୍ଦାରେ ପିଟିବା ଆରମ୍ଭ କରଦେଲେ । ଚନ୍ଦ୍ରଧର ଦେଖିଲେ ଅବସ୍ଥା ଖରାପ ହେବାକୁ ଯାଉଛି । କହିଲେ—ଦାରୋଗାଙ୍କ, ଏ ଅନର୍ଥ କରନ୍ତୁ ନାହିଁ ।

କଇଦମାନେ ଫାଉଡ଼ା, କୋଦାଳ ଓ ପଥର ଧରି ଯୁଦ୍ଧକୁ ପ୍ରସ୍ତୁତ ହୋଇଗଲେ । ଚନ୍ଦ୍ରଧର ନମ୍ରତାପୂର୍ବକ କହିଲେ—ଦାରୋଗାଙ୍କ, ମୁଁ ଆପଣଙ୍କୁ ପୁଣି ବୁଝେଇ କହୁଛି ।

ଦାରୋଗା—ଚୁପ୍ ରହ ଶୁଅରକା ବଚ୍ଚା ।

ଚନ୍ଦ୍ରଧର ଆଉ ସମ୍ଭାଳ ପାରଲେ ନାହିଁ । ସଞ୍ଚାଣ ଭଳ ଦାରୋଗା ଆଡ଼କୁ ଝପଟିଲେ । ଏଣେ କଇଦମାନଙ୍କ ଉପରେ କୁନ୍ଦା ଆରମ୍ଭ ହୋଇଯାଇଥିଲ । ଚନ୍ଦ୍ରଧରଙ୍କୁ ଆଗେଇବା ଦେଖି ଅନ୍ୟ ସମସ୍ତେ ପଥର ବର୍ଷା ଆରମ୍ଭ କରଦେଲେ ।

ଚନ୍ଦ୍ରଧର ପ୍ରକୃତିସ୍ଥ ହୋଇ ଦେଖିଲେ ପରିସ୍ଥିତ ଅତ୍ୟନ୍ତ ଗମ୍ଭୀର ହେବାକୁ ଯାଉଛି । ସିପାହିମାନେ ଗୁଳ ଗୃଳନା ଯଦ ଆରମ୍ଭ କର ଦଅନ୍ତି ତେବେ ଶବ ଗଦା ହୋଇଯିବ ।

ହିଂସା ଭାବକୁ ଦ୍ରବତ କରିବାର ଏଇ ହେଉଛି ଅସଲ ସୁଯୋଗ । ଖୁବ୍ ପାଟିକରି କହିଲେ—ପଥର ଫିଙ୍ଗ ନାହିଁ । ପଥର ଫିଙ୍ଗା ବନ୍ଦ କର । ସିପାହିମାନଙ୍କ ହାତରୁ ବନ୍ଧୁକ ଛଡ଼ାଇ ନିଅ ।

ସିପାହିମାନେ ସଙ୍ଗୀନ ଚାଳନା କରିବାକୁ ଚାହୁଁଥିଲେ । କିନ୍ତୁ ସେମାନଙ୍କୁ ସେ ସୁଯୋଗ ମିଳିଲା ନାହିଁ । ଜଣେ ଜଣେ ସିପାହି ଉପରେ ଦଶ ଦଶ ଜଣ କଇଦୀ ମାଡ଼ି ବସିଲେ । ଚାହୁଁ ଚାହୁଁ ସେମାନଙ୍କଠାରୁ ସମସ୍ତ ବନ୍ଧୁକ ଛଡ଼େଇ ନେଇଗଲେ ।

କଇଦୀମାନଙ୍କ ଉପରେ ଗୁଳି ପଡ଼ିଲେ ସେମାନେ ସାବାଡ଼ ହୋଇଯିବେ ବୋଲି ଭାବିଥିଲେ । ବର୍ତ୍ତମାନ ଭାବିଲେ—ଆକ୍ରମଣ କରି ଭୁଲ ହୋଇଚି ! ଯେଉଁ କଇଦୀମାନଙ୍କୁ ସିପାହିମାନେ ପାଦର ଧୂଳି ବୋଲି ମନେ କରୁଥିଲେ ଏବେ ସେଇ କଇଦୀଙ୍କ ସାମନାରେ ଠିଆ ହୋଇ ଦୟା ପ୍ରାର୍ଥନା କରିବାକୁ ଲାଗିଲେ । ଦାରୋଗାଜୀଙ୍କର ଅବସ୍ଥା ତ ଫଟୋ ଉଠାଇବା ଯୋଗ୍ୟ ଦେଖାଯାଉଥିଲା । ସେ ଥର ଥର କମ୍ପୁଥିଲେ । ଚତୁର୍ଦ୍ଦିଗ ତାଙ୍କୁ ଅନ୍ଧକାର ଦେଖାଯାଉଥିଲା ।

କଇଦୀମାନେ ଦେଖିଲେ, ବର୍ତ୍ତମାନ ଆମର ରାଜ୍ୟ । ଧନାସିଂହ ଦାରୋଗାଜୀ ପାଖକୁ ଦୌଡ଼ି ଆସି ଏକ ଧକ୍‌କା ପକାଇ କହିଲା—କ'ଣରେ ଖାଁ ସାହେବ, ଉପାଡ଼ିବି ଦାଢ଼ୀରୁ ଗୋଟିଏ ଗୋଟିଏ କରି ବାଳ !

ଚକ୍ରଧର—ଧନାସିଂହ, ହଟିଯାଅ ।

ଧନାସିଂହ—ମରିବାକୁ ହେବ, ଛାଡ଼ିବି କାହିଁକି ?

ଚକ୍ରଧର—ମୁଁ କହୁଚି, ହଟିଯାଅ, ନ ହେଲେ କିଛି ଭଲ ହବ ନାହିଁ ।

ଧନାସିଂହ—ଭଲ ହଉ କି ମନ୍ଦ ହଉ—ଆମ ସହିତ ଯେମିତି ବ୍ୟବହାର କରିଚି, ତା'ର ମଜା ନ ଚଖେଇ ଛାଡ଼ିବୁ ନାହିଁ ।

୧ମ କଇଦୀ—ହାଡ଼ ସବୁ ଭାଙ୍ଗି ଦିଅ । ଦି ଚାରି ବର୍ଷ ଆଉ ଅଧିକ ସଜା ହବ ତ ହଉ ! ଏବେ କୋଉ ସୁଖଟେ ଭୋଗ କରୁଚେ କି !

ଚକ୍ରଧର—ମୋ ଆଖି ଆଗରେ ଏ ଅନର୍ଥ ହେବ ନାହିଁ ।

ଧନାସିଂହ—ଯଦି ଏତେ ଧର୍ମାତ୍ମା, ତେବେ ତାକୁ ବୁଝେଇଲ ନାହିଁ କିଆଁ ! କୁକୁରକୁ ମାରିବାକୁ ଦୟା ଆସେ । ଆମେ କଣ କୁକୁରଠୁ ହୀନ ?

ଏହି ସମୟରେ ସଦର ଫାଟକରେ ଗହଳି ଶୁଭିଲା । ଜିଲା ମାଜିଷ୍ଟ୍ରେଟ ମିଃ ଜିମ୍ ସଶସ୍ତ୍ର ସିପାହି ଏବଂ ଅଫିସରମାନଙ୍କୁ ସଙ୍ଗରେ ନେଇ ପହଞ୍ଚିଗଲେ । ଦାରୋଗାଜୀ ଭିତରକୁ ଆସିବା ବେଳେ ଫାଟକ ବନ୍ଦ କରି ଦେଇଥିଲେ । ତାଙ୍କର ବନ୍ଦ କରିବାର କାରଣ, କୌଣସି କଇଦୀ ଯେପରି ପଳେଇ ନ ଯାଆନ୍ତି । ଏ ଗହଳି ଶୁଣି ଚକ୍ରଧର ବୁଝିଗଲେ ଯେ, ପୁଲିସ

ଆସିଗଲେ । କହିଲେ—ଭାଇମାନେ, କାହିଁକି ନିଜ ଜୀବନର ଶତ୍ରୁ ହେବାକୁ ଯାଉଛ । ବନ୍ଧୁକ ରଖିଦିଅ ଏବଂ ଯାଇ ଫାଟକ ଖୋଲ । ପୁଲିସ ଦଳ ଆସିଗଲେ ।

ଧନାସିଂହ—କିଛି ଚିନ୍ତା ନାହିଁ । ଆମେ ଅଗେ ଏମାନଙ୍କ କଥା ବୁଝିସାରୁ, ମରବୁତ ଦାଗୃରଟାକୁ ମାର ମରବୁ ।

କଇଦୀମାନେ ସଙ୍ଗୀନ ଚଢ଼େଇ ପ୍ରଥମେ ଦାରୋଗା ଆଡ଼କୁ ଝପଟିଲେ । ତାଙ୍କ ଗୁଳିରେ ଭୁଷିଦେବା ଅବସ୍ଥାରେ ଚକ୍ରଧର 'ଧନାସିଂହ ତୁମକୁ ଭଗବାନଙ୍କ ଟଣ'···କହି ଦୌଡ଼ି ଆସି ଦାରୋଗା ସାହେବଙ୍କ ଆଗରେ ଠିଆ ହୋଇଗଲେ । ଧନାସିଂହ ପୂର୍ଣ୍ଣ ଆକ୍ରମଣ ଉପରେ ଥିଲା । ସଙ୍ଗୀନ ଆସି ଚକ୍ରଧରଙ୍କର କାନ୍ଧରେ ବାଜିଲା । ସଙ୍ଗୀନର ଅଧେ ପଶିଗଲା । ଡାହାଣ ହାତରେ ସଙ୍ଗୀନକୁ ଧରି ସେ ବସିପଡ଼ିଲେ । ସେ ପଡ଼ିଯିବାର ଦେଖି କଇଦୀମାନଙ୍କର ହୋସ୍ ଉଡ଼ିଗଲା । ସମସ୍ତେ ଦୌଡ଼ି ଆସି ତାଙ୍କ ଗୁର ପାଖରେ ଠିଆ ହୋଇଗଲେ । ଧନାସିଂହ ବନ୍ଧୁକ ଫିଙ୍ଗି ଦେଇ କହିଁ କହିଁ ହୋଇ କାନ୍ଦି ଉଠିଲା । ଦାରୋଗା ସୁଯୋଗ ପାଇ ଫାଟକ ଖୋଲି ଦେବା ପାଇଁ ସଦର ଫାଟକ ଆଡ଼କୁ ଦୌଡ଼ିଲେ ।

ଧନାସିଂହ ଦେଖିଲା—ଏଇ ଚଣ୍ଡାଳ ସବୁ କାଣ୍ଡର ମୂଳ । ତାର ହିଂସ୍ର ବୃତ୍ତି ଏତେ ଜାଗ୍ରତ ହୋଇ ଉଠିଲା ଯେ—ବନ୍ଧୁକ ଧରି ତାଙ୍କ ପଛରେ ଦୌଡ଼ିଲା । ଏହା ଦେଖି ଚକ୍ରଧର କାନ୍ଧକୁ ଚପିଧରି ତା' ପଛେ ପଛେ ପାଟି କରି ଦୌଡ଼ିଲେ । ଚକ୍ରଧରଙ୍କର ପାଟି ଶୁଣି ଧନାସିଂହ ଗୃହିଁ ଦେଖିଲା—ଆରେ ଭଗତଜୀ ବଞ୍ଚିଛନ୍ତି ! ସେ ଖୁସି ହୋଇଗଲା ଏବଂ ବନ୍ଧୁକ ଫିଙ୍ଗିଦେଇ ଆସି ତାଙ୍କ ଗୋଡ଼ ତଳେ ପଡ଼ି କାନ୍ଦିବାକୁ ଲାଗିଲା ।

ଚକ୍ରଧର କହିଲେ—ସିପାହିମାନଙ୍କୁ ଛାଡ଼ି ଦିଅ ।

ଧନାସିଂହ—ହଁ ଛାଡ଼ି ଦିଅ । ତୁମର କ'ଣ ହେଇଚ ?

ଚକ୍ରଧର—ଦେଖାଯାଉ, ବଞ୍ଚୁଛି କି ନାହିଁ ।

ମିଷ୍ଟର ଜିମ୍ ସଶସ୍ତ୍ର ପୁଲିସ ସହ ଆସି ପହଞ୍ଚିଗଲେ । ତାଙ୍କୁ ଦେଖି ସବୁ କଇଦୀ ଯେ ଯୁଆଡ଼େ ପାରିଲା ପଳେଇ ଗଲେ । କେବଳ ଚକ୍ରଧର ଓ ଧନାସିଂହ ରହିଗଲେ । ସିପାହିମାନେ ମୁକ୍ତ ହୋଇ ବନ୍ଧୁକ ସମ୍ଭାଳି ଧାଡ଼ିରେ ଠିଆ ହୋଇଗଲେ ।

ଜିମ୍—ଓ୍ୱେଲ ଦାରୋଗାଜୀ, ହାଲ କ'ଣ ?

ଦାରୋଗା—ହଜୁର୍ କଇଦୀ ପଳେଇଗଲେ ।

ଜିମ୍—ଇଏ ପଡ଼ିଚି କିଏ ?

ଦାରେଗା—ଏଇ ଲୋକ ଆମକୁ ସାହାଯ୍ୟ କଲା ହଜୁର୍ । ନାମ ତା'ର ଚକ୍ରଧର ।

ଜିମ୍—ଆଚ୍ଛା । ଚକ୍ରଧର । ବିଦ୍ରୋହ ମାମଲାରେ ଯିଏ ଆମ ଇଜଲାସରୁ ସଜା ପାଇଥିଲା ?

ଦାରୋଗା—ହଁ ହଜୁର୍ । ସେଇ ଆମ ଜୀବନ ବଞ୍ଚେଇଛି । ତା'ଜାଗାରେ ଏବେ ଯେଉଁ ଜଖମ ହୋଇଛି, ତାହା ମୋ ସ୍ତରରେ ହୋଇଥା'ନ୍ତା ।

ଜମ୍—ଏଇ କଇଦୀମାନଙ୍କୁ ବନ୍ଦ କେଇ ଥିଲା ?

ଦାରୋଗା—ନାଇଁ ହଜୁର୍ । ଇଏ ତ କଇଦୀମାନଙ୍କୁ ବୁଝେଇ ସୁଝେଇ ଥଣ୍ଡା କଲା ।

ଜମ୍—ତୁମେ କିଛି ଜାଣିନାହଁ । ଏ ଲୋକ ପ୍ରଥମେ କଇଦୀମାନଙ୍କୁ ଭଡ଼କାଏ, ତା'ପରେ ସେମାନଙ୍କ ତରଫରୁ ହାକିମଙ୍କ ସଙ୍ଗେ ଲଢ଼େ । ଏ ଲୋକ କଇଦୀମାନଙ୍କୁ ମେଳେଇ ଜେଲ କାମ ବନ୍ଦ କରି ଦେବାକୁ ଚାହେଁ ।

ଦାରୋଗା—ଦେଖିବାକୁ ତ ହଜୁର୍ ବହୁତ ସାଦାସିଧା ମାଲୁମ୍ ପଡ଼ୁଛି । ମନର କଥା ଖୋଦା ଜାଣନ୍ତି ।

ଜମ୍—ଖୋଦା ଜାଣିଲେ କିଛି ହବନି, ତୁମେ ଜାଣିବା ଉଚିତ । ପ୍ରତ୍ୟେକ କଇଦୀଙ୍କ ପ୍ରତି ଦୃଷ୍ଟି ରଖିବା ଉଚିତ । ଏ ଲୋକ କଇଦୀଙ୍କୁ ଧର୍ମକଥା ତ କହୁନି ?

ଦାରୋଗା—ଧର୍ମ କଥା ତ ବହୁତ କହୁଚି ହଜୁର୍ । କଇଦୀମାନେ ଯାଙ୍କୁ 'ଭଗତ' ବୋଲି ଡାକୁଛନ୍ତି ।

ଜମ୍—ଓ···ତାହାହେଲେ ଇଏ ବଡ଼ ଭୟଙ୍କର ଲୋକ । ଧର୍ମକଥା କହୁଥିବା ଲୋକ ପ୍ରତି କଡ଼ା ନଜର ରଖିବା ଦରକାର । କୌଣସି ପଢ଼ାଲେଖା ଲୋକ ଅନ୍ତରରେ ଧର୍ମକୁ ମାନେ ନାହିଁ । ଧର୍ମ ଶିକ୍ଷିତ ଲୋକଙ୍କ ପାଇଁ ନୁହେଁ । ସେମାନଙ୍କ ପାଇଁ ତ Ethics ଯଥେଷ୍ଟ । ଯଦି କୌଣସି ଲେଖାପଢ଼ା ଲୋକ ଧର୍ମ କଥା କହେ, ତେବେ ଜାଣିବ, ସେ ଷଡ଼ଯନ୍ତ୍ର କରୁଛି । Religion (ଧର୍ମ ସହ) Politics (ରାଜନୀତି) ମିଶିଲେ ବଡ଼ ଭୟଙ୍କର ହୋଇଯାଏ । ଏ ଲୋକର କଇଦୀମାନଙ୍କ ପ୍ରତି ସହାନୁଭୂତି ଥିବ ।

ଦାରୋଗା—ହଁ ଆଜ୍ଞା, ସବୁବେଳେ ।

ଜମ୍—ସରକାରୀ ହୁକୁମ୍ ଖୁବ୍ ମାନୁଥିବ ।

ଦାରୋଗା—ହଁ ଆଜ୍ଞା, ସବୁବେଳେ ।

ଜମ୍—କେବେ କୌଣସି ଅଭିଯୋଗ କରୁ ନ ଥିବ । ଯେତେ କଷ୍ଟ କାମ ହେଲେ ବି ଖୁସିରେ କରୁଥିବ ।

ଦାରୋଗା—ହଁ ଆଜ୍ଞା, କେବେ କିଛି ଅଭିଯୋଗ କରେ ନାହିଁ । ଏମିତି ସରଳ ଲୋକ ତ ମୁଁ ଦେଖି ନାହିଁ ।

ଜମ୍—ଏମିତି ଲୋକ ଅତି ଭୟଙ୍କର । ଏଭଳି ଲୋକଙ୍କୁ ଆଦୌ ବିଶ୍ୱାସ କରିବ ନାହିଁ । ଆମେ ତା' ନାମରେ ମୋକଦ୍ଦମା ଚଲେଇବି । ଯାଙ୍କୁ ଖୁବ୍ କଡ଼ା ସଜା ଦେବି । ସିପାହିମାନଙ୍କୁ ଦପ୍ତରକୁ ଡାକ । ମୁଁ ବୟାନ ନେବି ।

ଦାରୋଗା—ହଜୁର୍ । ପ୍ରଥମେ ଏହାଙ୍କୁ ଡାକ୍ତରସାହେବଙ୍କୁ ଦେଖେଇ ଦେବା । କାଲେ ସଞ୍ଚିଯିବ ।

ଜମ୍—ହେ ଯଗବାନ । ଏଭଳି ଭଦ୍ରଙ୍କର ଲୋକ ଜେବେ ମରେ ନାହିଁ । ଯଦି ବା ମରିଯାଏ, ଅମର କିଛି କ୍ଷତି ନାହିଁ ।

ଦାରୋଗା—ହଜୁର୍, ତା' ହାଲତ୍ (ଅବସ୍ଥା) ଟିକିଏ ଦେଖନ୍ତୁ । ସର୍ବାଙ୍ଗ ବାଳି ରକ୍ତରେ ବୁଡ଼ି ଯାଇଛି । ମୁହଁ ଶେତା ପଡ଼ିଯାଇଛି ।

ଜମ—କିଛି ପରଓ୍ୱା ନାହିଁ ।

ଏହା କହି ସାହେବ ଦପ୍ତର ଆଡ଼କୁ ଗଲେ । ଧନାସିଂହ ଏ ଯାଏଁ ଠିଆ ହୋଇଥିଲା, ଡାକ୍ତର ସାହେବ ଆସିବେ ବୋଲି । ଯେତେବେଳେ ସେ ଦେଖିଲା ଯେ ଜମ୍ ସାହେବ ସେଥିପ୍ରତି ଦୃଷ୍ଟି ଦେଲେ ନାହିଁ । ତେଣୁ ସେ ଚଉଧରଙ୍କୁ କାନ୍ଧାଇ ଧରି ହସପାତାଲ ଆଡ଼କୁ ଗଲା ।

( ୧୯ )

ଯେମିତି ଠାକୁର ସାହେବ ଘରେ ପାଦ ଦେଇଛନ୍ତି, ଲବଙ୍ଗ ଆସି ପଚାରିଲା, ସେଠାରେ କ'ଣ ସବୁ କଥାବାର୍ତ୍ତା ହେଲା ।

ଦେଓ୍ୱାନ—ହେଲା ଆଉ କ'ଣ ! ବିବାହ ଠିକ୍ ହୋଇଗଲା ।

ଲବଙ୍ଗ—କଣ ହେଲା ! ମୁଁ ଏତେ ବୁଝେଇ କହିଥିଲି······—

ଦେଓ୍ୱାନ—ଭାଗ୍ୟରେ ଯାହାର ଯାହା ଅଛି ।

ଲବଙ୍ଗ—ଯାହାଠାରେ ପୌରୁଷ ନାହିଁ, ସେ କେବଳ ଭାଗ୍ୟ ଉପରେ ଭରସା କରେ । ଝିଅଟାକୁ ନଈରେ ବୁଡ଼େଇ ଦେଲ ? ଲାଜ ଲାଗୁନି ଯେ, କହୁଚ ଭାଗ୍ୟରେ ଯାହା ଅଛି !

ଦେଓ୍ୱାନ—ତୁମେ ମୋତେ ଯେତେ ଗଧ ବୋଲି ଭାବୁଛ, ମୁଁ ସେପରି ନୁହେଁ । ମୁଁ ରାଜାସାହେବଙ୍କ ଜାତକ ଜଣେ ବଡ଼ ଜ୍ୟୋତିଷକୁ ଦେଖାଇଲି । ସେ ଯେତେବେଳେ ବସି ଗଣନା କରି ରାଜାସାହେବଙ୍କ ଆୟୁଷ ଖୁବ୍ ବେଶି ବୋଲି କହିଲେ, ଯାଇ ରାଜି ହେଲି ।

ଲବଙ୍ଗ—ରାଜା କୋଉ ଜ୍ୟୋତିଷକୁ ଶିଖେଇ ଆଣି ଠିଆ କରେଇଥିବ ।

ଦେଓ୍ୱାନ—ମୋତେ କଣ ନିପଟ ମୂର୍ଖ ବୋଲି ମନେ କରିଛ ?

ଲବଙ୍ଗ—ମୂର୍ଖ ନୁହଁ ଅଉ କ'ଣ ! କିଏ ତୁମକୁ ଦେଓ୍ୱାନ୍ କଲା କେଜାଣି ! ଆଚ୍ଛା, ସେ ଜ୍ୟୋତିଷ କିଏ ?

ଦେଓ୍ୱାନ—ଏଇ ସହରର ପ୍ରସିଦ୍ଧ ଜ୍ୟୋତିଷ । ତାଙ୍କୁ ମୁଁ ପୂର୍ବରୁ ଭଲ ଭାବରେ ଜାଣେ । ତାଙ୍କୁ ମୁଁ ଡ଼କେଇ ଆଣି ଏକ ଅଲଗା କୋଠରିରେ ବସେଇ ଗଣନା କରେଇଲି । ସେ କହିଲେ କିଛି ଆଶଙ୍କା କରନ୍ତୁ ନାହିଁ । ରାଜା ଭଲ ହୁଅନ୍ତୁ । ରାଜାଙ୍କର ବୟସ ୧୬୫ ବର୍ଷ ।

ଲବଙ୍ଗ—ସେ ଜ୍ୟୋତିଷକୁ ତୁମେ କାଲି ମୋ ପାଖକୁ ଡାକି ଆଣିବ ।

ଦ୍ୱିତୀୟ ଦିନ ସକାଳୁ ଜ୍ୟୋତିଷକୁ ଡ଼ାକି ଆଣିବା ପାଇଁ ଲବଙ୍ଗ ଖାସ୍ ଲଗେଇଲେ । ଦେଓ୍ୱାନ ସାହେବଙ୍କୁ କିଛି ଉପାୟ ଦେଖାଗଲା ନାହିଁ । ସେ ଯାଇ ମୁନ୍‌ସୀ ବଜ୍ରଧରଙ୍କ ପାଖରେ ପହଞ୍ଚିଲେ । ବଜ୍ରଧର ସମସ୍ତ କଥା ଶୁଣି କହିଲେ—ଆପଣ ଭଲ ରୋଗଟିଏ ମୂଲେଇଲେ । କଡ଼ା କରି ତ ପଦେ କହିଦେଇ ଆଅନ୍ତେ—'ଚୁପ୍‌ଚାପ୍ ବସ, ତୋତେ ଏତେ କଥାରୁ କଣ ମିଳିବ !

ଦେଓ୍ୱାନ—ଭାଇ ମୋର ଏତେ ସାହସ ନାହିଁ । ସେ ଯେବେ କେବେ ଟିକିଏ ରୁଷିଯାଏ, ତେବେ ମୁଁ ଖୁସାମତ କରି କରି ନାକେଦମ୍ ହୋଇଯାଏ । ତା' ବିନା ମୁଁ ବଞ୍ଚି ପାରିବି—ଏ କଳ୍ପନା ମୁଁ କରିପାରୁ ନାହିଁ । ସେ ମୋ ଘରର ଲକ୍ଷ୍ମୀ । ଆପଣଙ୍କର କୌଣସି ଜ୍ୟୋତିଷ ଚିହ୍ନା ଅଛନ୍ତି ।

ମୁନ୍‌ସୀ—ଚିହ୍ନା ତ ଅନେକ ଅଛନ୍ତି । କିନ୍ତୁ କାହା ଦ୍ୱାରା କାମ ହାସଲ ହୋଇ ପାରିବ ଦେଖିବା କଥା । ପ୍ରକୃତ ଜ୍ୟୋତିଷ ତ କେବେ ଏ ସୁଅଙ୍ଗ କରିବନି । କାହାକୁ ଗୋଟେ ଜ୍ୟୋତିଷ ବନେଇବାକୁ ପଡ଼ିବ ।

ଏହା କହି ମୁନ୍‌ସୀ ଭନ୍‌କୁକୁ ଡକେଇଲେ । ଏ ବିଦ୍ୟାରେ ସେ ଓସ୍ତାଦ୍ । ସଙ୍ଗେ ସଙ୍ଗେ ପ୍ରସ୍ତୁତ ହୋଇଗଲା । ଘରକୁ ଯାଇ ଚିତା ତିଳକ କଲା । କାନ୍ଧରେ ରାମନାମାବଳୀ ଗୋଡ଼ାଇ ପକେଇଲା । ମୁଣ୍ଡରେ ପଗଡ଼ି । ଗୋଟେ ବସ୍ତାନି କାଖରେ ଜାକି ପହଞ୍ଚିଗଲା । ମୁନ୍‌ସୀଙ୍କ ତାକୁ ଦେଖି କହିଲେ—ହାଁ ଠିକ୍ ହେଲା ଯେ, ଟିକିଏ ବାକି ରହିଗଲା । ପେଟ ଟିକିଏ ନ ବାହାରିଲେ କେହି ଜ୍ୟୋତିଷ ପଣ୍ଡିତ ବୋଲି ଭାବିବେନି । ପେଟ ଟିକିଏ ବାହାରକୁ ବାହାରିଲେ ତାର ମର୍ଯ୍ୟାଦା ଅଧିକ । ସିଏ ଶେଠ ହେଉ, ପଣ୍ଡିତ ହେଉ, ଅଫିସର ହେଉ—ପେଟୁଆ ଟିକିଏ ନ ହେଲେ ହୁକୁମ୍‌ଟା ସେତେ କାର୍ଯ୍ୟ କରିବ ନାହିଁ ।

ଭନ୍‌କୁ—ସରକାର, ପେଟ ଯଦି ଥାଆନ୍ତା, ଏଣେତେଣେ ବୁଲୁଥାଆନ୍ତି କାହିଁ ! ତବଲା ନ ଥିଲେ ତ ପେଟକୁ ବାଡ଼େଇ କାମ ଚଳାନ୍ତି । କିନ୍ତୁ କିଛି ପରୁଆ ନାହିଁ । ଏଠି ଅପେଟୁଆ ଅନେକ ପଣ୍ଡିତ ଅଛନ୍ତି । ପେଟରୁ କ'ଣ ମିଳିବ ସରକାର । ମୁଁ ଯଦି ମାଲିକାଣୀଙ୍କୁ ଖୁସି କରେଇ ନ ଦେଇଚି ତେବେ ମୋ ନାକ କାଟିଦେବେ ହଜୁର । ମୁଁ ଏଡ଼େ ଅନାଡ଼ି ନୁହଁ ।

ଧନଞ୍ଜୟଙ୍କ ମୋଟରରେ ବସି ଘରେ ପହଞ୍ଚିଲେ । ଦେଓ୍ୱାନସାହେବ ଭିତରକୁ ଯାଇ କହିଲେ—ବହୁ ଖୋସାମତରେ ଜ୍ୟୋତିଷ ପଣ୍ଡିତ ଆସିଲେ । ମୁନ୍‌ସୀଜୀ ଆସି କହିଲେ—ପଣ୍ଡିତଜୀ ଚୌକିରେ ବସିବେନି । କିଛି ନୂଆ ଆସନ ବିଛାନ୍ତୁ । ଯାହାହେଉ, ଆଜି କେମିତି କେଜାଣି ଆସିଗଲେ । ନ ହେଲେ ଦପ୍ତରର ପୂର୍ବରୁ ଲକ୍ଷେ ଟଙ୍କା ଦେଲେ ବି କୁଆଡ଼େ ଟିକିବେନାହିଁ ।

ପଣ୍ଡିତଙ୍କ ବଡ଼ ଗର୍ବର ସହ ମୋଟରରୁ ଓହ୍ଲାଇ ଆସି ଆସନ ଉପରେ ବସିଲେ । ଲବଙ୍ଗ ତାଙ୍କ ଆଡ଼କୁ ଧ୍ୟାନର ସହ ନିରୀକ୍ଷଣ କରି କହିଲେ—ଆପଣ ଜ୍ୟୋତିଷୀ ? ଜ୍ୟୋତିଷଙ୍କର କଣ ଏମିତି ରୂପ ? ମୋତେ ଗୋଟେ ଭଣ୍ଡ ଭଳି ଲାଗୁଛି ।

ମୁନ୍‌ସୀଜୀ ଜିଭ କାମୁଡ଼ି ପକାଇଲେ । ଦେଓ୍ୱାନ ସାହେବ ଆଙ୍ଗୁଠି କାମୁଡ଼ି ଗୁଡ଼ିରେ ହାତ ମାଇଲେ । ଭିକ୍‌ଲୁର ମୁହଁ ଶେତା ପଡ଼ିଗଲା । ମୁନ୍‌ସୀଜୀ କହିଲେ—ଏ କି କଥା କହୁଛ ଲବଙ୍ଗରାଣୀ । ଘରକୁ ଡ଼ାକି ମହାତ୍ମାମାନଙ୍କୁ ଇମିତି ସମ୍ମାନିତ କରାଯାଏ ?

ଲବଙ୍ଗ—ଲାଲା, ତୁମେ ବହୁତ ଦିନ ତହସିଲଦାରୀ କରିଛ । ମୋ ବାଳ ମଧ୍ୟ ଭୁଆରେ ପାଚି ଯାଇନି । ଗୋଟେ ବହୁରୂପୀକୁ ଆଣି ଠିଆ କରେଇ ଦେଇ କହୁଛ କଣ ନା ଜ୍ୟୋତିଷ ? ଏମିତି ରୂପ ଜ୍ୟୋତିଷର ? କେତେ ମାସ ହେଲା ହେବ ଯେମିତି ପେଟରେ ଦାନା ପଡ଼ିନାହିଁ ।

ଭିକ୍‌ଲୁ—ମାତା, ତୁ ମୋତେ ବଡ଼ ଅପମାନ ଦେଲୁ । ଆଉ ମୁଁ ଏଠାରେ କ୍ଷଣକ ପାଇଁ ମଧ୍ୟ ରହି ପାରିବି ନାହିଁ । ଏହାର ଫଳ ଭୋଗିବୁ ।

ଲବଙ୍ଗ—ଯାଅ ଯାଅ—ଚାଲିଯାଅ ମୋ ଘରୁ । ଧୂର୍ତ୍ତ, ବଦମାସ । ବଡ଼ ଜ୍ୟୋତିଷ ତ, ବତା ମୋର ବୟସ କେତେ ? ଲାଲା, ତୁମର ଧନଲୋଭ ଅଛି ତ, ଯେତେ ଦରକାର ମୋଠୁ ନେଇଯାଅ । କିନ୍ତୁ ମୋ ଝିଅକୁ କୂଅରେ ପକେଇ ଦିଅ ନାହିଁ । କାହିଁକି ତାର ଶତ୍ରୁ ହୋଇ ବାହାରୁଚ ? ବୁଢ଼ାଟା ସଙ୍ଗରେ ଯୁବତୀ ଝିଅ କେମିତି ସୁଖରେ ରହିବ, ଏ କଥା କଣ ତମେ ବୁଝି ପାରୁନାହଁ ? ଧନ ଥିଲେ କ'ଣ ବୁଢ଼ା ଯୁବକ ହୋଇଯାଏ ?

ଭିକ୍‌ଲୁ—ମାତାଜୀ, ରାଜାସାହେବଙ୍କ ଆୟୁ ଜ୍ୟୋତିଷ ବିଦ୍ୟା ଅନୁସାରେ···

ଲବଙ୍ଗ—ତୁ ପୁଣି ପାଟି ଫିଟେଉଚୁ ? ଚୁପ୍ ହୋଇ ବସ୍ ।

ଭିକ୍‌ଲୁ—ଦେଓ୍ୱାନ ସାହେବ, ଆଉ ମୁଁ ରହି ପାରିବି ନାହିଁ ।

ଲବଙ୍ଗ—କାହିଁକି ? ଦକ୍ଷିଣା ନବୁନି ?

ଏହା କହି କୋଠରି ଭିତରକୁ ଗଲେ ଏବଂ କଜଳପାତିରୁ କଜଳ ବାହାର କରି ବାହାରକୁ ଆସିଲେ । ଗୋଟେ ହାତରେ ଭିକ୍‌ଲୁର ବେଣୀ ଧରି ଅନ୍ୟ ହାତରେ ତା' ମୁହଁରେ କଜଳଯାକ ବୋଳି ଦେଲେ । ଭିକ୍‌ଲୁ ବହୁତ ଡ଼ିଆଁ-ଉକୁଟା, କଲା, ଖୁବ୍ ଛଟପିଟି ହେଲା ।

କିନ୍ତୁ ଲବଙ୍ଗ ତାକୁ ଛାଡ଼ିଲେ ନାହିଁ । ସତେ ଯେପରି ହଣାଣ କାପଡ଼ାକୁ ଧରିଛି । ଦେଓ୍ୱାନ ସାହେବ ଆଉ ହସ ରୋକି ପାରିଲେ ନାହିଁ । ହସିଦେଲେ ଅଡ଼ୁଆ ହେବ । ତେଣୁ ହସ ଜୋର୍‌ରେ ମୁହଁରୁ କଥା ବାହାରିଲା ନାହିଁ । ଲବଙ୍ଗ କହିଲେ ମେଞ୍ଚାଏ ଚୂନ ଆଣ ତ । ପୂଜା ଦକ୍ଷିଣା ଦେଇଦେବି । ଧନ୍ୟ ଭାଗ୍ୟ ମୋର, ଆଜି ଜ୍ୟୋତିଷ ମହାଶୟଙ୍କର ଦର୍ଶନ ହେଲା !

ମୁନ୍‌ସୀଜୀଙ୍କର କ୍ରୋଧ ଜାତ ହେଲା । ସେ ଲବଙ୍ଗଙ୍କ ହାତକୁ ଧରି ପକାଇ ଭିନ୍‌କୁ ଛଡ଼େଇବାକୁ ଚେଷ୍ଟା କଲେ । ଲବଙ୍ଗ ଗୋଟିଏ ହାତରେ ଭିନ୍‌କୁର ବେକକୁ ଧରିଥିଲେ । ଏବେ ଅନ୍ୟ ହାତରେ ମୁନ୍‌ସୀଜୀଙ୍କ ବେକକୁ ଧରି କହିଲେ, ଜୋର ଦେଖେଇ ହଉଚ ଲାଲା ! ବଡ଼ ମରଦ ତ । ବହୁତ ଦୁଧ ଘିଅ ମାଗଣାରେ ଖାଇଚ ।

ଦେଓ୍ୱାନ—ମୁନ୍‌ସୀଜୀ, କ'ଣ ସେମିତି ନର୍ତ୍ତକର ଠିଆ ହୋଇଥିବେ ?

ମୁନ୍‌ସୀ—ଆପଣ କ'ଣ ହସୁଛନ୍ତି !

ଦେଓ୍ୱାନ—ଆଉ କ'ଣ କରିବି ?

ଲବଙ୍ଗ—ଜ୍ୟୋତିଷ ମହାଶୟ, ଜ୍ୟୋତିଷ ବିଦ୍ୟାର ଜୋର୍ ଦେଖଉନ କାହିଁ ? କ'ଣଟରେ, ଆଉ ଜ୍ୟୋତିଷ ହବୁ ?

ଭିନ୍‌କୁ—ନାହିଁ ମାତାଜୀ, ବଡ଼ ଅପରାଧ କଲି, କ୍ଷମା କରନ୍ତୁ ।

ଲବଙ୍ଗ ଦେଓ୍ୱାନ ସାହେବଙ୍କୁ ଚାହିଁ କହିଲେ—ମୋ ସହିତ ଖେଳ୍ ଖେଳୁଛ । ଧନ ଓ କ୍ଷମତା କ'ଣ ସନ୍ତାନଠାରୁ ବଡ଼ ! ଲଗେଇ ଦିଅ ନିଆଁ ଏ ଘରେ । ଚପିଦିଅ ଝିଅର ଗଳା । ମରିଗଲେ ଗଲା, ଜୀବନସାରା କାହିଁକି ଦୁଃଖ ପାଇବ ? ଝିଅ ବିକି ଧନ ଓ କ୍ଷମତା କିଣାଯାଏ ନାହିଁ । ଏହା ହେଉଛି ନୀଚ ଲୋକଙ୍କ କାମ ।

ମୁନ୍‌ସୀଜୀ, ମୁଁ ତୁମକୁ ଏତେ ନୀଚ ଓ ସ୍ୱାର୍ଥପର ବୋଲି କେବେ ଭାବି ନ ଥିଲି । ତୁମର ମରିବା ଦିନ ଆସି ପହଞ୍ଚିଲଣି । କାହିଁକି ମୋର ବୋଝ ମୁଣ୍ଡଉଚ ! ଆଉ ଶୁଣ ଜ୍ୟୋତିଷଜୀ, ଆଉ କେବେ ଭୁଲରେ ଏ ମୁହଁ ବାହାର କରିବନି । ଠକି କରି ପେଟ ପୋଷିବା ଅପେକ୍ଷା ମରିଯିବା ଭଲ୍ । ଯାଅ ।

ଭିନ୍‌କୁ ଛଟିପିଟି ହୋଇ ଚାଲିଗଲା । କିନ୍ତୁ ମୁନ୍‌ସୀଜୀ ମୁଣ୍ଡ ପୋତି ଛିଡ଼ା ହୋଇ ରହିଲେ । କିଛିଏ ସମୟ ପରେ ମୁନ୍‌ସୀଜୀ ଦେଓ୍ୱାନ ସାହେବଙ୍କୁ କହିଲେ—ତେବେ କ'ଣ ମୁଁ ଯାଇ ରାଜା ସାହେବଙ୍କୁ କହିଦେବି—ଏ ବିବାହ ହୋଇ ପାରିବ ନାହିଁ ବୋଲି ?

ଦେଓ୍ୱାନ—ପୁଣି ମୋତେ ପଚାରୁଛନ୍ତି ! ଏ ଯାଏ କିଛି ଜାଣି ପାରିଲେ ନାହିଁ । ଯାଇ ସଫା ସଫା ମନା କରି ଦିଅନ୍ତୁ ।

ଲବଙ୍ଗ—କିଏ ଯାଇ ମନା କରିବ ! କ'ଣ ତାମସା ଲଗିଛି ? ଯାହା ତ ହବାର ହେଲା । ରାମନାମ ସ୍ମରଣ କରି ବାହା ଦିଅ । ପୁରୋହିତଙ୍କୁ ଡାକି ଲଗ୍ନ ବେଳା ଠିକ୍ କର ଏବଂ ନିମନ୍ତ୍ରଣ ପଠାଇ ଦିଅ । ଗୋଟିଏ ବୋଲି ଝିଅ । ମନଖୋଲି କାମକର ।

ମୁନ୍‌ସୀଙ୍କ ଦଣ୍ଡର ପୁରସ୍କାର ମିଳିଗଲା । ଆନନ୍ଦରେ ନାଚି ଉଠିଲେ ।

ଆଜିଠାରୁ ବିବାହ ପାଇଁ ଯୋଗାଡ଼ ଚାଲିଲା । ତିନି ମାସ ଭିତରେ ସମସ୍ତ ପ୍ରସ୍ତୁତ ହୋଇଗଲା । ବିବାହ ମୁହୂର୍ତ୍ତ ନିକଟ ହୋଇ ଆସିଲା ।

ହଠାତ ଦିନେ ସନ୍ଧ୍ୟାରେ ଖବର ମିଳିଲା ଯେ ଜେଲରେ ଦଙ୍ଗାହାଙ୍ଗାମା ହୋଇଯାଇଛି । ଚକ୍ରଧରଙ୍କ କାନ୍ଧରେ ଭୟଙ୍କର ଚୋଟ ବସିଛି । ବଞ୍ଚିବା ମୁସ୍କିଲ ।

ବିବାହ ପ୍ରସ୍ତୁତିରେ ତ ମନୋରମା ଖୁସି ଦେଖାଯାଉଥିଲା । କିନ୍ତୁ ହୃଦୟ କାନ୍ଦି ଉଠୁଥିଲା । କୌଣସି ଅଜ୍ଞାତ ଭୟ, ଅଲକ୍ଷିତ ବେଦନା, ଅତୃପ୍ତ କାମନା, ଗୁପ୍ତ ଚିନ୍ତା ହୃଦୟକୁ ମନ୍ଥି ପକାଉଥିଲା । ଅନ୍ଧ ଭଳି ଏଣେ ତେଣେ ବୁଲୁଥିଲା । ଚାଲିବାକୁ ମାର୍ଗ କିମ୍ବା ବିଶ୍ରାମ ପାଇଁ ଆଶ୍ରୟ ମିଳୁ ନ ଥିଲା ।

ଏହି ସମୟରେ ଏ ଭୟଙ୍କର ଖବର ଶୁଣି ମନୋରମା ସ୍ତବ୍ଧ ହୋଇ ପଡ଼ିଲା । ଆସି ଲବଙ୍ଗକୁ କହିଲା—ଲବଙ୍ଗ ମା', କଣ କରିବି, ବାବୁଜୀଙ୍କୁ ନ ଦେଖି ମୁଁ ରହି ପାରିବି ନାହିଁ । ମା', ଘା' ଭଲ ହୋଇଯିବ ନା !

ଲବଙ୍ଗ କରୁଣ ନେତ୍ରରେ ଚାହିଁ କହିଲେ—ଭଲ ହେବେ ନ କାହିଁକି ମା, ଭଗବାନଙ୍କ ଦୟାରୁ ଶୀଘ୍ର ଭଲ ହୋଇଯିବେ ।

ସହସା ମନୋରମା ବାହାରକୁ ଯାଇ କାର୍ ଆଣିବାକୁ କହିଲା—ଏବଂ ତହିଁରେ ବସି ରାଜଭବନ ଆଡ଼କୁ ଚାଲିଲା । ରାଜା ସାହେବ ଏଣିକି ଆସୁଥିଲେ । ସେ ମନୋରମାର ଇତସ୍ତତଃ ଅବସ୍ଥାକୁ ଦେଖି କହିଲେ—ତୁମେ କାହିଁକି ଆସିବାକୁ କଷ୍ଟ କଲ ! ମୁଁ ତ ଯାଉଥିଲି ।

ମନୋରମା—ଆପଣ ଜେଲରେ ଦଙ୍ଗା ହେବାର ଖବର ଜାଣିଛନ୍ତି ତ ?

ରାଜା—ହଁ, ମୁନ୍‌ସୀ ବଜ୍ରଧର ଏବେ କହୁଥିଲେ ।

ମନୋରମା—ବାବୁଜୀଙ୍କୁ ଭୟଙ୍କର ଆଘାତ ଲାଗିଛି ।

ରାଜା—ହଁ ତାହା ମଧ୍ୟ ଶୁଣିଛି ।

ମନୋରମା—ତେବେ ତାଙ୍କୁ ଜେଲ ବାହାରେ ହାସପାତାଲରେ ଚିକିତ୍ସା ପାଇଁ ଆଣିବାର ବ୍ୟବସ୍ଥା ନ କଲେ କାହିଁକି ? ଆପଣଙ୍କ ହୃଦୟ ବଡ଼ କଠୋର ।

ରାଜା ଟିକିଏ ଚିଡ଼ି ଉଠି କହିଲେ—ତୁମ ଭଳି ଉଦାର ହୃଦୟ କେଉଁଠୁ ଆଣିବି ?

ମନୋରମା—ମୋ ଠାରୁ ମାଗି ନେଲେନି କାହିଁକି ? ବାବୁଜୀଙ୍କୁ ଖୁବ୍ ଆଘାତ ଲାଗିଛି । ଯଦି ଉପଯୁକ୍ତ ଚିକିତ୍ସା କରା ନ ଯାଏ, ତେବେ ବଞ୍ଚିବା ଅସମ୍ଭବ । ଜେଲରେ କିପରି ଚିକିତ୍ସା ହୁଏ, ତାହା ତ ଆପଣ ଜାଣନ୍ତି । ଆପଣ ସାହେବକୁ ଚିଠି ଲେଖି ବାବୁଜୀଙ୍କୁ ବାହାର ହାସପାତାଲକୁ ଆଣିବାର ବ୍ୟବସ୍ଥା କରନ୍ତୁ ।

ରାଜା—ସାହେବ ମାନବ !

ମନୋରମା—ଏଇ ସାମାନ୍ୟ କଥା ମାନବନ !

ରାଜା—କଣ ଯେ ମନରେ ଭାବବ, କିଏ କହିବ !

ମନୋରମା—ଯଦି ଆପଣଙ୍କୁ ମାନସିକ କଷ୍ଟ ହେଉଛି, ରହନ୍ତୁ । ମୁଁ ନିଜେ ଯାଇ ସାହେବଙ୍କୁ ସାକ୍ଷାତ କରିବ ।

ରାଜାସାହେବ ଏ ତିରସ୍କାର ଶୁଣି କହିଲେ—ମୋତେ କଷ୍ଟ ହେଉନାହିଁ । ଏବେ ମୁଁ ଯାଉଛି ।

ମନୋରମା—କେତେ ସମୟ ଭିତରେ ଫେରିବେ ?

ରାଜା—କହିପାରୁନ ।

ଏହା କହି ରାଜା ସାହେବ ମଟରରେ ବସି ମି: ଜିମ୍‌ଙ୍କ ବଙ୍ଗଳାକୁ ଗଲେ । ମନୋରମାର ନିଷ୍ଠୁରତା ତାଙ୍କୁ ବଡ଼ କଷ୍ଟ ଦେଲ । ମୋ ଆରାମ ଏବଂ କଷ୍ଟ ପାଇଁ ଟିକିଏ ଦୁଃଖ ନାହିଁ, ଅଥଚ ଚକ୍ରଧର ପାଇଁ ଏତେ ସ୍ନେହ ! ତାକୁ ପ୍ରେମ କରୁନ ତ ? ନା, ଏହା କଦାପି ସମ୍ଭବ ନୁହେଁ । ସରଳ ହୃଦୟା ବାଳିକା, ଏ କୌଶଳ କ'ଣ ବା ଜାଣେ ! ଚକ୍ରଧର କିନ୍ତୁ ଏପରି ଏକ ବ୍ୟକ୍ତି, ଯାହାକୁ ସମସ୍ତେ ଭଲ ପାଆନ୍ତି । କୌଣସି ମାୟାବିନୀ ସ୍ତ୍ରୀ ଯଦି ହୋଇଥା'ନ୍ତା, ତେବେ ତ ନିଜ ମନୋଭାବ ମୋ ପାଖରେ ଗୁପ୍ତ ରଖିଥାଆନ୍ତା । ଯାହା କିଛି କରନ୍ତା, ଅଦୃଶ୍ୟ ଅଜ୍ଞାତରେ କରନ୍ତା । କିନ୍ତୁ ଏହାର ଛଳନାହୀନ ହୃଦୟରେ କପଟ କାହିଁ ! ଯାହା କିଛି କହିବା କଥା ମୋତେ କହୁଛି । କଷ୍ଟ ହେଲେ ମୋତେ ଶୁଣଉଛି, ମୋ ଉପରେ ପୂରା ବିଶ୍ୱାସ । ଈଶ୍ୱର କରନ୍ତୁ, ସାହେବ ସଙ୍ଗେ ସାକ୍ଷାତ ହୋଇଯାଉ ଏବଂ ମୋର ପ୍ରାର୍ଥନା ଗ୍ରହଣ କରୁ । ତେବେ ସେ କେଡ଼େ ଖୁସି ନ ହେବ !

ଏହି ଚିନ୍ତା କରି କରି ମି: ଜିମଙ୍କ ବଙ୍ଗଳାରେ ଯାଇ ପହଞ୍ଚିଲେ । ସନ୍ଧ୍ୟା ହୋଇଯାଇଥିଲ । ସାହେବ ଭ୍ରମଣ ଉଦ୍ଦେଶ୍ୟରେ ବାହାରିଥିଲେ । ରାଜା ସାହେବଙ୍କୁ ଦେଖି ଜିମ୍ ହାତ ମିଳାଇଲେ ଏବଂ କହିଲେ—ଆପଣ ଜେଲରେ ହୋଇଥିବା ଦଙ୍ଗା ଖବର ଶୁଣିଛନ୍ତି ?

ରାଜା—ଆଜ୍ଞା ହଁ, ଶୁଣି ବଡ଼ ଦୁଃଖ ଲାଗିଲ ।

ଜିମ୍—ସବୁ ତା'ର ନାଟ—ସେଇ ଯୁବକଟାର ।

ରାଜା—ଚକ୍ରଧରଙ୍କୁ କହୁଛନ୍ତି ତ !

ଜିମ୍—ହଁ ହଁ ସେଇ । ବଡ଼ ସାଙ୍ଘାତିକ ବ୍ୟକ୍ତି । ସେଇ କଇଦୀମାନଙ୍କୁ ଉତ୍ତେଜିତ କରିଛି ।

ରାଜା—କିନ୍ତୁ ତା'ର ସଜା ତ ତାକୁ ମିଳି ଯାଇଛି । ଯଦି ବଞ୍ଚିଯାଏ, ତେବେ ବି ଦୁଇ ମାସ ବିଛଣାରେ ପଡ଼ିବ ।

ଜମ—ଏପରି ବ୍ୟକ୍ତି ପାଇଁ ଏତିକ ସଜା ବେଶି ନୁହେଁ । ଆମେ ତା' ନାମରେ ମୋକଦ୍ଦମା କରିବୁ ।

ରାଜା—ମୁଁ ଶୁଣୁଛି, ତା'ର କାନ୍ଧରେ ଭୟଙ୍କର ଚୋଟ ଲାଗିଛି ଏବଂ ମୁଁ ଆପଣଙ୍କୁ ଅନୁରୋଧ କରିବାକୁ ଆସିଛି ଯେ ତାକୁ ସହରର ବଡ ହାସ୍ପାତାଳରେ ରଖାଯାଉ । ଆପଣଙ୍କର ଏତିକି କୃପା ହେଲେ ସେ ଗରିବଟାର ଜୀବନ ରହିଯିବ ଏବଂ ଜିଲ୍ଲାରେ ଆପଣଙ୍କ ସୁନାମ ବଢ଼ିବ । ମୁଁ ତା'ର ଜିମା ନେଇପାରେ ।

ଜମ୍—ଗୋଟାଏ ଅପରାଧୀ ପ୍ରତି ଆମେ କଦାପି ଢ଼ିଲା ହୋଇ ନ ପାରୁ । ଆପଣ ଜାଣନ୍ତି ମୋଗଲ କିମ୍ବା ମରହଟ୍ଟା ଶାସନ ହୋଇଥିଲେ, ଏପରି ଆଦମୀକୁ କଣ ସଜା ମିଳିଥା'ନ୍ତା । ତା'ର ଚମଡ଼ା ଉତୁରି ଯାଇଥା'ନ୍ତା! କିମ୍ବା ଦୁଇଟାଯାକ ହାତ କଟା ଯାଇଥା'ନ୍ତା । ଆମେ ନିଜ ଶତ୍ରୁ ପ୍ରତି ଦୟାବାନ୍ ହେବୁ ନାହିଁ ।

ରାଜା—ହଜୁର, ଶତ୍ରୁ ପ୍ରତି ଦୟା ଆଚରଣ କରିବା ହେବ ତା' ପ୍ରତି ବଡ଼ ଦଣ୍ଡ । ଆପଣ ଯାହା ପ୍ରତି ଦୟାଶୀଳ ହେବେ, ସେ କଦାପି ଆପଣଙ୍କ ପ୍ରତି ଶତ୍ରୁତା କରିବ ନାହିଁ । ସେ ନିଜ କାର୍ଯ୍ୟରେ ଲଜ୍ଜିତ ହେବ ଏବଂ ସବୁଦିନ ପାଇଁ ଆପଣଙ୍କ ଅନୁଗତ ହୋଇଯିବ ।

ଜମ୍—ରାଜା ସାହେବ, ଆପଣ ବୁଝୁନାହାଁନ୍ତି । ସେ ଲୋକ ପ୍ରତି ବହୁତ ଦୟା ପ୍ରଦର୍ଶନ କରାଯାଇଛି । କିନ୍ତୁ ଅପରାଧୀର ହୃଦୟ ବାଲି ପଡ଼ିଆ ପରି । ତହିଁରେ ଟୋପେ ହେଲେ ପାଣି ନ ଥାଏ କି ତାକୁ ଜଳ ଦ୍ୱାରା ସିଞ୍ଚାଯାଇ ପାରେ ନାହିଁ । ଲୋକଠାରେ ଯେତେ ଧର୍ମ ଓ ଭଲପଣିଆ ଥାଏ, ସେ ସବୁ ଦୂର ହୋଇଗଲେ ସେ ଅପରାଧୀ ହୋଇଯାଏ । ତାକୁ ମନୁଷ୍ୟତା ଦ୍ୱାରା ଆପଣ ଜାଣି ପାରିବେ ନାହିଁ ।

ରାଜାସାହେବ ଭାବିଥିଲେ ଯେ ସାହେବ ସହଜରେ ତାଙ୍କ କଥା ଗ୍ରହଣ କରିଯିବେ । ସାହେବଙ୍କ ପାଖକୁ ସେ ପ୍ରତିଦିନ କିଛି ନା କିଛି ଉପହାର ପ୍ରେରଣ କରୁଥିଲେ । ତାଙ୍କ ଜିଦ୍ ଦେଖି ଚିଡ଼ିଯାଇ କହିଲେ—ମୁଁ ତ ଆପଣଙ୍କୁ ବିଶ୍ୱାସ ଦଉଛି—ହାସପାତାଳରେ ତା' ପ୍ରତି ତୀକ୍ଷ୍ଣ ଦୃଷ୍ଟି ଦିଆଯିବ । ଆପଣ ମୋ କଥା ଗ୍ରହଣ କରିବାରେ ଆପତ୍ତି କ'ଣ ଅଛି ।

ଜମ୍ ସ୍ମିତ ହସି କହିଲେ—ମୋ ପଲିସି ଆପଣଙ୍କ ଆଗରେ ବ୍ୟାଖ୍ୟା କରିବା ମୁଁ ଜରୁରୀ ମନେ କରୁ ନାହିଁ ।

ରାଜା—ମୁଁ ତାକୁ ଜାମିନରେ ନେବାକୁ ପ୍ରସ୍ତୁତ ।

ଜମ୍—(ହସି) ଆପଣ ତା' ଜଭକୁ ଜାମିନରେ ନେଇ ପାରିବେନି । ପ୍ରତିଦିନ ତାକୁ ଦେଖିବା ପାଇଁ ଶହ ଶହ ଲୋକ ଆସିବେ । ଆପଣ ତ ସେମାନଙ୍କୁ ରୋକି ପାରିବେ ନାହିଁ । ମୂର୍ଖ ଗାଉଁଲି ଲୋକେ ଭାବିବେ—ସରକାର ଏ ବ୍ୟକ୍ତି ପ୍ରତି ବଡ଼ ଅତ୍ୟାଚାର କରୁଛି । ତାକୁ ଦେଖି ଦେଖି ଲୋକେ ଉତ୍ତ୍ୟକ୍ତ ହେବେ । ତାକୁ ଆପଣ କିପରି ରୋକିବେ ?

ରାଜା ସାହେବ ମନରେ ଭାବିଲେ—ଏ ଲୋକଟାର ମୁହଁ ଦେଖିବା କଥା ନୁହେଁ । ଚାଲିଯିବା ଭଲ । କିନ୍ତୁ ଚାଲିଗଲେ କ'ଣ ହବ ? ତେଣେ ମନୋରମା ରାହା ଚାହିଁଥିବ । ହେ ଭଗବାନ୍, ଏ ଲୋକଟାର ହୃଦୟରେ ଟିକିଏ ଦୟା ଜାତ କରାଅ । କହିଲେ—ଆପଣ ତ ହୁକୁମ୍ ଦେଇ ପାରିବେ ଯେ ସମ୍ପର୍କୀୟ ବ୍ୟକ୍ତିମାନଙ୍କ ବ୍ୟତୀତ ତା' ପାଖକୁ ଅନ୍ୟ କେହି ଯାଇ ପାରିବେ ନାହିଁ ବୋଲି ।

ଜିମ୍—ମୋ ହୁକୁମ୍‌ରେ ଏତେ ତାକତ ନାହିଁ ଯେ, ହାସପାତାଲକୁ ଜେଲ ବନେଇ ଦେବ ।

ଏହା କହି ଜିମ୍ ଘୋଡ଼ାଗାଡ଼ିରେ ବସି ଭ୍ରମଣରେ ଚାଲିଗଲେ ।

ରାଜାସାହେବ ଦେଖିଲେ, ଫେରିଗଲେ ମନୋରମା ମନରେ ଭୀଷଣ ଦୁଃଖ ଜାତ ହେବ । ନା, ଯା ପିଛା ଛାଡ଼ିବ ନାହିଁ । ଅପମାନ ହେଉ, ଚିନ୍ତା ନାହିଁ ।

କିଛି ସମୟ ଯାଏ ସେ ବଗିଚାରେ ଟହଲିଲେ । ତା'ପରେ କାର୍‌ରେ ଘଣ୍ଟେ ଯାଏଁ ଏଣେ ତେଣେ ବୁଲି ଆଠଟା ବେଳକୁ ଫେରି ଦେଖିଲେ ସାହେବ ଫେରିନି । ପୁଣି ଯାଇ ଘଣ୍ଟେ ପରେ ଫେରିଲେ । ତଥାପି ଫେରିନି । ଏହିଭଳି ତିନଥର ଫେରିବା ପରେ ଭାବିଲେ—ରାତି ଏତେ ହେଲାଣି । ଏଣିକି ତ ନିଶାରେ ଟଳ୍‌ଟଳ୍ ହୋଇ ଫେରିବ । ହଉ ଫେରୁ । ଦେଖିଲେ ଅନ୍ତତଃ ଭାବିବ ତ, ଏ ବିଚାରା ଏ ଯାଏଁ ଫେରିନି ବୋଲି । କାଳେ ଦୟା ହେବ ।

ରାତି ଗୋଟାଏ ବେଳେ ସାହେବ ଫେରିଲେ । ରାଜା ସାହେବ ଆସି ଘୋଡ଼ାଗାଡ଼ି ପାଖରେ ଠିଆ ହୋଇଗଲେ । ନିଶାରେ ଟଳମଳ ହୋଇ ସାହେବ ଗାଡ଼ିରୁ ଓହ୍ଲାଇ ରାଜାଙ୍କୁ ଦେଖି କହିଲା—ହେ, ହେ, ତୁମେ ଏଠି କାହିଁକି ଠିଆ ହେଇଚ ? ଭାଗୋ—ଭାଗୋ, ଚାଲିଯା ।

ରାଜା—ହଜୁର୍, ମୁଁ ରାଜା ବିଶାଲ ସିଂହ ।

ସାହେବ—ଓ ଡ୍ୟାମ୍ ରାଜା, ଅବ୍ ନିକଲ ଯାଓ । ତୁମେ ବି ବିଦ୍ରୋହୀ । ତୁମେ ବିଦ୍ରୋହୀର ସୁପାରିଶ କରୁଛ । ବିଦ୍ରୋହୀକୁ ଆଶ୍ରୟ ଦେଉଛ । ଏଣେ ସରକାରର ଦୋସ୍ତ ହେଉଛ । ଅଭି ନିକଲ୍ ଯାଓ । ରାଜା ଆଉ ରଇତ ସବୁ ଏକା । ଆମେ କାହାରି ଉପରେ ଭରସା କରିବୁ ନାହିଁ । ଆମକୁ ଆମ ଶକ୍ତି ଉପରେ ଭରସା । ରାଜାର କାମ ବିଦ୍ରୋହିଙ୍କୁ ଧରିବା, ତାଙ୍କ ପାଇଁ ସୁପାରିଶ କରିବା ନୁହେଁ । ଅଭି ନିକଲ୍ ଯାଓ ।

ଏହା କହି କହି ସେ ରାଜା ସାହେବଙ୍କ ଆଡ଼କୁ ଛଡିଟି ଫିଙ୍ଗିଲା । ରାଜାସାହେବ ଖୁବ୍ ବଳୁଆ ଲୋକ । ଏପରି ଦୁଇ ଜଣଙ୍କୁ ସେ ଏକାଙ୍କା ଚେପି ଦେବେ । କିନ୍ତୁ ପରିଣାମର ଭୟ ତାଙ୍କୁ ପଙ୍ଗୁ କରିଦେଲା । ଗୋଟିଏ ଧକ୍‌କାରେ ୫ କୋଟି ଟଙ୍କାର ସମ୍ପତ୍ତି ହାତରୁ ଯିବ । ପରିସ୍ଥିତି ମଧ୍ୟ ତାଙ୍କ ପ୍ରତିକୂଳରେ ଥିଲା । ଏତେ ରାତିରେ ବଙ୍ଗଳାକୁ ଆସିବାଟା ପ୍ରମାଣିତ ହେବ ଯେ— ତୁମର ଉଦ୍ଦେଶ୍ୟ କଦାପି ଭଲ ନ ଥିଲା । ତେଣୁ କରୁଣ ଭାବରେ କହିଲେ—ସାହେବ, ଏମିତି

କହିଲେ । ମୁଁ ସନ୍ଧ୍ୟାବେଳୁ ଏ ଯାଏଁ ଆପଣଙ୍କ ଦୁଆରେ ଠିଆ ହୋଇଛି—ଏଥିପ୍ରତି ଟିକିଏ ଦୃଷ୍ଟି ଦିଅନ୍ତୁ । କହିବେ ତ ଆପଣଙ୍କ ପାଦତଳେ ବି ପଡ଼ିବି—ଯାହା କହିବେ ତାହା କରିବାକୁ ମୁଁ ପ୍ରସ୍ତୁତ । ମୋ ଅନୁରୋଧ ରକ୍ଷା କରନ୍ତୁ ।

ଜିମ୍—କଭି ନହିଁ, କଭି ନହିଁ ହୋଗା । ତୁମେ ନିଜ ମତଲବରେ ଅଛ, ନାହିଁ ? ଆମେ ତୁମ କଥା ଖୁବ୍ ବୁଝି ପାରୁଛୁ ।

ରାଜା—ଆଚ୍ଛା, ତେବେ ଏତିକି କରନ୍ତୁ—ମୁଁ ମୋ ଡାକ୍ତର ଜେଲ ଭିତରକୁ ପଠାଇ ଚିକିତ୍ସା କରେଇବି ।

ଜିମ୍—ଓ ଡ଼େମିଟ୍—ବକ୍‌ବକ୍ ମତ୍ କର । କୁତ୍ତା, ସୁଅରକା ବଚ୍ଚା—ଯା, ନ ହେଲେ ଗୋଇଠା ମାରିବି ।

ରାଜାସାହେବ ଆଉ ସମ୍ଭାଳି ପାରିଲେନି । କ୍ରୋଧ ସମସ୍ତ ଦୁର୍ବଳତା, ସବୁ ଚିନ୍ତା ଗିଳି ପକାଇଲା । ରାଜ୍ୟ ରହୁ କି ଯାଉ—ଲୋକେ ଦେଖିବେ । ଜିମ୍ ଗୋଇଠା ମାରିବାକୁ ଗୋଡ଼ ଟେକିଛି କି ନାହିଁ, ସେକେଇଲେ ଗୋଟେ ଧକ୍‌କା ଯେ ଜିମ୍ ଚିତ୍ ହୋଇ ଦୁର୍‌ଜନ ପଡ଼ିଲା । ପୁଣି ଉଠିବାକୁ ଚେଷ୍ଟା କରୁଥିବା ବେଳେ ରାଜା ସାହେବ ତା ଛାତି ଉପରେ ବସି ତୋଟିଟାକୁ ଏପରି ଜୋର୍‌ରେ ଚିପି ଧଇଲେ ଯେ, ଆଖି ଯୋଡ଼ାକ ଫଡ଼ଫଡ଼ ଭଳି ବାହାରକୁ ହତେ ବାହାର ଆସିଲା । ମୁହଁରୁ ଫେଣ ବାହାରି ପଡ଼ିଲା । ପ୍ରଚଣ୍ଡ ନିଶା ସମସ୍ତ ଅଭିମାନ ମୁହୂର୍ତ୍ତିକ ମଧ୍ୟରେ କୁଆଡ଼େ ଅନ୍ତର୍ଦ୍ଧାନ ହୋଇଗଲା ।

ରାଜା ସାହେବ ତୋଟିକୁ କୋହଳ କରି କହିଲେ—ଗଳା ଚିପି ମାରିଦେବି । କଞ୍ଚା ଖାଇ ଯିବି । ମୁଁ ତୋ ଚପରାଶି ନୁହେଁ ।

ଜିମ୍—ଆରେ—ଅରେ ରାଜା ସାହେବ । ମୁଁ ଥଟ୍ଟାରେ ଏମିତି କହୁଥିଲି ନା । ଏଇଥି ପାଇଁ ତୁମେ ଏତେ ବିଗିଡ଼ି ଗଲ । ଆପଣ ତ ପଢ଼ିଲ୍‌ମାନ । ଥଟ୍ଟା କଥାକୁ ଖରାପ ମନେ କରୁଛ ?

ରାଜା—ନାହିଁ ଆଜ୍ଞା—ମୁଁ ମଧ୍ୟ ଥଟ୍ଟା କରୁଛି ଯେ । ହଉ, ଏଇ ତ ଆପଣ ମୋତେ ଥଟ୍ଟା କରିବେ ନାହିଁ ?

ଜିମ୍—ନା, ନା—କଭି ନାହିଁ ।

ରାଜା—ମୁଁ ଯୋଉ କଥା କହିଲି, ଆପଣ ତାହା ମାନିବେ କି ନାହିଁ ?

ଜିମ୍—ମାନିବି, ସିଓର୍ ମାନିବି । ସକାଳ ହେଲେ ଅର୍ଡ଼ର ଦେବି ।

ରାଜା—ଯଦି ଦଗାବାଜ୍ କରିବ, ଏମିତି ପାନେ ଦେବି ଯେ, ସବୁଦିନ ପାଇଁ ମନେ ରହିବ ।

ଏହା କହି ରାଜା ସାହେବ ମି: ଜମ୍‌ଙ୍କ ଉପରୁ ଉଠି ଆସିଲେ । ଜମ୍ ସାହେବ ଧୂଳି ଝାଡ଼ ଝାଡ଼ ହୋଇ ଉଠିଲେ ଏବଂ ରାଜା ସାହେବ ସହ ହାତ ମିଳାଇଲେ । ଟିକିଏ ହେଲେ ଶାନ୍ତି ଭଙ୍ଗ ହେଲା ନାହିଁ । ଜମ୍ ସାହେବର ସଇସ ବ୍ୟତୀତ ଏ ମଲ୍ଲଯୁଦ୍ଧ ଆଉ କେହି ଦେଖି ନାହାନ୍ତି । ତା'ର ମଧ୍ୟ ଭୟରେ ପାଟି ଖୋଲିବାକୁ ସାହାସ ହେଲା ନାହିଁ ।

ରାଜାସାହେବ ଭାବି ଭାବି ଯାଉଥିଲେ — ଏ ଲୋକଗୁଡ଼ାକ ଜବାବ ଖିଲାପ କରନ୍ତି ନାହିଁ । ଦେଖିବା ସକାଳେ । ଯଦି ହୁକୁମ୍ ନ ଦବ ପୁଣି ଆସିବି । ମୋତେ ପୁଣି ଦେଖିଲେ ଭାବିବ ତ ଜବାବ ଖିଲାପ କରୁଛି ବୋଲି । ସଜ୍ଜନତା ଦ୍ୱାରା ଯଦି ନ ହେଲା — ଏଇ ବାଡ଼ରେ ହଉ ।

ସାଢ଼େ ଗୋଟାଏ ବେଳେ ଘରେ ପହଞ୍ଚି ଦେଖିଲେ ଘରର ନୌକର ତାଙ୍କ ବାଟକୁ ଚାହିଁ ରହିଛନ୍ତି । ମନୋରମା ବାରଣ୍ଡାରେ ଠିଆ ହୋଇଛି । ବିସ୍ମିତ ହୋଇ ପଚାରିଲେ — ତୁମେ ଏତେ ରାତିଯାଏଁ ଘରକୁ ଯାଇନ ?

ମନୋରମା — ଗୋଟେ ବହି ପଢ଼ୁଥିଲି । କ'ଣ ହେଲା ?

ରାଜା — କୋଠରି ଭିତରକୁ ଚାଲ, କହୁଛି ।

ରାଜା ସାହେବ ସବୁ କଥା ମୂଳରୁ ଚୂଳ ଯାଏଁ ବନେଇ ଚୁନେଇ କହିଗଲେ । ମନୋରମା ତନ୍ମୟ ହୋଇ ଶୁଣିଗଲା । ଯେତକ ଯେତକ ଏ ବୃତ୍ତାନ୍ତ ସେ ଶୁଣୁଥିଲା, ତାର ଅନ୍ତର ସେତକ ରାଜା ସାହେବଙ୍କ ଆଡକୁ ଆକର୍ଷିତ ହେଉଥିଲା । ମୋ ପାଇଁ ଏତେ କଷ୍ଟ ଏବଂ ଅପମାନ ସହିଲେ । ବୃତ୍ତାନ୍ତ ସମାପ୍ତ ହେବା ପରେ ସେ ପ୍ରେମ ଓ ଭକ୍ତିରେ ଗଦ୍ ଗଦ୍ ହୋଇ ରାଜା ସାହେବଙ୍କ ପାଦ ତଳେ ପଡ଼ିଗଲା ଏବଂ କଠିନ ସ୍ୱରରେ କହିଲା—ମୁଁ ଆପଣଙ୍କ ଉପକାର କେବେ ଭୂଲି ପାରିବି ନାହିଁ ।

ମନୋରମା ଘରକୁ ଚାଲିଗଲା । ଚତୁର୍ଦ୍ଦିଗ ଅନ୍ଧକାର ଏବଂ ନିସ୍ତବ୍ଧ । କିନ୍ତୁ ତାର ହୃଦୟ ଆଲୋକିତ । ସେହି ଆଲୋକରେ ସଙ୍ଗୀତର ମଧୁର ଧ୍ୱନି ପ୍ରବାହିତ । କାନ ଫୋଡ଼ା ବେଳେ ମିଠାଇ ପାଇଁ ବାଳକ ଯେପରି କାନ ଫୋଡ଼ାକୁ ଭୁଲିଯାଏ, ସେହିପରି ମୁହୂର୍ତ୍ତିକ ପାଇଁ ସେ ଚକ୍ରଧରଙ୍କ ଅବସ୍ଥାକୁ ଭୁଲିଗଲା ।

( ୨୦ )

ମିଷ୍ଟର ଜମ୍ ପରଦିନ ହୁକୁମ୍ ଦେଲେ ଯେ ଚକ୍ରଧରକୁ ଜେଲ ବାହାରେ କୌଣସି ହାସ୍‌ପାତାଲରେ ଚିକିତ୍ସା ପାଇଁ ରଖାଯାଉ । ସକାଳୁ ପରଓ୍ୱାନା ପହଞ୍ଚିଲା । ରାଜା ସାହେବ ଯାଇ ଜେଲ ଭିତରେ ପହଞ୍ଚିଗଲେ । ମନୋରମା ପୂର୍ବରୁ ଯାଇ ପହଞ୍ଚି ଯାଇଥିଲା । କିନ୍ତୁ

ଚନ୍ଦ୍ରଧର ପରିଷ୍କାର କହିଦେଲେ—ମୁଁ ଏହିଠାରେହିଁ ରହିବାକୁ ଚାହେଁ ! ମୋତେ ଅନ୍ୟ କୌଣସି ସ୍ଥାନକୁ ନେବାର ଆବଶ୍ୟକତା ନାହିଁ ।

ଦାରୋଗା—କେତେ ଚେଷ୍ଟା କରି ରାଜା ସାହେବ ଏ ହୁକୁମ ଜାରି କରେଇଛନ୍ତି । ଜବନ ସହିତ ଖେଳୁଛନ୍ତି କାହିଁକି ? ଏଠି ସେବା ଚକାଗ୍ରା କିଛି ନାହିଁ ।

ଚନ୍ଦ୍ରଧର—କେତେ ଲୋକଙ୍କୁ ମୋ ଠାରୁ ବେଶି ଆଘାତ ଲାଗିଛି । ସେମାନଙ୍କର ଯାହା ହବ, ମୋର ବି ସେଇଆ ହେବ ।

ଦାରୋଗା, ରାଜା ସାହେବ, ମନୋରମା ବହୁତ କହିଲେ । ତହସିଲଦାର ସାହେବଙ୍କୁ ଭିତରକୁ ଯିବାକୁ ଅନୁମତି ମିଳିଲା ନାହିଁ । ସେ କହିଥିଲେ ମଧ କିଛି ଫଳ ହୋଇ ନ ଥା'ନ୍ତା । ଦିପ୍ରହର ବେଳକୁ ସମସ୍ତେ ନିରାଶ ହୋଇ ଫେରିଲେ ।

ମୁନ୍‌ସୀଜୀ କହିଲେ—ଛତ୍ରୀର ମୁହଁ ଚାହିଁବାକୁ ଇଚ୍ଛା ହଉନି ।

ରାଜା --ମୋର ଏତେ ଦଉଡ଼ା ଦଉଡ଼ି ସବୁ ମାଟି ହୋଇଗଲା ।

ମନୋରମାକୁ ଚନ୍ଦ୍ରଧରଙ୍କର ଏ ବିଶାଳ ତ୍ୟାଗ ମୁଗ୍ଧ କରୁଥିଲା । ମିଷ୍ଟର କିମ୍‌ଙ୍କୁ ଏ ଖବର ମିଳିଲା । କୌଣସି ଧନାଢ୍ୟ ବ୍ୟକ୍ତି ଆକାଶ ଉପରକୁ ପଇସାଟିଏ ଫିଙ୍ଗି ଦେଇ ମୁହଁ ମୋଡ଼ି ଚାଲିଗଲା ଭଳି ତାଙ୍କୁ ଲାଗିଲା । କୀର୍ତ୍ତି ଇଚ୍ଛୁକ ବ୍ୟକ୍ତି ଯଦି ଦାନ କରେ, ସେ ଭାବେ କିମିତି ନାଁ ହେଉ ଯଶ ମିଳୁ । ଦାନର ଅପମାନ ସେ ସହିପାରେ ନାହିଁ । ମି: କିମ୍ ମନେ ମନେ ଠିକ୍ କଲେ—ଟୋକାର ସର୍ବନାଶ ନ କରି ଛାଡ଼ୁ ନାହିଁ ।

ଚନ୍ଦ୍ରଧର ଦୁଇମାସ ପଡ଼ି ରହିଲେ । ସେବା—ଚକାଗ୍ରା ଯାହା ଯେମିତି ହୋଇଥିବ, ତାହା ପ୍ରିଏ ଜାଣନ୍ତି । କିନ୍ତୁ ଜନତା ଆଶୀର୍ବାଦର ପ୍ରଭାବ ଅଛି ।

ଚନ୍ଦ୍ରଧରଙ୍କ ଉପରେ ନୂତନ ଅଭିଯୋଗ ଯୋଗାଡ଼ କରାଗଲା । ଜେଲ୍ ହାସପାତାଳରୁ ବାହାରିବା ପରେ ପରେ ମକଦ୍ଦମା ଚାଲିଲା । ଜେଲ୍ ଭିତରେ ଇଜଲାସ ହେଲା । ଠାକୁର ଗୁରୁସେବକ ସିଂହ ଡେପୁଟୀ ମାଜିଷ୍ଟ୍ରେଟ । ତାଙ୍କୁ ଏ ମକଦ୍ଦମାର ବିଚାର ଭାର ଅର୍ପଣ କରାଗଲା ।

ଆମର ଏ ଠାକୁର ସାହେବ ବଡ଼ ପ୍ରତାପୀ ଲୋକ । କଇଦୀମାନଙ୍କୁ ସଜା ଦେବାରେ ଇଯ୍ୟେ ଓସ୍ତାଦ । ବଡ଼ ଆଡ଼ମ୍ବରରେ ଏବେ ରହୁଛନ୍ତି । ତାଙ୍କର ଚାଲିଚଳନ, ଖାଇବା ପିଇବା ସବୁ ବଦଳି ଯାଇଛି । ଯେଉଁମାନଙ୍କ ବାଣୀରେ, ବେଶ ଭୂଷାରେ, ବ୍ୟବହାରରେ ପରାଧୀନତାର ଖାଣ୍ଟି ରଙ୍ଗ ବୋଳା ହୋଇଛି, ସେହି ସମାଜରେ ସେ କ୍ଷୀର ନୀର ଭଳି ମିଶିଗଲେଣି । ଲୋକେ ଏବେ ତାଙ୍କୁ 'ସାହେବ' ବୋଲି କହୁଛନ୍ତି । ଖାଲି ସାହେବ ତ ନୁହଁ, ଖାଣ୍ଟି 'ସାହେବ' । ବରଂ ସାହେବମାନଙ୍କଠୁ ଚାରି ଆଙ୍ଗୁଳ ବଡ଼ । କାହାରିକୁ ଛାଡ଼ିବା ଲୋକ ନୁହନ୍ତି । ଆଇନ କାନୁନ ଯାହା ଥାଉ ନା କାହିଁକି—କଡ଼ା ସଜା ଦେବା ତାଙ୍କର କାମ । ତାଙ୍କ ନାଁ ଶୁଣିଲେ ବଦମାସମାନଙ୍କର ଏବେ ପିଳେହି ପାଣି ହୋଇ ଯାଉଛି ।

ଠାକୁର ସାହେବ ସରକାରୀ କାମରେ ଟିକିଏ ଖିଲାପ କରନ୍ତି ନାହିଁ । ଏ ମକଦ୍ଦମା ହାତକୁ ନେଇ ବଡ଼ ଧର୍ମ ସଙ୍କଟରେ ପଡ଼ିଗଲେ । ଧନାସିଂହ ଏବଂ ଅନ୍ୟ ଅପରାଧୀମାନଙ୍କ ବିଷୟରେ କିଛି ଚିନ୍ତା ନ ଥିଲା । ସେମାନଙ୍କ ମିଆଦ ବଢ଼ାଇ ଦେବେ । କାଲ କୋଠରି ସଜା ଦେଇ ପାରିବେ ·ଯେପରି ସୁବୁଦ୍ଧି କରିପାରିବେ । କିନ୍ତୁ ଚକ୍ରଧର କଥା କ'ଣ କରିବେ ? ଯଦି ସଜା ଦେବେ ତେବେ, ଲୋକଙ୍କୁ ମୁହଁ ଦେଖେଇ ହବନି । ମନୋରମା ତ ତାଙ୍କ ମୁହଁ ଗ୍ଡ଼ିବନି । ଛାଡ଼ିଦେବେ; ନିଜ ସମାଜରେ ନିନ୍ଦିତ ହେବେ । କାରଣ ଏମାନେ ସମସ୍ତେ ଚକ୍ରଧର ଉପରେ ରକ୍ତ ଗ୍ଉଳ ଗ୍ହେବାଉଛନ୍ତି ! ଠାକୁର ସାହେବଙ୍କ କାନରେ ଟିକିଏ ପଡ଼ିଥିଲା—ଏହି ମକଦ୍ଦମା ଉପରେ ତୁମର ଭବିଷ୍ୟତ ନିର୍ଭର କରେ ।

ମକଦ୍ଦମା ଗ୍ଲିବାର ୩ୟ ଦିନ । ଗୁରୁସେବକ ବାରଣ୍ଡାରେ ବସି ଶ୍ରାବଣ-ବର୍ଷାର ଆନନ୍ଦ ଉପଭୋଗ କରୁଥିଲେ । ସହସା ମନୋରମା କାର୍‌ରୁ ଓହ୍ଲାଇ ତାଙ୍କ ପାଖରେ ଆସି ପହଞ୍ଚିଲା । ଗୁରୁସେବକ ପଗ୍ଚରିଲେ—କେଉଁଠାରୁ ଆସିଗଲୁ ମନୋରମା ?

ମନୋରମା—ଘରୁ । କେଲ ମକଦ୍ଦମା କ'ଣ ହେଲା ?

ଗୁରୁସେବକ—ଏ ଯାଏଁ ତ କିଛି ହୋଇନି । ସାକ୍ଷୀ ପ୍ରମାଣ ନିଆଯାଉଛି ।

ମନୋରମା—ବାବୁଜୀଙ୍କ ଉପରେ ଦୋଷ ସାବ୍ୟସ୍ତ ହୋଇଗଲା ?

ଗୁରୁସେବକ—ହୋଇଚି, ହୋଇନି—ଏମିତିକା ।

ମନୋରମା—ମୁଁ ବୁଝି ପାରୁନି ।

ଗୁରୁସେବକ—କଥା ହଉଚି—ଦୋଷୀ ସାବ୍ୟସ୍ତ ହେବା ନ ହେବା ଏକା କଥା । ମୋତେ ସଜା ଦେବାକୁ ପଡ଼ିବ । ଯଦି ଛାଡ଼ିଦିଏ, ତେବେ ସରକାର ଅପିଲ୍ କରି ସଜା ଦେବେ । ମୋର କେବଳ ନିନ୍ଦା ହେବ । ମୋ ପାଇଁ ଏହା ଆତ୍ମବଳିଦାନର ପ୍ରଶ୍ନ । ସାରା ଦେବତାମଣ୍ଡଳୀ ମୋ ପ୍ରତି କୁପିତ ହେବେ ।

ମନୋରମା—ତୁମର ଆତ୍ମା କ'ଣ କହୁଛି ?

ଗୁରୁସେବକ—ମୋ ଆତ୍ମା ମୌନ ଅଛି ।

ମନୋରମା—ଏଗୁଡ଼ାକ ମୁଁ ଶୁଣିବି ନାହିଁ । ତୁମର ଆତ୍ମା ତୁମକୁ ନିଶ୍ଚୟ ପରାମର୍ଶ ଦେଉଥିବ ଏବଂ ତାର ପରାମର୍ଶ ମାନିବା ହେଉଛି ତୁମର ଧର୍ମ । ବାବୁଜୀଙ୍କ ସଜା ମାସେ ଦିମାସ ବଢ଼ିଯିବାଟା ବଡ଼ କଥା ନୁହେଁ । କିନ୍ତୁ ତୁମେ କୁଆଡ଼କୁ ହବନି । ସେ ନିରପରାଧ । ତୁମର ଦେବତା ତୁମ ପ୍ରତି ସନ୍ତୁଷ୍ଟ ହୋଇ ପାରନ୍ତି, କିନ୍ତୁ ତୁମ ଆତ୍ମାର ସର୍ବନାଶ ଘଟିବ ।

ଗୁରୁସେବକ—ଚକ୍ରଧର ପୂରା ବେକସୁର ତ ନୁହଁ । ପ୍ରଥମେ ତ ସେ ଦାରୋଗା ଉପରେ କ୍ରୋଧ ପ୍ରକଟ କରିଥିଲେ । ସେ ଯଦି ଯଥା ସମୟରେ ଜାବତ କରିଥାଆନ୍ତେ, ତେବେ ଏ କାଣ୍ଡ ଘଟି ନ ଥାନ୍ତା । ଏ ଦୋଷ ତାଙ୍କ ମୁଣ୍ଡରୁ ଯିବ କିମିତି ।

ମନୋରମା—ଆପଣ କହିବାକୁ ଚାହାନ୍ତି—ଗାଳି ଖାଇ ମଧ୍ୟ ଚୁପ୍ ରହିଥାଆନ୍ତେ ।

ଗୁରୁଦେବକ—ଯଦି ସେ ଜାଣୁଥିଲେ ଯେ ମୁଁ ବିଗିଡ଼ିଲେ ଉପଦ୍ରବର ସମ୍ଭାବନା ଅଛି, ତେବେ ଚୁପ୍ ରହିଯିବା ଉଚିତ ଥିଲା।

ମନୋରମା—ଏବଂ ମୁଁ କହିବି—ସେ ଯାହା କିଛି କରିଥିଲେ, ତାହା କରିବା ତାଙ୍କର ଥିଲା ଧର୍ମ। ଆତ୍ମ ସମ୍ମାନ ରକ୍ଷା କରିବା ଆମର ଶ୍ରେଷ୍ଠ ଧର୍ମ। ଆତ୍ମାକୁ ହତ୍ୟା କରି ଯଦି ସ୍ୱର୍ଗ ମିଳେ, ତେବେ ତାହା ନର୍କ ସମାନ। ଆପଣ ସଫା ସଫା ଲେଖିବା ଉଚିତ ବାବୁଙ୍କ ନିର୍ଦ୍ଦୋଷ। ନିଜ ଜୀବନକୁ ପାଣି ଛଡ଼େଇ ଯିଏ ଜେଲ କର୍ମଚାରୀଙ୍କର ଜୀବନ ରକ୍ଷା କରିଛି, ତା'ର ଜେଲ ମିଆଦ କମେଇ ଦେବା ପାଇଁ ଆପଣ ସୁପାରିଶ କରିବା ଉଚିତ। ସରକାର ଅପିଲ କରୁ, ସେଥିରେ ଆପଣଙ୍କର କିଛି ପ୍ରୟୋଜନ ନାହିଁ। ମୁଁ ଯାହା କହୁଛି, ତାହା କରିବା ଆପଣଙ୍କର କର୍ତ୍ତବ୍ୟ।

ଗୁରୁସେବକ ନିଜ ନିଚତାକୁ ସ୍ମିତ ହସରେ ଲୁଚେଇ କହିଲେ—ନାଆଁକୁ ଡେଇଁ ପଡ଼ିବ ?

ମନୋରମା—ଧର୍ମରକ୍ଷା ପାଇଁ ନାଆଁକୁ ଡେଇଁବା କିଛି ନୂଆ କଥା ନୁହେଁ। ଆପଣଙ୍କ ଉପରେ ଆପଣଙ୍କ ଅଫିସରମାନେ ବିରକ୍ତ ହେବେ—ଏଇ ଡର ତ ଆପଣଙ୍କର ? ସେଥିପାଇଁ ଚିନ୍ତା ନ କରି ନିଜର ଧର୍ମ ପାଳନ କରନ୍ତୁ। ମୋର ଆଶା, ଆପଣଙ୍କର କେହି କିଛି କ୍ଷତି କରି ପାରିବେନି। ସାକ୍ଷୀମାନଙ୍କର ବୟାନ ହୋଇ ଗଲାଣି କି ନାହିଁ ?

ଗୁରୁସେବକ—ହଁ ସରିଲାଣି। ଏବେ ତ ଖାଲି ରାୟ ଦେବାକୁ ବାକି ଅଛି।

ମନୋରମା—ତେବେ ଲେଖନ୍ତୁ। ଆଣିବି ଦୁଆତ କଲମ ?

ଗୁରୁସେବକ—ଲେଖିବି—ଜଲଦି କ'ଣ !

ମନୋରମା—ସେଇଥିପାଇଁ ତ ମୁଁ ଆସିଛି। ଲେଖା ସରିଲେ ଯିବି।

ଗୁରୁସେବକ—ଘର ଭିତରକୁ ଯା। ତୁ ଆସୁନୁ ବୋଲି କେତେ ଅଭିଯୋଗ।

ମନୋରମା—ଟାଳଟୁଳ କରନ୍ତୁନି। ଏବେ ଲେଖ।

ଗୁରୁସେବକ—ରାୟ ଲେଖିବା କ'ଣ ଏଡ଼େ ସହଜ ହୋଇଚି ଯେ, ତୁ କହୁ କହୁ ଲେଖି ଦେବି ? କେତେବେଳ ଯାଏଁ ବସି ରହିବୁ ?

ମନୋରମା—ଅଧଘଣ୍ଟା ଭିତରେ ତ ସରିଯିବ। ନ ହେଲେ କାଲି ସକାଳେ ସରିଯିବ। ମୁଁ ପଢ଼ି ସାରିଲା ପରେ ଯିବି। ସତ୍ୟକୁ କେତେଦୂର ତୁମେ ପାଳନ କରୁଛ, ତାହା ମୁଁ ଦେଖିବାକୁ ଚାହେଁ।

ସହସା ଅନ୍ୟ ଏକ କାର୍ ଆସି ପହଞ୍ଚିଲା। ରାଜା ସାହେବ ତହିଁରୁ ଓହ୍ଲାଇଲେ। ଗୁରୁସେବକ ତାଙ୍କୁ ପାଛୋଟି ଆଣିବାକୁ ଦୌଡ଼ିଲେ। ରାଜା ସାହେବ ତାଙ୍କ ପ୍ରତି ଦୃଷ୍ଟି ନ ଦେଇ ମନୋରମା ପାଖକୁ ଯାଇ କହିଲେ—ଘର, ପାର୍କ, ଚୌକ ସବୁଆଡେ ଖୋଜି ଖୋଜି ଆସିଲିଣି। କେତେଥର କହିଲିଣି—କୁଆଡ଼େ ଗଲେ କହିକରି ଆସିବ ବୋଲି।

ମନୋରମା—ମୁଁ ତ ଭାବିଥିଲି ଆପଣ ଫେରିଲା ବେଳକୁ ଚାଲି ଆସିବ ବୋଲି ।

ରାଜା—କହନ୍ତୁ ଡେପୁଟୀ ସାହେବ, ମିଜାଜ ଠିକ୍ ଅଛି ତ ! କେବେ କେବେ ଭୁଲରେ ହେଉ ପଛେ ଘର ଆଡ଼େ ଆସନ୍ତୁ । ଚାଲ ମନୋରମା, ବର୍ଷା ଆସିଯାଇ ପାରେ ।

ମନୋରମା—ମୁଁ ଆଜି ଯାଉନାହିଁ ।

ରାଜା—ନା ନା, ତୁମେ ନ ଗଲେ ମୋତେ ବଡ଼ ଲଜ୍ଜିତ ହେବାକୁ ପଡ଼ିବ ।

ମନୋରମା ଅସିବାର ଅଭିପ୍ରାୟ ବଦଳାଇ କହିଲେ—ଆପଣ କାଲି ଚାରିଟା ବେଳେ ଆସିବେ । ରାଜା ସାହେବ ମନୋରମା ସହ ହାତ ମିଳାଇ ଚାଲିଗଲେ । ମନୋରମା ଆସି ଗୋଟିଏ ଚୌକିରେ ବସିଲି । ଭାଦ୍ରବ ମାସର ଶମଶମ ବର୍ଷା-ପବନ ନଦୁଆ ହୋଇଥାଏ । ମନୋରମା ଟିକିଏ ଘୁମେଇ ପଡ଼ିଲା । ଚାହୁଁ ଚାହୁଁ ନଘୋଡ଼ ନଦରେ ଶୋଇଗଲା । ଆଖି ଖୋଲି ଦେଖିଲା—ସାମନାରେ ଭଉଜ ଠିଆ ହୋଇ କହୁଛନ୍ତି—ଘରକୁ ଚାଲ ସଦ । ମୋ ଠାରୁ ଏତେ ଦୂରେଇ ରହୁଛ କାହିଁକି ! ମୁଁ କ'ଣ ତମର କଛି ଛଡ଼େଇ ନେଇ ଯାଉଛି ।

ଗୁରୁସେବକ ଲ୍ୟାମ୍ପ ପାଖରେ ବସି ରାୟ ଲେଖୁଥିଲେ । ମନୋରମା ଭଉଜଙ୍କୁ ପଚାରିଲେ—ଭଉଜ, ମୋର ଆଖି ଟିକିଏ ପଡ଼ିଗଲା । ବୋଧେ ସନ୍ଧ୍ୟା ହୋଇଗଲାଣି ।

ଗୁରୁସେବକ କହିଲେ—ସନ୍ଧ୍ୟା ନୁହେଁ, ରାତି ୧୨ଟା ବାଜିବ ।

ମନୋରମା—ତେବେ ଆପଣ ରାୟ ଲେଖି ସାରବେଣି ।

ଗୁରୁସେବକ—ଆଉ ଅଳ୍ପ ସମୟ ପରେ ଶେଷ ହେବ ।

ମନୋରମା କମ୍ପିତ ସ୍ୱରରେ କହିଲା—ଅପଣ ସେ କାଗଜକୁ ଚିରି ଦଅନ୍ତୁ ।

ଗୁରୁସେବକ ବଡ଼ ବଡ଼ ଆଖି କରି କହିଲେ—କାହିଁକି ? କାହିଁକି ଚିରିଦେବ ?

ମନୋରମା—ମୁଁ ସମସ୍ତଙ୍କୁ ଅସନ୍ତୁଷ୍ଟ କାହିଁକି କରିବ ? ଚକ୍ରଧର ତ ମୋତେ ଲାଞ୍ଚ ଦେଇ ନାହାନ୍ତି ଯେ, ତାଙ୍କ ପାଇଁ ମୁଁ ସୁପାରିଶ କରିବ । ସେ ଦନବର୍ଷ ପରିବର୍ତ୍ତେ ଦଶଶ ବର୍ଷ ଜେଲ ଦଣ୍ଡ ଭୋଗିଲେ ମୋର ବା କ'ଣ କ୍ଷତି ହୋଇ ଯାଉଛି । ପୁଣ୍ୟ ଓ ପାପ ଆପଣଙ୍କର । ମୋର କିଛି ଯାଏ ଆସେ ନାହିଁ ।

ଗୁରୁସେବକ—ନା ମନୋରମା, ଆଉ ମୁଁ ଏ ଲେଖା ଚିରି ପାରିବ ନାହିଁ । ମୁଁ ସତ୍ୟର ଅନୁସନ୍ଧାନ କରି ନ ଥିଲି । ମୁଁ ସ୍ପଷ୍ଟ ଜାଣି ପାରୁଛି ଚକ୍ରଧର ସମ୍ପୂର୍ଣ୍ଣ ନିର୍ଦ୍ଦୋଷ । ଜାଣିଶୁଣି ମୁଁ ଅନ୍ୟାୟ କାହିଁକି କରିବ ?

ମନୋରମା—ଆପଣ ରାଜାସାହେବଙ୍କ ମନୋଭାବ ଲକ୍ଷ୍ୟ କଲେ ?

ଗୁରୁସେବକ—ହଁ, କିନ୍ତୁ ସେ ଅପ୍ରସନ୍ନ ହେବେ ବୋଲି କ'ଣ ମୁଁ ମୋ ରାୟ ବଦଳେଇ ଦେବ ? ଏ ହେଉଛି ମୋର ପ୍ରଥମ ରାୟ, ଯାହାକୁ ମୁଁ ପକ୍ଷପାତ ରହିତ ହୋଇ ଦେଖିଛି । ଏ

ବସ୍ତୁ ଲେଖି ମୋତେ ଯେତେ ସନ୍ତୋଷ ଆସୁଛି, ଏଭଳି କେବେ ଆସି ନ ଥିଲା । ଏବେ ତ କେହି ଲକ୍ଷେ ଟଙ୍କା ଦେଲେ ବି ମୁଁ ଏ କାଗଜ ଚିରି ପାରିବି ନାହିଁ ।

ମନୋରମା—ତେବେ ମୋତେ ଦିଅନ୍ତୁ, ମୁଁ ଚିରିଦେବି ।

ଗୁରୁଦେବକ—ନାଇଁ ମନୋରମେ, ମୋର ତ ବିଶ୍ୱାସ ଏ ପଇସାଦ୍ୱାରା ଚନ୍ଦ୍ରଧରଙ୍କର ପ୍ରଥମ ସଜା ମଧ୍ୟ କମିଯିବ । ସମ୍ଭବତଃ ସତ୍ୟ କଳମକୁ ମଧ୍ୟ ତୀକ୍ଷ୍ଣ କରିଦିଏ । ମୁଁ ଏଇ ତିନି ଘଣ୍ଟା ମଧ୍ୟରେ ବିନା ଚିନ୍ତାରେ ୪୦ ପୃଷ୍ଠା ଲେଖି ପାରିଲିଣି । ନ ହେଲେ ତ ପ୍ରତି ଦଶ ମିନିଟ୍‌ରେ ଧୂଆଁ ପିଇବାକୁ ପଡ଼ୁଥାଆନ୍ତା । ।

ମନୋରମା—ଏଥିପାଇଁ କ'ଣ ମୁଁ ପ୍ରଶଂସାଭାଜନ ହେବି ନାହିଁ ?

ଗୁରୁଦେବକ—ସତ୍ୟହିଁ ସ୍ୱୟଂ ପ୍ରଶଂସିତ । ସତ୍ୟଦ୍ୱାରା ଆତ୍ମା ବଳବାନ ହୋଇଥାଏ । ମୁଁ ସତ୍ୟ କହୁଛି, ଏବେ ମୋତେ ଫାଶି ଦେଲେ ଭୟ ଲାଗୁନାହିଁ ।

ମନୋରମା—ଅଚ୍ଛା, ତେବେ ମୁଁ ଆସୁଛି ।

ଭଉଜ—ହିଁ ହିଁ ଯାଅ—ଏଠି କିଏ କାଳର ଅଛି କି ? ମାଆଙ୍କ କ୍ଷୀର ବାହି ପଡ଼ୁଥିବ ।

ମନୋରମା—ଭାଉଜ, ଲବଙ୍ଗ ମାଆକୁ ତୁମେ ଯେତେ କଟୁ ବୋଲି ଭାବୁଛ, ସେ ସେପରି ନୁହନ୍ତି । ତୁମ୍ଭମାନଙ୍କ ପାଇଁ ସେ ଏବେ ବି କାନ୍ଦୁଛନ୍ତି ?

ଭଉଜ—ଆଉ ବେଶିଗୁଡେ କହନ୍ତୁ, ହୃଦୟ ଜଳିଯାଉଛି । ସେ ତ ମରିଗଲେ ବି ଦେଖିବାକୁ ଯିବିନାହିଁ । ଆଉ କେଉଁଠି ଥିଲେ ବାସନ ମାଜୁଥାଆନ୍ତା ? ଏଠିକି ଆସି ରାଣୀ ହେଇଚ । ଉଠ—ଆସ । ଆଜି ତୁମର ଗୀତ ଶୁଣିବି । ଅନେକ ଦିନ ପରେ ଝାପଟରେ ପଡ଼ିଚ ।

ମନୋରମା ଘରକୁ ଫେରି ପାରିଲା ନାହିଁ । ଭୋଜନ ପରେ ଭଉଜ ପାଖରେ ଗଡ଼ପଡ଼ ହେଲା । ଭଉଜ ତ ଶୋଇପଡ଼ିଲେ । କିନ୍ତୁ ମନୋରମାକୁ ନିଦ ହଉଚ କୁଆଡ଼ୁ ! ସେ ତ ପ୍ରଥମରୁ ଶୋଇପଡ଼ିଛି । ସେ ବାରମ୍ବାର ଭାବୁଚି—ରାଜା ସାହେବଙ୍କୁ ବିବାହ କରି ସେ କ'ଣ ସତରେ ନିଜ ଭାଗ୍ୟର ପରିବର୍ତ୍ତନ କରି ଦେଇଛି । ସେ କ'ଣ ପ୍ରେମକୁ ଛାଡ଼ି ଧନ ପଛରେ ଦୌଡ଼ୁଛି ! ପ୍ରେମର ବସ୍ତୁ ତ ହାତରୁ ଖସି ଯାଉଛି । ମନେ ମନେ କହିଲା—ବାବୁଜୀ ତୁମେ କେବେହେଲେ ମୋତେ ସିଧା ଚାହିଁନାହିଁ । ତୁମେ ଅନ୍ୟ ପାଇଁ ମରିବା ଜାଣିଛ । କିନ୍ତୁ ନିଜ ପାଇଁ ବଞ୍ଚିବା ଜାଣିନ । ତୁମେ ଥରେ ମାତ୍ର ଯଦି ସଙ୍କେତ ଦିଅନ୍ତ, ତେବେ ମୁଁ ତୁମ ଚରଣ ପାଖକୁ ଦୌଡ଼ି ଆସନ୍ତି । ଧନ ଦୌଲତକୁ ଗୋଇଠା ମାରନ୍ତି । ଏ ବନ୍ଧନକୁ ମୁହୂର୍ତ୍ତକ ମଧ୍ୟରେ ଛିଣ୍ଡାଇ ଦିଅନ୍ତି । ତୁମେ ଏଡ଼େ ବିଦ୍ୱାନ ହୋଇ ମଧ୍ୟ ଏତେ ସରଳ ହୃଦୟ ! ଏତେ ଅନୁରକ୍ତ ହୋଇ ଏତେ ବିରକ୍ତ ! ତୁମେ କ'ଣ ଭାବିଚ ! ମୁଁ ତୁମ ମନର ଅବସ୍ଥା ଜାଣି ପାରିନ ବୋଲି ? ମୁଁ ସବୁ ଜାଣୁଛି, କିନ୍ତୁ କ'ଣ କରିବି ? ଯେତିକି ଦରକାର

ତାଠାରୁ ଅଧିକ ମୁଁ ମୋ ମନର ଭାବ ପ୍ରକାଶ କଲି, କିନ୍ତୁ ତୁମେ ବୁଝିଲନାହିଁ କି ବୁଝିବାକୁ ଚେଷ୍ଟା ବି କଲ ନାହିଁ । ଏବେ ତ ଯେଉଁଠି ମୋର ଚିତା ତିଆରି ହୋଇଛି, ସେଠିକି ମୋର ଭାଗ୍ୟ ମୋତେ ନେଇ ଚାଲିଛି । ସେଇ ଚିତାରେ ବସିବାକୁ ଯାଉଛି । ମୁଁ ପ୍ରେମ ବଞ୍ଚିତ ହୋଇଗଲି । ବର୍ତ୍ତମାନ ସେବା ଦ୍ୱାରାହିଁ ଜୀବନ ଅତିବାହିତ କରିବାକୁ ପଡ଼ିବ । ଅଭାଗିନୀ ଏହାଠାରୁ ଅଧିକ କ'ଣ ବା ଇଚ୍ଛା କରିବ ?

ଏହା ଚିନ୍ତା କରି କରି ଗୀତ ଗାଇବାକୁ ଲାଗିଲା:

ପ୍ରେମ ସାଗର ଅପାର
କି କରିବ ମୁହିଁ ଗୋ ।।
ସେନେହ ସିନ୍ଧୁରେ ହୋଇଲି ମଗନ
ଲହରୀ ଦେଖିଲି ନାହିଁ
ହାତେ ନ ଆସିଲା ମୋ ଜୀବନ ଧନ
ପାଇବି କିନାହିଁ କାହିଁ ଗୋ ,
କି କରିବ ମୁହିଁ ଗୋ ।।

ମନ୍ଦ ମନ୍ଦ ହୋଇ ହେଲା ପ୍ରବାହିତ
ସୁରଭିତ ସ୍ନିଗ୍‌ଧ ସମୀର
ନଭ ମଣ୍ଡଳରେ କଲା ବିଚରଣ
ଏ ମୋର ହୃଦୟ ଅଧୀର
ରହିଯିବ ଚାହିଁ ଚାହିଁ ଗୋ
କି କରିବ ମୁହିଁ ଗୋ ।।

( ୨୧ )

ହାକିମଙ୍କ ଇର୍ଦ୍ଦିଗିର୍ଦ୍ଦରେ ନାଚିବାବାଲା ଗୁରୁସେବକସିଂହ, ଜେଲ-ଦଙ୍ଗା ଅଭିଯୋଗରୁ ଚନ୍ଦ୍ରଧରଙ୍କୁ ନିର୍ଦ୍ଦୋଷରେ ଖଲାସ କରିଦେବାରୁ ଅଫିସର ମଣ୍ଡଳରେ ହଇଚଇ ପଡ଼ିଗଲା । ଗୁରୁସେବକ ଏପରି ରାୟ ଦେବେ ବୋଲି କେହି ଆଶା କରି ନ ଥିଲେ । ଇଏତ ଫଇସଲା ନୁହେଁ, ଏକ ମାନ-ପତ୍ର । ତାହାର ପ୍ରତି ଅଂକ ଶବ୍ଦ ବାତ୍ସଲ୍ୟରସପୂର୍ଣ୍ଣ । ଜନତାରେ ଆନନ୍ଦର ଲହରୀ ଖେଳିଗଲା । ଏପରି ନ୍ୟାୟବନ୍ତ ଏବଂ ସତ୍ୟବାଦୀ ପୁରୁଷ ବିରଳ—ସମସ୍ତଙ୍କ ମୁହଁରେ ଏଇ କଥା ସହରର ତ ଅନେକ ଲୋକ ଗୁରୁସେବକଙ୍କୁ ଦର୍ଶନ କରିବା ପାଇଁ ଆସିଗଲେ ।

ଅପଣ ସ୍ୱାକମ ନୁହନ୍ତ ଦେବତା ବୋଲି କହିଲେ । କର୍ତ୍ତୃପକ୍ଷ ଭାବିଥିଲେ ଚନ୍ଦ୍ରଧରଙ୍କୁ ଆହୁର ୪।୫ ବର୍ଷ ସଜା ହୋଇଯିବ । କିନ୍ତୁ ଏବେ ତ ଖୁଣ୍ଟି ଉପୁଡ଼ିଗଲା । ଡେଇଁବେ କାହା ବଳରେ । ଚନ୍ଦ୍ରଧର ଏହି ଅଭିଯୋଗରୁ କେବଳ ମୁକ୍ତ ହେଲେ ନାହିଁ, ତାଙ୍କର ପୂର୍ବ ଜେଲ ମିଆଦରୁ ଏକ ବର୍ଷ କମିଗଲା । ମିଷ୍ଟର ଜମ୍ ତ ଏତେ ରାଗିଗଲେ ଯେ, ଆଗରେ ପାଇଥିଲେ ଗୁରୁସେବକଙ୍କୁ ଗୁଳି କରି ଦିଅନ୍ତେ । ଆଉ ତ କିଛି କରିପାରିଲେ ନାହିଁ, ଚନ୍ଦ୍ରଧରଙ୍କୁ ଆଗ୍ରା ଜେଲକୁ ପଠାଇ ଦେଲେ । ତାଗିଦ୍ କରିଦେଲେ—କୌଣସି କଇଦୀ ତା ସହିତ କଥାବାର୍ତ୍ତା କରିବେ ନାହିଁ । ବର୍ଷେ ଭିତରେ ତାକୁ ଯେପରି ଦଶ ବର୍ଷର ଦଣ୍ଡ ମିଳିପାରିବ । ମଜା କଥା ହେଲା—ଚନ୍ଦ୍ରଧରଙ୍କୁ କୌଣସି କାମ କରିବାକୁ ଦିଆଗଲା ନାହିଁ । ବାସ୍, ଅଠ ପହର ସେଇ ଚାରି ହାତ ଲମ୍ବା ତିନି ହାତ ଚଉଡ଼ା କୋଠରି ଭିତରେ ପଡ଼ି ରହ । ଜେଲ ବିଧାତା-ମାନଙ୍କର ଯେତେ ଅବଗୁଣ ଥାଉ ନା କାହିଁକି, ସେମାନେ ପ୍ରତ୍ୟେକ ଜଣେ ଜଣେ ମନୋବିଜ୍ଞାନ ପଣ୍ଡିତ । କିପରି ଦଣ୍ଡ ଦେଲେ ଆତ୍ମାକୁ ସର୍ବାଧିକ କଷ୍ଟ ମିଳିବ, ସେ ବିଷୟରେ ସେମାନଙ୍କର ଜ୍ଞାନ ସର୍ବାଧିକ । ବେକାରିଠାରୁ ବଳି କଷ୍ଟ ଆଉ କିଛି ନାହିଁ । ଚନ୍ଦ୍ରଧରଙ୍କ କୋଠରି ଦୁଆର ଦିନକୁ କେବଳ ଦୁଇ ଥର ଖୋଲେ । ଓ୍ୱାର୍ଡ଼ର କେବଳ ଖାଦ୍ୟ ରଖିଦେଇ କବାଟ ବନ୍ଦ କରିଦିଏ ।

ହାଡ଼୍ଦରେ କାଳକୋଠରି ! ତୁ ହେଉଛୁ ମାନବୀ ପଶୁତ୍ୱର କ୍ରୂର ଲୀଳା । ତୁ ଯାଦୁବିଦ୍ୟା-ପୂର୍ଣ୍ଣ—ମନୁଷ୍ୟକୁ ତୁ ଆଖି ଥାଇ ଅନ୍ଧ, କାନ ଥାଇ କାଲ, ଜିଭ ଥାଇ ଛନା କରିଦେଇ ପାରୁ । ଏ କୋଠରୀ ବାୟୁଶୂନ୍ୟ, ଅନ୍ଧକାରପୂର୍ଣ୍ଣ—ପଞ୍ଚଭୂତର ସତ୍ତା ନାହିଁ । ବ୍ରହ୍ମା ମଧ ଏପରି ଅବସ୍ଥାର କଳ୍ପନା କରି ନ ଥିବେ ।

ଚନ୍ଦ୍ରଧରଙ୍କର ଶରୀର ଏବଂ ଭାବରେ ମୁହୂର୍ତ୍ତ ଏପରି ପରିବର୍ତ୍ତନ ଆସେ ଯେ, ସେ ଭାବନ୍ତି—ମୁଁ ପାଗଳ ହୋଇ ଯାଉନାହିଁ ତ ? ଏତେ ସ୍ୱାର୍ଥ, ଦ୍ୱେଷ ଏବଂ ଅନ୍ୟାୟପୂର୍ଣ୍ଣ ସୃଷ୍ଟି କାହିଁକି କଲେ ? ସମସ୍ତେ ମନୁଷ୍ୟ, ସବୁ ଜାତି ମଧ୍ୟରେ ସ୍ନେହ-ମମତା ଥାଇ ପୃଥିବୀ କ'ଣ ସୃଷ୍ଟି ହୋଇ ପାରିବ ନାହିଁ । ଏପରି ଅନ୍ୟାୟପୂର୍ଣ୍ଣ ସଂସାର ତ ଈଶ୍ୱର ସୃଷ୍ଟି ହୋଇ ନ ପାରେ ।

ଦୁଇ ଚାରିଦିନ ପରେ ତାଙ୍କର ବିଚାରଧାରାରେ ପରିବର୍ତ୍ତନ ଘଟିଲା । ଅନ୍ଧକାରରେ ଆଲୋକର ଜ୍ୟୋତି ଦେଖାଗଲା । କଣ୍ଟା ଭିତରେ ଫୁଲ ଫୁଟୁଥିବାର ଅନୁଭବ କଲେ । ଭାବିଲେ—ପ୍ରାଧୀନତା ଈଶ୍ୱର ବିଧାନ—ଉହିଁରେ ବିକାଶ ଓ ଜାଗ୍ରତର ମନ୍ତ୍ର ଲୁକ୍କାୟିତ ଥାଏ । ନା—ପରାଧୀନତା ଦଣ୍ଡ ନୁହେଁ—ଏହା ଶିକ୍ଷାଳୟ । ଇଏ ସ୍ୱାଧୀନତାର ସିଦ୍ଧାନ୍ତ ଶିଖାଏ—ଆମର ଆଖି ଖୋଲେ ।

ଜେଲ କୋଠରିରେ ଭୟଙ୍କର କଷ୍ଟ ପ୍ରତି ସେ ଧ୍ୟାନ ଦେଲେ ନାହିଁ । ତାଙ୍କର ମନ ଅନ୍ତର୍ଜଗତରେ ଭ୍ରମଣ କରିବାକୁ ଲାଗିଲା । ସେ ଏକ ନୂତନ ଦୁନିଆଁର ସନ୍ଧାନ ପାଇଲେ । ସେ ଦୁନିଆଁ ଏ ଦୁନିଆଁ ଅପେକ୍ଷା ଅଧିକ ପବିତ୍ର, ଉଜ୍ଜ୍ୱଳ ଓ ଶାନ୍ତିମୟ ଥିଲା । ସେ-ସମାଧିସ୍ଥ

ଯୋଗୀ ଭଳି ଘଣ୍ଟା ଘଣ୍ଟା ଧରି ହେବୁ ଅନ୍ତର୍ଲୋକରେ ବିଚରଣ କରିବାକୁ ଲାଗିଲେ । ଶାରୀରିକ କଷ୍ଟ ପ୍ରତି ଧ୍ୟାନ ଦେବାକୁ ଭୁଲି ଗଲେ । ଆଲୋକ ପ୍ରତି ଆଉ ଦୃଷ୍ଟି ଦେଲେନାହିଁ । କିଛି ଲେଖିବା ପାଇଁ ତାଙ୍କ ମନ ଛଟପଟ ହେଲା । ଏ ଅନ୍ଧକାର ମଧ୍ୟରେ ସେ ଲେଖିପାରିବେ ବୋଲି ତାଙ୍କର ବିଶ୍ୱାସ ହେଲା । ଧାଡ଼ି ବଙ୍କା ହେବ । ଶବ୍ଦ ଠିକ୍ ରୂପେ ଲେଖା ହେବ ନାହିଁ । ହେଉ ବାହାରକୁ ଗଲେ, ତାହା ମଧ୍ୟ ଏକ ମନୋରଞ୍ଜନ ସାମଗ୍ରୀ ହେବ । କିନ୍ତୁ ଲେଖନ ସାମଗ୍ରୀ ମିଳିବ କୁଆଡ଼ୁ ?

ଚକ୍ରଧରଙ୍କ ପାଖକୁ କେବେ କେବେ ଜଣେ ବୁଢ଼ା ଓ୍ୱାର୍ଡର ଖାଦ୍ୟ ଧରି ଆସୁଥିଲା । ଖୁସିବାସିଆ ଲୋକ । ଚକ୍ରଧରଙ୍କ ପ୍ରସନ୍ନମୁଖ ଦେଖି କଥାବାର୍ତ୍ତା କିଛିଏ ହେଉଥିଲା ମଧ୍ୟ । ତା' ସହିତ ବନ୍ଧୁତ୍ୱ ଜମି ଯାଇଥିଲା । ସେ ମଧ୍ୟ କେତେଥର କହୁଥିଲା—ବାବୁ, ଚିଟିସି, ତମାଖୁ ଦରକାର ହେଲେ କହିବ । ଚକ୍ରଧର ଖିଆଲ ଆସିଲା—ତାକୁ କହିଲେ ତ ସେ କାଗଜ, ପେନ୍‌ସିଲ ଆଣିଦବ । କେତେଦିନ ଯାଏଁ କହିବ କି ନାହିଁ ଭାବିଲେ । ଦିନେ କହିଲେ—ଜମାଦାରଜୀ, କାଗଜ ପେନ୍‌ସିଲ ମୋ ପାଇଁ ଆଣିଦେଇ ପାରିବ ?

ବୁଢ଼ା ଓ୍ୱାର୍ଡର କହିଲା—ହଁ, ଆଣିଦେଇ ପାରିବ ଯେ, ଯଦି କେହି ଦେଖି ଦେବ ? ହଉ ତେବେ ଦେଖାଯିବ ।

ଚକ୍ରଧରଙ୍କ ଚରିତ୍ରଜ୍ଞାନ ପ୍ରାପ୍ତ କରିବାକୁ ସୁନ୍ଦର ଅବସର ମିଳିଲା । ସେ ନିଜକୁ ସମ୍ଭାଳି ନେଇ କହିଲେ—ନାହିଁମ, ମୁଁ ସେମିତି କହି ଦେଉଥିଲି ନା । ସଙ୍କୋଚରେ ତାଙ୍କ ମୁଖ ବନ୍ଦ ହୋଇଗଲା । ସାମାନ୍ୟ କଥା ପାଇଁ ମୋର ଏତେ ପତନ !

ବୁଢ଼ା ଓ୍ୱାର୍ଡର—କହିବ ତ ଆଣି ଦେବ ।

ଚକ୍ରଧର—ନାହିଁ ନାହିଁ, ଅବଶ୍ୟକ ନାହିଁ ।

ବାବୁ ଯଶୋଦାନନ୍ଦନଙ୍କୁ ଯେମିତି ଜଣାପଡ଼ିଲା, ଚକ୍ରଧର ଆଗ୍ରା ଜେଲକୁ ଅସିଗଲେଣି । ସେ ତାଙ୍କ ସାକ୍ଷାତ କରିବାକୁ ଅନେକଥର ଚେଷ୍ଟା କଲେ, କିନ୍ତୁ ଅନୁମତି ମିଳିଲା ନାହିଁ । ସାଧାରଣତଃ କଇଦୀମାନଙ୍କୁ ଛଅ ମାସରେ ନିଜ ଘରର କାହା ସହିତ ସାକ୍ଷାତ କରିବାକୁ ଅନୁମତି ମିଳେ । କିନ୍ତୁ ଚକ୍ରଧରଙ୍କୁ ତା' ମଧ୍ୟ ମିଳିଲା ନାହିଁ । ଯଶୋଦାନନ୍ଦନ ନିଜର ସମସ୍ତ ଶକ୍ତି ଖର୍ଚ୍ଚ କରି ଅନୁମତି ପାଇଲେ—ନିଜ ପାଇଁ ନୁହେଁ, ଅହଲ୍ୟା ପାଇଁ । ସେ ବିରହିଣୀର ଦଶା ଦିନକୁ ଦିନ ଖରାପ ହୋଇ ଯାଉଥିଲା । ଯେଉଁଦିନଠାରୁ ଚକ୍ରଧରଙ୍କୁ ଜେଲରେ ରଖାଗଲା ହେଉଁଦିନୁ ସେ ମଧ୍ୟ କଇଦୀ ଭଳି ଜୀବନ ଯାପନ କରିବାକୁ ଲାଗିଲା । ସେ ଚକ୍ରଧରଙ୍କୁ ନିଜର ପତି ବୋଲି ଗ୍ରହଣ କରି ସାରିଥିଲା । ପତିଙ୍କର କଠିନ ତପସ୍ୟା ଦେଖି ତାର ମଧ୍ୟ ବେଶଭୂଷା, ଖାଦ୍ୟପେୟ, ହସିବା ଖେଳିବା ପ୍ରତି ଅରୁଚି ଜାତ ହୋଇଥିଲା । ବୈଶାଖ ଜ୍ୟେଷ୍ଠ ମାସ ଘର କାନ୍ଥ ତାଉଆ ଭଳି ତାତିଯାଏ । ଘରେ ତ ଦୂରର କଥା, ବାହାରେ ଖୋଲା

ପଡ଼ିଆରେ ମଧ ବସି ହୁଏ ନାହିଁ କିନ୍ତୁ ଅହଲ୍ୟା ସେ ଯେଇ ବନ୍ଦ କୋଠରୀ ମଧ୍ୟରେ ତଳେ ଶୁଏ । ଶୁଖାଶୁଖା ଭଇଁଟା କ'ଣ ଖାଏ ।

ଚନ୍ଦ୍ରଧରଙ୍କ ସହ ସାକ୍ଷାତ ପାଇଁ ଅନୁମତି ମିଳିଗଲା । କିନ୍ତୁ ଅହଲ୍ୟାକୁ ଆନନ୍ଦ ପରିବର୍ତ୍ତେ ଭୟ ଲାଗିଲା । ସେ କେତେ ଦୁର୍ବଳ ହୋଇ ଯାଇଥିବେ । କିନ୍ତୁ ହୃଦୟକୁ ବାରମ୍ବାର ଟାଣ କଲା ।

ସକାଳୁ ସ୍ନାନ ସାରି ଅନେକ ସମୟ ଯାଏଁ ବନ୍ଦନା କଲା । ମାଘ ମାସ, ଗୁରୁଆଡ଼େ କୁହୁଡ଼ି, ଆକାଶରେ ମେଘ । ପ୍ରଚଣ୍ଡ ଶୀତ । ଯଶୋଦାନନ୍ଦନଙ୍କ ସହ ଗାଡ଼ିରେ ବସି ଅହଲ୍ୟା ଜେଲକୁ ଗଲା । ଜେଲରେ ପହଞ୍ଚିବା ପରେ ମହିଳା ପୁଲିସ ତାର ତଲାସି ନେଲେ । ଗୋଟେ କୋଠରୀ ଭିତରକୁ ନେଇ ଚପରାଶିକୁ ଅନ୍ୟ ଏକ ଚୌକି ଆଣିବାକୁ ହୁକୁମ ଦେଲେ । ତା'ପରେ କହିଲେ—ଏଥର କଇଦୀକୁ ଆଣ ।

ଅହଲ୍ୟା ମୁଣ୍ଡ ପୋତି ବସିଥିଲା । ଏହି ସମୟରେ ଦୁଇଜଣ ଚୌକିଦାରଙ୍କ ସହ ଚନ୍ଦ୍ରଧର ସେ କୋଠରୀକୁ ଆସିଲେ । ମୁଣ୍ଡରେ କଇଦୀ ଟୋପି, ଦେହରେ ଜେଲ ପୋଷାକ । ମୁଖ-ମଣ୍ଡଳରେ ଆତ୍ମବଳର ଜ୍ୟୋତି । ଦାଢ଼ି ବଢ଼ି ଯାଇଥିଲା । ରଙ୍ଗ ଫିକା ପଡ଼ିଯାଇଥିଲା । ଚକ୍ଷୁ କୋଟରଗତ—ମୁଖରେ ସ୍ମିତ ହସ । ଅହଲ୍ୟା ଅନ୍ୟ କେଉଁଠି ଦେଖିଥିଲେ ଚିହ୍ନିପାରି ନ ଥା'ନ୍ତା । ସେ ଠିଆ ହୋଇ ପଡ଼ିଲା । ଉଭୟେ ଠିଆ ହୋଇଛନ୍ତି । ମନରେ ହଜାର କଥା । ଉଭୟେ ଉଭୟଙ୍କୁ ଦେଖୁଛନ୍ତି—କାହାର ମୁହଁରୁ କଥା ବାହାରୁ ନାହିଁ । ଅହଲ୍ୟା ଭାବୁଛି—କ'ଣ ପଚାରିବ ! ଚନ୍ଦ୍ରଧର ଭାବୁଛନ୍ତି କ'ଣ ପଚାରିବ ! ସେ ମାଧୁର୍ଯ୍ୟ, ସେ ଚପଳତା, ସେ ସହାସ ଛବି, ସେ ଦୀପ୍ତ ମୁଖମଣ୍ଡଳ ଅହଲ୍ୟାର କାହିଁ ! ସତେ ଯେପରି ଦରିଦ୍ରଘରର ବୈରାଗିଣୀ ।

ଏହିଭଳି କିଂକର୍ତ୍ତବ୍ୟବିମୂଢ଼ ଅବସ୍ଥାରେ ଠିଆ ଠିଆ ୧୦ ମିନିଟ୍ କଟିଲା ! ସେମାନଙ୍କୁ ସମ୍ଭବତଃ ଜଣା ନ ଥିଲା ସାକ୍ଷାତର ସମୟ ୨୦ ମିନିଟ୍ ବୋଲି । ଏଭଳି ଅବସ୍ଥା ଦେଖି ସେ ଲେଡ଼ିର ଦୟା ଆସିଲା । ଘଡ଼ି ଦେଖି କହିଲା—ତୁମେ ଦୁହେଁ ଏପରି କେତେବେଳ ଯାଏଁ ଠିଆ ହେବ ? ଦଶ ମିନିଟ୍ ଚାଲିଗଲାଣି, ଆଉ କେବଳ ୧୦ ମିନିଟ୍ ବାକି ।

ଚନ୍ଦ୍ରଧରଙ୍କର ସତେ ଯେପରି ସମାଧି ଭଙ୍ଗ ହେଲା । କହିଲେ—ଅହଲ୍ୟା, ଏତେ ଦୁର୍ବଳ କାହିଁକି ? ବେମାର ହୋଇଥିଲ ?

ଅହଲ୍ୟା କୋହ ଚାପି କହିଲା—ନାହିଁ ତ ମୁଁ ସମ୍ପୂର୍ଣ୍ଣ ସୁସ୍ଥ । ଆପଣ କିନ୍ତୁ ଏତେ ଦୁର୍ବଳ ହୋଇଯାଇଛନ୍ତି ଯେ, ଚିହ୍ନି ହେଉନାହିଁ ।

ଚନ୍ଦ୍ରଧର—ମୋର ଦୁର୍ବଳ ହେବାର କାରଣ ଅଛି । କିନ୍ତୁ ତୁମେ କାହିଁକି ଏତେ ଦୁର୍ବଳ ! ଅନ୍ତତଃ ନିଜକୁ ଠିକ୍ ରଖ, ମୁଁ ଏଠାରୁ ଗଲେ, ମୋତେ କିଛି ସାହାଯ୍ୟ କରି ପାରିବ । ନିଜ ପାଇଁ ନୁହଁ ମୋ ପାଇଁ ତୁମେ ନିଜକୁ ସୁସ୍ଥ ରଖିବା ଉଚିତ । ମୋ ପାଇଁ ଚିନ୍ତା କର ନାହିଁ ।

ମୁଁ ଏଠାରେ ଖୁବ୍ ଶାନ୍ତିରେ ଅଛି । କିଛି କଷ୍ଟ ନାହିଁ । ମୁଁ ତ ଭାବୁଛି, ଆତ୍ମଶୋଧନ ପାଇଁ ଏ ତପସ୍ୟା ମୋର ଦରକାର ଥିଲା । ଏବେ ତ ମୁଁ ଜାଣିଲି, ନିଜର ଉପକାରରୁହିଁ ଅନ୍ୟର ଉପକାର । ଯେ ନିଜର ଉପକାର କରି ଜାଣେ ନାହିଁ ସେ ଅନ୍ୟର ଉପକାର କିପରି କରିବ ! ମୁଁ ତୁମକୁ ସତ୍ୟ କହୁଛି, ଏଠାରେ ଖୁବ୍ ଆରାମରେ ଅଛି ଏବଂ ଏ ପରୀକ୍ଷାରେ ପଡ଼ି ବଡ଼ ଆନନ୍ଦ ଲାଗୁଛି । ବାବାଙ୍କର କୁଶଳ ତ ?

ଅହଲ୍ୟା—ହଁ ଆପଣଙ୍କୁ ବାରମ୍ବାର ମନେ ପକାଉଛନ୍ତି । ମୋ ସଙ୍ଗେ ସେ ମଧ୍ୟ ଆସିଥିଲେ । କିନ୍ତୁ ଭିତରକୁ ଆସି ପାରିଲେନି । ବାବା ଆଉ ମାଆଙ୍କ ମଧ୍ୟରେ ଏବେ ମନୋମାଳିନ୍ୟ ହୋଇ ଯାଇଛି । ମାଆ କହୁଛନ୍ତି—ବହୁତ ଦିନ ସମାଜ ଚିନ୍ତାରେ ଦୁର୍ବଳ ହୋଇଗଲଣି, ଏବେ ଘରେ ଟିକିଏ ବସ । ତମେ କ'ଣ ଖାଲି ସମାଜ ସେବା ପାଇଁ ଠିକା ନେଇଚ ! ବାବା କହନ୍ତି—କାମ ଦେହ ଦିନ ଶେଷ ହେବ, ଯେଉଁଦିନ ଏ ଶରୀରରୁ ପ୍ରାଣ ଚାଲିଯିବ । ସବୁବେଳେ ଦଉଡ଼ୁଚନ୍ତି । କେତେବେଳେ ଟିକିଏ ଫୁରୁସତ ମିଳିଲେ ଲେଖାରେ ବସି ଯାଉଛନ୍ତି । ବୁଢ଼ା ଖ୍ୱାଜା ମହମ୍ମଦଙ୍କ ସଙ୍ଗେ କ'ଣ ପାଇଁ କେଜାଣି ପୁଣି ଅମେଳ । ଆପଣ ଗଲା ପରେ କେତେ ଦିନ ଯାଏଁ ଖୁବ୍ ମିଳାମିଶି ଚଳିଲେ ! କିନ୍ତୁ ଏବେ ସେଇ ହାଲ ।

ଚକ୍ରଧର ସାମାନ୍ୟ ବିରକ୍ତି ପ୍ରକାଶ କରି କହିଲେ—ଉଭୟେ ପୁଣି ସେଇ ଧର୍ମାନ୍ଧତା ଚକ୍ରରେ ପଡ଼ିଯାଇଥିବେ ! ଯେ ପର୍ଯ୍ୟନ୍ତ ଆମେ ଧର୍ମର ପ୍ରକୃତ ଅର୍ଥ ନ ବୁଝିବା, ସେ ପର୍ଯ୍ୟନ୍ତ ଆମର ଏଇ ଅବସ୍ଥା ହେବ । ରାମ, କୃଷ୍ଣ, ଖ୍ରୀଷ୍ଟ, ମହମ୍ମଦ, ବୁଦ୍ଧ—ଏ ସମସ୍ତଙ୍କୁ ଆମେ ସମାନ ଆଦର କରିବା ଉଚିତ । ଏମାନେ ସମସ୍ତେ ମାନବ ଜାତିର ନିର୍ମାତା । ଏମାନଙ୍କ ମଧ୍ୟରୁ କାହାରିକୁ ଅନାଦର କରିବା ମୂର୍ଖତା । ଆଚ୍ଛା, ଆମ ଘରର ଖବର କିଛି ମିଳୁଛି ?

ଅହଲ୍ୟା—ବାବା ଏବେ କାଶୀ ଯାଇଥିଲେ । ଜଗଦୀଶପୁର ରାଜା ଆପଣଙ୍କ ପିତାଙ୍କୁ ମାସିକ ୫୦ ଟଙ୍କା ଲେଖାଏଁ ଦେଉଛନ୍ତି । ଧନର ଅଭାବ ତାଙ୍କର ନାହିଁ । ଜ୍ୟେଷ୍ଠ ରାଣୀସାହେବାଙ୍କର ଆପଣଙ୍କର ଘର ପ୍ରତି ବିଶେଷ କୃପା ଦୃଷ୍ଟି ଅଛି ।

ଚକ୍ରଧର ବିସ୍ମିତ ହୋଇ ପଚାରିଲେ—ଜ୍ୟେଷ୍ଠ ରାଣୀ ସାହେବା କିଏ ?

ଅହଲ୍ୟା—ରାଣୀ ମନୋରମା । ଏବେ ଅଳ୍ପଦିନ ହେଲା ରାଜାସାହେବଙ୍କ ସହ ତାଙ୍କର ବିବାହ ହେଲା ।

ଚକ୍ରଧର—ତେବେ ମନୋରମାର ବିବାହ ରାଜାସାହେବଙ୍କ ସହ ହୋଇଗଲା ?

ଅହଲ୍ୟା—ବାବା ତ ଏଇଆ କହୁଥିଲେ ।

ଚକ୍ରଧର—ତୁମର ମନେ ଅଛି । ଭୁଲ୍ କହୁନ ତ ?

ଅହଲ୍ୟା—ଏତେ ଜଲଦି ଭୁଲିଯିବ ?

ଚକ୍ରଧର—ମନୋରମାର ବିବାହ ବିଶାଳ ସିଂହ ସହ । ମୁଁ ତ ବିଶ୍ୱାସ କରି ପାରୁନାହିଁ ।

ଅହଲ୍ୟା—ବାବା ମଧ୍ୟ ଆଶ୍ଚର୍ଯ୍ୟ । କହୁଥିଲେ କାଶୀରେ ମଧ୍ୟ ସମସ୍ତେ ଆଶ୍ଚର୍ଯ୍ୟ ହେଉଛନ୍ତି । ମନୋରମା ନିଜ ଖୁସିରେ ବିବାହ କଲା । କେହି ବାଧ କରି ନାହାନ୍ତି । ଶୁଣୁଛୁ, ରଜାସାହେବ ଏବେ ବିଲକୁଲ ମନୋରମାର ମୁଠାରେ । ବାବା ଚାନ୍ଦା ମାଗିବାକୁ ଗଲେ ଯେ, ରାଣୀ ପାଞ୍ଚ ହଜାର ଦେଲେ ।

ସହସା ଲେଡ଼ି ଜଣକ କହିଲେ—ସମସ୍ତ ପୂରା ହୋଇଗଲା । ଓ୍ୱାର୍ଡ଼ର, ଭିତରକୁ ନେଇଯାଅ ।

ଚକ୍ରଧର ଆଉ ମୁହୂର୍ତ୍ତେ ମଧ୍ୟ ରହି ପାରିଲେ ନାହିଁ । ଅହଲ୍ୟାକୁ ତୃଷାପୂର୍ଣ୍ଣ ନେତ୍ରରେ ଦେଖି ଚାଲିଗଲେ । ଅହଲ୍ୟା ସଜଳ ନେତ୍ରରେ ତାଙ୍କୁ ପ୍ରଣାମ ଜଣାଇ କହିଁ କହିଁ ହୋଇ କାନ୍ଦି ଉଠିଲା ।

( ୨୨ )

ଫାଲଗୁନ ମାସ । ଚଉଆଡ଼େ ଢୋଲ ବାଦ୍ୟର ଶବ୍ଦ । କେଉଁଠି ରାମଲୀଳା ଚାଲିଛି; କେଉଁଠି ଫଗୁଖେଳ । ବଜାର ଗରମ । ଗଛ ଡାଳରେ କୋଇଲିର କୁହୁକୁହୁ ଶବ୍ଦ । ଘରେ ମହିଳାମାନଙ୍କର କର୍ମ ତତ୍ପରତା । ଚାରି ପଟାର ବହଳ । ମୁନ୍‌ସୀ ବଜ୍ରଧରଙ୍କର ସଙ୍ଗୀତ ସଭା ଯୋଗାଡ଼ ଚାଲିଲା ।

ମନୋରମାର ରଜାସାହେବଙ୍କ ସହିତ ବିବାହ—ମୁନ୍‌ସୀଜୀଙ୍କର ଭାଗ୍ୟ ଖୋଲିଦେଲା । ଜଣେ ଠିକାଦାରକୁ ରାଜ୍ୟର କେତେକ ଘର ଉଆର ଠିକା କରେଇ ଦେଇ ନିଜ ଘରଟିକୁ ଦୋହଲ୍ଲ କରିଦେଲେ । ବ୍ୟବସାୟୀ ବସ୍ତ୍ରେ ଶସ୍ୟ ଘରକୁ ପଠେଇ ଦିଏ । ଧୋବା ଲୁଗା ସଫା କରି ପଇସା ନିଏନି । ମୋଟ ଉପରେ ତହସିଲଦାରଙ୍କର 'ପୁଅବାର' । ତହସିଲଦାରବେଳେ ଯେଉଁ ମଜା ପାଇ ନ ଥିଲେ, ଏବେ ସେହି ମଜା ଭୋଗ କରୁଛନ୍ତି ।

ରାତି ୮ଟା ବେଳକୁ ଭନ୍‌କୁ ନିଜ ସଙ୍ଗୀତମଣ୍ଡଳୀ ଧରି ଆସିଗଲା । ମୁନ୍‌ସୀଜୀ ଆରାମ ଚୌକିରେ ବସିଥିଲେ । ଗାଉଣା ଆରମ୍ଭ ହେଲା ।

ମୁନ୍‌ସୀ—ବାଃ—ବାଃ ଭନ୍‌କୁ । ତୁମକୁ ଦିନେ ଦରବାରକୁ ନେଇଯିବି ।

ଭନ୍‌କୁ—ମୁଁ ମଲେ ମୋତେ ନେଇ କରି ଯିବ । ଏହେ ଥର କହିଲଣି, କାଇଁ ! ଆମର ତ ଭାଗ୍ୟ ଖ୍ରାପ, ତମେ କ'ଣ କରିବ !

ମୁନ୍‌ସୀ—କ'ଣ କରିବ କହ । କେତେ ଚନ୍ଦ ହୋଇ ଯାଉଛି । କିନ୍ତୁ ପହଞ୍ଚ ଗଲା ପରେ କେତେବେଳେ ରଜା ସାହେବ ତ କେତେବେଳେ ରାଣୀ ସାହେବ କ'ଣ ନା କ'ଣ କଥା

ଆରମ୍ଭ କରି ଦେଉଛନ୍ତି ଯେ, ଆଉ କିଛି ମନେ ପଡ଼େନା । କହିବି, ସୁଯୋଗ ପାଇଲେ ନିଷ୍ଟୟ କହିବ । ରାଣୀ ସାହେବା ଏବେ ମାନିଛନ୍ତି ଯେ, ଯାହାକୁ ରାହିଁବ ରାଜକରୁ ଛଡ଼ି ଦେଇ ପାରିବ । ଯାହାକୁ ରାହିଁବ ରଖିଦେଇ ପାରିବ । ଦେଓ୍ୱାନ ସାହେବ ବି ଦୂରରୁ ସଲାମ କରୁଛନ୍ତି ।

ଭିନ୍‌କୁ—ରାଣୀ ସାହେବା—ବାଃ—ଠିକ୍ ରାଣୀ । ସମସ୍ତେ ବାହା ବାହା କରୁଛନ୍ତି ।

ଏହି ସମୟରେ ମହାଦେବ ନାମକ ଜଣେ ଲୁଗା ବେପାରୀ ଆସି ସଲାମ କରି କହିଲା—ମୁନ୍‌ସୀଜୀ, ଭଲ ଅଛନ୍ତି ତ ?

ମୁନ୍‌ସୀ—କ'ଣ, କାମ କ'ଣ ?

ମହାଦେବ—ଆପଣ ଆମ ଉପରେ ରାଗିଛନ୍ତି କାହିଁକି ? ଆମେ ତ କିଛି······

ମୁନ୍‌ସୀ—ବଡ଼ ଲୋକଙ୍କ ପାଖକୁ ଗଲେ କିପରି କଥାବାର୍ତ୍ତା କରିବାକୁ ହୁଏ ଶିଖ । ମୁଁ ଯଦି ତୁମକୁ 'ଶେଠଜୀ' ନ କହି 'ଅରେ ବେପାରୀ' କହିବି, ତୁମକୁ ଖରାପ ଲାଗିବ କି ନାହିଁ ?

ମହାଦେବ—ଆଜ୍ଞା, ଭୁଲ ତ ହୋଇଗଲା, ଏଥରକ ମାଫ୍ କରନ୍ତୁ । ନୂଆ ମାଲ୍ ଆଜ୍ଞା ଆସିଛି, ଯଦି ହୁକୁମ ହୁଅନ୍ତା, କିଛି ଶାଢ଼ି ପାଢ଼ି ପଠାନ୍ତି ।

ମୁନ୍‌ସୀ—ସେଇ ବ୍ୟବସାୟୀ ରୀତି । ଆଜ୍ଞା ଏଁ ତ ଆସି ପଚାରୁଥିଲା—ହଜୁରଙ୍କର କିଛି କପଡ଼ା ଦରକାର କି ? ମୁଁ ଦେଇ ନା ଆଉ କିଏ ? ତୁମର ଉଦ୍ଦେଶ୍ୟ କ'ଣ କହ ସଫା ସଫା ।

ମହାଦେବ—ହଜୁର ତ ବୁଝିଛନ୍ତି, ମୁଁ କଣ କହିବି ?

ମୁନ୍‌ସୀ—ଆଚ୍ଛା ତେବେ ଶୁଣ ଶେଠଜୀ, ଲାଞ୍ଚ ନିଏ ନାହିଁ ମୁଁ । ଆରେ ତହସିଲଦାର ଥିବା ସମୟରେ ତ ନେଇନାହିଁ, ଏବେ କ'ଣ ନେବି ? ପୁଅର ବାହାଘର ହେବାକୁ ଅଛି, ତହିଁରେ ଯେତେ ଲୁଗା ଲାଗିବ, ସବୁ ତୁମେ ଦେବ । କହ—ଏଥିକି ରାଜି ତ ଆଜ୍ଞା ନେଇ ମୁକାବିଲା କରିଦେବ । ବର୍ଷେ ଭିତରେ ଲକ୍ଷେ ଟଙ୍କା ବିକିବ । ହଁ ବୁଢ଼ୀରାଣୀ ସମୟ ନୁହଁ ଯେ ଟଙ୍କାକ କାଗାରେ ଚାରି ଟଙ୍କା ନେବ । ଟଙ୍କାକେ ଅଣେ । ଏଥିରୁ ଅଧିକା ନେବ ତ ଅସୁବିଧା ହେବ ।

ମହାଦେବ—ହଜୁର, ଖର୍ଚ୍ଚ ବାଦେ ଦୁଇ ପଇସା ମିଳିଲେ ଯଥେଷ୍ଟ ।

ମୁନ୍‌ସୀ—ଆଚ୍ଛା, ତେବେ କାଲି ଅସ । ଆଉ ଦି ଚାରି ଥାନ ଉଚ୍ଚା ଦାମର କନା ଆଣିଥିବ । ମନେରଖ, ବିଦେଶୀ ଜିନିଷ ଆଣିବ ନାହିଁ । ଗାଳି ଶୁଣିବ । ଖାଣ୍ଟି ଦେଶୀ ଜିନିଷ । ବିଦେଶୀ ନାଁ ଶୁଣିଲେ ଚିଡ଼ୁଛନ୍ତି ।

ବ୍ୟବସାୟୀ ଚାଲିଗଲା । ମୁନ୍‌ସୀଜୀ ଭିନ୍‌କୁକୁ କହିଲେ, ଦେଖିଲ, କଥାବାର୍ତ୍ତା କରି ଆସେନା, ଆସୁଚି ସଉଦା ବିକିବାକୁ ।

ଭିନ୍‌କୁ—ଭାଇ, କୁଚ୍ଛେଇ ଦିଅ ନେଇ, ଭାଗ୍ୟରେ ଥିଲେ କିଛି ମିଳିଯିବ ।

ମୁନ୍‌ସୀ—ଆଚ୍ଛା, ଗୁଲ୍ଲୁ । ଭଜନଟେ ହେଉ । କୁଆଡ଼େ ଥିଲା—ଏଥିରୁ ଗୋଟେ ଆସି ଏତେବେଳେ ହଜିଗଲା । ବୋଲ୍ ଠିକ୍ କର, ମୀରା ଭଜନ ।

ଏହା କହି ମୁନ୍‌ସୀଙ୍କ ମୀରା ଭଜନ ଗାନ କରେ । ଛନ୍‌କୁ ତାବଲା ବାଦନ କଲା । ହାତ ମୁହଁ ହଲେଇ, ଲହର ଦେଇ ମୁନ୍‌ସୀ ଭଜନ ଶେଷ କଲା ପରେ ଛନ୍‌କୁ କହିଲା—ବାଃ ଭାଇ, ମାତ କରଦେଲ । ତୁମର ଗଳା ତ ଦିନକୁ ଦିନ ଜାକ ହେଇ ଉଠୁଛି ।

ମୁନ୍‌ସୀ—ମନକୁ ଛୁଇଁଲା ଭଲ ଗୀତ ବୋଲିଲେ ହବନା ! ଯେଉଁ ଗୀତରେ ଭକ୍ତି, ବୈରାଗ୍ୟ ପ୍ରେମ ଏବଂ ଆନନ୍ଦର ତରଙ୍ଗ ନ ଉଠିବ, ସେ କ ଗୀତ ! ତୁମର ହେଉ ଗୋଟିଏ ।

ଛନ୍‌କୁ—ଅଚ୍ଛା ବୋଲିବ ଯେ, ହାରମୋନିୟମ ତୁମେ ଧର ।

ମୁନ୍‌ସୀଙ୍କ ସିତାର, ସାରଙ୍ଗୀ, ସରୋଦ, ଏସ୍ରାଜ ସବୁ ବଜାଇ ପାରୁଥିଲେ । ହାରମୋନିୟମରେ ତ ଓସ୍ତାଦ । ହାରମୋନିୟମ ଧରି ଗିତ ଆରମ୍ଭ କଲେ । ଛନ୍‌କୁ ମଧୁର ସ୍ୱରରେ ଆଶାବରୀ ଗାନା ଆରମ୍ଭ କରିବାକୁ ଯାଉଛି, ଏହି ସମୟରେ କୋଟ ପ୍ୟାଣ୍ଟ ପିନ୍ଧି, ଆଖିରେ ଚଷମା ଲଗାଇ ବାଳକୁ ସଜେଇ ଏକ ଯୁବକ ଆସି ପହଞ୍ଚିଲା । ତାକୁ ଦେଖି ମୁନ୍‌ସୀଜୀ ପଚାରିଲେ—ତୁମେ କିଏ ଭାଇ ? ମୋଠାରେ କିଛି କାମ ଅଛି ?

ଯୁବକ—ମୁଁ ଶୁଣିଲି ଜଗଦୀଶପୁରରେ ଗୋଟିଏ ଆକାଉଣ୍ଟସ୍ ପୋଷ୍ଟ ଖାଲି ଅଛି । ଆପଣ ସୁପାରିଶ କଲେ, ସମ୍ଭବତଃ ସେ ପୋଷ୍ଟଟା ମୋତେ ମିଳିଯାଇ ପାରେ । ମୁଁ ମଧ୍ୟ କାୟସ୍ଥ, ଆପଣଙ୍କ ଜାତର । ତେଣୁ ଆପଣଙ୍କ ଉପରେ ମୋର ହକ୍ ଅଛି । ମୋ ବାପା ଆପଣଙ୍କ ପାଖରେ କିଛି ଦିନ କାମ କରିଥିଲେ । ଆପଣ ମୁନ୍‌ସୀ ସୁଖବାସୀଲାଲଙ୍କୁ ଜାଣିଥିବେ ।

ମୁନ୍‌ସୀ—ତେବେ ଆପଣ ଜାତ ଆଉ ବନ୍ଧୁ ବାହାନାରେ ଚାକିରି ଖୋଜୁଛନ୍ତି ନିଜର କୃତିତ୍ୱ ଉପରେ ନୁହେଁ ? ତା' ମୋ ଦ୍ୱାରା ହୋଇ ପାରିବନି । ମୁଁ ଦେଓ୍ୱାନ ବା ଅଫିସର ନୁହେଁ । ସେମାନଙ୍କ ପାଖକୁ ଯାଅ ।

ଯୁବକ—ହଜୁର୍, ଆପଣ ସବୁକିଛି । ମୁଁ ତ ଆପଣଙ୍କୁ ମୋ ମୁରବୀ ମନେକରେ ।

ମୁନ୍‌ସୀ—କେଉଁ ପର୍ଯ୍ୟନ୍ତ ପଢ଼ିଛନ୍ତି ଆପଣ ?

ଯୁବକ—ବି. ଏ ପର୍ଯ୍ୟନ୍ତ ପଢ଼ିଛି, କିନ୍ତୁ ପାସ୍ କରି ପାରିନାହିଁ ।

ମୁନ୍‌ସୀ—କିଛି ଆବଶ୍ୟକ ନାହିଁ । ବଜାର ସଉଦା କରିବାରେ ଆପଣଙ୍କର ଅଭିଜ୍ଞତା ଅଛି ? ଯଦି ଆପଣଙ୍କୁ କୁହାଯିବ ଯେ, ଯାଇ ଦଶହଜାର ଟଙ୍କାର କୋଠାଘର ପାଇଁ କାଠ କିଣି ଆଣନ୍ତୁ, ଆପଣ ଠିକ୍ ଭାବରେ ଆଣି ପାରିବେ ?

ଯୁବକ—ମୁଁ ତ କାଠ କେବେ କିଣିନାହିଁ ।

ମୁନ୍‌ସୀ—ଆଚ୍ଛା ନ ହେଲା-ଆପଣଙ୍କୁ କୁସ୍ତି ଲଢ଼ି ଆସେ ? ମନେକର ରାଜାସାହେବଙ୍କ ସହ କୁଆଡ଼େ ଯିବାକୁ ପଡ଼ିଲା । ଏପରି ସମୟ ଆସିଲା, ରାଜାସାହେବଙ୍କ ଜୀବନ ରକ୍ଷା କରିବାକୁ ପଡ଼ିଲା ।

ଯୁବକ—କୁସ୍ତି ଲଢ଼ିବା ତ ମୁଁ ଜାଣିନାହିଁ । ହଁ, ଫୁଟବଲ, ଭଲି, ହକି ଜାଣେ

ମୁନ୍‌ସୀ—ଗାଉଣା ବାଜଣା ?

ଯୁବକ—ନାଇଁ ଆଜ୍ଞା । ମୁଁ ଓସ୍ତାଦ ହେବାକୁ ଚାହୁଁନାହିଁ । ମୁଁ କେବଳ ଆକାଉଣ୍ଟର ପୋଷ୍ଟ ଚାହେଁ ।

ମୁନ୍‌ସୀ—ତାହା ତ ଆପଣ କହି ସାରିଛନ୍ତି । ମୁଁ ପଚାରୁଛି, ଆପଣ ହିସାବ କିତାବ ବ୍ୟତୀତ ଆଉ କ'ଣ ଜାଣନ୍ତି ? ପହଁରିବା ଜାଣନ୍ତି ?

ଯୁବକ—ପହଁରିପାରେ, କିନ୍ତୁ ଖୁବ୍ କମ୍ ।

ମୁନ୍‌ସୀ—ଆପଣ ରାଜାସାହେବଙ୍କ ମନ ଆନନ୍ଦ ପାଇଁ କାହାଣୀ, ମଜାକଥା, ଚିଗଚିମାଳୀ କହି ପାରିବେ ?

ଯୁବକ—(ହସିଲା) ଆପଣ ତ ମୋତେ ଥଟ୍ଟା କରୁଛନ୍ତି ।

ମୁନ୍‌ସୀ—ନାଇଁ, ଥଟ୍ଟା କରୁନାହିଁ । ଆପଣଙ୍କୁ ପରୀକ୍ଷା କରୁଛି । ତେବେ ଆପଣ କେବଳ ଲେଖାଲେଖି ଜାଣନ୍ତି ଏବଂ ତା'ମଧ୍ୟ ଇଂରାଜୀରେ ହେଉଥିବ । ମୁଁ ଏପରି ଲୋକ ପାଇଁ ସୁପାରିଶ କରି ପାରିବିନାହିଁ । ଆପଣ ଆସନ୍ତୁ ।

ଯୁବକ ଚାଲିଗଲା । ଭିନ୍‌କୁ କହିଲା—ଭାଇ, ତୁମେ ତ ତାକୁ ଖୁବ୍ କହିଲ । ବୃଦ୍ଧା ସାହେବୀ ଠାଣିରେ ଆସିଥିଲା । ତମ ଧଡ଼କରେ ଲାଜରେ ଖାଉଁଲାଗଲା ।

ମୁନ୍‌ସୀ—ତା'ର ସାହେବୀ ଠାଣି ଦେଖି ତ ମୁଁ ପାଚି ଗଲି । ସତେ ଯେମିତି ସିଧା ବିଲାତରୁ ଆସିଛି । ଚାରି ଅକ୍ଷର ଇଂରେଜୀ ପଢ଼ି ଭାବିଛି, ମୁଁ ମହାପଣ୍ଡିତ ।

ଏହିଭଳି କଥାବାର୍ତ୍ତା ହେଉଥିବା ସମୟରେ ଦୁଆରେ ଆସି ରାଣୀ ମନୋରମାଙ୍କ କାର୍ ଠିଆ ହେଲା । ମୁନସୀଙ୍କ ଅଡ୍ଡ଼ୁ ଛୋଟାଇ ଦୌଡ଼ିଲେ । ମନୋରମା ହାତ ଉଠାଇ କହିଲା—ଦୌଡ଼ନ୍ତୁନାହିଁ, ଦୌଡ଼ନ୍ତୁ ନାହିଁ । ମୁଁ ତ ଆପଣଙ୍କ ପାଖକୁ ଯାଉଛି । କ'ଣ କରୁଥିଲେ ?

ମୁନ୍‌ସୀ—କିଛି ନାହିଁ ହଜୁର୍, ଟିକିଏ ଈଶ୍ୱର ଭଜନ ହେଉଥିଲା ।

ମନୋରମା—ଭଲ କଥା, ଈଶ୍ୱରଙ୍କ ସହ ସମ୍ପର୍କ ରହୁ, ଦରକାର ବେଳେ କର୍ମରେ ଆସିବ । ମୁଁ ଆପଙ୍କୁ ଗୋଟେ ଖୁସିଖବର ଶୁଣେଇବାକୁ ଆସିଛି । ବାବୁଜୀ କାଲି ଆସିଯିବେ ।

ଏଁ, ସତେ ?

ମନୋରମା—ହଁ ଆଜ୍ଞା; ସରକାର ତାଙ୍କର ମିଆଦ କମେଇ ଦେଲେ ।

ଏତକ ଶୁଣି ମୁନ୍‌ସୀଙ୍କ ଘର ଭିତରକୁ ଦୌଡ଼ି ଧଇଁ ସଇଁ ହୋଇ ନିର୍ମଳାକୁ କହିଲେ— ଶୁଣୁଚ, ଲଲୁ କାଲ ଆସିଯିବ ! ମନୋରମା ରାଣୀ ଆସିଛନ୍ତି ।

ଏତକ କହି ଦେଇ ସଙ୍ଗେ ସଙ୍ଗେ ଦୁଅଟିକୁ ଫେରି ଆସିଲେ ।

ମନୋରମା—ମା' କ'ଣ କରୁଛନ୍ତି, ଚାଲନ୍ତୁ ।

ନିର୍ମଳା ଅଣ୍ଟା ଚକଟୁ ଥିଲେ । ଘର କରଣା କିଛି ଏଣେ ତେଣେ ପଡ଼ିଚ । ନିର୍ମଳାଙ୍କର କାନ୍ଦିବାରେ ସମସ୍ତ ଯାଉଛି, ସଜାଡୁଛି କିଏ ! ମନୋରମା ମଟରରୁ ଓହ୍ଲାଇ ସିଧା ଘରେ ପହଞ୍ଚିଲେ ନିର୍ମଳା ବାହାରକୁ ବାହାରି ଆସି ଧଡ଼ ପଡ଼ ହୋଇ ହାତ ଧୋଇଲେ । ଘର ଭିତର ଅନ୍ଧାର । ଦାଣ୍ଡଘରେ କେବଳ ଗୋଟିଏ ଓ୍ୱାଲ ଲ୍ୟାମ୍ପ । ଘରେ ଡ୍ରିଭରଟାଏ । ତିନିଙ୍କୁ ତରବରରେ ଓ୍ୱାଲ ଲ୍ୟାମ୍ପକୁ ବାହାର କରୁ କରୁ ତଳେ ପଡ଼ି ଦେଇଟା ଭାଙ୍ଗି ଗଲା । ଯାହା ବା ଟିକିଏ ଆଲୋକ ହେଉ ଥିଲା, ଏବେ ପୂରା ଅନ୍ଧାର । ମୁନ୍‌ସୀଙ୍କ ମନେ ମନେ ଭାଗ୍ୟକୁ ନିନ୍ଦା କରି କହିଲେ—କ'ଣ କରିବ, ଦରିଦ୍ରର ଲଣ୍ଠନ କିଣା ହୋଇ ଅଛୁଛି, ଭାଙ୍ଗିଛି । ଅଢ଼ କମ୍‌ରେ ଦଶଟା ଲଣ୍ଠନ ଆସି ଯାଉଥିଲି ।

ଭିନ୍‌କୁ ଦୌଡ଼ିଯାଇ ନିଜ ଘରୁ ଲଣ୍ଠନଟାଏ ନେଇ ଆସିଲା । ମନୋରମା ଭିତରକୁ ଗଲେ । ନିର୍ମଳା ଅଶ୍ରୁପୂର୍ଣ୍ଣ ଚକ୍ଷୁରେ ତଳକୁ ମୁହଁ ପୋତି ଠିଆ ହୋଇ ଥିଲେ । ମନୋରମା ନିର୍ମଳାଙ୍କ ପାଦତଳେ ମୁଣ୍ଡନୁଆଁଇ ପୁଲକିତ କଣ୍ଠରେ କହିଲେ—ଧନ୍ୟ ମୋର ଭାଗ୍ୟ, ଆପଣଙ୍କୁ ଦେଖିଲି । ଜୀବନ ସଫଳ ହେଲା ।

ନିର୍ମଳା ସବୁ ଶିଷ୍ଟାଚାର ଭୁଲି ଯାଇ କେବଳ ଠିଆ ହୋଇ କାନ୍ଦିଲେ । ମାତୃସ୍ନେହର ତରଙ୍ଗରେ ମନୋରମାର ବିନୟ ଓ ଶିଷ୍ଟାଚାର ରୂପକ ତୃଣ ଭାସିବାକୁ ଲାଗିଲା ।

ଏହି ସମୟରେ ମଙ୍ଗଳା ଆସି ଠିଆ ହେଲା । ମନୋରମା ତାକୁ କୁଣ୍ଢାଇ ପକାଇ ସ୍ନେହ-କୋମଳ ସ୍ୱରରେ କହିଲା—ଆଜି ତୁମକୁ ମୁଁ ସାଥିରେ ନେଇଯିବି । ସେ ଘରେ ମୋ-ପାଖରେ ରହିବାକୁ ପଡ଼ିବ । ଆମେ ଦୁହେଁ ସାଙ୍ଗ ହୋଇ ଖେଳିବା । ଏକୁଟିଆ ପଡ଼ି ପଡ଼ି ମୋତେ ଭାରି ଖରାପ ଲାଗୁଛି ।

ନିର୍ମଳା—ମନୋରମା, ତୁମେ ଆମକୁ ଭୂଇଁ ଉପରୁ ଆକାଶକୁ ଉଠେଇ ଦେଇଛ । ତୁମର ସହୃଦୟତା ମୁଁ ଭାଷାରେ କହି ପାରୁନାହିଁ ।

ମନୋରମା—ଆପଣ ମୋର ମାଆ । ମାଆଙ୍କ ମୁହଁରୁ ଏ କଥା ଶୁଣି ମୋର ହୃଦୟ ଗର୍ବରେ ଫୁଲି ଉଠୁଛି । ମୁଁ ପିଲାଦିନୁ ମାତୃ ସ୍ନେହରୁ ବଞ୍ଚିତା । କିନ୍ତୁ ଆଜି ମୁଁ ଅନୁଭବ କରୁଛି, ମୁଁ ମୋ ନିଜ ମାଆ ଚରଣ ସ୍ପର୍ଶ କରୁଛି । କାଲି ବାବୁଜି ଆସିଯିବେ । ସମୟ ପାଇଲେ ମୁଁ ଆସିବି । ଯଦି କୌଣସି କାରଣରୁ ମୁଁ ଆସି ନ ପାରେ, ତେବେ କହି ଦେବେ କୌଣସି କଥାକୁ ଚିନ୍ତା କରିବେ ନାହିଁ । ମୋର ହୃଦୟରେ ତାଙ୍କ ପ୍ରତି ଏବେ ବି ସେହି

ଚ୍ଛିବା, ସେହି ଅନୁରାଗ ଅଛି । ଭଗବାନଙ୍କ କୃପା ହେଲେ ମୁଁ ତାଙ୍କ ପାଇଁ ରାଜ୍ୟରେ କୌଣସି ସ୍ଥାନ ସୃଷ୍ଟି କରିବି । ଗୋଟେ ଚମତ୍କାର ଘଟଣା ଘଟିଲା । କିଛି ଦିନ ତଳେ ଲକ୍ଷ୍ନୌର ତାଲୁକଦାର ଗଭର୍ଣ୍ଣରଙ୍କୁ ଆତିଥେୟ ପ୍ରଦାନ କରୁଥିଲେ । ମୁଁ ମଧ୍ୟ ଯୋଧାହେବଙ୍କ ସହିତ ଯାଇଥିଲି । ଗଭର୍ଣ୍ଣର ସାହେବ ଚେସ୍ ଖେଳୁଥିଲେ । ମୋତେ ମଧ୍ୟ ଖେଳିବାପାଇଁ ଆଗ୍ରହରେ ଡାକିଲେ । ମୋତେ ଏତେଟିକେ ଖେଳ ଭଲ ଆସେନାହିଁ । ଆଗ୍ରହ କଲାରୁ ବସିଗଲି । ସଂଯୋଗକୁ ମୁଁ ତାଙ୍କୁ ଦୁଇଥର ହରେଇ ଦେଲି । ଉତ୍ତେଜିତ ହୋଇ କହିଲେ—ଏଥର ବାଜିରଖି ଖେଳିବା । ତୃତୀୟ ଥର ଖେଳ ହେଲା । ଏଥର ମୋର ଅନେକ ଗୋଟି ପିଟି ଦେଲେ । ମୁଁ ତ ହରିଲି, ଏଥର ମୋର ହାରିବା ନିଶ୍ଚିତ । କିନ୍ତୁ ଈଶ୍ୱର ତାହା ବୋଧେ ଚାହୁଁ ନ ଥିଲେ । ଯେତେ ସେ ଗୁଟିପିଟି ହେଲେ ବି ଆଉ ଆଗେଇ ପାରିଲେନାହିଁ । ମୁଁ ହସି ହସି କହିଲି—ମୁଁ ଜିଣିଲି । ଏଥର ମୁଁ ଯାହା ମାଗିବି ଦେବାକୁ ପଡ଼ିବ ।

ମୁଁ କ'ଣ ମାଗିବି, ତାଙ୍କୁ ବା କ'ଣ ଜଣା ! କହିଲେ—ହଁ, ହଁ, ମୁଁ ତ ମନା କରୁନି ।

ମୁଁ ତାଙ୍କୁ ନିବାର ସତ୍ୟ କରାଇ କହିଲି—ମୋ ମାଷ୍ଟର ସାହେବ ନିର୍ଦ୍ଦୋଷ ଜେଲ ଭୋଗୁଛନ୍ତି । ତାଙ୍କୁ ଛାଡ଼ି ଦିଅନ୍ତୁ ।

ଏହା ଶୁଣି ସେ ସ୍ତବ୍ଧ ହୋଇଗଲେ । କିନ୍ତୁ ବାଧ୍ୟ ହୋଇ ରାଜି ହେଲେ ଏବଂ କହିଲେ ଆପଣଙ୍କ କଥାରେ ଛାଡ଼ୁଛି, କାଲି ମୁଁ ଶୁଣିଲି ଅର୍ଡ଼ର ହୋଇଯାଇଛି । ଆସନ୍ତା କାଲି ଆସି ପହଞ୍ଚିବେ ।

ନିର୍ମଳା—ଆପଣ ବଡ଼ ଦୟା କଲେ, ନ ହେଲେ ମୁଁ କାନ୍ଦି କାନ୍ଦି ମରିଯାଇଥାଆନ୍ତି ।

ମନୋରମା—କାନ୍ଦିବାର କ'ଣ ଅଛି । ମାଆର କର୍ତ୍ତବ୍ୟ ପୁଅକୁ ସାହସୀ ଓ ବୀର ଭାବରେ ଗଢ଼ିବା । ଅଚ୍ଛା, ଭଉଣୀ ଯିବ, ନା କାଲି ବାବୁଜୀ ଆସି ସାରିଲା ପରେ କାର୍ ପଠେଇବି ।

ନିର୍ମଳା—ଯେତେବେଳେ ଆପଣଙ୍କ ଇଚ୍ଛା ହେବ, ପଠେଇ ଦେବ ।

ମନୋରମା—ତୁମେ କାହିଁ କିଛି କହୁନ ଭଉଣୀ ! ଭାବୁଥିବ, ଇଏ ରାଣୀ, ବଡ଼ ବୁଦ୍ଧିମାନ, ବଡ଼ ତେଜସ୍ୱୀ ହୋଇଥିବ । ପ୍ରଥମେ ମୁଁ ରାଣୀ ଦେବପ୍ରିୟାଙ୍କୁ ଦେଖି ଏଇଆ ଭାବୁଥିଲି । କିନ୍ତୁ ଜାଣିଲି—ଐଶ୍ୱର୍ଯ୍ୟ ଦ୍ୱାରା ବୁଦ୍ଧି, ତେଜ କିଛି ବୃଦ୍ଧି ପାଏ ନାହିଁ । ରାଣୀ ଆଉ ଦାସୀ ମଧ୍ୟରେ କିଛି ପ୍ରଭେଦ ନାହିଁ ।

ଏହା କହି ସେ ମଙ୍ଗଳାକୁ ଆଲିଙ୍ଗନ କରି ନିଜ ଗଳାର ମୁକ୍ତାମାଳା ମଙ୍ଗଳାକୁ ପିନ୍ଧାଇ କହିଲା—ଦେଖ ତ ମା, କେମିତି ସୁନ୍ଦର ମାନୁଛି ।

ମୁନ୍‌ସୀ—ବାଃ ମଙ୍ଗଳା; ପ୍ରଥମ ସାକ୍ଷାତରେ ମୋତିମାଳ ପାଇଗଲୁ ।

ମନୋରମା—ମଙ୍ଗଳା ମୋର ସାନ ଭଉଣୀ । ବାବୁଜୀଙ୍କ ଚେହେରା ସହ ମଙ୍ଗଳାର ଚେହେରା ବିଲକୁଲ ମିଶିଯାଉଛି । ପୁରୁଷ ପୋଷାକ ପିନ୍ଧେଇ ଦେଲେ ତ କିଏ ବାବୁଜୀ କିଏ ମଙ୍ଗଳା ଚିହ୍ନି ହେବ ନାହିଁ । ଚାଲ ମଙ୍ଗଳା ଆମେ ବାଲି ସାଙ୍ଗ ହୋଇ ଆସିବା ।

ନିର୍ମଳା—କାଲି ନେଇଯିବ ।

ମନୋରମା—ବୁଝିଲି । ଆପଣ ଭାବୁଥିବେ କ'ଣ ଏଇ ଶାଢ଼ି ପିନ୍ଧି ଯିବି ! ସେ କ'ଣ ସେଠାରେ ଶାଢ଼ି ପିନ୍ଧି ପାରିବନି ?

ମଙ୍ଗଳାର ହାତ ଧରି ନେଇ ଗାଡ଼ିରେ ବସେଇଲା । ଗାଡ଼ି ଚାଲିଗଲା ପରେ ନିର୍ମଳା କହିଲେ—ସାକ୍ଷାତ୍ ଦେବୀଟିଏ ।

ରାତି ଦଶଟା ହୋଇଯାଇଥିଲା । ମୁନ୍‌ସୀଙ୍କ ଭୋଜନ ପରେ ଭାବିଲେ, କାଲି ସକାଳେ ସହରରେ ନୋଟିସ ଦେଇ ସେବାସମିତିବାଲାଙ୍କୁ ଜଣାଇ ଦେବାକୁ ହେବ । ଷ୍ଟେସନକୁ ଯାଇ ସ୍ୱାଗତ କରିବେ ।

( ୨୩ )

ରାଜା ବିଶାଳ ସିଂହଙ୍କର ମନୋବୃତ୍ତି ଏବେ ଗୋଟିଏ ଲକ୍ଷ୍ୟରେ କେନ୍ଦ୍ରିତ ହୋଇ ଯାଇ-ଥିଲା—ସେ ଲକ୍ଷ୍ୟ—ମନୋରମା । ସେ ଥିଲେ ଉପାସକ—ମନୋରମା ଉପାସ୍ୟ; ସେ ଥିଲେ ସୈନିକ—ମନୋରମା ସେନାପତି; ସେ ଥିଲେ ପେଣ୍ଡୁ ଏବଂ ମନୋରମା ଥିଲା ଖେଳାଳି । ତାଙ୍କର ମନ ଓ ଆତ୍ମା ଉପରେ ମନୋରମାର ସମ୍ପୂର୍ଣ୍ଣ ଆଧିପତ୍ୟ । ସେ ଏବେ ମନୋରମାର ଆଖିରେ ଦେଖୁଥିଲେ, ମନୋରମାର କାନରେ ଶୁଣୁଥିଲେ ଏବଂ ମନୋରମାର ବିଚାରରେ ଚିନ୍ତା କରୁଥିଲେ । ତାଙ୍କର ପ୍ରେମ ସମ୍ପୂର୍ଣ୍ଣ ଆତ୍ମ ସମର୍ପଣ ଥିଲା । ତାଙ୍କର ଧନ ଲିପ୍‌ସା, ରାଜ୍ୟ ଲିପ୍‌ସା, ସବୁ ଅନ୍ତର୍ଦ୍ଧାନ ହୋଇଗଲା । ମନୋରମା ଯାହା ଖର୍ଚ୍ଚ କରୁଥିଲା—ତାହାହିଁ ଥିଲା ଶ୍ରେୟ । ଚିତ୍ତବୃତ୍ତିଗୁଡ଼ିକର କାୟାପରିବର୍ତ୍ତନ ଅନୁରାଗ କପରି କରିପାରେ—ଏହାର ଉଦାହରଣ ଥିଲେ ରାଜା ବିଶାଳସିଂହ ।

ବିଶାଳସିଂହ ଏ ପର୍ଯ୍ୟନ୍ତ ଯେଉଁ ସ୍ତ୍ରୀମାନଙ୍କ ବଶ୍ୟତାରେ ଆସିଥିଲେ, ସେମାନେ ଥିଲେ ଈର୍ଷା, ଦ୍ୱେଷ, ମାୟାମୋହ ଏବଂ ରାଗରଙ୍ଗର ଜୀବନ୍ତ ମୂର୍ତ୍ତି । ମନୋରମା ଥିଲା ସେମାନଙ୍କଠାରୁ ସମ୍ପୂର୍ଣ୍ଣ ଭିନ୍ନ । ମନୋରମା ସତେ ଯେପରି ସ୍ୱର୍ଗର ଦେବୀ ! ମନୋରମାର ନିର୍ମଳ କାନ୍ତି ଅଜ୍ଞାତ ଭାବରେ ତାଙ୍କୁ ପରଲୋକ ଆଡ଼କୁ ଆକର୍ଷିତ କରୁଥିଲା । ମନୋରମା ନିକଟକୁ ଗଲେ, ତାଙ୍କର ବାସନା ଲୋପ ହୋଇଯାଉଥିଲା ଏବଂ ଧାର୍ମିକ କଳ୍ପନା ଜାଗ୍ରତ ହୋଇ ଉଠୁଥିଲା । ରାଜ୍ୟରୁ ଖଜଣା ନାଆଁରେ କେତେ ଯେ ବେଠି କିଆଯାଉଥିଲା—ତାହାସବୁ ରାଣୀଙ୍କ ଆଦେଶରେ ବନ୍ଦ କରାଗଲା । ଲକ୍ଷ ଲକ୍ଷ ଟଙ୍କା କ୍ଷତି ହେଲା, କିନ୍ତୁ ରାଜାସାହେବ ହସ୍ତକ୍ଷେପ କଲେ ନାହିଁ । ପ୍ରଥମେ କିଛି ଅଫିସରମାନେ ଅସିଲେ, ହଇଚଇ ପଡ଼ିଯାଉଥିଲା । କର୍ମଚାରୀମାନେ

ସବୁକାମ ଛାଡ଼ିଦେଇ ସେମାନଙ୍କ ସେବାରେ ଲାଗି ପଡ଼ୁଥିଲେ । ହାକିମଙ୍କର କଟାକ୍ଷରେ ରାଜା ସାହେବ କମ୍ପି ଉଠୁଥିଲେ । କିନ୍ତୁ ଏବେ ଛୋଟ ଲାଟ୍ ଆସିଲେ ମଧ୍ୟ ନିୟମ ବହିର୍ଭୂତ ଏକ ପାଦ୍ ଆଗେଇବାର ସାହସ ନ ଥିଲା । ବେଗାର-ପ୍ରଥା ନାମରେ ଯେତେସବୁ କୁକର୍ମ ହେଉଥିଲା, ତାହା ଏବେ ଗୋଟି ଗୋଟି ହୋଇ ଉଠିଯାଉଥିଲା, କିନ୍ତୁ ରାଜାସାହେବଙ୍କ ଉପରେ କୌଣସି ବିପତ୍ତିର ଆଶଙ୍କା ନ ଥିଲା ।

ରାଜାସାହେବଙ୍କର ଶରୀର ଓ ଚିତ୍ତ ପୁଲକିତ ଥିବା ସହିତ ମଧ୍ୟ ଏହି ପ୍ରେମ ତରଙ୍ଗରେ ମଗ୍ନ ହୋଇଗଲା । ସେନେ—କେବଳ ଗୋଟିଏ ସେନ ସେ ମନୋରମାକୁ କହିଥିଲେ—ମୋର କେବଳ ଆଉ ଗୋଟିଏ ଇଚ୍ଛା ଅଛି, ଈଶ୍ୱର ମୋତେ କେବଳ ଗୋଟିଏ ପୁତ୍ର ପ୍ରଦାନ କରିଦେଲେ ମୋର ସମସ୍ତ ମନୋରଥ ପୂର୍ଣ୍ଣ ହୋଇ ଯାଆନ୍ତା । ମନୋରମା ସେତେବେଳେ ମଧୁର କୋମଳ କଣ୍ଠରେ କହିଥିଲା—ନାଥ, ପୁତ୍ର ମାନବକୁ ଉଦ୍ଧାର କରେ ନାହିଁ । ନିଜର କର୍ମଦ୍ୱାରା ସେ ମୁକ୍ତି ପାଏ । ଯଶ ଏବଂ କୀର୍ତ୍ତି କର୍ମଦ୍ୱାରା ପ୍ରାପ୍ତ ହୋଇଥାଏ । ସନ୍ତାନ ଦାନ କରି ଈଶ୍ୱର କଠିନ ପରୀକ୍ଷା କରାଇଥାଆନ୍ତି । ଏହି ପରୀକ୍ଷାରେ ମନୁଷ୍ୟ ଅକୃତକାର୍ଯ୍ୟ ହୋଇ ନିମ୍ନଗାମୀ ହୋଇଥାଏ । ସୁଖ ମାର୍ଗରେ ଏହି ହେଉଛି ବଡ଼ ବାଧା ।

ସବୁଠାରୁ ବିଚିତ୍ର କଥା ଯେ ରାଜାସାହେବଙ୍କର ବିଷୟବାସନା ସମ୍ପୂର୍ଣ୍ଣତଃ ଲୋପ ହୋଇ ଯାଇଥିଲା । ଏକାନ୍ତରେ ବସିଲେ ସେ ମନରେ ପ୍ରକାର ପ୍ରକାର ବାସନାର ମୃଦୁ କଳ୍ପନା କରୁଥିଲେ, କିନ୍ତୁ ମନୋରମା ପାଖକୁ ଆସିଲେ ସବୁ ଭୁଲିଯାଉଥିଲେ । ଯେପରି ଯେପରି କୌଣସି ମନ୍ଦିରର ଦେବୀଙ୍କ ପାଖକୁ ଆସିଗଲେ ! ମନୋରମା ତାଙ୍କୁ ସମ୍ମାନ କରେ । ତାଙ୍କୁ ଦେଖିଲେ ଆନନ୍ଦରେ ନାଚି ଉଠେ, ମିଠାମିଠା କଥା କହେ । ନିଜ ହାତରେ ଉଆର କରି ସୁସ୍ୱାଦୁ ପଦାର୍ଥ ଖାଇବାକୁ ଦିଏ, ପଙ୍ଖା ଧରି ବସେ । କବିତାରେ ସବୁରସ ପୂର୍ଣ୍ଣ ମାତ୍ରାରେ ଥାଏ କେବଳ ଶୃଙ୍ଗାର ରସ ଛାଡ଼ି । ଝଙ୍ମଲମଲ ଚଟାଣ ଉପରେ ଥୁକିବାକୁ ବା କାହାର ଇଚ୍ଛା ହୁଏ ।

ଏହିଭଳି ଛଅମାସ କଟିଗଲା ।

ବସନ୍ତ ସମୟ । ଫାଲଗୁନ ମାସ । ଶୀତଳ ଓ ଉଲ୍ଲାସମୟ ସମୀର ପ୍ରବାହିତ ହେଉଥିଲା । ପ୍ରକୃତି ନବ ବିକସିତ ପୁଷ୍ପ ଓ କଳିର ସୁନେଲି ହାର ପିନ୍ଧି ହସି ଉଠୁଥିଲା । ନବ ପଲ୍ଲବିତ ଆମ୍ରକୁଞ୍ଜରେ କୋକିଳର ମଧୁର ସ୍ୱର ଶୁଣାଯାଉଥିଲା ।

ମନୋରମା ଆଇନା ସାମନାରେ ଠିଆହୋଇ କେଶରାଶି ସଜାଉଥିଲା । ଆଜି ତା'ର ପ୍ରତ୍ୟେକ ଅଙ୍ଗ ଉଲ୍ଲାସରେ ଖେଳି ଉଠୁଥିଲା । ଆଜି ଚକ୍ରଧର ଜେଲରୁ ମୁକ୍ତ ହୋଇ ଫେରିବେ ଏବଂ ସେ ତାଙ୍କୁ ସ୍ୱାଗତ କରିବେ ।

ଉତ୍ତମ ରୂପେ ସଜ୍ଜିତ ହୋଇ ପାଖ କୋଠରିକୁ ଯାଇ ଦେଖିଲା ମଙ୍ଗଳା ଗଭୀର ନିଦରେ ଶୋଇଛି । କାଲି ରାତି ଅଧଯାଏଁ ଉଭୟେ କଥାବାର୍ତ୍ତାରେ କଟାଇଥିଲେ । ମଙ୍ଗଳାକୁ ନିଦ

ନିଦ ଅସିବା ଦେଖି ସେ ତାଙ୍କୁ ଶୁଆଇ ନିଜ କୋଠରୀକୁ ଯାଇ ଶୋଇଥିଲା । ଏତେ ଡେରଯାଏଁ ଶୋଇଥିବାରୁ ସେ ସାଙ୍କୁ ଯାଇ ଡାକିଲା—ମଙ୍ଗଳା, କେତେବେଳ ଯାଏଁ ଶୋଇବ ? ଦେଖ, କେତେ ବେଳ ହେଲାଣି । ନଶୁଣିବାରୁ କାନ୍ଧକୁ ହଲାଇ କହିଲା—କ'ଣ ଦିନସାରା ଶୋଇରହିବ ? ତେବେ ଶୋଇଥା ମୁଁ ଯାଉଛି ।

ମଙ୍ଗଳା ଧଡ଼ପଡ଼ ହୋଇ ଉଠି କହିଲା—ଆରେ, ଏତେ ବେଳ ହୋଇ ଗଲଣି ! ମୋତେ ଆଗରୁ ଟିକିଏ ଉଠେଇଦେଲନାହିଁ ?

ମନୋରମା—ହଉ, ଏବେ ଉଠି ନିତ୍ୟକର୍ମ ଶେଷ କର ।

ମନୋରମା ନିଜ କୋଠରୀକୁ ଆସି ଉଲ୍ଲାସ ଚିତ୍ତରେ କ'ଣ ଲେଖିବାକୁ ଲାଗିଲା । ଦେଓ୍ୱାନ୍-ସାହେବ ଆସିବାର ସୂଚନା ଦେଲେ ଏବଂ ପଛେ ପଛେ ଆସି ପାଖ ଚୌକିରେ ବସିଲେ । ମନୋରମା ପଚାରିଲା—ରାଜା ବ୍ୟାଣ୍ଡ ପାର୍ଟି ପ୍ରସ୍ତୁତ ତ ?

ହରସେବକ—ହଁ, ଆଗରୁ ହୁକୁମ୍ ଦିଆଯାଇଛି ।

ମନୋରମା—ଶୋଭାଯାତ୍ରା ବ୍ୟବସ୍ଥା ?

ହରସେବକ—ବ୍ୟବସ୍ଥା ତ ମୁଁ କରି ସାରିଛି । କିନ୍ତୁ ଏଥି ନିମିତ୍ତ ରାଜ୍ୟରେ ଯେଉଁ ଉତ୍ସାହ ଦେଖାଦେଇଛି, ସମ୍ଭବତଃ ହାନିକର ହେବ । ରାଜ୍ୟ ଉପରେ ସରକାରଙ୍କର କେତେ କଡ଼ା ଦୃଷ୍ଟି, ତାହା ତ ଆପଣ ଜାଣନ୍ତି । ମୁଁ ପ୍ରଥମରୁ କହୁଛି ଏବଂ ଏବେ ବି କହୁଛି—ଏ ବିଷୟରେ ଖୁବ୍ ଧୀର ଚିନ୍ତା କାମ କରିବା ଉଚିତ ।

ମନୋରମା—ଆପଣ କ'ଣ ମନେ କରିଛନ୍ତି ଯେ ମୁଁ ବିନା ବୁଦ୍ଧି ବିଚାରେ କୌଣସି କାମ କରୁଛି ବୋଲି ! ମୁଁ ଖୁବ୍ ଚିନ୍ତା କରିଛି । ବାବୁ ଚକ୍ରଧର କ୍ଷୁଦ୍ର, ତକାସ୍ୱୃତ କି ହତ୍ୟାକାରୀ ନୁହନ୍ତି । ସେ ଜଣେ ଶ୍ରେଷ୍ଠ ବ୍ୟକ୍ତି । ତାଙ୍କୁ ସ୍ୱାଗତ କରିବାରେ ଯଦି ସରକାର ଖରାପ ଭାବନ୍ତି, ତେବେ ଭାବନ୍ତୁ । ସେଥିପାଇଁ ଆମେ ଖାତିର୍ କରୁନୁ । ଆପଣ ଯାଇ ସବୁ ଠିକ୍ କରନ୍ତୁ ।

ହରସେବକ—ଶ୍ରୀମାନ୍ ରାଜାସାହେବ କହନ୍ତି—ସହରବାସୀଙ୍କୁ ଶୋଭାଯାତ୍ରା ବାହାର କରିବାକୁ ଦିଆଯାଉ—ଆମେ ସେଥିରେ ମିଶିବା ଆବଶ୍ୟକ ନାହିଁ ।

ମନୋରମା ରୁଷ୍ଟ ହୋଇ କହିଲା—ରାଜାସାହେବଙ୍କୁ ମୁଁ ପଚାରିଛି । ମୁଁ ଯାହା କହୁଛି, ସେ ବି ସେଇଆ କହୁଛନ୍ତି । ଯଦି ସତ୍ ମାର୍ଗରେ ଚାଲିଲେ ରାଜ୍ୟ ଜବତ ହୋଇଯାଏ, ତେବେ ବି ମୁଁ ସେ ମାର୍ଗରୁ ହଟିବିନାହିଁ । ରାଜ୍ୟ ବିଷୟରେ ଆପଣ ଏତେ ଚିନ୍ତିତ ହେବାର କ'ଣ ଆବଶ୍ୟକତା ଅଛି ?

ଦେଓ୍ୱାନ୍ ସାହେବ ସଜଳ ନେତ୍ରରେ ମନୋରମାକୁ ଚାହିଁ କହିଲେ—ଝିଅ, ମୁଁ ତୁମର ଭଲ ପାଇଁ କହୁଛି । ସମୟଟା କେତେ ଖରାପ ତୁମେ ବୋଧେ ଜାଣିନା ।

ମନୋରମା ଉତ୍ତେଜିତ ହୋଇ କହିଲା—ବାବା, ଏହି ସଦୁପଦେଶ ପାଇଁ ମୁଁ ଆପଣଙ୍କ-ଠାରେ କୃତଜ୍ଞ । କିନ୍ତୁ ମୋର ଆତ୍ମା ତାହା ଗ୍ରହଣ କରିପାରୁନାହିଁ । ଧନସମ୍ପତ୍ତି ଉପରେ

ସାପଭଳି ବସି ତାକୁ ରକ୍ଷା କରିବା ପାଇଁ ଏ ପଦ ଗ୍ରହଣ କରିନାହିଁ । ବରଂ ନିଜର ଆତ୍ମୋନ୍ନତି ଏବଂ ଅନ୍ୟମାନଙ୍କର ଉପକାର ପାଇଁ ଏ ପଦ ଗ୍ରହଣ କରିଛୁ । ଏବେ ସାତଟା ବାଜୁଛି । ଆଠଟା ବେଳକୁ ଆପଣ ଷ୍ଟେସନରେ ପହଞ୍ଚିବା ଉଚିତ । ମୁଁ ଠିକ୍ ସମୟରେ ପହଞ୍ଚିବି । ଯାଆନ୍ତୁ ।

ଦେଓ୍ୱାନ୍ ସାହେବ ଚାଲିଯିବା ପରେ ମନୋରମା ପୁଣି ଲେଖିବାକୁ ଲାଗିଲା—ଚକ୍ରଧରଙ୍କ ସ୍ୱାଗତ ପାଇଁ ଭାଷଣ ଲେଖିବାରେ ସେ ଏତେ ମଗ୍ନ ହୋଇଗଲା ଯେ, ରାଜାସାହେବ ଆସି ବସିବାର ବି ଜାଣିପାରିଲାନାହିଁ । ରାଜାସାହେବ ବି କିଛି ସଙ୍କେତ ନ ଦେଇ ଚୁପ୍ ହୋଇ ବସିଥା'ନ୍ତି । ତାଙ୍କୁ ଖୁବ୍ କାଶ ଲାଗିଲାଣି । କିନ୍ତୁ ସେ ନ କାଶି ଦବେଇ ରଖିଲେ । ନୈସର୍ଗିକ କ୍ରିୟାକୁ କେତେ ସମୟବା ଦବେଇ ରଖାଯାଇପାରିବ ! ଶେଷରେ ବାହାରି ପଡ଼ିଲା—ଛୁଙ୍କ, କାଶ ଓ ଛୁଙ୍କ-କାଶର ସମ୍ମିଶ୍ରଣ । ସତେ ଯେମିତି ହନୁମାନଙ୍କର ଝେଙ୍କାରୁଛି । ମନୋରମା ଚମକିପଡ଼ି ଦେଖିଲା ରାଜାସାହେବ ପ୍ରେମ ବିହ୍ୱଳ ନେତ୍ରରେ ଅନାଇ ରହିଛନ୍ତି । ସେ କହିଲା— କ୍ଷମାକରିବେ, ଆପଣ ଆସିବାର ମୁଁ ଜାଣିନାହିଁ । କେତେ ସମୟ ହେଲା ବସିଲେଣି ?

ରାଜା—ନାଇଁ, ଏବେ ତ ଆସିଲି । ତୁମେ ଲେଖୁଥିଲ । ମୁଁ ତିଷ୍କାର କରିବାକୁ ଇଚ୍ଛା କଲିନାହିଁ ।

ମନୋରମା—ଆପଣଙ୍କ କାଶ କ୍ରମେ ବଢ଼ୁଛି । କିଛି ଔଷଧର ବ୍ୟବସ୍ଥା କରୁ ନାହାନ୍ତି କାହିଁକି ?

—ତା'ମନକୁ ସିଏ ଭଲହୋଇଯିବ । ବାବୁ ଚକ୍ରଧର ୧୦ଟାର ଡାକ ଗାଡ଼ିରେ ଆସୁଛନ୍ତି ନା ! ତାର ସ୍ୱାଗତ ପାଇଁ ସମସ୍ତ ପ୍ରସ୍ତୁତ ହେଲାଣି !

ମନୋରମା—ଆଜ୍ଞା, ପ୍ରାୟ ହେଉଛି ।

ରାଜା—ମୁଁ ଚାହେଁ, ଏପରି ଶୋଭାଯାତ୍ରା ହେଉ, ଯେପରି ଏ ସହରରେ କେବେ ହୋଇନ କି ହୋଇପାରିବନାହିଁ ।

ମନୋରମା—ମୁଁ ତ ସେଇଆ ଚାହେଁ ।

ରାଜା—ମୁଁ ସୈନିକମାନଙ୍କ ଆଗରେ ସାମରିକ ପୋଷାକ ପିନ୍ଧି ଚାଲିବାକୁ ଚାହେଁ ।

ମନୋରମା ଚିନ୍ତିତ ହୋଇ କହିଲା—ଆପଣଙ୍କର ଯିବାଟା ଉଚିତ ମନେହେଉନାହିଁ । ଆପଣ ଏଠାରେ ତାଙ୍କୁ ସ୍ୱାଗତ କରିବେ । ନିଜ ମର୍ଯ୍ୟାଦା ରକ୍ଷା କରିବାକୁ ପଡ଼ିବ । ସରକାର ତ ଉଚ୍ଛାକୁ ସନ୍ଦେହ କରୁଛି—ଏପରି ହେଲେ ଅମ ପଛରେ ଲାଗିଯିବ ।

ରାଜା—କିଛି ଚିନ୍ତା ନାହିଁ । ସଂସାରରେ ସମସ୍ତେ ତ ରାଜା ନୁହନ୍ତି । ମୁଁ କଷ୍ଟସହି ଯିବି । ଏପରି ମହାତ୍ମାଙ୍କ ଦର୍ଶନରେ ରାଜ୍ୟ ଯଦି ପ୍ରତିବନ୍ଧକ ହୁଏ, ତେବେ ମୁଁ ଇସ୍ତଫା ଦେଇଦେବି ।

ମନୋରମା ରାଜାଙ୍କ ଆଡ଼କୁ ବଡ଼ କରୁଣ ଦୃଷ୍ଟିରେ ଚାହିଁ କହିଲା—ମୁଁ ତ ଯାଉଛି, ଆପଣ ନ ଯାଇ ଏଇଠି ରହିବା ଭଲ ।

ରାଜା—ହେଲ, ଯିବନାହିଁ । କିନ୍ତୁ ଏଠାରେ ମୁଁ ଚୁପ୍ ହୋଇ ବସି ପାରିବିନାହିଁ । ତାଙ୍କର ଗୁଜୁରାଣ ପାଇଁ କିଛି ତ କରିବାକୁ ପଡ଼ିବ ।

ମନୋରମା—ବଡ଼ ତ୍ୟାଗୀ ପୁରୁଷ ସେ । ମୁଁ ତ ଭାବୁଛି, ସେ ଗ୍ରହଣ କରିବେନାହିଁ ।

ରାଜା—ମୁଁ ଜାଣୁଛି, ସେ ତ୍ୟାଗୀ ପୁରୁଷ । ଇଚ୍ଛା କରିଥିଲେ ବଡ଼ ଚାକିରି କରି ଆରାମରେ ରହିଥାଆନ୍ତେ । ଅନ୍ୟର ଉପକାର ପାଇଁ ପ୍ରାଣ ଦେବାକୁ ପ୍ରସ୍ତୁତ । ଧନ୍ୟ ! କିନ୍ତୁ ଚଳିବା ପାଇଁ କିଛି କରିବା ତ ଉଚିତ । ତୁମକୁ ଯଦି କହିବାକୁ ସଙ୍କୋଚହେଉଚି, ତେବେ ମୁଁ କହିବି ।

ମନୋରମା—ନାହିଁ, ଆପଣ କହନ୍ତୁନି, ମୁଁ କହିବି ।

ରାଜା—ମୁଁ ମଧ୍ୟ ତାଙ୍କ ସମିତିର ମେମ୍ବର ଥିଲି । ଏବେ ପୁଣି ନାଁ ଲେଖେଇବି । କେତେ ଟଙ୍କା ହେଲେ ହେବ ବୋଲି ତୁମେ ବିଚାରୁଛ !

ମନୋରମା—ମୁଁ ଭାବୁଛି ୫୦ ଟଙ୍କା ହେଲେ ବହୁତ ହେବ ।

ରାଜା—୫୦ ଟଙ୍କା ! ଜଣେ ଭଦ୍ରଲୋକ ଚଳିବ ୫୦ ଟଙ୍କାରେ ? ଆଜିକାଲି ତ ୫୦ ଟଙ୍କାରେ କେବଳ ରୁଟି ଖାଇଲେ ବି ଅଣ୍ଟିବନି । ଏ ଯୁଗରେ ୫୦୦ ଟଙ୍କାରୁ କମ୍ ହେଲେ ଚଳିହବନି ।

ମନୋରମା—ପାଞ୍ଚଶହ ! କେବେ ନେବେନି । ପଚାଶ ଆଗ ଗ୍ରହଣ କରନ୍ତୁ । ପାଞ୍ଚଶହ ନାଁ ଶୁଣିଲେ ତ କାନରେ ହାତ ଦେଇ ଚାଲିଯିବେ ।

ରାଜା—ଆମର କର୍ତ୍ତବ୍ୟ ଆମେ କରିବା—ଗ୍ରହଣ କରିବା ନ କରିବା ତାଙ୍କ ଇଚ୍ଛା ।

ମନୋରମା ପୁଣି ଲେଖିବାକୁ ଲାଗିଲା ଏବଂ ଏହାହିଁ ଥିଲା ରାଜାସାହେବଙ୍କ ପାଇଁ ଏଠାରୁ ଚାଲିଯିବାର ସଙ୍କେତ । କିନ୍ତୁ ରାଜା ସାହେବ ସେହିପରି ସେଠାରେ ବସି ରହିଲେ । ତାଙ୍କର ଦୃଷ୍ଟି ମକରନ୍ଦ ପିପାସୁ ଭ୍ରମର ଭଳି ମନୋରମାର ମୁଖ-କମଳରୁ ମାଧୁର୍ଯ୍ୟ ରସ ପାନ କରିବାକୁ ଲାଗିଲା । ତାର ସୌନ୍ଦର୍ଯ୍ୟ ଆଜି ତାଙ୍କୁ ଅତ୍ୟନ୍ତ ମୁଗ୍ଧ କରୁଥିଲା । ମନୋରମାର ବେଶଭୂଷା ଆଜିଯାଏଁ ସେ ଦେଖି ନଥିଲେ । ବର୍ତ୍ତମାନ ତାଙ୍କ ହୃଦୟରେ ଯେଉଁ ପ୍ରେମାଗ୍ନି ଜାତହେଉଥିଲା, ତାହା କେବେ ସେ ଅନୁଭବ କରିନଥିଲେ । ଅନ୍ତର ଚାପି ରହି ଯାଉଥିଲେ ।

ହଠାତ୍ ଘଣ୍ଟାରେ ନଅଟା ବାଜିଲା । ମନୋରମା ଚୌକି ଛାଡ଼ି ଠିଆହେଲା । ରାଜାସାହେବ ମଧ୍ୟ ବୃକ୍ଷରେ ବିଶ୍ରାମ ନେଇଥିବା ପକ୍ଷୀ ଭଳି ଉଠି ଧୀରେ ଧୀରେ ବାହାରକୁ ଚାଲିଲେ । ଦୁଆରେ ପହଞ୍ଚି କହିଲେ—ମୁଁ ଗଲେ କ୍ଷତି କ'ଣ ?

ମନୋରମା କରୁଣ କୋମଳ କଣ୍ଠରେ କହିଲା—ଚାଲନ୍ତୁ !

( ୨୪ )

ରେଳ ଷ୍ଟେସନରେ ଯୋରଣ ଫିଙ୍ଗିଲେ ତଳେ ପଡ଼ିବନ । ପ୍ଲାଟଫର୍ମ ଭିତରେ ବଭିନ୍ନ ୟୁନିଫର୍ମରେ ବଭିନ୍ନ ସ୍କୁଲର ଛାତ୍ରଛାତ୍ରୀ ଏବଂ ପତାକାଧାରୀ ସମିତି ସେବକ । କାନରେ ଫୁଲଧରି ମନୋରମା ସହରର ମହିଳାମାନଙ୍କ ସହ ସେବକମାନଙ୍କ ମଝିରେ ଠିଆ ହୋଇଛି । ଆନନ୍ଦରେ ସେ ପୁଲକି ଉଠୁଛି । ବାରଣ୍ଡାରେ ମୁଖ୍ୟ କର୍ମଚାରୀ ଏବଂ ସହରର ଗଣ୍ୟମାନ୍ୟ ବ୍ୟକ୍ତିମାନଙ୍କ ସହ ରାଜାସାହେବ । ମୁନ୍‌ସୀ ବଜ୍ରଧର ଏଣେ ତେଣେ ଦଉଡ଼ୁଛନ୍ତି ଲୋକମାନଙ୍କୁ ସାବଧାନ କରିବା ପାଇଁ । ଦେୱାନ ହରିସେବକ ସିଂହ ସଶଂକ ନେତ୍ରରେ ସିପାହିମାନଙ୍କୁ ଚାହୁଁଥିଲେ ଏବଂ ବାରମ୍ବାର ରାଜା ସାହେବଙ୍କ କାନରେ କ'ଣ କହୁଥିଲେ । ଅଜ୍ଞାତ ଭୟରେ ତାଙ୍କ ପ୍ରାଣ ଶୁଖିଯାଉଥିଲା । ଷ୍ଟେସନ ବାହାରେ ହାତୀ, ଘୋଡ଼ା, ବଗି, ମୋଟର ପଂକ୍ତିବଦ୍ଧ ହୋଇ ଠିଆହୋଇଥିଲେ । ଜଗଦୀଶପୁରର ବ୍ୟାଣ୍ଡପାର୍ଟି ମନୋହର ସ୍ୱରରେ ବିଜୟ-ଗାନ ବଜାଉଥିଲା । ସହସ୍ର କଣ୍ଠରୁ ବାରମ୍ବାର ହର୍ଷଧ୍ୱନି ନିର୍ଗତ ହେଉଥିଲା । ଲୋକେ ବ୍ୟକ୍ତିଗତ ଚିନ୍ତା ଭୁଲି ରାଷ୍ଟ୍ରୀୟତା ନିଶାରେ ବିଭୋର ହୋଇ ଯାଇଥିଲେ ।

ଠିକ୍ ଦଶଟାରେ ଗାଡ଼ି ଦୂରରୁ ଧୂଆଁ ଉଡ଼େଇ ଆସୁଥିବାର ଦେଖାଗଲା । ଏଯାଏଁ ଲୋକେ କାଇଦା ଅନୁସାରେ ନିଜ ନିଜ ସ୍ଥାନରେ ଠିଆ ହୋଇଥିଲେ । କିନ୍ତୁ ଗାଡ଼ି ଆସିବାରେ ସବୁ ବ୍ୟବସ୍ଥା ଅନ୍ତର୍ଦ୍ଧାନ ହୋଇଗଲା । ପଛବାଲା ଆଗକୁ ମାଡ଼ି ଆସିଲେ, ଆଗବାଲା ପଛରେ ରହିଗଲେ । ପତାକା ଦଣ୍ଡ ରକ୍ଷାସ୍ତ୍ର କାମ କଲା ଏବଂ ଫୁଲ ବୋଝ ଢାଲ କାମ ଦେଲା । ମୁନ୍‌ସୀ ବଜ୍ରଧର ବହୁ ପାଟି କଲେ, କିନ୍ତୁ ଶୁଣୁଚି କିଏ ? ହଁ, ମନୋରମାର ଚାରିପାଖ ଖାଲି ଥିଲା । ଦେୱାନ ସାହେବ ତା' ସାମନାରୁ ଭିଡ଼ ଭାଙ୍ଗିବା ପାଇଁ ସୈନିକ-ମାନଙ୍କୁ ନେଇଯାଇଥିଲେ । ଗାଡ଼ି ଅସି ଠିଆହେଲା ଏବଂ ଚକ୍ରଧର ଓହ୍ଲେଇ ପଡ଼ିଲେ । ମନୋରମା ଅନୁରାଗରେ ଉନ୍ମତ୍ତ ହୋଇ ଚାଲିଲା କିନ୍ତୁ ତିନି ଚାରି ପାହୁଣ୍ଡ ଯାଇଛି, ଗୋଟେ କଥା ତା'ର ମନେପଡ଼ିଲା । ଠିଆ ହୋଇପଡ଼ି ଆଡ଼ୁଆଳରେ ଚକ୍ରଧରଙ୍କୁ ଚାହିଁ ଦେଖିଲା—ଏକ ରକ୍ତହୀନ, ମଳିନମୁଖ, କ୍ଷୀଣ ମୂର୍ତ୍ତି ଅବନତ ମସ୍ତକରେ ଠିଆହୋଇଛି । ମନୋରମାର ହୃଦୟ ଦୁଃଖାଭିଭୂତ ହୋଇପଡ଼ିଲା ଏବଂ ଚକ୍ଷୁରୁ ଅଶ୍ରୁ ନିର୍ଗତ ହେଲା । ସେବାସମିତିର ମଙ୍ଗଳଗାନ ଶେଷ ହେଲା । ତେଣେ ଚକ୍ରଧରଙ୍କ ଉପରେ ପୁଷ୍ପ ବର୍ଷା ହେଉଥିଲା । ରାଜା ସାହେବ ଆଗକୁ ଅସି ନଗର-ନେତୃମଣ୍ଡଳୀ ତରଫରୁ ସ୍ୱାଗତ କଲେ । ମୁନ୍‌ସୀ ବଜ୍ରଧର ଶୋଭାଯାତ୍ରା ସମ୍ବନ୍ଧରେ ଏତେ ବ୍ୟସ୍ତ ଥିଲେ ଯେ, ଚକ୍ରଧର ସମ୍ପର୍କରେ ଚିନ୍ତା କରିବାକୁ ତାଙ୍କୁ ସମୟ ନ ଥିଲା । ଚକ୍ରଧର ଷ୍ଟେସନ ବାହାରକୁ ଆସି ଏ ପ୍ରସ୍ତୁତି ଦେଖି କହିଲେ—ଆପଣମାନେ ଏତେ ଆୟୋଜନ କରି ମୋତେ ଲଜ୍ଜିତ କରୁଛନ୍ତି । ଏ ସମ୍ମାନ ପାଇଁ ମୁଁ ସମ୍ପୂର୍ଣ୍ଣ ଅଯୋଗ୍ୟ । ମୋତେ ସମ୍ମାନିତ କରିବା ନାଁରେ ଆପଣମାନେ ସମ୍ମାନର ଅବମାନନା କରୁଛନ୍ତି । ମୋ ଭଳି ବ୍ୟକ୍ତି ପାଇଁ ଏ ଧୂମ୍‌ଧାମ୍ ଆଦୌ ଉଚିତ ନୁହେଁ । ଏ ତାମସା କରନ୍ତୁ ନାହିଁ ।

ସଂଯୋଗକୁ ମୁନ୍‌ସୀଙ୍କ ସେଠାରେ ଠିଆ ହୋଇଥିଲେ । ଏ କଥା ଶୁଣି ସେ ବିଗିଡ଼ିଯାଇ କହିଲେ—ତାମସା କରନାର୍ ନ ଥିଲା ତ ଅନ୍ୟମାନଙ୍କ ପାଇଁ ପ୍ରାଣ ଦେବାକୁ କାହିଁକି ଆଗେଇ ଯାଇଥିଲୁ ? ଲୋକେ ପାଞ୍ଚ ଦଶ ହଜାର ଖର୍ଚ୍ଚ କରି 'ରାୟବାହାଦୁର' 'ଖାଁ ବାହାଦୁର' ହୋଇ ଯାଉଛନ୍ତି । ତୁ ଅନ୍ୟ ପାଇଁ ବିପଦ ବରଣ କରି ଏ ସମ୍ମାନ ପାଉଛୁ—ଏଥିରେ ବିରକ୍ତ ହେବାର କ'ଣ ଅଛି ? କିଏ କୁଆଡ଼ି ବିପଦ ସମ୍ବନ୍ଧରେ କ'ଣ କହିଦେଲେ ତାହାର ପ୍ରଶଂସା ଯଦି ଖବରକାଗଜରେ ନ ବାହାରୁଚି, ତେବେ ସମ୍ପାଦକ ଉପରେ ସେ ଯାଇ ମାର୍ ନ ମାର୍ ହଉଛି ! ତୁ ଏଇ ଦଶ ପାଞ୍ଚଟା ହାତୀ ଘୋଡ଼ା ଦେଖି ଘବଡ଼େଇ ଯାଉଛୁ ! ମଣିଷର ଇଜ୍ଜତ ନିଜ ହାତରେ । ତୁ ଯଦି ନିଜର ଇଜ୍ଜତ ନିଜେ ନ ରଖିବୁ ଅନ୍ୟ କେହି କାହିଁ କରିବେ !

ଏହା କହି ସେ ଚକ୍ରଧରଙ୍କୁ କୁଣ୍ଢାଇ ପକାଇଲେ । ଚକ୍ରଧରଙ୍କର ରକ୍ତହୀନ ମୁଖ ଲଜ୍ଜାରେ ଆରକ୍ତ ହୋଇଗଲା । ସେ ମନେ ମନେ ଭାବିଲେ—ଲୋକେ ଏ କଥା ଶୁଣି ବାପାଙ୍କୁ ବ୍ୟଙ୍ଗ, ବିଦ୍ରୂପ, ଥଟ୍ଟା କରୁଥିବେ । ଆଉ ଆପତ୍ତି କରିବାକୁ ସାହସ ହେଲାନାହିଁ । ଚୁପ ହୋଇ ଯାଇ ରାଜାସାହେବଙ୍କ ପାଖରେ ବସିଲେ । ଶୋଭାଯାତ୍ରା ଚାଲିଲା ।

ଆଗରେ ପାଞ୍ଚଟା ସୁସଜ୍ଜିତ ହାତୀ । ହାତୀ ଉପରେ ସହନାଇ ଓ ନଗାଡ଼ା ବାଜୁଥିଲା । ହାତୀ ପଛରେ ଘୋଡ଼ାମାନଙ୍କର ଲମ୍ବା ଧାଡ଼ି । ତା'ପରେ ବ୍ୟାଣ୍ଡପାର୍ଟି । ବ୍ୟାଣ୍ଡପାର୍ଟି ପଛରେ ଜଗଦୀଶପୁର ସୈନିକ ଚାରି ଧାଡ଼ିରେ କଦମ ପକାଇ ଚାଲିଛନ୍ତି । ତା'ପରେ କ୍ରମ ଅନୁସାରେ ଆର୍ଯ୍ୟ-ମହିଳା-ମଣ୍ଡଳ, ଖିଲାଫତ୍, ସେବାସମିତି ଏବଂ ସ୍କାଉଟ୍ ଦଳ । ଏମାନଙ୍କ ପଛରେ ଚକ୍ରଧର—ରାଜାସାହେବ ଏବଂ ମନୋରମା ମଟରରେ ବସି ଚାଲିଛନ୍ତି । ରାଜାସାହେବ ଚକ୍ରଧରଙ୍କ ସହ କଥାବାର୍ତ୍ତା କରୁଥାନ୍ତି ସିନା, ମନୋରମାକୁ ଚାହୁଁ ନଥା'ନ୍ତି । ଶୋଭାଯାତ୍ରା ଚାଲିଛି । ଏ ଗାଡ଼ି ପଛରେ ରାଜନୈତିକ ସମସ୍ୟା ଚିତ୍ରିତ ପ୍ଲାକାର୍ଡ, ବିଭିନ୍ନ ଗାୟକ ମଣ୍ଡଳୀ—ଢୋଲକ୍, ଗିନି ବଜାଇ ରାଜନୈତିକ ଗୀତ ବୋଲୁଥାନ୍ତି । ସେମାନଙ୍କ ଘୋଡ଼ାଗାଡ଼ି, କାର ଏବଂ ସବା ପଛରେ ଜନତା ।

ଶୋଭାଯାତ୍ରା ନଦେଶର, ଚେତଗଞ୍ଜ, ଦଶାଶ୍ୱମେଧଘାଟ ଏବଂ ଚଉକ ଦେଇ କବୀର ଚଉରା ପାଖରେ ପହଞ୍ଚୁ ପହଞ୍ଚୁ ଦ୍ୱିପହର ହୋଇଗଲା । ଏଠାରେ ମୁନ୍‌ସୀଙ୍କଙ୍କ ଘର ସାମନାରେ ଏକ ବଡ଼ ଚାନ୍ଦୁଆ ଟଣାହୋଇଥିଲା । ଏହିଠାରେ ସଭା ହୋଇ ଚକ୍ରଧରଙ୍କୁ ଅଭିନନ୍ଦନ ପତ୍ର ଦିଆଯିବ ଏବଂ ମନୋରମା ସ୍ୱୟଂ ତାହା ପଢ଼ି ଶୁଣାଇବେ । କିନ୍ତୁ ଲୋକେ ଯେତେବେଳେ ଆସି ପେଣ୍ଡାଲରେ ବସିଗଲେ ଏବଂ ମନୋରମା ଅଭିନନ୍ଦନ ପତ୍ର ଧରି ପଢ଼ିବାକୁ ଠିଆ ହୋଇ-ଗଲା—ସେତେବେଳେ ତା'ମୁହଁରୁ ଗୋଟିଏ ହେଲେ ଶବ୍ଦ ବାହାରିଲାନାହିଁ । ଏଇ ସ୍ୱାଗତ ସମାରୋହ ପାଇଁ ସେ ଦିନ ରାତି ଏକ କରିଦେଇଛି । ନଚେତ କାଶୀଭଳି ଏକ ଉତ୍ସାହହୀନ ନଗରରେ ଏଭଳି ଶୋଭାଯାତ୍ରାର ବ୍ୟବସ୍ଥା କିଛି ସହଜ କଥା ନ ଥିଲା । କିନ୍ତୁ ଏବେ ପାଟିରୁ କଥା ବାହାରୁନାହିଁ ।

ମନୋରମାର ଏଭଳି ଅବସ୍ଥା ଦେଖି ରାଜାସାହେବ ଆସି ପେଣ୍ଡାଲ ଉପରେ ଠିଆ ହୋଇ ରାଣୀଙ୍କୁ ଚୌକିରେ ବସାଇ କହିଲେ—ସଜ୍ଜନବୃନ୍ଦ, ରାଣୀଙ୍କର ଭାଷଣରେ ଆପଣଙ୍କୁ ଯେଉଁ ଆନନ୍ଦ ମିଳିଥା'ନ୍ତା, ତାହା ମୋ କଥାରେ କାହିଁ ! କୋଇଲି ସ୍ଥାନରେ କୁଆ ଠିଆ ହୋଇଛି । ଆପଣମାନେ ଜାଣିନଥିବେ, ପୂଜନୀୟ ବାବୁ ଚକ୍ରଧର ରାଣୀସାହେବାଙ୍କର ଗୁରୁ ଏବଂ ଏବେ ମଧ୍ୟ ସେ ଗୁରୁ ବୋଲି ମାନନ୍ତି । ନିଜ ଗୁରୁଙ୍କୁ ସମ୍ମାନ ଦେବା ଶିଷ୍ୟର ଧର୍ମ । କିନ୍ତୁ ରାଣୀସାହେବାଙ୍କର କୋମଳ ହୃଦୟ ବର୍ତ୍ତମାନ ନାନାପ୍ରକାର ଆବେଗ ଦ୍ୱାରା ଏତେ ପୂର୍ଣ୍ଣ ଯେ, ବାଣୀ ପାଇଁ ସ୍ଥାନ ନାହିଁ—ତେଣୁ କ୍ଷମଣୀୟ । ବାବୁସାହେବ ଯେପରି ଧୈର୍ଯ୍ୟ ଓ ସାହସର ସହିତ ଦୀନ ବ୍ୟକ୍ତିମାନଙ୍କୁ ରକ୍ଷା କଲେ ତାହା ଆପଣମାନେ ଜାଣନ୍ତି । ଜେଲରେ ମଧ୍ୟ ସେ ନିର୍ଭୀକତାର ସହ ନିଜର କର୍ତ୍ତବ୍ୟ ପାଳନ କଲେ । ତାଙ୍କର ମନ ଦୟା ଓ ପ୍ରେମର ସାଗର । ଯେଉଁ ବୟସରେ ଅନ୍ୟ ଯୁବକମାନେ ଧନର ଉପାସନା କରନ୍ତି, ସେହି ବୟସରେ ସେ ଧର୍ମ ଓ ଜାତିର ସେବା କଲେ । ମୁଁ ମଧ୍ୟ ତାଙ୍କର ପୁରୁଣା ଭକ୍ତ ।

ଜଣେ ସଜ୍ଜନ କହିଲେ—ଆପଣ ତ ତାଙ୍କୁ ଜେଲ ଦେଇଥିଲେ ।

ରାଜା—ହଁ, ତାହା ମୁଁ ସ୍ୱୀକାର କରୁଛି । ପ୍ରଭୁତ୍ୱ ପାଇବା ପରେ ମୁଁ ଗର୍ବରେ ଫୁଲି ଯାଇଥିଲି । ଏହା ମାନବୀୟ ସ୍ୱଭାବ ଏବଂ ମୁଁ ଆଶା କରୁଛି, ଆପଣମାନେ ମୋତେ କ୍ଷମା ଦେବେ ।

ରାଜାସାହେବ କହୁଥିଲେ । ଏଣେ ମନୋରମା ପେଣ୍ଡାଲରୁ ଉଠି ଆସି କାର୍‌ରେ ବସି ରାଜଭବନକୁ ଚାଲି ଆସିଲେ । ରାସ୍ତାସାରା କାନ୍ଦୁଛନ୍ତି । ତାଙ୍କର ମନ ଚକ୍ରଧରଙ୍କ ସହ ଏକାନ୍ତରେ କଥାବାର୍ତ୍ତା କରିବାକୁ ବିକଳ ହେଉଥିଲା । ସେ ତାଙ୍କୁ ବୁଝେଇ ଦେବାକୁ ଚାହୁଁଥିଲା—ମୁଁ ତିରସ୍କାରଯୋଗ୍ୟ ନୁହେଁ, ଦୟାର ଯୋଗ୍ୟ । ମୋତେ ଯଦି ତୁମେ ବିଳାସିନୀ ଭାବୁଥାଅ, ତେବେ ତାହା ଅନ୍ୟାୟ । ଆଉ କି ପ୍ରକାରେ ମୁଁ ତୁମର ସେବା କରନ୍ତି ! ମୋଠାରେ ବୁଦ୍ଧିବଳ ନଥିଲା, ବିଦ୍ୟାବଳ ନ ଥିଲା, କି ଧନବଳ ନଥିଲା । ଥିଲା କେବଳ ରୂପବଳ । ତା'ମଧ୍ୟ ମୁଁ ତୁମକୁ ଅର୍ପଣ କରିଥିଲି । ତଥାପି ତୁମେ ମୋତେ ତିରସ୍କାର କରୁଛ !

ମନୋରମା କୌଣସି ପ୍ରକାରେ ଦିନଟି କଟାଇଲା, କିନ୍ତୁ ସନ୍ଧ୍ୟାକୁ ଅଧୀର ହୋଇଉଠିଲା । ସଙ୍ଗେ ସଙ୍ଗେ ଯାଇ ଚକ୍ରଧରଙ୍କ ଘରେ ପହଞ୍ଚିଲା । ଚକ୍ରଧର ଏକାକୀ ଦୁଆରେ ଟହଲୁ ଥିଲେ । ଲୌଙ୍ଗୀ ଆଉ ନ ଥିଲା । ମନୋରମା ମନେ ମନେ ଭାବିଲା—ନ ଆସିବା ଉଚିତ ଥିଲା । ଚକ୍ରଧର ମନୋରମା ନିକଟକୁ ଆସି ପ୍ରସନ୍ନ ଭାବରେ କହିଲେ— ମୁଁ ତ ସ୍ୱୟଂ ଆପଣଙ୍କ ପାଖକୁ ଯାଇଥାଆନ୍ତି—ଆପଣ ବୃଥାରେ କଷ୍ଟ କଲେ ।

ମନୋରମା—ମୁଁ ଭାବିଲି-ଯାଇ ଦେଖେଁ, ସାମାନ ସବୁ ଫେରନ୍ତ ହେଲା କି ନାହିଁ । ଅହଲ୍ୟା ବୁଲିଯିବା । ଏକାକୀ ଯିବାକୁ ଇଚ୍ଛା ହେଉନାହିଁ । ଆପଣ ଖୁବ୍ ଦୁର୍ବଳ ହୋଇ ଯାଇଛନ୍ତି । ସ୍ୱାସ୍ଥ୍ୟରେ କିଛି ଅସୁବିଧା ନାହିଁ ତ ?

ଚନ୍ଦ୍ରଧର—ନାହିଁ, ମୁଁ ସମ୍ପୂର୍ଣ୍ଣ ସୁସ୍ଥ । ଜେଲରେ କୌଣସି କଷ୍ଟ ହୋଇ ନାହିଁ । ବରଂ ଆରାମ ଥିଲା । ଆପଣଙ୍କ ଦେହ କିପରି ଅଛି ? ପେଣ୍ଡାଲରେ ତ ଆପଣ ଅସୁସ୍ଥ ଜଣାପଡ଼ୁଥିଲେ ।

ମନୋରମା—ମୁଣ୍ଡ ଟିକିଏ ବୁଲେଇ ହେଲା ।

ଏମିତି କଥାବାର୍ତ୍ତା ହୋଇ ଗ୍ରାଉଣ୍ଡରେ ଯାଇ ପହଞ୍ଚିଲେ । ପଡ଼ିଆରେ ଘାସର ଗାଲିଚା । ବଜାରର ରସିକ ଲୋକଙ୍କୁ ଏଠାକୁ ଆସିବାକୁ ସମୟ ନାହିଁ ! ସେମାନଙ୍କ ପାଇଁ ପାଲମଣ୍ଡି ଦରକାର । ଏଠାରେ ନୀରବତା ରାଜତ୍ୱ କରୁଥିଲା । ଅନେକ ଦୂରରେ କେତେକ ପିଲା ବଲ ଖେଳୁଥିଲେ । ଉଭୟେ କାର୍‌ରୁ ଓହ୍ଲାଇ ଘାସ ଉପରେ ଯାଇ ବସିଲେ । ଉଭୟେ ନୀରବ । କିଛି କ୍ଷଣ ପରେ ଚନ୍ଦ୍ରଧର କହିଲେ—ମୋ ପାଇଁ ଆପଣ ବହୁତ କଷ୍ଟ ସ୍ୱୀକାର କରିଛନ୍ତି । ମୋତେ ଏଠାରେ ଜଣାପଡ଼ିଲା, ଆପଣ ମୋର ପ୍ରଥମ ଦଣ୍ଡକୁ ମଧ୍ୟ କମ୍ କରେଇଛନ୍ତି । ଏବେ ମଧ୍ୟ ଆପଣ ମୋତେ ଜେଲରୁ ମୁକ୍ତ କଲେ । ଆପଣଙ୍କୁ କିପରି ଧନ୍ୟବାଦ ଦେବି, ଭାଷା ପାଉନାହିଁ ।

ମନୋରମା—ଆପଣ ମୋତେ 'ଆପଣ' ବୋଲି କାହିଁକି କହୁଛନ୍ତି ? ମୁଁ କ'ଣ ଏବେ ଆଉ କିଛି ହୋଇଗଲି ? ମୁଁ ଏବେ ମଧ୍ୟ ନିଜକୁ ଆପଣଙ୍କର ଦାସୀ ବୋଲି ମନେକରେ । ମୋର ଜୀବନ ଆପଣଙ୍କର କୌଣସି କାମରେ ଲାଗିଲେ ତା'ଠୁ ବଳି ବଡ଼ ଭାଗ୍ୟ ଆଉ କିଛି ନାହିଁ। ମୋତେ ଯେମିତି କହୁଥିଲେ, ସେହିପରି କହନ୍ତୁ । ମୁଁ ଆପଣଙ୍କ କଷ୍ଟକୁ ମନେ ପକାଇ ସବୁବେଳେ କାନ୍ଦି ପକାଉ ଥିଲି । ଏବେ ଆପଣ ମୋତେ ପଢ଼େଇବାକୁ ଆସନ୍ତୁ । ରାଜାସାହେବ ମଧ୍ୟ ଆପଣଙ୍କଠାରୁ ବହୁତ କିଛି ପଢ଼ିବାକୁ ଚାହାନ୍ତି । କହନ୍ତୁ, ରାଜି ତ ?

ମନୋରମାର ଏହି ସରଳ ଭାବ ଚନ୍ଦ୍ରଧରଙ୍କର ଆଖି ଖୋଲି ଦେଲା । ସେ ମନୋରମାକୁ ବିଳାସିନୀ, ମାୟାବିନୀ, ଛଳନାମୟୀ ଭାବୁଥିଲେ । ଚନ୍ଦ୍ରଧର ସ୍ୱାର୍ଥାନ୍ଧ କିମ୍ବା ବିବେକଶୂନ୍ୟ ନଥିଲେ । କାରାବାସରେ ଆତ୍ମଚିନ୍ତନର ବହୁ ଶିକ୍ଷା ସେ ଲାଭ କରିଛନ୍ତି । ମନୋରମାର ଏ କଥା ଶୁଣି ତାଙ୍କର ମନ ପୁଲକିତ ହୋଇଉଠିଲା । କହିଲେ—ନା ମନୋରମା, ଏବେ ଆଉ ମୁଁ ତୁମକୁ ପଢ଼େଇ ପାରିବିନାହିଁ । ମୋତେ କ୍ଷମା କର । ମଫସଲରେ ମୋର ଖୁବ୍ ବୁଲିବାର ଅଛି । ମାସ ମାସ ଧରି ସହରକୁ ଆସିପାରିବିନାହିଁ । ତୁମର ପାଠରେ ବହୁତ କ୍ଷତି ହେବ ।

ମନୋରମା—ଏଠାରେ ରହି ସ୍ୱୟଂସେବକମାନଙ୍କଦ୍ୱାରା କ'ଣ କାମ ହୋଇ ପାରିବ ନାହିଁ ।

ଚନ୍ଦ୍ରଧର—ନା, ସମ୍ଭବ ନୁହେ । ଆମ ନେତାମାନଙ୍କର ବଡ଼ ଭୁଲ ଯେ, ସେମାନେ ସ୍ୱୟଂ ମଫସଲକୁ ନ ଯାଇ ସହରରେ ବସିରହୁଛନ୍ତି । ଫଳରେ ମଫସଲର ପ୍ରକୃତ ଅବସ୍ଥା ସେମାନେ ଜାଣୁନାହାନ୍ତି । ଜନତା ଉପରେ ସେମାନଙ୍କର ପ୍ରଭାବ ପଡ଼ୁନାହିଁ । ଫଳରେ ସଫଳତା ମିଳୁନାହିଁ । ମୁଁ ସେ ଭୁଲ କରିବିନାହିଁ ।

ମନୋରମା—ଆପଣ ବାହାନା କରି ମୋତେ ଭଣ୍ଡଉଛନ୍ତି । କାର୍‌ରେ ତ ଲୋକ ପ୍ରତ୍ୟହ ସହେ ମାଇଲ୍ ଆସି ଯାଇ ପାରିବେ ।

ଚକ୍ରଧର—ପୁସ୍ତକ ଯାନରେ ବସି ସଗଠନ କରାଯାଇ ପାରେ ନାହିଁ । ଜନତାରେ ଜାଗୃତ, ଉତ୍ସାହ, ଆତ୍ମବଳ ସଞ୍ଚାରର ଆବଶ୍ୟକତା ବେଶି । ଉଡ଼ୁଥିବା ଗାଡ଼ିରେ ଏ ଉଦ୍ଦେଶ୍ୟ ପୂର୍ଣ୍ଣ ହୋଇ ପାରିବ ନାହିଁ ।

ମନୋରମା—ଅଚ୍ଛା, ତେବେ ମୁଁ ଆପଣଙ୍କ ସହ ମଫସଲରେ ବୁଲିବି । ଏଥିରେ କ'ଣ ଆପଣଙ୍କର ଆପତ୍ତି ଅଛି ?

ଚକ୍ରଧର—ନାହିଁ ମନୋରମା, ତୁମର କୋମଳ ଶରୀର ସେ କଠିନତା ସହିପାରିବନାହିଁ । ତୁମ ହାତରେ ଭଗବାନ ଏକ ବଡ଼ ରାଜ୍ୟ ପରିଚାଳନାର ଭାର ଅର୍ପଣ କରିଛନ୍ତି । ନିଜର ପ୍ରଜାଙ୍କୁ ସୁଖୀ ଏବଂ ସନ୍ତୁଷ୍ଟ ରଖିବା ତୁମ ପାଇଁ ଯଥେଷ୍ଟ । ଏ କିଛି ସହଜ କଥା ନୁହେଁ ।

ମନୋରମା—ମୁଁ ଏକାକୀ କିଛି କରିପାରିବି ନାହିଁ । ଆପଣଙ୍କ ଇଙ୍ଗିତରେ ସବୁ କିଛି କରି ପାରିବି । ଆପଣଙ୍କଠାରୁ ଅଲଗା ରହିଲେ ମୋ ଦ୍ୱାରା କିଛି ହୋଇ ପାରିବ ନାହିଁ । ଆପଣ ତ ଏତିକି କରିପାରିବେ—ଆପଣଙ୍କ କାମ ପାଇଁ ମୋ ଠାରୁ ଧନର ସାହାଯ୍ୟ ନେଇ ପାରିବେ । ବେଶି ନୁହେଁ, ପ୍ରତି ମାସରେ ପାଞ୍ଚହଜାର ଟଙ୍କା ମୁଁ ଆପଣଙ୍କୁ ଦେବି । ଆପଣ ତାକୁ ଯେପରି ଚାହିଁବେ ଖର୍ଚ୍ଚ କରି ପାରିବେ । ମୁଁ କୀର୍ତ୍ତି ଚାହେଁନା—କେବଳ ଆପଣଙ୍କ ସେବା ଚାହେଁ । ଏଥିରୁ ମୋତେ ବଞ୍ଚିତ କରନ୍ତୁନାହିଁ । ଆପଣଙ୍କଠାରେ କ'ଣ ଏପରି ଶକ୍ତି ଅଛି, ଯିଏ କି ମୋତେ ବଶୀଭୂତ କରିଛି । ମୁଁ କିଛି ଚିନ୍ତା କରିପାରୁନାହିଁ, କିଛି ବୁଝିପାରୁନାହିଁ—କେବଳ ଆପଣଙ୍କର ଅନୁଗାମୀ ହେବାକୁ ଚାହୁଁଛି ।

ଏହା କହି କହି ମନୋରମା କାନ୍ଦି ପକାଇଲା । ଆଖି ପୋଛି କହିଲା—ଆପଣ ମୋତେ ମନେ ମନେ ଯାହା ଭାବନ୍ତୁ, ଯାହା ମନେକରନ୍ତୁ—ମୁଁ ଆପଣଙ୍କୁ ସବୁ କିଛି କହିବି । ମୁଁ ହୃଦୟରେ ଆପଣଙ୍କୁ ଉପାସନା କରେ । ମୋ ମନ କ'ଣ ଚାହେଁ—ତାହା ମୁଁ କହି ପାରିବିନାହିଁ । ହଁ ଏତିକି କହିପାରେ—ମୁଁ ଦେଖିଲି, ଆପଣଙ୍କର ପରୋପକାର କାମନା ଧନ ବିନା ନିଷ୍ଫଳ ହେବାକୁ ଯାଉଛି । ଧନର ଅଭାବ ଆପଣଙ୍କ ରାସ୍ତାର ବଡ଼ ବାଧା । ତେଣୁ ମୁଁ ନିଜ ଗୋଡ଼ରେ ବେଡ଼ି ପିନ୍ଧାଇବାକୁ ପ୍ରସ୍ତୁତ ହୋଇଗଲି । ମୁଁ ଯାହା କହୁଛି ତାହା ଅକ୍ଷରେ ଅକ୍ଷରେ ସତ୍ୟ । ଧନ ପ୍ରତି ମୋର ଘୃଣା ବୋଲି ମୁଁ କହୁନାହିଁ । ଦରିଦ୍ରତାକୁ ମୁଁ ଅତ୍ୟନ୍ତ ଦୁଃଖଦାୟୀ ମନେକରେ । ମୋର ସୁନ୍ଦରୀ ଲାଳସା ଯେ କୌଣସି ଭଲ ଘରେ ଶାନ୍ତ ହୋଇ ପାରି ଥାଆନ୍ତା । ଏଥି ନିମିତ୍ତ ମୋତେ ଜଗଦୀଶପୁରର ରାଣୀ ହେବା ଦରକାର ନ ଥିଲା । ମୁଁ କେବଳ ଆପଣଙ୍କ ଇଚ୍ଛା ଆଗରେ ମୁଣ୍ଡ ନୁଆଁଇଲି । ମୋର ଜୀବନକୁ ସଫଳ କରିବା ଏବେ ଆପଣଙ୍କ ହାତରେ ।

ଚକ୍ରଧର ଏ କଥା ଶୁଣି ମର୍ମାହତ ହୋଇ ପଡ଼ିଲେ । ଓଃ, କଣ ସତେ ହେଲା; ମୁଁ ଏହାର ସର୍ବନାଶ କଲି ! ହାୟ ବିଧାତା, ବିଚିତ୍ର ତୋ ଲୀଳା ।

ଚକ୍ରଧର ଜାଣି ନ ଥିଲେ, ସେ ଦୂରେଇ ଯିବା ଦ୍ୱାରା ଏ ଭୀଷଣ ପରିଣାମ ହେବ ଏବଂ ମନୋରମା ଯାଇ ରାଜା ବିଶାଳ ସିଂହ ହାତରେ ପଡ଼ିବ । ଚକ୍ରଧର ମନରେ ବଡ଼ କ୍ଷୁବ୍ଧ ହେଲେ । ତାଙ୍କ ହୃଦୟରେ କରୁଣା, ଶ୍ରଦ୍ଧା, ବିସ୍ମୟ ଏବଂ ଶୋକର ଭାବ ଏକ ସାଥିରେ ଉତ୍ପନ୍ନ ହେଲା । ମନୋରମାର ଚରଣରେ ମସ୍ତକ ରଖି ଘଣ୍ଟେଯାଏଁ କାନ୍ଦିବାକୁ ପ୍ରବଳ ଉତ୍କଣ୍ଠା ଜାତ ହେଲା । ସେ ନିଜକୁ ଧିକ୍‌କାର କଲେ ।

ସେହିପରି ମନୋରମା ପୁଣି କହିଲା—ଆପଣ ମନେ ମନେ ମୋତେ ତିରସ୍କାର ତ କରୁ ନାହାନ୍ତି ?

ଚକ୍ରଧର ଲଜ୍ଜିତ ହୋଇ କହିଲେ—ନା, ମନୋରମା, ତୁମେ ମୋ ହିତପାଇଁ ଯେଉଁ ତ୍ୟାଗ କଲ, ତାକୁ କିଏ ତିରସ୍କାର କରିପାରେ । ମୋ ଦୃଷ୍ଟିରେ ତାହା ଆତ୍ମବଳିଦାନରୁ କୌଣସି ଗୁଣରେ କମ ନୁହେଁ । କିନ୍ତୁ କ୍ଷମା କରିବ, ତୁମେ ପାତ୍ର ବିଚାର କଲ ନାହିଁ । କୁକୁର ଗଳାରେ ମୋତିମାଳା ପିନ୍ଧାଇ ଦେଲ । ମୁଁ ସତ୍ୟ କହୁଛି—ତୁମେ ଏ ଯାଏଁ ମୋର ପ୍ରକୃତ ରୂପ ଦେଖି ନାହଁ । ଦେଖିଲେ ସମ୍ଭବତଃ ଘୃଣା କରିବ । ତୁମେ ମୋର ଜୀବନକୁ ସଫଳ କରିବାପାଇଁ ନିଜ ପ୍ରତି ଯେଉଁ ଅନ୍ୟାୟ କଲ, ତାହା ଚିନ୍ତାକରି ମୋ ମୁଣ୍ଡ କ'ଣ ହୋଇ ଯାଉଛି । ମୋ ଭଳି କ୍ଷୁଦ୍ର ପ୍ରାଣୀ ପାଇଁ ତୁମେ ନିଜ ଉପରେ ଏତେ ଅତ୍ୟାଚାର ନ କରିବା ଉଚିତ ଥିଲା । ତୁମେ ନିଜ ଇଚ୍ଛାରେ ତ୍ୟାଗୀ ଜୀବନ ଗ୍ରହଣ କରିଛ । ମୋର ଅନୁରୋଧ, ଏହି ଉଚ୍ଚ ଆଦର୍ଶ ସର୍ବଦା ପାଳନ କରିବ । ରାଜା ସାହେବଙ୍କ ପ୍ରତି ଏକ ମୁହୂର୍ତ୍ତିକ ପାଇଁ ମଧ୍ୟ ତୁମ ମନରେ ଅଶ୍ରଦ୍ଧା ଭାବ ଯେପରି ନ ଆସେ । ଯଦି ଏପରି ହୁଏ, ତେବେ ତୁମର ତ୍ୟାଗ ନିଷ୍ଫଳ ହୋଇଯିବ ।

ମନୋରମା କିଛି ସମୟ ନୀରବ ରହି କହିଲେ—ବାବୁଜୀ, ଆପଣଙ୍କ ହୃଦୟ ବଡ଼ କଠୋର । ଚକ୍ରଧର ବିସ୍ମିତ ହୋଇ ମନୋରମାକୁ ଚାହିଁଲେ ।

ମନୋରମା—ମୁଁ ଏତେ ସବୁ କଲି, ତଥାପି ଆପଣ ମୋଠାରୁ ସାହାଯ୍ୟ ନେବାକୁ ସଙ୍କୁଚିତ ?

ଚକ୍ରଧର ଦୃଢ଼ ଭାବରେ କହିଲେ—ମନୋରମା, କେହି ତୁମ ବିଷୟରେ କିଛି ଆକ୍ଷେପ କରିବାକୁ ଅବସର ନ ପାଉ—ଏହା ମୁଁ ଚାହେଁ ।

ମନୋରମା ପୁଣି କିଛି ସମୟ ନୀରବ ରହି କହିଲା ମୋର ବିବାହ ଖବର ଆପଣ କେଉଁଠୁ ପାଇଲେ ।

ଚକ୍ରଧର—ଜେଲରେ ଅହଲ୍ୟାଠାରୁ ।

ମନୋରମା—ଜେଲରେ କ'ଣ ଅହଲ୍ୟା ସହ ଆପଣଙ୍କର ସାକ୍ଷାତ ହୋଇଥିଲା ?

ଚନ୍ଦ୍ରଧର—ହଁ, ଥରେ ଆସିଥିଲା । ମୁଁ ଏ ଖବର ଶୁଣି ଆଶ୍ଚର୍ଯ୍ୟ ହୋଇଥିଲି ।

ମନୋରମା—କେବଳ ଆଶ୍ଚର୍ଯ୍ୟ ? ସତ କହନ୍ତୁ ।

ଚନ୍ଦ୍ରଧର ଲଜ୍ଜିତ ହୋଇ କହିଲେ—ଦୁଃଖ ଏବଂ କ୍ରୋଧ ମଧ୍ୟ ହୋଇଥିଲା ।

ମନୋରମାର ମୁଖ ଉଜ୍ଜ୍ୱଳ ହୋଇ ଉଠିଲା । ଏଇ କଥା ଜାଣିବା ପାଇଁ ସେ ବ୍ୟାକୁଳ ହେଉଥିଲା । ମନୋରମା ସେଠାରୁ ଫେରିଲାବେଳକୁ ମନରେ ଆନନ୍ଦ ଥିଲା । ମନରେ ଏହି ଶବ୍ଦ ଗୁଞ୍ଜରିତ ହେଉଥିଲା—ଦୁଃଖ ଏବଂ କ୍ରୋଧ ମଧ୍ୟ ହୋଇଥିଲା ।

( ୨୫ )

ଆଗ୍ରାର ହିନ୍ଦୁ ଏବଂ ମୁସଲମାନଙ୍କ ମଧ୍ୟରେ ଏବେ ଆଉ ପଡ଼ୁନି । ଛିଡ଼ିଏ ଛିଡ଼ିଏ କଥାରେ ଉଭୟ ଗୋଷ୍ଠୀଙ୍କ ମଧ୍ୟରେ ବାଡ଼ିଆପିଟା ହୋଇ ଯାଉଛି ଏବଂ ଦୁ ଘରର ଜଣ ଆହତ ହେଉଛନ୍ତି । କେଉଁଠି ଦୋକାନୀର ଦଣ୍ଡି ମୁସଲମାନ ଦେହରେ ବାଜିଗଲା ତ ଦୋକାନ ଲୁଟି ହେଲା । କେଉଁଠି ମୁସଲମାନ ପିଲା ହିନ୍ଦୁର ମାଠିଆ ଛୁଇଁ ଦେଲା ତ ସାହିରେ ଫେର ଜଦାଗ୍ଳ ଆରମ୍ଭ ହୋଇଗଲା । ଗୋଟେ ସାହିରେ ମୋହନ ରହିମ୍‌ର ଗୁଡ଼ିଟା ଛଡ଼େଇ ନେଇଗଲା । ଏଇ କଥାକୁ ନେଇ ସାଇରେ ଥିବା ହିନ୍ଦୁମାନଙ୍କ ଘର ଲୁଟି ହୋଇଗଲେ । ଅନ୍ୟ ସାହିରେ କୁକୁର ଲଢ଼େଇରେ ଦେହେ ଧଣେ ପାଉଲା ହେଲେ । କାରଣ ଗୋଟେ ଥିଲା ମୋହନର କୁକୁର ଏବଂ ଅନ୍ୟଟା ସଇଦ୍‌ର । ବ୍ୟକ୍ତିଗତ ଝଗଡ଼ାରୁ ସାମ୍ପ୍ରଦାୟିକ ଦଙ୍ଗା । ଉଭୟ ଦଳ ଧର୍ମ-ନିଶାରେ ପାଗଳ । ସକାଳେ ଖ୍ୱାଜା ସାହେବ ଜିଲ୍ଲା ହାକିମଙ୍କୁ ସଲାମ କରିବାକୁ ଗଲେ, ସନ୍ଧ୍ୟାକୁ ବାବୁ ଯଶୋଦାନନ୍ଦନ । ଉଭୟେ ନିଜ ନିଜର ରାଜଭକ୍ତିରେ କଥା କହନ୍ତି—। ହିନ୍ଦୁମାନେ 'ମହାବୀର ଦଳ' ଗଢ଼ିଲେ ତ ମୁସଲମାନ 'ଅଲିଗୋଲ' । ଖ୍ୱାଜା ସାହେବ ଧର୍ମ ଉପଦେଶ ଦେଲେ—ଯେଉଁ ମୁସଲମାନ କୌଣସି ହିନ୍ଦୁ ମହିଳାଙ୍କୁ ଜବରଦସ୍ତି ନେଇ ଆସିବ, ସେ ହଜାରେ 'ହଜ'ର ପୁଣ୍ୟ ଅର୍ଜନ କରିବ । ଯଶୋଦାନନ୍ଦନ କାଶି ପଣ୍ଡିତଙ୍କ ପରାମର୍ଶ ନେଇ କହିଲେ—ଜଣେ ମୁସଲମାନ ବଧ କଲେ ଲକ୍ଷେ ଗୋଦାନର ପୁଣ୍ୟ ମିଳିବ ।

ହୋରି ସମୟ । ଗଳିମାନଙ୍କରେ ରଙ୍ଗଖେଳ । ଏମିତ ଉନ୍ମତ୍ତ ହୋଇ କେବେ ହୋଲି ଖେଳ ହୋଇ ନ ଥିଲା । ଦୁର୍ଭାଗ୍ୟକୁ ଜଣେ ମୁସଲମାନ ଜେଇବାଟେ ଗୋଟେ କୁକୁଡ଼ା ହାତରେ ଓହ୍ଲେଇ ଯାଉଥିଲା । ତା' ଲୁଗାରେ କେତେ ଟୋପା ରଙ୍ଗ ପାଣି ପଡ଼ିଗଲା।

ବାସ୍ ବିପଦ ଆସି ପହଞ୍ଚିଗଲା । ସିଧା ଯାହାକୁ ଦୌଡ଼ି ଯାଇ ମସ୍‌ଜିଦ୍ ଉପରେ ଚଢ଼ି ଚିତ୍କାର କଲା—'ହେ ରସୁଲ ! ଆଜି ଏକ କାଫେର୍ ମୋର ମଜହବକୁ ହତ୍ୟା କରୁଛି । ତା'ର ଛୁରୀ ମୋ କପଡ଼ାରେ ପଡ଼ୁଛି । ସେ କାଫେର୍‌ର ପ୍ରତିଶୋଧ ନିଅ, ନ ହେଲେ ମୁଁ ଏ ମିନାର୍ ଉପରୁ ଡେଇଁ ଆଲ୍ଲାଙ୍କୁ କହିବ । କହ, କେଉଁଠିକି ମଞ୍ଜୁର୍ ? ସନ୍ଧ୍ୟା ସୁଦ୍ଧା ମୋତେ ଏହାର ଜବାବ ନ ମିଳିଲେ ମୋର ଲାସ୍ ଏଇ ମସଜିଦ୍ ତଳେ ପାଇବ ।'

ମୁସଲମାନମାନେ ଏ ରେରେକାର ଶୁଣି ଉନ୍ମତ୍ତ ହୋଇ ଉଠିଲେ । ଧର୍ମ-ନିଶା ମୁଣ୍ଡକୁ ଚଢ଼ିଗଲା । ସନ୍ଧ୍ୟା ପୂର୍ବରୁ ଦଶହଜାର ମୁସଲମାନ ମୁଣ୍ଡରେ କଫନ ବାନ୍ଧି, ହାତରେ ତଲୱାର ଧରି ମସ୍‌ଜିଦ ସାମନାରେ ଆସି ଜମା ହୋଇଗଲେ ।

ହାଟ୍ ସହରତେ ହଇଚଇ ପଡ଼ିଗଲା । ହିନ୍ଦୁମାନଙ୍କର ହୋସ୍ ଉଡ଼ିଗଲା । ହୋଲି ନିଶା ଅନ୍ତର୍ଦ୍ଧାନ ହୋଇଗଲା । ପିଚକାରି ଗୁଡ଼ି ଠେଙ୍ଗା ଖୋଜିଲେ । କିନ୍ତୁ ଏଠାରେ କୌଣସି ମସଜିଦ୍ ନ ଥିଲା, ରେରେକାର ନ ଥିଲା କି ଧର୍ମର ଉତ୍କଟ ନିଶା ନ ଥିଲା । ନିଜ ନିଜ କାମରେ ସମସ୍ତେ ବ୍ୟସ୍ତ ଥିଲେ ।

ବାବୁ ଯଶୋଦାନନ୍ଦନ ଏ ଅଫିସର ସେ ଅଫିସର୍ ପାଖକୁ ଦଉଡ଼ିବାରେ ଲାଗିଲେ । ଲକ୍ଷ୍ନୌକୁ ତାର କଲେ ଦିଲ୍ଲୀକୁ ତାର କଲେ । ମୁସଲିମ୍ ନେତାମାନଙ୍କ ପାଖକୁ ତାର ଦେଲେ । କିନ୍ତୁ କିଛି ଫଳ ହେଲାନି । ଏତେ ଶୀଘ୍ର କୌଣସି ବ୍ୟବସ୍ଥା ହୋଇ ପାରିବ ନାହିଁ । ଏ କାମ ନ କରି ସେ ଯଦି ଏହି ସମୟ ମଧ୍ୟରେ ହିନ୍ଦୁମାନଙ୍କୁ ସଂଗଠିତ କରିଥା'ନ୍ତେ, ତେବେ ସମାନ ସଂଖ୍ୟକ ଯୋଦ୍ଧା ଯୋଗାଡ଼ କରିପାରିଥାଆନ୍ତେ କିନ୍ତୁ ସେ ସରକାରଙ୍କ ଉପରେ ଭରସା ରଖି ବସି ରହିଲେ । ଶେଷରେ ନିରାଶ ହୋଇ ଦେଖିଲେ ମୁସଲମାନମାନେ ଆକ୍ରମଣ ଆରମ୍ଭ କରି ଦେଲେଣି । ସେମାନେ 'ଅଲି ଅଲି' ଧ୍ୱନି ଦେଇ ମାଡ଼ି ଆସୁଥିବାବେଳେ ବାବୁ ସାହେବଙ୍କୁ ସାମନାରେ ଦେଖିଲେ । ଆଉ ସମ୍ଭାଳେ କିଏ ! 'ମାର ମାର' କହି ଶହ ଶହ ଅସ୍ତ୍ରଧାରୀ ଘେରିଗଲେ । ବାବୁ ସାହେବ ପିସ୍ତଲ ବାହାର କରି ଠିଆ ହୋଇଗଲେ । ପ୍ରଶ୍ନୋତ୍ତର ପାଇଁ ସମୟ କାହିଁ ! ପିସ୍ତଲ ଚଳେଇବା ପାଇଁ ମଧ୍ୟ ସମୟ ମିଳିଲାନି । ସଙ୍ଗେ ସଙ୍ଗେ ଖତମ । ଆହୁତି ପାଇଁ ଅଗ୍ନି ଆହୁରି ତେଜ ହେଲା । ହିନ୍ଦୁମାନଙ୍କର ଦୁଆର ବନ୍ଦ ହୋଇଗଲା । ଘର ଭିତରେ ବସି ଦେବତାଙ୍କୁ ସ୍ତୁତି କଲେ—ହେ ପ୍ରଭୁ, ଏ ସଙ୍କଟରୁ ରକ୍ଷା କର । ରାସ୍ତାରେ ଯେଉଁ ହିନ୍ଦୁ ହାବୁଡରେ ପଡ଼ିଲା, ପିଟିଲେ । ଘର ଲୁଟି ହେଲା । ସବୁଆଡ଼େ 'ହାୟ ହାୟ' ଶୁଣାଗଲା । ଧର୍ମ ନାମରେ ଯେଉଁ କର୍ମମାନ ହେଲା, ତାହା ଦେଖି ପଶୁମାନେ ମଧ୍ୟ ଲଜ୍ଜିତ ହେଲେ । ପିଶାଚମାନଙ୍କର ମଧ୍ୟ ପ୍ରେମ ଟାଙ୍କୁର ଉଠିଲା ।

ବାବୁ ଯଶୋଦାନନ୍ଦନଙ୍କ ମୃତ୍ୟୁ ଖବର ଶୁଣି ସେବାଦଳର ଯୁବକମାନେ ଅଗ୍ନିଶର୍ମା ହୋଇ ଉଠିଲେ । ଦୁଇଶହ ଯୁବକ ତରବାରୀ ଧରି ମୁସଲମାନ ସାହିରେ ପଶିଲେ । ଦି ଚାରିଟା ପିସ୍ତଲ ଓ ବନ୍ଧୁକ ମଧ୍ୟ ଯୋଗାଡ଼ କରିନେଲେ । ହିନ୍ଦୁ ସାହିରେ ମୁସଲମାନମାନେ ଯାହା

କରିଥିଲେ, ମୁସଲମାନ ସାହସରେ ହିନ୍ଦୁମାନେ ସେଇଆ କଲେ । ହିଂସା ଆଗରେ ଅହିଂସା ନତମସ୍ତକ ହେଲା । ଏଇ ସେବାବ୍ରତୀମାନେ ଯୁବକ ଦୁଃଖୀ ଦରିଦ୍ରଙ୍କ ପାଇଁ ଜୀବନ ଦେଉଥିଲେ ଅନାଥମାନଙ୍କୁ ଆଲିଙ୍ଗନ କରୁଥିଲେ ଏବଂ ରୋଗୀମାନଙ୍କର ସୁଶ୍ରୁଷା କରୁଥିଲେ । ଏମାନେ ବର୍ତ୍ତମାନ ନିର୍ଦ୍ଦୟତାର ଅବତାର ହୋଇଗଲେ । ପାଶବିକ ବୃତ୍ତି କୋମଳ ବୃତ୍ତିକୁ ସଂହାର କରି ଦେଇଥିଲା । ପିଲେ କୁଣ୍ଢେଇ ଝଙ୍ଗିଲାପରି ଏମାନେ ହସି ହସି ଭଲ, ଖଣ୍ଡା, ଛୁରି ଚଳାଉଥିଲେ ।

ସହସା ଖବର ମିଳିଲା, ଯଶୋଦାନନ୍ଦନଙ୍କ ଘରେ ନିଆଁ ଲଗେଇ ଦେଲେ । ଅନ୍ୟମାନଙ୍କ ଘରେ ମଧ୍ୟ ଲଗାଇଛନ୍ତି । ସେବାଦଳ ସ୍ତବ୍ଧ ହୋଇଗଲା । ସ୍ଥିର ହେଲା, ସେମାନେ ରହିବେ ନ ହେଲେ ଆମେ ରହିବୁ । ଉଭୟେ କଦାପି ସହରରେ ରହିବେନି ।' ପ୍ରାୟ ଅଢ଼େଇ ହଜାର ଲୋକ ଡବଲ ମାର୍ଚ୍ଚ କରି ସେ ସ୍ଥାନକୁ ଗଲେ । ମୁହୂର୍ତ୍ତକ ମଧ୍ୟରେ ସେଠାରେ ପହଞ୍ଚି ଦେଖିଲେ ବଡ଼ବାନଳ ଦହୁଛି । ଶିଖା ତାର ଆକାଶ ସ୍ପର୍ଶ କରୁଛି । ଦେଖିଲେ ସେଠାରେ ଗୋଟିଏ ହେଲେ ମୁସଲମାନ ନାହାନ୍ତି । ଘର ଭିତରେ ପଶି ଦେଖିଲେ ଘର ଖାଲି ପଡ଼ିଛି । ଗୋଟେ କୋଠରୀରେ ଦ୍ୱାର ବନ୍ଦ କରି ବାଗେଶ୍ୱରୀ ବସିଛନ୍ତି । ଏମାନଙ୍କୁ ଦେଖି କାନ୍ଦି କାନ୍ଦି ବାହାରକୁ ଆସି କହିଲେ—ହାୟ ମୋ ଅହଲ୍ୟା, ଆରେ ଦେଉରେ, ଅରେ ଖୋଜରେ, ପାପୀମାନେ ତାକୁ କୁଆଡ଼େ ନେଇଗଲେ ରେ ! ହାୟ ହାୟ !

ଏକ ଯୁବକ ପଚାରିଲା—କ'ଣ ଅହଲ୍ୟାକୁ ନେଇ ଯାଇଛନ୍ତି ?

ବାଗେଶ୍ୱରୀ—ହଁରେ ଭାଇ, ଟେକି ନେଇଗଲେ ରେ ! ମୁଁ ତାକୁ ମନା କରୁଛି ବାହାରକୁ ଯାଆନା । ମାନିଲାନି, ବାହାରକୁ ଯାଇ ସେମାନଙ୍କୁ ବୁଝେଇବାକୁ ଲାଗିଲା । ସଦାବେଳେ ବାପ ଝିଅଙ୍କୁ କହିଲା—ଏ ଝଗଡ଼ାରେ ପଶନା । ହିନ୍ଦୁ ହୁଅନ୍ତୁ କି ମୁସଲମାନ ହୁଅନ୍ତୁ କେହି କୁଆଡ଼େ ଯିବେନି, ଏଇ ଦେଶରେ ରହିବେ, ଏଇ ଦେଶରେ ମରିବେ । କାହିଁକି ପରସ୍ପର ମଧ୍ୟରେ କଳି ! ସେମାନେ ବଡ଼ ହୋଇ ରହନ୍ତୁ—ତୁମେ ଶ୍ରେଷ୍ଠ ହୋଇ ପଛେ ରହ—କିନ୍ତୁ କିଏ ଶୁଣିଲା ମୋ କଥା ! ବାପର ଜୀବନ ରଖି, ଝିଅକୁ କୁଆଡ଼େ ଟେକି ନେଇଗଲେ । ଯାଅ ବାବୁ, ଖୋଜ । ଖ୍ୱାଜା ମହମ୍ମଦକୁ କହ—ସେ ଖୋଜନ୍ତୁ । ଖ୍ୱାଜା ସାହେବ ସ୍ୱାମୀଙ୍କ ସଙ୍ଗେ କାଶୀ ଯାଇ ସେ ନିଜେ ତାକୁ ପାଇକରି ଆଣି ମୋରି ହାତରେ ଦେଇଥିଲେ । ତା' ଛବାହରେ ହଜାର ହଜାର ଖର୍ଚ୍ଚ କରିବେ ବୋଲି କହୁଥିଲେ । ତାଙ୍କରି ହାତରେ ଏ ଦୁର୍ଗତି ! ସେ କ'ଣ ତାଙ୍କର ଶତ୍ରୁ ! ତାଙ୍କ ଶତ୍ରୁ ତ ସ୍ୱର୍ଗକୁ ଗଲା । ହାୟ ଭଗବାନ ! ବେଗି ଲୋକ ଯାଅନ୍ତୁ । ଗୁରିଜଣ ଯାଅ ।

ବାଗେଶ୍ୱରୀ ଏ କଥା କହୁଥା'ନ୍ତି । ତେଣେ ବାହାରେ ଅଗ୍ନି ନିର୍ବାପନ ପାଇଁ ଅକ୍ଳାନ୍ତ ଚେଷ୍ଟା କରାଯାଉଥାଏ । ବହୁ କଷ୍ଟରେ ସନ୍ଧ୍ୟାକୁ ଯାଇ ଅଗ୍ନି ଶାନ୍ତ ହେଲା ।

ତେଣେ ଲୋକେ ଖ୍ୱାଜା ମହମ୍ମଦଙ୍କ ପାର୍ଶ୍ୱରେ ପହଞ୍ଚି ଦେଖିଲେ—ସେ ଯଶୋଦାନନ୍ଦନଙ୍କ ଶବ ଉପରେ ପଡ଼ି ରଡ଼ି ଛାଡ଼ୁଛନ୍ତି । ଏମାନଙ୍କୁ ଦେଖି କହିଲେ—ତୁମ୍ଭେମାନେ ଭାବୁଥିବ ଇଏ ମୋର ଶତ୍ରୁ ବୋଲି । ଖୋଦାଙ୍କ ଚରଣ ପକେଇ କହିବି—ମୋର ଭାଇ ଏବଂ ପୁଅ ମଧ୍ୟ ଏହାଠାରୁ ବେଶି ପ୍ରିୟ ନ ଥିଲେ । ମୋତେ ଯଦି କେହି ଆକ୍ରମଣ କରିବାକୁ ଆସୁଥିଲା ଯଶୋଦା ନିଜ ବେକ ଦେଖେଇ ଦେଉଥିଲା । ମୁଁ ବି ତା' ପାଇଁ ପ୍ରାଣ ଦେବାକୁ ଟିକିଏ ହେଲେ ପଛଉ ନଥିଲି । ତଥାପି ଆମ ଉଭୟଙ୍କର ଶେଷ ବର୍ଷଗୁଡ଼ିକ ଅତି ଅପ୍ରିୟ ଭାବରେ କଟିଲା ଏବଂ ତା'ର ପରିଣାମ ହେଲା ଏଇଆ । କାହିଁକି ଏପରି ହେଲା ଖୋଦା ଜାଣନ୍ତି । ଏକା ସ୍କୁଲରେ ପଢ଼ିଲୁ ଏକାଠି ଖେଳିଲୁ ବୁଲିଲୁ, ତାଙ୍କ ଘର ଆମ ଘର ମଧ୍ୟରେ ଟିକିଏ ହେଲେ ପ୍ରଭେଦ ନଥିଲା । ହାୟ ! ଏ କ'ଣ ହେଲା !

ଜଣେ ଯୁବକ—କ୍ରିୟା-କର୍ମ ପାଇଁ ଆମେ ଲାଶ୍ ନେଇ ଯିବାକୁ ଚାହୁଁ ।

ଖ୍ୱାଜା—ନେଇଯାଅ ଭାଇ, ନେଇଯାଅ । ମୁଁ ମଧ୍ୟ ସାଙ୍ଗରେ ଯିବି । ମୁଁ କାନ୍ଦେଇବି । ମୁଁ ଆଗ ମରିଥିଲେ ଯଶୋଦା ମଧ୍ୟ କାନ୍ଦେଇ ଥାଆନ୍ତା ।

ଯୁବକ—ଅହଲ୍ୟାକୁ ମଧ୍ୟ ଲୋକେ ଉଠେଇ ନେଇ ଯାଇଛନ୍ତି ।

ଖ୍ୱାଜା—କ'ଣ ହେଲା ? ଅହଲ୍ୟାକୁ ? ମୋ ଅହଲ୍ୟାକୁ ? କେବେ ?

ଯୁବକ—ଆଜି । ଘରେ ନିଆଁ ଲଗେଇବା ପୂର୍ବରୁ ।

ଖ୍ୱାଜା—ଖୁଦାଙ୍କ କସମ୍ ଖାଇ ପ୍ରତିଜ୍ଞା କରୁଛି—ଯେ ପର୍ଯ୍ୟନ୍ତ ଅହଲ୍ୟାକୁ ନ ପାଇଛି, ଖାନାପିନା ମୋର ବନ୍ଦ । ତୁମ୍ଭେମାନେ ଲାଶ୍ ନେଇ ଚାଲ । ମୁଁ ଅହଲ୍ୟାକୁ ଖୋଜିବା ପାଇଁ ଚାଲିଲି । ଯଦି କେହି ପାଷାଣ୍ଡ ତାକୁ ମାରିଦେଇ ନଥାଏ, ତେବେ ମୁଁ ନିଶ୍ଚୟ ଖୋଜି ବାହାର କରିବି । ସାରା ସହର ଖୋଜିବି । ହାୟ ମୋର କନ୍ୟା ଅହଲ୍ୟା ! ମୁଁ ତାକୁ ଛାତିରେ ଟେକିନେଇ ଭାଉଜଙ୍କ କୋଳରେ ଦେଇଥିଲି । ଭାଉଜଙ୍କୁ କହିବି ଯଶୋଦା ନାହିଁ, କିନ୍ତୁ ଖ୍ୱାଜା ଅଛି । କହିଦେବି—ଅହଲ୍ୟାକୁ ଖ୍ୱାଜା ଖୋଜି ବାହାର କରିବ—ନ ହେଲେ ପ୍ରାଣ ଦେବ ।

ଏହା କହି ଖ୍ୱାଜାସାହେବ ଗୋଟାଏ ଠେଙ୍ଗା ଧରି ବାହାରକୁ ଚାଲିଗଲେ ।

( ୨୬ )

ଚକ୍ରଧର ସେଦିନ ଫେରିବା ପରେ ଆଗ୍ରା ଯିବା ପାଇଁ ବାପାଙ୍କୁ ଅନୁମତି ମାଗିଲେ । ମନୋରମା ତାଙ୍କର ମର୍ମସ୍ଥଳରେ ଯେଉଁ ନିଆଁ ଲଗେଇ ଦେଇଥିଲା ତାହା ଆଗ୍ରାରେ ଅହଲ୍ୟାର ସରଳ, ସ୍ନେହ-ସ୍ନିଗ୍ଧ ଶୀତଳ ଛାୟାରେ ଶାନ୍ତ ହୋଇପାରେ ।

ମୁନ୍‌ସୀଙ୍କ ବିରକ୍ତ ହୋଇ କହିଲେ—ତୋ ମୁଣ୍ଡରୁ କଣ ଏଯାଏ ନିଶା ଛାଡ଼ିନି ! ପଇସାପତ୍ର ଗୁଡ଼ାକ କ'ଣ ବଳେଇ ପଡ଼ୁଛି ଯେ ଭ୍ରମଣ କରିବାକୁ ଯିବୁ ? ଯଦି ଯିବୁ ତେବେ ପ୍ରତିଜ୍ଞା କର—ମୁନ୍‌ସୀ ଯଶୋଦାନନ୍ଦନ ସହ ସାକ୍ଷାତ କରିବୁନି ।

ଚକ୍ରଧର—ମୁଁ ତ ତାଙ୍କରି ପାଖକୁ ଯିବି ।

ମୁନ୍‌ସୀ—ମୁଁ କହି ଦଉଚି—ଯଦି ତୁ ସେଠି ବାହା ହବା ପାଇଁ କଥାବାର୍ତ୍ତା କରିବୁ, ତେବେ ଖରାପ ହେବ ।

ଚକ୍ରଧର କିଛି ଉତ୍ତର ଦେଲେ ନାହିଁ ।

କିନ୍ତୁ ହୋଲି ଯିବାର ତୃତୀୟ ଦିନ ଆଗ୍ରାରେ ଦଙ୍ଗା ଏବଂ ବାବୁ ଯଶୋଦାନନ୍ଦନଙ୍କ ହତ୍ୟା ଖବର ଖବରକାଗଜରୁ ପଢ଼ି ବ୍ୟଗ୍ରତାର ସହ ବାପାଙ୍କୁ କହିଲେ—ମୋର ସେଠାକୁ ଯିବା ଏକାନ୍ତ ଆବଶ୍ୟକ ।

ବଜ୍ରଧର ନିର୍ମଳାଙ୍କୁ ଚାହିଁ କହିଲେ—କଣ ଜେଲରେ ମନ ଥଣ୍ଡା ହୋଇ ନାହିଁ । ସେଠାକୁ ଯିବୁ ତ, ଜାଣିରଖ—ବନ୍ଦୀ ହେବୁ । ଯାଇ କ'ଣ ବା କରିବୁ ! ଯାହା ତ ହବାର ହେଇ ଗଲାଣି ।

ଚକ୍ରଧର—ବେଶି କିଛି ନ ହେଲେ ବି ଅହଲ୍ୟାକୁ ତ ଖୋଜି ବାହାର କରିହେବ ।

ବଜ୍ରଧର—ଭଳେ ସେଥିରୁ କଣ ମିଳିବ ? ସେତେବେଳେ ସେ ମୁସଲମାନ ସହ ରହି ସାରିଲାଣି, କେଉଁ ହିନ୍ଦୁ ତାକୁ ପଚାରିବ !

ଚକ୍ରଧର—ସେଇଥିପାଇଁ ତ ମୋର ସେଠାକୁ ଯିବା ଖୁବ୍ ଜରୁରୀ ।

ନିର୍ମଳା—ମର୍ଯ୍ୟାଦା ହେଉଛି ଝିଅ ପିଲାର ସବୁଠାରୁ ବଡ଼ କଥା । ସେ ତ ବଞ୍ଚି ନଥିବ । ଯଦି ବା ବଞ୍ଚିଥାଏ, ତେବେ ସେ ନିଶ୍ଚୟ ଭ୍ରଷ୍ଟା ହୋଇ ସାରିଥିବ ।

ଚକ୍ରଧର—ମା, ତୁ ସମୟେ ସମୟେ ଏପରି କଥା କହୁଛୁ ଯେ, ହସ ଲାଗୁଛି । ପ୍ରାଣ ଭୟରେ ବଡ଼ ବଡ଼ ଶୁର ବୀର ମଧ୍ୟ କାପୁରୁଷ ହୋଇଥାଆନ୍ତି । ସେ ତ ଅବଳା ! ଯିଏ ଦୁର୍ବାସନାରେ ମାତେ, ସିଏ ସିନା ଭ୍ରଷ୍ଟା । ପ୍ରାଣ ଭୟରେ ଯାହା ହୋଇଥାଏ ଆମେ ତାକୁ ଭ୍ରଷ୍ଟା କିପରି କହିବା ?

ବଜ୍ରଧର—ତୋର ଉଦ୍ଦେଶ୍ୟ ବୁଝିଁଛି ଯେ, ତୁ ତାକୁ ସତୀ କହିପାରୁ, ଆମେ କିନ୍ତୁ ଭ୍ରଷ୍ଟା ବୋଲି ବୁଝୁଁଛୁ । ଏପରି ବୋହୂ ପାଇଁ ଆମ ଘରେ ସ୍ଥାନ ନାହିଁ ।

ଚକ୍ରଧର ନିଶ୍ଚୟାତ୍ମକ ଭାବରେ କହିଲେ—ସେ ଆପଣଙ୍କ ଘରକୁ ଆସିବନି ।

ବଜ୍ରଧର ମଧ୍ୟ ସେହିପରି ନିର୍ଦ୍ଦୟ ଭାବରେ କହିଲେ—ଯଦି ତୁ ଭାବୁଥାଉ ପୁତ୍ର ସ୍ନେହ-ବଶରେ ମୁଁ ତାକୁ ସ୍ୱୀକାର କରିନେବି ବୋଲି, ତାହା ହେଲେ ତୁ ଭୁଲ ଭାବୁଛୁ । ଅହଲ୍ୟା

ମୋ କୁଳବୋହୂ ହୋଇ ନ ପାରେ । ଏଥିପାଇଁ ପୁତ୍ର ବିୟୋଗ ମଧ୍ୟ ମୁଁ ସହିବାକୁ ପ୍ରସ୍ତୁତ । ମୁଁ ମଧ୍ୟ କଠୋର ।

ଚକ୍ରଧର ଚାଲିଯିବାକୁ ଉଦ୍ୟତ ହେବା ବେଳେ ନିର୍ମଳା ତାର ହାତକୁ ଧରି ପକାଇ କହିଲେ—ବାପା, ତୋଠାରୁ ଏପରି ଆଶା କରି ନଥିଲି । ଏବେ ମଧ୍ୟ ଆମ କହିବା ମାନ । ଆମ କୁଳରେ କଳଙ୍କ ଲଗାନା ।

ଚକ୍ରଧର ହାତକୁ ଛଡ଼ାଇ ଦେଇ କହିଲେ—ମୁଁ କେବେ ଅବମାନନା କରିନାହିଁ, କିନ୍ତୁ ଏ ବିଷୟରେ ମୁଁ ନିରୁପାୟ ।

ବଜ୍ରଧର ଶ୍ଳେଷ ଭାବରେ କହିଲେ—ସଫା ସଫା କହୁନୁ—ମୁଁ ତୁମ୍ଭମାନଙ୍କଠାରୁ ଅଲଗା ହେବାକୁ ଚାହେଁ ।

ଚକ୍ରଧର—ଯଦି ଆପଣଙ୍କର ଏହି ଇଚ୍ଛା, ତେବେ ମୁଁ କଣ କରିବି ?

ବଜ୍ରଧର—ଏହା କ'ଣ ତୋର ଶେଷ କଥା ?

ଚକ୍ରଧର—ଆଜ୍ଞା ହଁ ।

ଏହା କହି ଚକ୍ରଧର ବାହାରକୁ ଚାଲିଗଲେ ଏବଂ ସିଧା ଷ୍ଟେସନରେ ଯାଇ ନିଶ୍ୱାସ ମାରିଲେ ।

ଚକ୍ରଧର ଆଗ୍ରାରେ ପହଞ୍ଚିଲା ବେଳକୁ ସକାଳ ହୋଇ ଯାଇଥିଲା । ଅନେକ ଚିନ୍ତା କରି ସେ ପ୍ରଥମେ ଖ୍ୱାଜା ମହମ୍ମଦଙ୍କ ପାଖକୁ ଚାଲିଲେ । ସହରରେ ସୈନିକ ପହରା ମାରୁଥିଲେ । ଦୋକାନ ବଜାର ସବୁ ବନ୍ଦ ଥିଲା ।

ଖ୍ୱାଜା ମହମ୍ମଦଙ୍କ ଦୁଆରେ ପହଞ୍ଚି ଦେଖିଲେ ହଜାର ହଜାର ଲୋକ ଗୋଟାଏ ଶବକୁ ଘେରି ରହିଛନ୍ତି ଏବଂ ସେ ଲାସ୍‌କୁ କବ୍ରିସ୍ଥାନ ନେବା ପାଇଁ ପ୍ରସ୍ତୁତ ହେଉଛନ୍ତି । ଚକ୍ରଧର ହଠାତ୍ ଘୋଡ଼ାଗାଡ଼ିରୁ ଡେଇଁପଡ଼ି ଲାସ୍ ପାଖରେ ଯାଇ ପହଞ୍ଚିଲେ । ସହସା ଖ୍ୱାଜା ସାହେବ ଆସି ଚକ୍ରଧରଙ୍କୁ କୁଣ୍ଢାଇ ପକାଇ କାନ୍ଦି କାନ୍ଦି କହିଲେ—ଜାଣିଛ ଇଏ କାହାର ଶବ ! ମୋ ଆଖିର ପିତୁଳା, ମୋ ହୃଦୟର ଆତ୍ମା, ମୋର ଏକମାତ୍ର ପୁତ୍ର । ତା'ର ଚେହେରା ତୁମର ମନେ ପଡ଼ୁଥିବ । କେଡ଼େ ସୁନ୍ଦର ଯୁବକ, କେଡ଼େ ହୃଦୟବାନ୍ । କିନ୍ତୁ ଭଗବାନ ଜାଣନ୍ତି—ଏହାର ମୃତ୍ୟୁରେ ମୋ ଆଖିରୁ ବିନ୍ଦୁଏ ମାତ୍ର ଲୁହ ବାହାରି ନାହିଁ । ଇଏ ଏଭଳି କାମ କଲା, ଯାହା ଫଳରେ ମାନବିକତା ସମ୍ପୂର୍ଣ୍ଣ ଧ୍ୱଂସ ପାଇଗଲା । ତୁମକୁ ଅହଲ୍ୟା ସମ୍ବନ୍ଧରେ ଖବର ମିଳିଥିବ !

ଚକ୍ରଧର—ଆଜ୍ଞା ହଁ । ସମ୍ଭବତଃ ବଦମାସ ଲୋକେ ତାକୁ ଧରି ନେଇଗଲେ ।

ଖ୍ୱାଜା—ଇଏ ସେଇ ବଦ୍‌ମାସ, ଯାହାର ଶବ ଦେଖୁଛ । ମୁଁ ସାରା ସହରରେ ଅହଲ୍ୟାକୁ ଖୋଜିବାରେ ଲାଗିଛି. କିନ୍ତୁ ସେ ଏଣେ ମୋ ଘରେ ବନ୍ଦିନୀ । ଏ ବଦ୍‌ମାସ୍ ତା'

ଉପରେ ଅତ୍ୟାଚାର କରିବାକୁ ପ୍ରସ୍ତୁତ । ସେ ନଷ୍ଟ କୌଣସି ଉଚ୍ଚ ଖାନଦାନ ଘରର ପିଲା । ଏ ମୁଲକରେ ଏମିତି ଝିଅ ହେଲେ ଜନ୍ମ ହୁଅନ୍ତେ ! ଆଜି ସେ ସୁଯୋଗ ପାଇ ସ୍ୱାକୁ ଯମପୁରକୁ ପଠେଇ ଦେଲା—ଗୁପ୍ତରେ ଛୁରି ଭୁଷି ଦେଲା । ବଦମାସ ଛଟପଟ ହୋଇ ମରିଗଲା । ବଦମାସ ଜାଣିଥିଲା—ଅହଲ୍ୟା ମୋର ଝିଅ ବୋଲି । ତଥାପି ଏ କାଣ୍ଡ ଘଟେଇଲା । ଏପରି ପୁଅର ମୃତ୍ୟୁରେ ବାପ କାହିଁକି କାନ୍ଦିବ ! ତୁମେ ବଡ଼ ଭାଗ୍ୟବାନ୍—ଏପରି ଝିଅ ପାଇଛ ।

ଚକ୍ରଧର—ଏ ସମସ୍ତ ଘଟଣାରେ ମୁଁ ବଡ଼ ଦୁଃଖିତ । ଆପଣଙ୍କ ଭଳି ନ୍ୟାୟପରାୟଣ ବ୍ୟକ୍ତି ଏ ସଂସାରରେ ଦୁର୍ଲଭ । ଅହଲ୍ୟା କେଉଁଠାରେ ?

ଖ୍ୱାଜା—ଏଇ ଘରେ । ସକାଳୁ ଅନେକ ଥର କହିଲିଣି, ଚାଲ, ମୁଁ ତୋତେ ନେଇ ତୋ'ଘରେ ମିଶି ଦେଇ ଆସିବି । ଯାଉନି, କାହିଁକି କାନ୍ଦୁଛି ।

ଚକ୍ରଧରଙ୍କ ହୃଦୟ ଭୟରେ କମ୍ପି ଉଠିଲା । ଅହଲ୍ୟା ଉପରେ ସମ୍ଭବତଃ ହତ୍ୟା ଅଭିଯୋଗ ଚାଲିବ । ଚିନ୍ତିତ ହୋଇ କହିଲେ—ଅହଲ୍ୟା ଉପରେ ତ ଅଦାଲତରେ······

ଖ୍ୱାଜା—ଆଦୌ ନୁହେଁ । ସେ ସବୁ ଝିଅ ପିଲାଙ୍କ ପାଇଁ ଏକ ଆଦର୍ଶ ସ୍ଥାପନ କଲା । ଖୁଦା ତାକୁ ଆଶୀର୍ବାଦ କରୁଛନ୍ତି । ସେ ଖୁନ୍ କରିନାହିଁ, ହତ୍ୟା କରିନାହିଁ—କର୍ତ୍ତବ୍ୟ କରିଛି ।

ଲାସ୍ ଉଠିଲା । ଶୋକ ସମାଜ ପଛେ ପଛେ ଚାଲିଲା । ଚକ୍ରଧର ମଧ୍ୟ ଖ୍ୱାଜାଙ୍କ ସହ କବରଖାନାକୁ ଗଲେ । ରାସ୍ତାରେ କଥାବାର୍ତ୍ତା ବନ୍ଦ । ଲାସ୍‌କୁ କବର ଦିଆଗଲାବେଳେ ଖ୍ୱାଜାସାହେବ ଖୁବ୍ କାନ୍ଦିଲେ । ହାତରେ ମାଟି ଦେଉଥିଲେ, ଆଖିରୁ ଲୁହ ବୋହାଉଥିଲେ ଚକ୍ରଧର ଲୋତକ ସମ୍ବରଣ କରି ପାରିଲେ ନାହିଁ । ହାୟ, ଏପରି ନ୍ୟାୟଶୀଳ ବ୍ୟକ୍ତି ଉପରେ ପୁଣି ଏ ବିପଦ !

ସତ୍କାରକୁ ଫେରିଲା ପରେ ଖ୍ୱାଜା ସାହେବ କହିଲେ—ଆସ ବାପା, ମୁଁ ତୁମକୁ ଅହଲ୍ୟା ସହ ସାକ୍ଷାତ୍ କରେଇବି । ତାକୁ ଟିକିଏ ଧୈର୍ଯ୍ୟ ଦିଅ । ମୁଁ ସେଦିନଠୁ ଭଗବାନଙ୍କ ହାତରେ ଅର୍ପଣ କଲି, ଏଇ ଶପଥ କରିଥିଲି ଯେ, ତା'ର ବିବାହ ମୁଁ କରେଇବି । ମୋତେ ସୁଯୋଗ ଦିଅ, ମୁଁ ମୋର ଶପଥ ପୂର୍ଣ୍ଣ କରେ ।

ଏହା କହି ଖ୍ୱାଜା ସାହେବ ଚକ୍ରଧରଙ୍କର ହାତ ଧରି ଭିତରକୁ ଗଲେ । ଚକ୍ରଧର ଅହଲ୍ୟାକୁ ଦେଖିବା ପାଇଁ ଆଗରୁ କେବେ ଏତେ ଉତ୍ସୁକ ନ ଥିଲେ । ଅହଲ୍ୟା ଚକ୍ରଧରଙ୍କୁ ଦେଖି ତାଙ୍କର ପାଦ ତଳେ ପଡ଼ିଯାଇ ଅଶ୍ରୁଧାରରେ ପାଦକୁ ଧୋଇ ଦେଲେ ।

ଚକ୍ରଧର—ଅହଲ୍ୟା, ତୁମର ବୀରତ୍ୱ କ୍ଷତ୍ରିୟାଣୀମାନଙ୍କ କୀର୍ତ୍ତିକୁ ଉଜ୍ଜ୍ୱଳ କରିଦେଲା । ଦୁଃଖହୁଏ, ଖ୍ୱାଜା ସାହେବଙ୍କର ସର୍ବନାଶ ଘଟିଲା । ତୁମେ ଛୁରୀ କେଉଁଠୁ ପାଇଲ ?

ଅହଲ୍ୟା—ଏ ଛୁରୀ ତାଙ୍କ କମରର ।

ଚକ୍ରଧର—ତୁମ ହାତକୁ ଅସିଲା କପରି ?

ଅହଲ୍ୟା—ଅବଳା ହାତରେ କୌଶଳ ବ୍ୟତୀତ ଆତ୍ମରକ୍ଷାର ଅନ୍ୟ ସାଧନ ବା କ'ଣ ଅଛି ? ଆଉ ଅନ୍ୟ କିଛି ପଚାରନ୍ତୁନାହିଁ ।

ଚକ୍ରଧର ଦେଖିଲେ ଏପରି ପ୍ରଶ୍ନ ଦ୍ୱାରା କଥା ବଗିଡ଼ି ଯାଉଛି । ସେ ବୋଧେ ବୁଝିବ ମୋତେ ସନ୍ଦେହ କରାଯାଉଛି । ଚକ୍ରଧର କହିଲେ—ସେଇ କୌଶଳ ଜାଣିବାକୁ ଉଦ୍‌ବିଗ୍ନ ।

ଅହଲ୍ୟା—ଆପଣଙ୍କର ତହିଁରେ ପ୍ରୟୋଜନ ! ଯଦି ଜାଣିବାକୁ ଚାହୁଁଛନ୍ତି ଅଗ୍ନିପରୀକ୍ଷା ନେଇ ପାରନ୍ତି ।

ଚକ୍ରଧର—ତୁମର ଅଗ୍ନିପରୀକ୍ଷା ହୋଇ ସାରିଛି ଅହଲ୍ୟା । ତହିଁରେ ତୁମେ ଶୁଦ୍ଧ । ତୁମେ ନବକୁସୁମିତ ପୁଷ୍ପବତ୍ ସ୍ୱଚ୍ଛ, ନିର୍ମଳ ଓ ପବିତ୍ର । ତୁମ ପ୍ରତି ମୋର ସନ୍ଦେହ ଥିଲେ, ମୁଁ ଏଠାରେ ଠିଆ ହୋଇ ନଥା'ନ୍ତି । ଅହଲ୍ୟା ତୁମେ ବହୁ ପୂର୍ବରୁ ମୋ ହୃଦୟରେ ବିରାଜମାନ କରିସାରିଛ । ଚାଲ, ମାଆ ବ୍ୟସ୍ତ ହୋଇ ପଡ଼ୁଥିବେ ।

ଏହା କହି ଅହଲ୍ୟାର ହାତ ଧରି ପକାଇଲେ । କିନ୍ତୁ ହାତକୁ ଛଡ଼ାଇ ପଛକୁ ହଟିଯାଇ କମ୍ପିତ ସ୍ୱରରେ କହିଲା—ନା, ନା, ମୋର ଅଙ୍ଗ ସ୍ପର୍ଶ କରନ୍ତୁ ନାହିଁ । ଶୁଙ୍ଘି ଥିବା ଫୁଲ ଦେବାର୍ପିତ ହୋଇପାରେନା । ମୋର ଆତ୍ମା ନିଷ୍କଳଙ୍କ, କିନ୍ତୁ ମୁଁ ସେଠାକୁ କି କେଉଁଠିକି ଯିବି ନାହିଁ । ଆପଣଙ୍କ ସେବା କରିବା ମୋ ଭାଗ୍ୟରେ ନାହିଁ । ମୁଁ ଜନ୍ମରୁ ଅନାଥିନୀ । ଆପଣ ଯାଇ ମାଆଙ୍କୁ ବୁଝେଇ ଦିଅନ୍ତୁ ।

ଚକ୍ରଧର ଅହଲ୍ୟାକୁ ଛାତିରେ ଲଗାଇ କହିଲେ—ଅହଲ୍ୟା, ଯେଉଁ ଦେହରେ ପବିତ୍ର, ନିଷ୍କଳଙ୍କ ଆତ୍ମା ରହେ, ସେ ଦେହ ନିଷ୍କଳଙ୍କ ଓ ପବିତ୍ର । ମୋ ଆଖିରେ ତୁମେ ପୂର୍ବାପେକ୍ଷା ଅଧିକ ନିର୍ମଳ । ତୁମର ଅଗ୍ନିପରୀକ୍ଷା ହୋଇ ସାରିଛି । ଆଉ ବିଳମ୍ବ କରନାହିଁ ! ଈଶ୍ୱର ଚାହିଁଲେ କାଲି ଆମେ ପ୍ରେମ ସୂତ୍ରରେ ଆବଦ୍ଧ ହେବା ଏବଂ ତାହାକୁ କାଳ ଛିଣ୍ଡାଇ ପାରିବନାହିଁ । ତାହା ହେବ ଅମର ଓ ଅଭେଦ୍ୟ ।

ଅହଲ୍ୟା କେତେ ମିନିଟଯାଏଁ କାନ୍ଧରେ ମୁଣ୍ଡ ରଖି କାନ୍ଦିବାକୁ ଲାଗିଲା । ତା'ପରେ କହିଲା—ଗୋଟିଏ କଥା ପଚାରିବି, ପବିତ୍ର ମନରେ ଉତ୍ତର ଦେବ ।

ଚକ୍ରଧର—ପଚାର ।

ଅହଲ୍ୟା—ତୁମେ ମୋତେ କ'ଣ ଦୟା ପରବଶ ହୋଇ ଉଦ୍ଧାର କରିବାକୁ ଯାଇ ଏ କଳଙ୍କ ବହନ କରିବାକୁ ଯାଉଛ ନା ପ୍ରେମ ବଶରେ ?

ଚକ୍ରଧର—ତୁମେ କ'ଣ ଭାବୁଛ ?।

ଅହଲ୍ୟା—ମୁଁ ଜାଣିଥିଲେ ସତ୍ୟ କାହିଁକି ?

ଚକ୍ରଧର—ଅହଲ୍ୟା, ମୁଁ ଜଣେ ଗରିବ ବ୍ୟକ୍ତି । ଦୟା, ଧର୍ମ ଓ ଉଦ୍ଧାର କଥା ମୋତେ ଜଣା ନାହିଁ । କେବଳ ଏତିକି କହିପାରେ, ମୁଁ ତୁମକୁ ପାଇଲେ ମୋର ଜୀବନ ସଫଳ ହୋଇଯିବ ।

ଅହଲ୍ୟା—ମୁଁ ଭୟ କରୁଛି—ଆପଣ ମୋତେ ଆଶ୍ରୟ ଦେଇ ବଦନାମ ହୋଇଯିବେ ବୋଲି । ଆପଣଙ୍କ ମାତାପିତା ଆପଣଙ୍କୁ ତିରସ୍କାର କରିବେ । ଆପଣଙ୍କ ଅପମାନ ଓ ତିରସ୍କାର ମୁଁ ସହିପାରିବିନାହିଁ । ଆପଣଙ୍କ ଦର୍ଶନ ପାଇଁ ଜୀଇଥିଲି । ଆଉ ମୋର ଏ ଜୀବନ ପ୍ରତି ମମତା ନାହିଁ ।

ଚକ୍ରଧରଙ୍କ ଚକ୍ଷୁ କରୁଣାର୍ଦ୍ର ହୋଇଗଲା । କହିଲେ—ଅହଲ୍ୟା, ଏପରି କହ ନାହିଁ । ମୋ ଆତ୍ମାର ଆଦେଶ ଆଗରେ ମୁଁ ପିତାମାତା ବିରୋଧକୁ ଖାତିର କରେନା । ଆମେ ଏ ସଂସାରର ସମସ୍ତ ଦୁଃଖ କଷ୍ଟର ସମ୍ମୁଖୀନ ହୋଇ ପାରିବା । ଏପରି କୌଣସି ବିପତ୍ତି ନାହିଁ, ଯାହାକୁ ପ୍ରେମ ଦୂରୀଭୂତ କରି ନ ଦେବ ।

ଅହଲ୍ୟା ସ୍ନେହ-ସଜଳ ଚକ୍ଷୁରେ ଚକ୍ରଧରଙ୍କୁ ଚାହିଁ ରହିଲା । ଆଶଙ୍କା-ପ୍ରବାହ ତାର ମର୍ମ ସ୍ଥଳକୁ ଜାଳି ପକାଉଥିଲା, ଏହି ଶୀତଳ ଆର୍ଦ୍ର ଶବ୍ଦରେ ଶାନ୍ତ ହୋଇଗଲା । ସେ ନିଜର ମୁଣ୍ଡଟି ଚକ୍ରଧରଙ୍କ କାନ୍ଧ ଉପରେ ରଖିଦେଲା । ଏଥର ତାର ସମସ୍ତ ଦୁର୍ଭାବନା ବିଲୀନ ହୋଇଗଲା ।

ସନ୍ଧ୍ୟା ସମୟରେ ଅହଲ୍ୟା ବାଗେଶ୍ୱରୀଙ୍କ ପାଖରେ ପହଞ୍ଚି ତାଙ୍କ ପାଦକୁ ଅଶ୍ରୁ ଜଳରେ ଧୋଇ ପକାଇଲା । ଯେଉଁ ଘରର ଆତ୍ମା ଅନ୍ତର୍ଦ୍ଧାନ ହୋଇ ଯାଇଥିଲା, ଚକ୍ରଧର ସେହି ଘରକୁ ସଜଳ ନେତ୍ରରେ ଅନାଇଁ ରହିଥିଲେ ।

( ୨୭ )

ବାବୁ ଯଶୋଦାନନ୍ଦନଙ୍କର ଶ୍ରାଦ୍ଧକ୍ରିୟା ନିର୍ବିଘ୍ନରେ ଭଲରେ ଶେଷ ହେଲା । ମୃତ୍ୟୁର ଠିକ୍ ପୂର୍ବରୁ ସେ କହିଥିଲେ—ମୃତକ ସଂସ୍କାରରେ ଧନର ଅପବ୍ୟୟ କରାଯିବ ନାହିଁ । ଯଦି କିଛି ଧନ ଜମା ହୁଏ, ତେବେ ତାକୁ ହିନ୍ଦୁସଭାକୁ ଦାନ କରିଦେବ । ସେଇଆ ହେଲା ।

ଶ୍ରାଦ୍ଧକ୍ରିୟା ସମାପ୍ତ ହେବା ପରେ ଅହଲ୍ୟା ଓ ଚକ୍ରଧରଙ୍କର ବିବାହ ସମ୍ପନ୍ନ ହେଲା । ଚକ୍ରଧର ଆଉ କିଛିଦିନ ପରେ କରିବାକୁ କହିଥିଲେ । କିନ୍ତୁ ବାଗେଶ୍ୱରୀ ଅପେକ୍ଷାକୁ ପସନ୍ଦ

କଲେ ନାହିଁ । ଏହି ଉପଦ୍ରବ ତାଙ୍କୁ ଉପସ୍ଥିତ କରି ଦେଇଥିଲା । ବିବାହରେ କିଛି ଧୁମ୍‌ଧାମ୍ ହେଲା ନାହିଁ । କିନ୍ତୁ ସହରର ଧନୀ ଜମିଦାରମାନେ କନ୍ୟାଦାନରେ ବହୁତ ଧନ ଦେଲେ । ବେଶି ଦେଲେ ଖ୍ୱାଜା ମହମ୍ମଦ । ଅହଲ୍ୟା ବିବାହ ପାଇଁ ସେ ପାଞ୍ଚହଜାର ଟଙ୍କା ଅଲଗା ରଖିଥିଲେ । ମତାନ୍ତରର ଭୂତ ନେତାମାନଙ୍କ ବଳିଦାନରେ ଶାନ୍ତ ହୋଇଗଲା ।

ଯେଉଁଦିନ ଚକ୍ରଧର ଓ ଅହଲ୍ୟା ବିଦାୟ ହୋଇ କାଶୀ ଆସିଲେ, ସେଦିନ ହଜାର ହଜାର ଲୋକ ଷ୍ଟେସନକୁ ବିଦାୟ ଦେବା ପାଇଁ ଆସିଥିଲେ । କାନ୍ଦି କାନ୍ଦି ବାଗେଶ୍ୱରୀ ଅବସ୍ଥା ଝିଙ୍ଗାପ ହୋଇ ପଡ଼ିଲା । ଅହଲ୍ୟା କାନ୍ଦୁଥିଲା—ଶୋକରେ ନୁହେ, ବିଦାୟରେ । କିନ୍ତୁ ଚକ୍ରଧରଙ୍କ ସମ୍ମୁଖରେ ଅନ୍ୟ ସମସ୍ୟା ଦେଖାଦେଇଥିଲା । ସେ ଯେଉଁ ଘରକୁ ଯାଉଥିଲେ, ସେ ଘରର ଦ୍ୱାର ବନ୍ଦ ଥିଲା । ସୁଦୃଢ଼ ତାଲା ପଡ଼ିଥିଲା । ତାକୁ ଖୋଲି ହବନ କି କରିଁ ବି ହେବ ନାହିଁ । ନବବଧୂଙ୍କୁ ନେଇ ବର ହୃଦୟରେ ଯେଉଁ ଅଭିଳାଷ, ମୃଦୁ କଳ୍ପନା ପ୍ରଦୀପ୍ତ ହୁଏ, ତାହା ଲେଶମାତ୍ର ନଥିଲା । ଚାରିଆଡ଼େ ଅନ୍ଧକାର ଛାଇ ହୋଇ ରହିଥିଲା । ପିତାଙ୍କ କ୍ରୋଧ, ମାତାଙ୍କ ତିରସ୍କାର, ବନ୍ଧୁବାନ୍ଧବଙ୍କ ଘୃଣା—ଏସବୁ ଆଶଙ୍କାରେ ଚିତ୍ତ ଉଦ୍‌ବିଗ୍ନ । ବିକଟ ସମସ୍ୟା ଥିଲା—ଗାଡ଼ିରୁ ଓହ୍ଲାଇ ଯିବ କୁଆଡ଼େ । ଏଭଳି ଗମ୍ଭୀର ଚିନ୍ତିତ ଅବସ୍ଥାରେ ଚକ୍ରଧରଙ୍କୁ ଦେଖି ଅହଲ୍ୟା ପଚାରିଲା—ତୁମେ ଏତେ ଉଦାସ କାହିଁକି ଦେଖା ଯାଉଛ ?

ଚକ୍ରଧର—ନାହିଁ ତ, ଉଦାସ କାହିଁକି ଦେଖାଯିବି ! ଏ ସମୟଟା ଉଦାସ ରହିବା ପାଇଁ ନୁହେ ଆନନ୍ଦ କରିବା ପାଇଁ ।

ଅହଲ୍ୟା—ତାହା ନିଜ ମୁହଁକୁ ପଚାର ।

ଚକ୍ରଧର ହସିବାର ବିଫଳ ଚେଷ୍ଟା କରି କହିଲେ—ମୁଁ ତ ଅତ୍ୟନ୍ତ ଖୁସି ।

ଅହଲ୍ୟା—ତୁମ ଇଚ୍ଛା, ନ କହ । ମୁଁ ଭାବୁଛି ତୁମର ମୋ ଉପରେ ବିଶ୍ୱାସ ନାହିଁ ।

ଏହା କହିବା ପରେ ଅହଲ୍ୟାର ଚକ୍ଷୁ ସଜଳ ହୋଇ ଉଠିଲା । ଚକ୍ରଧର ଆଉ ଲୁଚାଇ ନ ରଖି ସଂକ୍ଷେପରେ ସମସ୍ତ କଥା କହି ଶେଷରେ ପ୍ରୟାଗରେ ଓହ୍ଲାଇବାକୁ ପ୍ରସ୍ତାବ କଲେ ।

ଅହଲ୍ୟା ଗର୍ବର ସହି କହିଲା—ନିଜର ଘର ଥାଉଁ ଥାଉଁ ପ୍ରୟାଗରେ କାହିଁକି ଓହ୍ଲାଇବା ? ମୁଁ ଘରକୁ ଯିବି । ପିତା ମାତାଙ୍କର ଅପ୍ରସନ୍ନତା ହେତୁ କେହି ଘର ଛାଡ଼ିଦିଏ ନାହିଁ । ସେମାନେ କେତେ ବିରକ୍ତ ହେଲେ ବି ପିତାମାତା ତ । ତୁମେ ସେ ଚିନ୍ତା ଛାଡ଼ ।

ଚକ୍ରଧର—ବାବାଙ୍କର ସାମାଜିକ ବିଚାର ଏତେ ସଙ୍କୀର୍ଣ୍ଣ ଯେ ତହିଁରେ ଧର୍ମର ସ୍ଥାନ ନାହିଁ । ମୋର ଭୟ, ସେ ମୋତେ ଘର ଭିତରକୁ ଯିବାକୁ ଦେବେ ନାହିଁ । ଆମେ ପ୍ରୟାଗରେ ରହିଲେ କ୍ଷତି କ'ଣ ! ଯେଯାଏଁ ଘର ଲୋକେ ସ୍ୱାଗତ ନ କରିବେ, ଏଇଠି ରହିବା ।

ଅହଲ୍ୟା—ତୁମର କିଛି କ୍ଷତି ନ ହୋଇପାରେ । କିନ୍ତୁ ପିତାମାତାଙ୍କୁ ଛାଡ଼ି ସ୍ୱର୍ଗରେ ରହିବାକୁ ମଧ୍ୟ ମୁଁ ଭଲ ମନେ କରେନା । ସେମାନଙ୍କର ସେବା କରିବାକୁ ଆଉ ସୁଯୋଗ ମିଳିବ କୁଆଡ଼ୁ ! ସେମାନେ ଯେତେ ବିରକ୍ତ ହୁଅନ୍ତୁ, ଆମେ ତାଙ୍କୁ ଛାଡ଼ିବା ଉଚିତ ନୁହେ । ପିଲାଦିନେ ସେମାନେ ଆମକୁ ଯେତେ ବିରକ୍ତ ହେଲେ, ରାଗିଲେ, ମାଇଲେ ବି ଆମେ କ'ଣ ସେମାନଙ୍କ ପ୍ରତି ଅପ୍ରସନ୍ନ ହୋଇଥାଏଁ ! ଏବେ ସେମାନଙ୍କର ସେବା କରିବା ସମୟରେ ଅପ୍ରସନ୍ନତାରେ ମୁହଁ ମୋଡ଼ିବା ଶୋଭନୀୟ ନୁହେଁ । ସେମାନଙ୍କୁ ପ୍ରସନ୍ନ କରିବାର ଭାର ମୋ ଉପରେ ଛାଡ଼ିଦିଅ । ମୋର ବିଶ୍ୱାସ ମୁଁ ସେମାନଙ୍କୁ ସମ୍ଭାଳି ନେବି ।

ଚକ୍ରଧର ଅହଲ୍ୟାକୁ ଗଦ୍‌ଗଦ୍ ନୟନରେ ଦେଖି ଚୁପ୍ ହୋଇଗଲେ ।

ରାତି ୧୦ଟାରେ ଗାଡ଼ି ବନାରସରେ ପହଞ୍ଚିଲା । ଅହଲ୍ୟା ଆଶ୍ୱାସନା ଦେଲେ ମଧ୍ୟ ଚକ୍ରଧର ଖୁବ୍ ଚିନ୍ତିତ, କ'ଣ କରିବେ । ପହଞ୍ଚୁ ପହଞ୍ଚୁ ବାବା ଯଦି ଗାଳି ଆରମ୍ଭ କରିଦେବେ, ଅହଲ୍ୟାକୁ ଘର ଭିତରକୁ ଯିବାକୁ ନ ଦେବେ, ତେବେ ବୁଡ଼ି ମରିବା କଥା ହେବ । କିନ୍ତୁ ଷ୍ଟେସନରେ ଓହ୍ଲେଇ ଦେଖିଲେ ବାବା ଦୁଇଜଣ ଲୋକଙ୍କୁ ଧରି ଷ୍ଟେସନରେ ଗାଡ଼ିକୁ ଅପେକ୍ଷା କରିଛନ୍ତି । ପିତାଙ୍କର ଏହି ଅସୀମ, ଅପାର, ଅଲୌକିକ ବାତ୍ସଲ୍ୟ ସ୍ନେହ ତାଙ୍କୁ ଆନନ୍ଦ ସାଗରରେ ବୁଡ଼େଇ ଦେଲା । ସେ ଯାଇ ପିତାଙ୍କ ପାଦତଳେ ପଡ଼ିଗଲେ । ମୁନ୍‌ସିଜୀ ତାଙ୍କୁ କୁଣ୍ଢାଇ ଧରି, ଆଖିରୁ ହର୍ଷାଶ୍ରୁ ପୋଛି ସ୍ନେହ କୋମଳ ସ୍ୱରରେ କହିଲେ—ଗୋଟେ ଟେଲିଗ୍ରାମ୍ ତ କରି ପାରିଥାଆନ୍ତୁ, ମୁଁ ଏଇ ଗାଡ଼ିରେ ଯାଉଛି ବୋଲି । ମୁଁ ଏଠାକୁ ସବୁଦିନ ଦୁଇଥର ଲେଖାଏଁ ଦଉଡ଼ୁଛି । ଜଣଙ୍କୁ ଏଠି ସଦାବେଳେ ବସେଇ ରଖିଛି । ବୋହୂ କାହିଁ ! ଚାଲ, ଓହ୍ଲେଇ ଆଣିବା । ବୋହୂ ହିଁ ଏଇଠି ରହୁ । ଷ୍ଟେସନ ମାଷ୍ଟରଙ୍କୁ କହୁଛି । ମୁଁ ୱେଟିଂ ରୁମ୍ ଖୋଲି ଦେଉଛି । ମୁଁ ଯାଇ ବାଜା ଆଲୋକର ବ୍ୟବସ୍ଥା କରେଁ ।

ଏହା କହି ମୁନ୍‌ସୀଜୀ ଚକ୍ରଧରଙ୍କୁ ନେଇ ଅହଲ୍ୟା ଥିବା ଡବା ଆଗରେ ଠିଆ ହେଲେ । ଅହଲ୍ୟା ଧୀରେ ଓହ୍ଲାଇ ଚରଣରେ ମସ୍ତକ ରଖିଲା । ମୁନ୍‌ସୀଜୀ ତା' ମୁଣ୍ଡରେ ହାତ ରଖି ଆଶୀର୍ବାଦ ଦେଲେ । ଉଭୟଙ୍କୁ ନେଇ ୱେଟିଂ ରୁମ୍‌ରେ ରଖି କହିଲେ—କାହାରିକୁ ଭିତରକୁ ଆସିବାକୁ ଦେବୁ ନାହିଁ । ମୁଁ ଷ୍ଟେସନ ମାଷ୍ଟରଙ୍କୁ କହି ଦେଇଛି । ଏଇ ଘଣ୍ଟେ ଭିତରେ ଆସୁଛି । ରାଣୀ ଅନେକ ଥର ଆସି ଫେରିଲେଣି । ଆଜି ଯିବାବେଳେ କହିଛନ୍ତି, ବାବୁଜୀ ଆସିଲେ, ସଙ୍ଗେ ସଙ୍ଗେ ଖବର ଦେବାକୁ ।

ଚକ୍ରଧର ଧୀର କଣ୍ଠରେ କହିଲେ—ଏବେ ତାଙ୍କୁ ଖବର ଦିଅନ୍ତୁ ନାହିଁ । ଆପଣ ମଧ୍ୟ ଧୂମ୍‌ଧାମ୍ କରିବାକୁ କଷ୍ଟ କରନ୍ତୁ ନାହିଁ । ସକାଳେ ସମସ୍ତେ ଜାଣିଯିବେ ।

ହାତବାଉ ସମ୍ଭାଳି ମୁନ୍‌ସୀଜୀ କହିଲେ—ଶୁଣୁଚୁ ବୋହୂ ଯା' କଥା । ସକାଳୁ ଲୋକେ ଜାଣି କ'ଣ କହିବେ !

ମୁନ୍‌ସୀଜୀ ଚାଲିଗଲା ପରେ ଅହଲ୍ୟା କହିଲା—ଏଭଳି ଦେବତା-ପୁରୁଷଙ୍କ ସହ ତୁମେ ଅକାରଣରେ କେତେ ଅନର୍ଥ କରିଚାକୁ ଯାଉଥିଲ । ମୋର ତ ମନ ହଉଚି ଘଣ୍ଟା ଘଣ୍ଟା ଧରି ତାଙ୍କ ପାଦ ତଳେ ବସି କାନ୍ଦିବାକୁ ।

ଚକ୍ରଧର ଲଜ୍ଜିତ ହେଲେ । ଭାବୁଥିଲେ—ଏବେ ଦୁନିଆକୁ ଦେଖେଇବା ପାଇଁ ବାବା ଯେତେ ଧୂମ୍‌ଧାମ୍‌ କରନ୍ତୁ ନା କାହିଁକି ଘରକୁ ଗଲା ପରେ ବାହାରିବ ତାଙ୍କ ରୂପ । ସାରି ରାତିଟା କଟିବ । ସହରଯାକ ବୁଲେଇବେ । ଘରେ ପହଞ୍ଚି କେତେ ପ୍ରଥା ପାଳିବାକୁ ହେବ । ବେଶି ବ୍ୟସ୍ତ ହେଉଥିଲେ । ମନୋରମା ଯଦି ରାଜକାର୍ଯ୍ୟ ଥାଉ ନେଇ ପହଞ୍ଚିଯିବ, ଆହୁରି ହଇରାଣ । ଏତେ ଧୂମ୍‌ଧାମ୍‌ରେ ଲାଭ କ'ଣ !

ମୁନ୍‌ସୀଜୀ ଯିବାର ଅଧଘଣ୍ଟା ହେଇଚି କି ନାହିଁ ମନୋରମା ଆସି ଦୁଆରେ ଠିଆ ହୋଇ-ଗଲା । ଚକ୍ରଧର ଚମକି ପଡ଼ିଲେ । ଚୌକିରୁ ଉଠି ଠିଆ ହୋଇପଡ଼ିଲେ । ମନୋରମା ମୁହଁକୁ ଅନାଇବାକୁ ସାହାସ ହେଲାନାହିଁ । ସତେ ଯେମିତି କିଛି ଅପରାଧ କରିଛନ୍ତି । ମନୋରମା ତାଙ୍କୁ ଦେଖିବା ସଙ୍ଗେ ସଙ୍ଗେ କହିଲା—ବାବୁଜି, ଆପଣ କାହାକୁ କିଛି ନ ଜଣେଇ ବୋହୂକୁ ଉଡେଇ ନେଇ ଆସିଲେ । ମୋତେ ଟିକିଏ ଖବର ଦେଲେନାହିଁ । ମୁନ୍‌ସୀଜୀ ନ କହିଥିଲେ ତ ମୁଁ ଜାଣି ନ ଥା'ନ୍ତି । ଆପଣ ତ ଆପଣଙ୍କର ଘର ସଂସାର କଲେ । ମୋ ପାଇଁ କ'ଣ ଉପହାର ଆଣିଛନ୍ତି ?

ଚକ୍ରଧର ମନୋରମାକୁ ଲଜ୍ଜିତ ହୋଇ ଚାହିଁଲେ । ମୁହଁରେ ତା'ର ସ୍ମିତ ହସ କିନ୍ତୁ ଆଖିରେ ଲୁହ । ସେ ନେତ୍ରରେ ଅନେକ ବିନୟ, ଅନେକ ନୈରାଶ୍ୟ, ଅନେକ ତୃଷ୍ଣା, ଅନେକ ତିରସ୍କାର । ଜବାବ ଦେବାକୁ ତାଙ୍କୁ କିଛି ଶବ୍ଦ ମିଳିଲାନାହିଁ । ମନୋରମା ଅବନତ ମସ୍ତକରେ କହିଲା—ଆପଣଙ୍କର ତ ମୁଁ ମନେ ପଡ଼ି ନ ଥିବି, ଉପହାର କ'ଣ ଆଣିବେ ? ଭଉଣୀ, ଆପଣ ଏତେ ଦୂରରେ କ'ଣ ଠିଆ ହୋଇଛନ୍ତି ! ଆସନ୍ତୁ, ମୋର ତ ଆପଙ୍କ ଉପରେ କିଛି ଅଭିଯୋଗ ନାହିଁ ।

ଏହା କହି ଅହଲ୍ୟା ପାଖକୁ ଯାଇ ଆଲିଙ୍ଗନ କଲା । ମନୋରମା ରୁମାଲରୁ ଏକ କଙ୍କଣ ବାହାର କରି ଅହଲ୍ୟା ହାତରେ ପିନ୍ଧାଇ ଦେଲା । ଅହଲ୍ୟାର ରୂପ ଦେଖି ମନୋରମା ଅବାକ୍ ହୋଇଗଲା । ତା'ର ଶାନ୍ତ, ଶୀତଳ, ସରଳ ଛବି ସମ୍ମୁଖରେ ତା'ର ସମସ୍ତ ସୌନ୍ଦର୍ଯ୍ୟ କୌଣସି ବିଶାଳ ଭବନ ସମ୍ମୁଖରେ କୁଟୀର ଭଳି ଜଣାପଡ଼ୁଥିଲା ।

ଅହଲ୍ୟା ତାକୁ ଚୌକିରେ ବସାଇ ପାନ ଅଳେଇଚି ଦେଲା । କହିଲା—ଆପଣ ମୋ ହେତୁ ଏତେ କଷ୍ଟ କଲେ । ଏତ ଆପଣଙ୍କର ଆରାମ କରିବା ସମୟ ।

ଚକ୍ରଧର ସୁଯୋଗ ପାଇ ବାହାରକୁ ଚାଲିଗଲେ ।

ମନୋରମା କ୍ଷୁଧିତ ନେତ୍ରରେ ଅହଲ୍ୟାକୁ ଚାହିଁ କହିଲା—ନା ଭଉଣୀ, ମୋତେ ଟିକିଏ ହେଲେ କଷ୍ଟ ନାହିଁ । ମୁଁ ପ୍ରତିଦିନ ବାରଟା-ଗୋଟେ ପୂର୍ବରୁ ଶୁଏ ନାହିଁ । ତୁମ ସହିତ

ସାକ୍ଷାତ କରିବା ପାଇଁ ବହୁ ଦିନରୁ ଇଚ୍ଛା ଥିଲା । ମୁଁ ମନେ ମନେ ତୁମକୁ ଯେପରି କଳ୍ପନା କରିଥିଲି, ତୁମେ ଠିକ୍ ସେହିପରି ଦେଖିବାକୁ ପାଇଲି; ତୁମେ ଏପରି ହୋଇ ନ ଥିଲେ ବାବୁଙ୍କ ତୁମ ପ୍ରତି ଏତେ ଆସକ୍ତ ହୋଇଥା'ନ୍ତେ କାହିଁକି ! ଅହଲ୍ୟା, ତୁମେ ବଡ଼ ଭାଗ୍ୟବତୀ । ତୁମ ଭଳି ଭାଗ୍ୟବତୀ ସ୍ତ୍ରୀ ଖୁବ୍ କମ୍ ଥିବେ । ତୁମର ପତି ଗୋଟିଏ ମାନବ-ରତ୍ନ, ନିର୍ଦ୍ଦୋଷ ଏବଂ ନିଷ୍କଳଙ୍କ ।

ଅହଲ୍ୟା ପତି ପ୍ରଶଂସାରେ ଗର୍ବୋନ୍ମତ୍ତ ହୋଇ କହିଲା—ଆପଣଙ୍କ ପାଇଁ ତ କିଛି ଉପହାର ଆଣି ନାହାନ୍ତି ।

ମନୋରମା—ମୋ ପାଇଁ ତୁମଠୁ ବଳି ଆଉ ବଡ଼ ଉପହାର କ'ଣ ଆଣି ଥାଆନ୍ତେ । ମୁଁ ସଂସାରରେ ଏକାକୀ ଥିଲି । ତୁମକୁ ପାଇ ଡବଲ ହୋଇଯିବି । ମଙ୍ଗଳା ତ କାଲି ଅନ୍ୟ ଘରକୁ ଚାଲିଯିବେ । ଆଜିଠାରୁ ତୁମେ ମୋର ସହଚରୀ । ଭଗବାନଙ୍କୁ ମୋର ପ୍ରାର୍ଥନା, ଆମକୁ ଚିରକାଳ ସ୍ନେହ ବନ୍ଧନରେ ବାନ୍ଧି ରଖନ୍ତୁ ।

ଅହଲ୍ୟା—ମୁଁ ଏହାକୁ ମୋର ସୌଭାଗ୍ୟ ମନେ କରିବି । ଆପଣଙ୍କର ଚରିତ୍ର ଓ ସ୍ୱଭାବ କୀର୍ତ୍ତିନରେ ତାଙ୍କର ତ ଜିଭ ଥକି ଯାଏନାହିଁ ।

ମନୋରମା—ସତେ ! ମୋ ବିଷୟରେ କେବେ ଚର୍ଚ୍ଚା କରନ୍ତି !

ଅହଲ୍ୟା—କଥା କଥାକେ ଆପଣଙ୍କ କଥା । ଆପଣଙ୍କର ଯେ କୌଣସି କଥାକୁ ସେ ଟାଳି ଦେବେ—ମୁଁ ଏ କଥା ଭାବି ପାରୁନାହିଁ ।

ଏହି ସମୟରେ ବାଜା ଶବ୍ଦ ଶୁଭିଲା । ପଟୁଆର ଧରି ମୁନ୍‌ସୀଜୀ ଆସିଗଲେ । ସବୁ ତ ଠିକ୍ ଠାକ୍ କରି ରଖିଥିଲେ । କହିଲା ମାତ୍ରେ ସବୁ ପ୍ରସ୍ତୁତ ହୋଇଗଲେ । ଦୁଇ ସେଟ୍ ବାଜା, କେତେ ଗାଡ଼ି, ଦୁଇଟା ହାତୀ । ଡଜନେ ଘୋଡ଼ା, ଗୋଟିଏ ସୁନ୍ଦର ପାଲିଙ୍କି । ସବୁ ଷ୍ଟେସନ ସାମନାରେ ଠିଆ ହୋଇଗଲେ ।

ଅହଲ୍ୟା ହୃଦୟରେ ଆନନ୍ଦର ତରଙ୍ଗ ଉଠୁଥିଲା । ଯାହା ସେ ସ୍ୱପ୍ନରେ ସୁଦ୍ଧା ଭାବି ନ ଥିଲା, ସେ ସବୁ ପୂରଣ ହୋଇଯାଉଛି । ତା'ର ସ୍ୱାଗତ ଏତେ ଆଡ଼ମ୍ବର ସହକାରେ ହେବ, ଜଣେ ବଡ଼ ରାଣୀ ତା'ର ସଙ୍ଗିନୀ ହେବେ, ଏତେ ବଡ଼ ଆଦର ସମ୍ମାନ ମିଳିବ ବୋଲି ସେ କଳ୍ପନା ସୁଦ୍ଧା କରି ନଥିଲା ।

ମନୋରମା ତାକୁ ଧୀରେ ଧୀରେ ନେଇ ପାଲିଙ୍କିରେ ବସାଇଲା । ଚକ୍ରଧର ଏକ ଘୋଡ଼ାରେ ବସିଲେ । ପଟୁଆର ଚାଲିଲା ।

( ୨୮ )

ଠାକୁର ଗୁରୁଦେବକ ସିଂହ ଏବେ ଜଗଦୀଶପୁର ନାଜିମ୍ । ଇଲାକାର ସମସ୍ତ ବ୍ୟବସ୍ଥା ନାଜିମ୍‌ଙ୍କ ହାତରେ ।

ତିନି ଜଣ ରାଣୀ ରାଜଭବନରେ ଥାଆନ୍ତି । ତାଙ୍କ କଥା ବୁଝିବା ସେମାନଙ୍କର ପ୍ରୟୋଜନ ସାମଗ୍ରୀର ବ୍ୟବସ୍ଥା କରିବା ନାଜିମ୍‌ଙ୍କ କାମ ଥିଲା । ଏଇଟା ଥିଲା ମୁଖ୍ୟ କାମ । ପ୍ରଥମେ ଏ ପଦ ନ ଥିଲା । ରାଜା ସାହେବ ରାଣୀମାନଙ୍କୁ ଆରାମରେ ରଖିବା ପାଇଁ ଏ ପଦ ସୃଷ୍ଟି କଲେ । ଠାକୁର ଗୁରୁଦେବକ ସିଂହ ଜଗଦୀଶପୁରରେ ରାଜା ସାହେବଙ୍କର ପ୍ରତିନିଧି ସ୍ୱରୂପ ଥିଲେ ।

ତିନିରାଣୀଙ୍କ ମଧ୍ୟରେ ବୈର-ବିରୋଧ ଏବେ କମ୍ । ସ୍ୱାଧୀନ ଭାବରେ ଯିଏ ଯେତେ ସ୍ୱାର୍ଥ ରଖି ପାରିଲା, ଖର୍ଚ୍ଚ କରି ପାରିଲା, ଗହଣାଗାଣ୍ଠି ତିଆରି କରି ପାରିଲା । ଧର୍ମୋତ୍ସବ କରି ପାରିଲେ । କଳି ଆଉ କାହିଁକି ହେବ ! ଯଦି ରାଜା ସାହେବ କୌଣସି ଏକ ରାଣୀକୁ ବେଶି ପ୍ରେମ କରନ୍ତେ ଏବଂ ଅନ୍ୟ ରାଣୀମାନଙ୍କୁ ନ ପଚାରନ୍ତେ ତେବେ ଈର୍ଷାବଶତଃ ସିନା ଲଢ଼େଇ ହୁଅନ୍ତା ! କିନ୍ତୁ ରାଜାସାହେବ ତ ବନାରସ ଛାଡ଼ି ଜଗଦୀଶପୁର ଆସିବା ନାଁ ଧରୁ ନାହାନ୍ତି । କୋଉ କଥାକୁ ଲଢ଼େଇ !

ଠାକୁର ଗୁରୁଦେବକ ଦେଓ୍ୱାନଖାନାରେ ଅଫିସ କରିଥାଆନ୍ତି । ଆବଶ୍ୟକ ପଡ଼ିଲେ, ସଙ୍ଗେ ସଙ୍ଗେ ରାଣୀ ମହଲରେ ପହଞ୍ଚି ଯାଆନ୍ତି । ରାଣୀମାନେ ତାଙ୍କୁ ତ ଲୁଚନ୍ତି ଥିଲେ, କିନ୍ତୁ ଆଢ଼ୁଆଳରେ ରହି କଥାବାର୍ତ୍ତା କରୁଥିଲେ । ରାଣୀ ବସୁମତୀ ଏ ଆଢ଼ୁଆଳକୁ ଅନାବଶ୍ୟକ ମନେ କଲେ । କହିଲେ—କଥାବାର୍ତ୍ତା ତ କରିବ—ଆଉ ଆଢ଼ୁଆଳ କ'ଣ । ଗୁଡ଼ ତ ଖାଇବ, ଗୁଲୁଗୁଲାକୁ ଘୃଣା କାହିଁ ! ସଂସାର ପ୍ରତି ତାଙ୍କର ଏବେ ବିରାଗ ଆସିଯାଇଥିଲା । ସବୁ ସମୟ ଭଗବତ୍ ପୂଜନ ଏବଂ ଭଜନରେ କଟାଉଥିଲେ । ହଁ, ଅଳଙ୍କାର ପ୍ରତି ତାଙ୍କର ମୋହ ଏ ଯାଏ ଯାଇ ନ ଥିଲା । ଅନ୍ୟମାନଙ୍କ ଭଳି ଗହଣାଗାଣ୍ଠି ତିଆରି କରି ଜମା ରଖିବାକୁ ସେ ପସନ୍ଦ କରୁଥିଲେ । ସେ ସେ ସବୁକୁ ନିତି ବ୍ୟବହାର କରୁଥିଲେ । ରୋହିଣୀଙ୍କର ଅଳଙ୍କାର ପ୍ରତି ଘୃଣା ଆସି ଯାଇଥିଲା । ବେଶ ଭୂଷା ହେବା, କେଶ ସଜାଡ଼ିବା ପ୍ରତି ନଜର ଦେଉ ନଥିଲେ । ମଥାରେ ସିନ୍ଦୂର ଲଗେଇବା ମଧ୍ୟ ଛାଡ଼ି ଦେଇଥିଲେ । କହୁଥିଲେ—ବିଧବା ଆଉ ମୋ ଭିତରେ ପ୍ରଭେଦ କ'ଣ ! ବରଂ ବିଧବା ମୋଠାରୁ ହଜାରଗୁଣ ଭଲ । ମୋ ପାଇଁ ପତି ଥିବା ନ ଥିବା ସମାନ । ସୁନ୍ଦରୀ କାହିଁକି କାଢ଼ିବ ! ସିନ୍ଦୂର କ'ଣ ଲୁଟିବ !

ବାକି ରହିଲେ ରାଣୀ ରାମପ୍ରିୟା । ତାଙ୍କର ବିଦ୍ୟାବ୍ୟସନ ବହୁତ କମିଲେଣି । ଏବେ ଗୀତବାଦ୍ୟ ବାଜଣାରେ ମନ । ପ୍ରକାର ପ୍ରକାର ବାଦ୍ୟଯନ୍ତ୍ର ମଗାଉଛନ୍ତି । ଠାକୁର ଗୁରୁଦେବକଙ୍କର ମଧ୍ୟ ଗାଇବା ସଉକ୍ ଥିଲା କମ୍ପା ଏବେ ହୋଇଗଲା ବୋଲି କୁହାଯାଇ ପାରେ । କେମିତି ହେଲେ ସମସ୍ତ ବଳେଇ ଆସି ବସି ଯାଉଛନ୍ତି ଏବଂ ଉଠିବା ନାଁ ଧରୁ ନାହାନ୍ତି । ରାତିରେ ଅନେକ

ଅମଦ୍ଧରେ ଏଇଠି ଭୋଜନ ମଧ୍ୟ କରନ୍ତି । ରାମପ୍ରିୟା ସ୍ୱୟଂ ପରଷନ୍ତି । ଠାକୁର ସାହେବଙ୍କୁ ଏତେ ଖାତର୍ । ତେଣୁ ଠାକୁରଙ୍କର ମିଜାଜ୍ ଅକାଶଛୁଆଁ । ନୂଆ ନୂଆ ସ୍ୱପ୍ନ ଦେଖିବାକୁ ଲଗିଲେ । ଭାବିଲେ, ହେ ଭାଗ୍ୟସୂର୍ଯ୍ୟ ଉଦୟ ହୋଇଗଲା । ରାଜକରବାକର ଉପରେ ଏବେ ବେଶି ଧ୍ୟାନ । ଶୋଇଲେ ଡେରିକରି ଉଠୁଥିଲେ । ଇଲାକାରେ ଗସ୍ତ ଖୁବ୍ କମ୍ । ଯତେ ଯେପରି ସେ ହେଉଛନ୍ତି ରାଜା । କ୍ରମେ କ୍ରମେ ତାଙ୍କର ବିଶ୍ୱାସ ଜାତ ହେଉଥିଲା ଯେ, ରାମପ୍ରିୟା ତାଙ୍କ ନୟନବାଣରେ ଶିକାର ହେଉଛନ୍ତି । ରାମପ୍ରିୟା ହୃଦୟ-ପଟରେ ମୋର ଛବି ଅଙ୍କିତ ହୋଇଗଲାଣି । ପ୍ରତିଦିନ କିଛି ନା କିଛି ପ୍ରମାଣ ମିଳିଯାଉଛି । ତେଣୁ ଭାବନା ତାଙ୍କର ଅଧିକ ଦୃଢ଼ ହେଉଛି ।

ଦିନେ ଠାକୁରଙ୍କ ରାମପ୍ରିୟାର ପ୍ରେମ ପରୀକ୍ଷା ନେବାକୁ ଇଚ୍ଛା କଲେ । କୋଠରୀ ଭିତରେ ଚାଦର ଘୋଡ଼େଇ ହୋଇ ଶୋଇଲେ । ରାମପ୍ରିୟା କୌଣସି କାମରେ ଡକେଇ ପଠାଇଲେ କହିଲେ—ମୋତେ ଦେହରୁ ଜର । ରାମପ୍ରିୟା ଶୁଣି ଦେଉଡ଼ିଖାନାକୁ ଆସି ତାଙ୍କ ମଥାରେ ହାତ ରଖି ଦେଖିଲେ ଥଣ୍ଡା ଲାଗୁଛି । ନାଡ଼ି ଠିକ୍ ଚାଲୁଛି । ଭାବିଲେ, ମୁଣ୍ଡ ଟିକିଏ ଭାରି ଲାଗୁଥିବ । ଚିନ୍ତିତ ହେବାର କିଛି ନାହିଁ । ଭିତରକୁ ଯାଇ ଗୋଟେ ତେଲ ମୁଣ୍ଡରେ ଘଷିବା ପାଇଁ ପଠେଇ ଦେଲେ ।

ଠାକୁର ସାହେବ ଏ ପରୀକ୍ଷାରେ ସନ୍ତୁଷ୍ଟ ହେଲେ ନାହିଁ । ପ୍ରେମ ଅଛି, ଏ କଥା ସତ । ନ ହେଲେ ଦେଖିବା ପାଇଁ ଦୌଡ଼ି ଆସନ୍ତେ କାହିଁକି ! କିନ୍ତୁ ପ୍ରେମର ପରିମାଣ କେତେ ଜଣା ପଡ଼ିଲା ନାହିଁ । କେବଳ ଶିଷ୍ଟାଚାର ! ଯଦି ଶିଷ୍ଟାଚାର, ମୁଁ ପ୍ରେମ ଭ୍ରମରେ ପଡ଼ିବି କାହିଁକି ! ରାମପ୍ରିୟାଙ୍କ ଅଧରରେ, ନେତ୍ରରେ, କଥାବାର୍ତ୍ତାରେ ସେ ପ୍ରେମର ଗନ୍ଧ ଅନୁଭବ କରୁଥିଲେ । ଏବେ ବଡ଼ ପରୀକ୍ଷା ନେବାକୁ ବସିଲେ । ଭାଦ୍ରବ ମାସ । ଝଡ଼ି ଟାଣ ହେଉଛି । ଦିନ୍ଦୁଆଡେ ମେଲେରିଆ । ଦିନ ସାରା ଖାଲି ମୁଣ୍ଡରେ ଯାଇ ଖେତରେ ବୁଲିଲେ । କେତେଥର ଗାଡ଼ୁଆ ଓ ପୋଖରୀରୁ ପାଣି ପିଇଲେ । ମୁଣ୍ଡ ବୁଡ଼େଇ ଦିହପହରେ ଗାଧୋଇଲେ । ପରଦିନ ପ୍ରାତଃକାଳରେ ଯତକୁ ଯତ ଜର । ଏତେ ଜୋର ହେଲା ଯେ ବାରଟା ବେଳକୁ ମୁଣ୍ଡ ବିନ୍ଧା—ଯତେ ଯେମିତି ଫାଟିଯିବ । ବାଉଳି ଗାଉଳି । ଅସମ୍ଭାଳ । ପ୍ରେମ-ପରୀକ୍ଷା କରୁ କରୁ ଧୈର୍ଯ୍ୟ-ପରୀକ୍ଷା ହେବାକୁ ଲାଗିଲା । କେବେ ପାଟି କରନ୍ତି—ବାବାଙ୍କୁ ଡାକ । କେବେ କହନ୍ତି; ସ୍ତ୍ରୀଙ୍କୁ ଖବର ଦିଅ । ଏତେ ବାଉଳି ଗାଉଳି, ପାଟିତୁଣ୍ଡ ଯେ ରାଜକରବାକର ନାକେଦମ୍ । ରାମପ୍ରିୟା ଆସି ଦେଖିଲେ, ଦେହରେ ଖଇ ଫୁଟୁଛି । ଅଧୈର୍ଯ୍ୟ ହୋଇ ପଡ଼ିଲେ । ମୁଣ୍ଡପାଖରେ ବସି ରହିଲେ । ଦୁଆରେ ଜଣକୁ ବସେଇ ଦେଲେ—ଅପରିଚିତ ବ୍ୟକ୍ତିକୁ ଭିତରକୁ ଛାଡ଼ନାହିଁ ବୋଲି କହିଲେ । ଠାକୁର ସାହେବଙ୍କର ଯଦି ହୋସ୍ ଥାଆନ୍ତା, ତେବେ ସେ ରାମପ୍ରିୟାଙ୍କର ବିକଳ ଦେଖି ଆନନ୍ଦରେ ନାଚି ଉଠୁଥାଆନ୍ତେ । କିନ୍ତୁ ଏଣେ ତ ଜୀବନ ଯିବା ଉପରେ ।

ସପ୍ତାହେ ଯାଏଁ ଜ୍ୱର କମିବାର ନା ଧଇଲାନାହିଁ । ଡାକ୍ତର ପ୍ରତିଦିନ ଆସି ଦେଖି ଯାଉ-ଥାଆନ୍ତି । ରାମପ୍ରିୟା ଖାଇବା ପିଇବା ଭୁଲିଗଲେ । ଦିନରାତି ରୋଗୀ ପାଖରେ । ପାଣି ପିଆଇ ଦିଅନ୍ତି, ତେଲ ଲଗାଇ ଦିଅନ୍ତି, ନିଜେ ପଥ୍ୟ ରାନ୍ଧିଆଣି ଖୁଆନ୍ତି ।

ବର୍ତ୍ତମାନ ଚିନ୍ତା ହେଲା—କିଏ କରାଇବ । ରୋଗୀକୁ ଉଠାଇ ଡାକ୍ତରଖାନାକୁ ନେବା ମଧ୍ୟ ବିପଦ । ସାରା ପରିବାର ଆସି ପହଞ୍ଚିଗଲେ । ହରିହରଙ୍କ ପୁଅର ଅବସ୍ଥା ଦେଖି କାନ୍ଦି ପକେଇଲେ । ଦେହ ଶୁଖି କଣ୍ଟା ହେଲାଣି । ରାଜାସାହେବ ମଧ୍ୟ ଦିନରେ ଦିଥର ମନୋରମାକୁ ଆସି ଦେଖି ଯାଉଛନ୍ତି । ଆସିଲା ଦିନେ ଦିନେ ଏପରି ଯେପରି ଆସନ୍ତି ସତେ ଯେପରି ଶଶୁର ଘର । ରାମପ୍ରିୟା ରୋଗୀ ସେବାରେ ବ୍ୟସ୍ତ । କିଏ ଆସୁଛି, କିଏ ଯାଉଛି—ସେଥିପ୍ରତି ତାଙ୍କର ନଜର ନାହିଁ । କିନ୍ତୁ ରୋହିଣୀକୁ ରାଜା ସାହେବଙ୍କର ଏ. ଜଷ୍ଟୁରତା ଅସହ୍ୟ ଜଣା ପଡ଼ିଲା । ମନ ଓଦେମାନା ମେଣ୍ଟେଇବା ପାଇଁ ସେ ସୁଯୋଗ ଉଣ୍ଟୁଥାଆନ୍ତି । କିନ୍ତୁ ରାଜାସାହେବ ଭୁଲରେ ମଧ୍ୟ ଭିତରକୁ ଯାଆନ୍ତିନାହିଁ । ଶେଷରେ ଦିନେ ସେ ମନୋରମା ଉପରେ ଛିଣ୍ଡି ପଡ଼ିଲେ । କଥା ସେପରି କିଛି ନଥିଲା । ମନୋରମା ଅତ୍ୟନ୍ତ ସରଳ ଭାବରେ କହିଲା—ଏଠି ଆପଣମାନଙ୍କର ଜୀବନ ଶାନ୍ତିରେ କଟୁଥିବ । ସହରରେ ପ୍ରତିଦିନ କିଛି ନା କିଛି ଝଂଝଟ ଲାଗି ରହିଛି । କେତେବେଳେ ନିମନ୍ତ୍ରଣ କର, କେବେ ତାଙ୍କ ନିମନ୍ତ୍ରଣକୁ ଯାଅ, ଆଜି କ୍ଲବରେ ମିଟିଂ ଆଜି ଅମୁକଠାରେ ଅମୁକ ବିଦ୍ୱାନଙ୍କ ଭାଷଣ । ନାକେଦମ ହେଇଯାଉଛି ।

ରୋହିଣୀ ତ ଫୁଲି ଫୁଲି ବସିଥିଲେ । ମୁହଁ ଛୁଆଁଡ଼ି କହିଲେ—ହଁ ଭଉଣୀ କାହିଁକି ନ ହେବ । ଏପରି ପ୍ରାଣୀ ବି ଅଛନ୍ତି ଯେଉଁମାନେ ପଡ଼ୋଶୀ ଉପବାସ କଲେ ଦୟା ସହେନାହିଁ । ତମକୁ ମୋହନଭୋଗ ଖରାପ ଲାଗୁଛି । ଆମକୁ ତ ଛତୁଆ ମଧ୍ୟ ମିଳୁନାହିଁ । କିଏ କ୍ଷୀରସମୁଦ୍ରରେ ବୁଡ଼ୁଛି, କାହା ଭାଗ୍ୟରେ ଗୁଡ଼ଲଭଜା ବି ନାହିଁ ।

ମନୋରମା ସେହିପରି ସରଳ ଭାବରେ କହିଲା—ଯଦି ତୁମକୁ ସେଠାରେ ସବୁ ଆନନ୍ଦ-ଦାୟକ ବୋଲି ଜଣା ପଡ଼ୁଛି, ତେବେ ଚାଲନା । କିଏ ମନା କରୁଛି ! ଏକାକୀ ମଧ୍ୟ ମୋତେ ଭଲ ଲାଗୁନି । ତୁମେ ରହିଲେ ମଜାରେ ଦିନ କଟିବ ।

ରୋହିଣୀ ନାକ ଟେକି କହିଲେ—ମୋଠି ଭଲ ସେ ହାବଭାବ କାହିଁ ଯେ, ଏଣେ ରାଜା ସାହେବଙ୍କୁ ମୁଠାରେ ରଖିବ, ତେଣେ ହାକିମମାନଙ୍କୁ, ମେଳେଇ ମନେଇ ପାରିବ । ଏସବୁ ପଢ଼ାଲେଖା ସହରବାଲିଙ୍କୁ ଜଣା । ଆମେ ମଫସଲିଆଣି, ଏ ଚରିତ କ'ଣ ଜାଣୁ !

ମନୋରମା ସ୍ତବ୍ଧ ରହିଗଲା । ଗୋଟାଏ ଜ୍ୱାଳା ପାଦତଳୁ ବାହାରି ମୁଣ୍ଡବାଟେ ଉପରକୁ ଚାଲିଯାଉଛି—ଏପରି ଜଣାଗଲା । ଗୁଡ଼ାଏ ତୀକ୍ଷ୍ଣଛୁରୀ ଛାତିରେ ଭୁଷିଦେବା ଭଳି ଭୀଷଣ ମର୍ମ-ବେଦନା ଅନୁଭବ କଲା । ଆଖି ଖୋଲା ଥିଲା, କିନ୍ତୁ ସଙ୍କାଶୂନ୍ୟ । କିଛି ଦେଖାଯାଉ ନାହିଁ କି କାନକୁ କିଛି ଶୁଭୁନାହିଁ । କୁଆଡ଼େ ଆସିଛି, କ'ଣ କରୁଛି କିଛି ଜାଣିପାରିଲା କାହିଁ । ଦିନ

କ ଧ୍ୱତ ଜାଣିପାରିଲ ନାହିଁ । ଦଶ ବାର ମିନିଟଯାଏ ଏହି ଅବସ୍ଥାରେ ସ୍ତମ୍ଭିତ ହୋଇ ଠିଆ ହେଲା । ରାଜାସାହେବ ମଟର ପାଖରେ ଠିଆ ହୋଇଛନ୍ତି । ଡେରି ହେବାର ଦେଖି ଖବର ପଠେଇଲେ । ଦାସୀ ଆସି ଖବର ଦେଲା । କିନ୍ତୁ ମନୋରମା ଶୁଣିପାରିଲା ନାହିଁ । ମିନିଟିଏ ବାଦ୍ ଦାସୀ ପୁଣି କହିଲା । ତଥାପି କିଛି ଉତ୍ତର ନାହିଁ । ତୃତୀୟଥର କହିବାକୁ ସାହସ ହେଲାନି । ରାଜାସାହେବ ଦାସୀ ଫେରିବାର ନ ଦେଖି ସ୍ୱୟଂ ଭିତରକୁ ଆସିଲେ । ଦେଖିଲେ —ମନୋରମା ଚୁପ୍‌ଚାପ ମୂର୍ତ୍ତିବତ୍ ଦଣ୍ଡାୟମାନ ହୋଇଛି । ଦୂରରୁ ଡାକିଲେ—ନୋରା, କଣ କରୁଛ ! ଚାଲ, ଡେରି ହେଲାଣି । ସାତଟାରେ ଲେଡ଼ି କାକ୍ ଅସିବାର କଥା, ଏଇଠି ଛଅ ବାଜିଗଲା । ମନୋରମା ତଥାପି କିଛି ଉତ୍ତର ଦେଉନି । ରାଜାସାହେବ ମନୋରମା ନିକଟକୁ ଆସି ହାତକୁ ଧରି କିଛି କହିବାକୁ ଯାଉଥିଲେ, କିନ୍ତୁ ତା ର ଚେହେରା ଦେଖି ଚମକି ପଡ଼ିଲେ । ସର୍ପଦଂଶିତ ବ୍ୟକ୍ତି ଭଳି ନିର୍ନିମେଷ ନୟନରେ କାନ୍ଥକୁ ଚାହିଁ ରହିଛି—ଯେତେ ଯେପରି ଆଖି ବାଟେ ପ୍ରାଣ ଚାଲି ଯାଇଛି ।

ରାଜାସାହେବ ଙ୍କିବ୍ୟସ୍ତ ହୋଇ କହିଲେ—ନୋରା, ଦେହ ଭଲ ଲାଗୁନି କି ?

ଏବେ ଯାଇ ମନୋରମାର ହୋସ୍ ଆସିଲା । ରାଜାସାହେବଙ୍କ କାନ୍ଧରେ ମୁଣ୍ଡ ରଖି ଭେଁ ଭେଁ ହୋଇ କାନ୍ଦି ଉଠିଲା । ରାଜାସାହେବ ଏଇ ପ୍ରଥମଥର ପାଇଁ ମନୋରମା କାନ୍ଦିବାର ଦେଖିଲେ । ବ୍ୟଗ୍ର ହୋଇପଡ଼ି କହିଲେ—କଥା କ'ଣ ମନୋରମା, କିଏ କ'ଣ କହିଲା ? ଏ ଘରେ କାହାର ଏପରି ସାହସ ଅଛି, ତୁମକୁ କହିବ ଏବଂ ଯାହା ଫଳରେ ତୁମେ କାନ୍ଦିବ ? ତା'ର ରକ୍ତ ପିଇଯିବି । କହ, କିଏ କ'ଣ କହିଲା ? ତୁମେ କିଛି କହିଛ ରୋହିଣୀ ? ସଫା ସଫା କହ ।

ରୋହିଣୀ ତ ମନୋରମାର ଅବସ୍ଥା ଦେଖି ନିଜେ ଲଜ୍ଜିତ ହେଉଥିଲେ । ରାଜାସାହେବଙ୍କ ରକ୍ତ ପିଇଯିବା କଥା ଶୁଣି ଉତ୍ତେଜିତ ହୋଇ ପଡ଼ିଲେ । ମନେହେଲା କହିଦେବେ—ହଁ, ମୁଁ କହିଛି ଏବଂ ଯାହା ଯଥାର୍ଥ ତାହାହିଁ କହିଛି । କ'ଣ କରିବା କଥା କର ।—କିନ୍ତୁ ରାଜା ସାହେବଙ୍କର ବିକରାଳ ମୂର୍ତ୍ତି ଦେଖି କହିଲେ—ତାଙ୍କୁ ପଚାରୁନ, ମୋ କଥାରେ ବିଶ୍ୱାସ କ'ଣ ।

ରାଜା—ନା, ମୁଁ ତୁମକୁ ପଚାରୁଛି ।

ରୋହିଣୀ—ତାଙ୍କୁ କ'ଣ ଡର ଲାଗୁଛି ?

ମନୋରମା ରୁଦ୍ଧ କଣ୍ଠରେ କହିଲା—ମୁଁ ଏହିଠାରେ ହିଁ ରହିବି, ଆପଣ ଯାଆନ୍ତୁ । ମୋ ଜିନିଷପତ୍ର ଏଠାକୁ ପଠେଇ ଦେବେ ।

ରାଜାସାହେବ ଅଧୀର ହୋଇ ପଚାରିଲେ—କଥା କ'ଣ କିଛି ଜାଣିଲେ ତ ?

ମନୋରମା—କଥା କିଛି ନାହିଁ । ମୁଁ ଏଇଠି ରହିବି, ଆପଣ ଆସନ୍ତୁ ।

ରାଜା—ମୁଁ ତୁମକୁ ଛାଡ଼ିଦେଇ ଯାଇପାରିବି ନାହିଁ । ଏକାକୀ ମୁଁ ବନେ ହେଲେ ବି ବଞ୍ଚି ପାରିବି ନାହିଁ ।

ମନୋରମା—ମୁଁ ତ ଠିକ୍ କରିସାରିଛି ଏ ଘରୁ ବାହାରକୁ ଯିବି ନାହିଁ ।

ରାଜାସାହେବ ବୁଝିଗଲେ ଯେ ରୋହିଣୀ ନିଷ୍ଠୁର ବ୍ୟଙ୍ଗଶର ପ୍ରୟୋଗ କରିଛି । ରୋହିଣୀ ଆଡ଼କୁ ଲାଲ ଆଖିରେ ଚାହିଁ କହିଲେ—ତୁମରି ହେତୁ ମୁଁ ଏଠାରୁ ଜୀବନ ରକ୍ଷା କରିବା ପାଇଁ ଚାଲିଗଲି, ତଥାପି ତୁମେ ମୋର ପଛରେ ଲାଗିଛ ! ସେଠାରେ ମଧ୍ୟ ଶାନ୍ତିରେ ରହିବାକୁ ଦେଉନ ! ମୋ ଖୁସି, ଯାହାକୁ ଚାହିଁବି କଥା କହିବି, ଯାହାକୁ ଇଚ୍ଛା ନ ହେବ ନ କହିବି । ତୁମେ କାହିଁକି ଏମିତି ଜଳିଯାଉଛ ?

ରୋହିଣୀ—କୁଆଡ଼ି ଜଳି ଯାଉଥିବା ଦିଶିଯାଉଛି ! ତୁମେ ଏଠି ଥିଲାବେଳେ କୋଉ ଫୁଲ ଶେଯରେ ଶୁଆଇ ଦେଉଥିଲ କି ! କାନ୍ଦିବା ଭାଗ୍ୟରେ ଥିଲା, କାନ୍ଦୁଛି ।

ରାଜା—କାହିଁ ଏବେ ତ କାନ୍ଦୁନ ?

ରୋହିଣୀ—ହଁ, କାନ୍ଦିବି । ପ୍ରଥମେ ଅନ୍ୟକୁ କନ୍ଦେଇ ପରେ କାନ୍ଦିବି ।

ରାଜାସାହେବ ଦାନ୍ତ କାମୁଡ଼ି କହିଲେ—ଲଜ୍ଜା ସରମ କ'ଣ ଟିକିଏ ହେଲେ ନାହିଁ ?

ରୋହିଣୀ—ଲଜ୍ଜା ସରମ ତ ଯାହାକୁ ଛାଡ଼ିରେ ଛଡ଼ି ଧରିଚି ତାରି ଅଛି । ଆମ ଅଧମଙ୍କ ପାଖରେ ଲଜ୍ଜା ସରମ କାହିଁ !

ରାଜାସାହେବ ଭୂଇଁରେ ପାଦ ପିଟି କହିଲେ—କହୁ ଦେଉଚି—ତା' ବିଷୟରେ କିଛି କହ ନାହିଁ । ତମେ ଲକ୍ଷେ ଜନ୍ମରେ ତା' ଭଳି ହୋଇ ପାରିବନାହିଁ । ଭୁଲରେ ମଧ୍ୟ ତା' ଚର୍ଚ୍ଚା କର ନାହିଁ ।

ରୋହିଣୀ—ତମେ ତ ଏମିତି ଧମକଉଚ—ସତେ ସେମିତି ମୁଁ ଗୋଟାଏ ଦାସୀ । କାହିଁକି ଚର୍ଚ୍ଚା କରିବିନି ! ସିଏ ସୀତା କି ସାବିତ୍ରୀ ହେଲେ ତମ ପାଇଁ ତାହା ବଡ଼ । ଏଠି କ'ଣ ! ଯାହା ଦେଖିବି, ଶୁଣିବି ତାହା କହିବି । ଭଲ ଲାଗୁ କି ଖରାପ ଲାଗୁ ।

ରାଜା—ଆଚ୍ଛା, ତା' ହେଲେ ନିଜକୁ ରାଣୀ ବୋଲି ଭାବି ନେଇଛ ? ରାଣୀ ହେବା ପାଇଁ ଯେଉଁ ଗୁଣ ଦରକାର, ତାହା ତୁମକୁ ଛୁଇଁନାହିଁ । ତୁମେ ବିଶାଳ ସିଂହ ଠାକୁରଙ୍କୁ ବିବାହ କରିଥିଲ, ରାଜା ବିଶାଳ ସିଂହଙ୍କୁ ନୁହେଁ ।

ରୋହିଣୀ—ଏଠି ରାଣୀ ହେବା ମନସାଧ ଆଦୌ ନାହିଁ । ଯେଉଁ ରାଣୀ ଅନ୍ୟ ସହିତ ଆଖି ଠାରି ମାରି ହାତ ମିଳାଏ, ସେଭଳି ରାଣୀର ମୁହଁ ଚାହିଁବାକୁ ମୁଁ ପାପ ବୋଲି ମନେ କରେ ।

ରାଜା ସାହେବଙ୍କର କ୍ରୋଧ ବଢ଼ି ବଢ଼ି ଚାଲିଥିଲା । କିନ୍ତୁ ମନୋରମା ସାମନାରେ ନିଜର ପୈଶାଚିକ ରୂପ ଦେଖାଇବାକୁ ଲଜ୍ଜିତ ହେଉଥିଲେ । କ୍ରୋଧାନ୍ୱିତ ହୋଇ କହିଲେ—ତୁମେ ଜହର ଖାଇ ମରିଯିବା ଉଚିତ ।

ନେତ୍ରବର୍ଷା ଏପରି ଆଗ୍ନେୟାସ୍ତ୍ର ବେଗରେ ରାଜା ସାହେବଙ୍କୁ ଗ୍ରାସିଲେ—ଯେତେ ଯେପରି ଭସ୍ମ କରିଦେବେ । ହାତ ମୁହଁ ଧୁଆଧୋଇ, ପାଖରେ ଥିବା ପାନଦାନୀ ଓ ପୀକଦାନୀ ପାଣି ଢାଳକୁ ଗୋଇଠା ମାରି ପିଙ୍ଗି ଭିତରକୁ ଚମଚମ ହୋଇ ଚାଲିଗଲେ ।

ମନୋରମା—ଆପଣ ବୃଥାରେ ତାଙ୍କ ସଙ୍ଗେ ଲାଗିଲେ । ମୁଁ ଆପଣଙ୍କ ସଙ୍ଗେ ଯାଉନା ।

ରାଜା—ତା' ହେଲେ ମୁଁ କାଶୀ ଯାତ୍ରା ଦେଉଛି । ତୁମ ବିନା ମୁଁ ସେଠାରେ ରହି ପାରିବନି ।

ମନୋରମା—ଯାହା ଆପଣଙ୍କ ଇଚ୍ଛା ।

ହଠାତ୍ ମୁନ୍‌ସୀ ବଜ୍ରଧର ବାଡ଼ି ଭରା ମାରି ମାରି ପହଞ୍ଚିଲେ । ଅଗଣାରେ ଠିଆ ହୋଇ କହିଲେ—ରାଣୀମାଆ, ଆପଣ କେଉଁଠି ! କୃପା କରି ଆସିବା ହେଉନ୍ତୁ । ନ ହେଲେ ହୁକୁମ ହେଲେ ମୁଁ ଯିବ ।

ରାଜା—କ'ଣ ହେଲା ? ଏଠାକୁ ଆସନ୍ତୁ । ଏତେବେଳେ ଆସିବା କ'ଣ ଏମିତି ଦରକାର ପଡ଼ିଗଲା ? ସମସ୍ତେ ଏଠିକି ପଳେଇ ଆସିଲେ ସେଠାରେ କିଏ ରହିବ ?

ବଜ୍ରଧର କୋଠରୀ ଭିତରକୁ ଆସି ଅତ୍ୟନ୍ତ ଦୀନ ଭାବରେ କହିଲେ—କଣ କରିବି ହଜୁର, ଘର ଧ୍ୱଂସ ହେବାକୁ ଯାଉଛି । ଲଲ୍ଲୁ ବୋହୂକୁ ନେଇ ପ୍ରୟାଗ ଚାଲିଯିବାକୁ ଜିଦ୍ ଧରି ବସିଛି ।

ମନୋରମା—ଘରେ କ'ଣ ଏମିତି ଘଟଣା ଘଟିଥିବ । ନ ହେଲେ ବୋହୂକୁ ନେଇ କାହିଁକି ଯାଆନ୍ତେ ? ବୋହୂ କ'ଣ ବାବୁଙ୍କୁ ବଡ଼େଇଛନ୍ତି ?

ମୁନ୍‌ସୀ—ନାହିଁ ହଜୁର, ବୋହୂ ତ ସାକ୍ଷାତ ଲକ୍ଷ୍ମୀ । ଆଗ ଉଠିବ, ପଛେ ଶୋଇବ ଶାଶୁର ଗୋଡ଼ ନ ଘଷି ଶୋଇବନି । ସବୁ କାମ କରିବ । ଲଲ୍ଲୁର ସବୁ ଏ କାମ । ଯାହା ତା' ମନକୁ ଆସୁଛି, କରୁଛି । ଆଗ୍ରାରେ ଯାଇ ବଡ଼ ହେଲା । କେତେ ବୁଝେଇଲି ମାନିଲାନି । ଭାବିଲି—କିଏ ଜାଣି ଯାହା ଢଙ୍ଗରେ ଯଦି ଦମ୍ପତି ହୋଇ ଗଲାଣି ଅଉ ବିଗିଡ଼ିଲେ କ'ଣ ହେବ । ଏବେ ପୁଣି କ'ଣ ନୂଆ ଢଙ୍ଗ ବାହାରିଛି ।

ମନୋରମା—ନିଶ୍ଚୟ କ'ଣ ହେଇଛି । ଘରେ ତ କେହି ଗାଳି କରିନାହାନ୍ତି ?

ମୁନ୍‌ସୀ—ରାଣୀ ପଳେଇ କହୁଛି ହଜୁର । ଝଗଡ଼ା ଲୋକକୁ ସିନା ଗାଳିଦେବ । ସିଏ ତ ଦେବୀ । ହଁ, ଏତିକି ଯେ: ଆମେ ଦୁହେଁ ସିଏ ଛୁଇଁବା ଜିନିଷ ଖାଉନୁ ।

ମନୋରମା—ଅଚ୍ଛା, ଏମିତି କଥା । ବାବୁଜୀ ଏହା ବରଦାସ୍ତ କରିପାରିବେ ? ମୁଁ ତ ଅହଲ୍ୟା ହୋଇଥିଲେ ମୁହୂର୍ତ୍ତେ ବି ରହନ୍ତିନାହିଁ ।

ମୁନ୍‌ସୀ—ସେଇଥିପାଇଁ ତ ବୋହୂ ଅସିଲାଦିନୁଁ ମୁଁ ସ୍ୱେଟଇ ବାସ କରିବା ପାଇଁ ନାନୀ ରଖି ଦେଇଥିଲି ! କାଲି ତରକାରି ବଘାରିବା ପାଇଁ ନାନୀ ବୋହୂକୁ ଘିଅ ମାଗିଲା । ବୋହୂ ଘିଅ ନେଇ ଚୂଲିମୁଣ୍ଡକୁ ଚାଲିଗଲା । ସବୁ ଜୁଆଁ ହୋଇଗଲା । ଲଳ୍ଲୁ ଖାଇ ସାରିଲା ପରେ ବଜାରରୁ ପୁରି ମଗାଇ ଆମେ ଖାଇଲୁ ।

ମନୋରମା ବିରକ୍ତ ହୋଇ କହିଲା—ତେବେ ମୁଁ କ'ଣ କରିବ ?

ମୁନ୍‌ସୀ—ଆପଣ ଯାହା କରିପାରିବେ, ଅନ୍ୟ କେହି କରିପାରିବେନାହିଁ । କ'ଣ କରିବ, ପୂର୍ବ କାଳରୁ ଯେଉଁ କଥା ମାନି ଆସିଛୁ ଆଜି କିମିତି ଛାଡ଼ିବୁ ।

ମନୋରମା—ନ ଛାଡ଼ନ୍ତୁ, ଆପଣଙ୍କୁ କେହି ବାଧ କରୁନାହାନ୍ତି । ଆପଣଙ୍କୁ ଆପଣଙ୍କ ଧର୍ମ ଭଲ, ଏବଂ ଭଲ ହେବା ଉଚିତ । ଆପଣ ଜାଣନ୍ତି, ସିଏ ଜାଣନ୍ତି ମୋତେ ମଝିରେ କାହିଁକି ପୂରଉଛନ୍ତି ।

ମୁନ୍‌ସୀ—ହଜୁର, ଏତେ ନଷ୍ଟ କରନ୍ତୁନି । ପିଲାଟା ଚାଲିଗଲେ ଆମେ ଦୁଇ ପ୍ରାଣୀ କାନ୍ଦି କାନ୍ଦି ମରିଯିବୁ ।

ମନୋରମା—ସେଥିପାଇଁ ଚିନ୍ତା କାହିଁକି ! ଦିନେ ନା ଦିନେ ସମସ୍ତେ ମରିବେ । ଅମର କିଏ ଅଛି !

ମୁନ୍‌ସୀ—ହଜୁରାଣୀ, ଆପଣ କଟା ଘାଅରେ ଲୁଣ ଦଉଛନ୍ତି । ଆପଣ ଯାଇ ଟିକିଏ ବୁଝେଇ ଦିଅନ୍ତେ, ଉପର ମନରେ ଗାଳି ଦିଅନ୍ତେ । ବୋହୂର ଆଦର ସତ୍କାରରେ ଆମେ ଟିକିଏ ହେଲେ ହେଲା କରୁନୁ । ଖାଲି ତା' ଛୁଆଁ ଜିନିଷ ଖାଉନୁ । ଏଥିରେ ରୁଷିବାର କ'ଣ ଅଛି ! ଆମେ ତ ଅନେକ କଥା ସହିଲୁ । ସିଏ ଏଇ ଗୋଟେ କଥା କଣ ସହିବା ଉଚିତ ନୁହେଁ !

ମନୋରମା—ତେବେ ଯାଇ କହନ୍ତୁନା, ମୋ ପାଖକୁ କାହିଁକି ଦଉଡ଼ୁଛନ୍ତି । ମୋ ମତ ଯଦି ଜାଣିବାକୁ ଚାହୁଁଛନ୍ତି, ତେବେ ଚୁପ୍ ହୋଇଯାଇ ବୋହୂ ହାତରେ ରନ୍ଧେଇ ଖାଆନ୍ତୁ । ମନରୁ ପୋଛି ଦିଅନ୍ତୁ ଯେ, ସେ ନୀଚ ଆଉ ଆପଣ ଉଚ୍ଚ ! ଯେତେବେଳେ ସେ ଆପଣଙ୍କର ବୋହୂ ହେଇ ସାରିଲାଣି ଆପଣ ବୋହୂ ବୋଲି ବୁଝନ୍ତୁ । ଯଦି ଏ ଛୁଆଁ ଅଛୁଆଁ ଝଗଡ଼ା ଥିଲା, ତେବେ ବୋହୂକୁ ଆଣି ନ ଥାନ୍ତେ ।

ମୁନ୍‌ସୀଙ୍କ ବଡ଼ ଆଶାରେ ଆସିଥିଲେ । ଏ ଫଇସଲା ଶୁଣି ମୁଣ୍ଡରେ ହାତ ଦେଇ ବସିଗଲେ । ରାଜାସାହେବ ଏଯାଏଁ ଏ ଦୁଇଜଣଙ୍କ କଥା ଶୁଣୁଥିଲେ । ଏ କଥା ସରିଲା ପରେ ନିଜ କଥା କହିବାକୁ ସମୟ ମିଳିଲା । କହିଲେ—ଆପଣଙ୍କ କଥା ତ ସ୍ଥିର ହୋଇଗଲା, ବର୍ତ୍ତମାନ ମୋ କଥା ଶୁଣନ୍ତୁ । ମୁଁ ଗୁରୁଦେବଙ୍କ ପାଖରେ ବସିଥିଲି । ଏଣେ ନୋହରର ରୋହିଣୀ ସଙ୍ଗେ ଝଗଡ଼ା ହୋଇଗଲା । ରୋହିଣୀର ସ୍ୱଭାବ ତ ଆପଣ ଜାଣନ୍ତି । କ'ଣ କହିଦେଲା କେଜାଣି, ନୋହ କାଶୀ ଯିବାକୁ ନାରାଜ । କେତେ ବୁଝେଇଲିଣି ଶୁଣିବାକୁ ନାହିଁ ।

ମୁନ୍‌ସୀଜୀ ମନୋରମାକୁ ଚାହିଁ କହିଲେ—ତାଙ୍କୁ ମଧ୍ୟ ଲାଲୁ ଶିକ୍ଷା ଦେଇଛୁ । ସିଏ କାହାକୁ ମାନୁନ ଙ୍କ ଇଚ୍ଛେ କାହାକୁ ମାନୁନାହାନ୍ତି ।

ମନୋରମା ମୁରୁକି ହସି କହିଲା—ଗୋଟିଏ ଦେବୀକୁ ଅପମାନ ଦେବାର ଦଣ୍ଡ ଆପଣଙ୍କୁ ମିଳୁଛି ।

ରାଜା—ଆଉ ମୋତେ ?

ମନୋରମା ମୁହଁ ଫେରାଇ କହିଲା—ବହୁ ବିବାହ କରିବା ଦ୍ୱାରା ।

ଏହା କହି ମନୋରମା ସେଠାରୁ ଚାଲିଗଲା । ରାଜାସାହେବ ମୁନ୍‌ସୀଜୀଙ୍କ ସହ ବାହାରକୁ ଆସି ବଗିଚାରେ ପଡ଼ିଥିବା ବେଞ୍ଚରେ ବସିଗଲେ । ମୁନ୍‌ସୀଜୀ ଘରକୁ ଯିବାକୁ ଚାହୁଁଥିଲେ, କିନ୍ତୁ ରାଜାସାହେବଙ୍କୁ ଅନୁମତି ମାଗିବାକୁ ସାହସ ହେଉ ନଥିଲା । କିଛି ସମୟ ପରେ ରାଜା ସାହେବ ଗମ୍ଭୀର ଚିନ୍ତାରେ ବୁଡ଼ି କହିଲେ—ମୁନ୍‌ସୀଜୀ, ଆପଣ ନୋରା କଥା ଶୁଣିଲେ ! କେଡ଼େ ମିଠା ଗାଳିଟାଏ ଦେଲା । ବାସ୍ତବିକ ବହୁତ ବିବାହ କରିବା—ଜୀବନକୁ ବିପଦରେ ପକେଇବା । ଭାବିଥିଲି ଆନନ୍ଦରେ ଦିନଗୁଡ଼ିକ କଟିଯିବ । ନୋରା ମୋତେ ପୁଣି ସେଇ ବିପଦରେ ପକେଇ ଦେଲା । ଏଠାରେ ରହିଲେ ମୁଁ ବେଶିଦିନ ବଞ୍ଚିପାରିବି ନାହିଁ । ରୋହିଣୀ ମୋତେ ଜୀବନରେ ଖାଇଯିବ । ଆଜି ଯେମିତି ଦୃଷ୍ଟିରେ ସେ ମୋତେ ଚାହିଁଲା—ତାର ଅର୍ଥ କଣ ନାହିଁ କଣ ସେ କରିଦେବ ।

ମୁନ୍‌ସୀ—ହଜୁର, ସେ କିଜେ ଏଠାରେ ବେଶିଦିନ ରହିବେନି । ଆପଣ ଦେଖିବେ, ମନ ତାଙ୍କର ଦକ୍‌ଦାର ହୋଇଯିବ ।

ରାଜା—ଭଗବାନ କରନ୍ତୁ ଆପଣଙ୍କ କଥା ସତ ହେଉ । ଆପଣଙ୍କର ଡେରି ହେଉଛି ଆପଣ ଯାଆନ୍ତୁ । ମୋର ଡାକଗୁଡ଼ାକ ସବୁଦିନ ଏଠାକୁ ପଠେଇ ଦଉଥିବେ ।

ଅଧରାତି ହୋଇ ଯାଇଥିଲା । ମନୋରମା ଆଖିରେ ନିଦ ନାହିଁ । ଏ ବିଶାଳ ଭବନରେ ସମସ୍ତ ବିଳାସ ସାମଗ୍ରୀ ଭର୍ତ୍ତି ହୋଇଥିବା ଭବନରେ ଜୀବନଟା ତାକୁ ଶୂନ୍ୟ ଜଣା ପଡୁଛି । ରାତି ଯେତିକ ଅଧିକ ହେଲା ଚକ୍ରଧରଙ୍କୁ ଅଟକେଇବା ପାଇଁ ତା ମନ ସେତିକ ଅଧୀର ହୋଇ ଉଠିଲା । ଭାବିଲା—ଅହଲ୍ୟାକୁ ବିବାହ କଲେ ବୋଲି କ'ଣ ତା'ର ଗୋଟାକପାକ ହୋଇ ଯିବେ ! ମୋର କ'ଣ କିଛି ଅଧିକାର ନାହିଁ ! ନିଜ ଘରେ ନ ରହିବେ ତ ଏଠାରେ ରହନ୍ତୁ । ମୁଁ ଏଠାରେ ସବୁ ବ୍ୟବସ୍ଥା କରିଦେବି । କିନ୍ତୁ ବଡ଼ ନିଷ୍ଠୁର ବ୍ୟକ୍ତି । ଆଜି ମୋ ପାଖରେ ଏତେ ଡେରିଯାଏଁ ବସି ଏମିତ କଥା ଗାଇ ହେଲେ, ଟିକିଏ ହେଲେ ତ ସୂଚନା ଦେଲେନି ମୁଁ ପ୍ରୟାଗ ଯାଉଛି ବୋଲି । ସେ ମଧ୍ୟ ବାଧ୍ୟ ହୋଇ ଯାଉଥିବେ । ସେ ଅହଲ୍ୟା ମଧ୍ୟ ପ୍ରକୃତରେ ଭାଗ୍ୟବତୀ । ତାଙ୍କ ପାଇଁ କେତେ କଷ୍ଟ ସହିବାକୁ ପ୍ରସ୍ତୁତ ହୋଇ ଯାଉଛି । ମୁଁ ମଧ୍ୟ ଭୁଲ କଲି । ମୁନ୍‌ସୀଜୀ ସଙ୍ଗେ ଯିବା ଉଚିତ ଥିଲା । ବାବୁଜୀ ମଧ୍ୟ ମୋତେ ଅପେକ୍ଷା କରୁଥିବେ ।

ପତ୍ର ଦେଖିଲା, ଗୋଟେ ବାଜିଛି । ଚୈତ୍ର ମାସର ଗ୍ରୀଷ୍ମରାତି । ଖଟରୁ ଉଠି ଅଗଣାକୁ ଆସିଲା । ଭାବିଲା—ଏବେ ଯଦି ଯିବି ଲୋକେ କ'ଣ ଭାବିବେ ! ପୁଣି ଫେରଆସି ଖଟରେ ପଡ଼ିଲା । ଚତୁର୍ଥ ପ୍ରହରରେ ତନ୍ଦ୍ରା ମଧ୍ୟ ଅଳ୍ପ ପଡ଼ି ଶୋଇଯାଏ । ବନ୍ଦ ହୋଇଗଲା । କିନ୍ତୁ ସମସ୍ତେ ଉଠିବା ପୂର୍ବରୁ ଉଠିପଡ଼ି ତୁରନ୍ତ ମୋଟର ଆଣିବାକୁ ହୁକୁମ ଦେଲା ।

ଚକ୍ରଧର ଘରରୁ ଉଠି ଯିବା ଯୋଗାଡରେ ବ୍ୟସ୍ତ । ପିତା ମାତାଙ୍କୁ ଛାଡ଼ି ଚାଲିଯାଉଥିବା-ହେତୁ ସେ ଦୁଃଖିତ ହେଉଥିଲେ । କିନ୍ତୁ ଘରେ ଅହଲ୍ୟାର ଯେଉଁ ଅବସ୍ଥା, ତାହା ତାଙ୍କ ପକ୍ଷେ ଅସହ୍ୟ ବୋଧ ହେଉଥିଲା । ଅହଲ୍ୟା କେବେ ଅଭିଯୋଗ କରି ନଥିଲା । ସେ ଚକ୍ରଧରଙ୍କ ସହ ରହି ସବୁ ଦୁଃଖ ସହି ନେବାକୁ ପ୍ରସ୍ତୁତ । ଚକ୍ରଧର କେବଳ ଏଇ ଗୋଟାଏ କାରଣ ହେତୁ ଯାଉ ନ ଥିଲେ । ଅନ୍ୟ ଏକ କାରଣ ମଧ୍ୟ ଥିଲା, ଯାହାକୁ ସେ ଗୁପ୍ତ ରଖିବା ଚାହୁଁଥିଲେ। ଅହଲ୍ୟା ମଧ୍ୟ ଜାଣି ନଥିଲା । ଏହି କାରଣ ଥିଲା ମନୋରମା । ଇଚ୍ଛା ଥିଲେ ମଧ୍ୟ ରୋଗୀ ସ୍ୱାଦିଷ୍ଟ ପଦାର୍ଥ ଛୁଏଁ ନାହିଁ, କାଳେ ରୋଗ ବଢ଼ିଯିବ । ସେହିଭଳି ଚକ୍ରଧର ମନୋରମାଠାରୁ ଦୂରେଇ ରହୁଥିଲେ । ଆଜିକାଲି ମନୋରମା ଦିନରେ ଥରେ ଚକ୍ରଧରଙ୍କ ନିକଟକୁ ନିଶ୍ଚିତ ଭାବରେ ଆସୁଥିଲା ଯଦି ନିଜେ ନ ଆସି ପାରିଲା, ତେବେ ଡକେଇ ନେଉଥିଲା । ତା' ସମ୍ମୁଖକୁ ଯାଇ ଚକ୍ରଧର ନିଜର ସଂଯମ, ବିଚାର ଏବଂ ମାନସିକ ଅବସ୍ଥା ବାଲିଗଦାରେ ପାଦ ପଡ଼ିଲେ ଖସିଗଲା ଭଳି ମନେ କରୁଥିଲେ । ତାର ସୌନ୍ଦର୍ଯ୍ୟ ଅପେକ୍ଷା ଆତ୍ମସମର୍ପଣ ଅଧିକ ଘାତକ ଥିଲା । ତା'ଠାରୁ ଦୂରେଇ ଯିବା କଲ୍ୟାଣକର ମନେ କରୁଥିଲେ । ଗାଡ଼ି ସାତଟାରେ । ସେ ବେଡ଼ିଂ ଓ ପୁସ୍ତକ ବନ୍ଧାବନ୍ଧି କରି ବାହାରକୁ ବାହାର କରୁଥିଲେ । ଅହଲ୍ୟା ଶାଶୁ ଓ ନଣନ୍ଦଙ୍କୁ ଧରି କାନ୍ଦୁଥିଲା । ଏହି ସମୟରେ ମନୋରମାର କାର୍ ଯାଇ ପହଞ୍ଚିଲା । ଚକ୍ରଧର ଲଜ୍ଜିତ ହୋଇ ଭାବିଲେ—ବାପା ଯାଇ ବୋଧେ ଖବର ଦେଇ ପକେଇଛନ୍ତି ଏହି ସନ୍ଦେହ ମଧ୍ୟ ସେ କରୁଥିଲେ । ତେଣୁ ଶୀଘ୍ର ଚାଲିଯିବା ପାଇଁ ତରତର ହେଉଥିଲେ । ସତକୁସତ ମନୋରମା ପହଞ୍ଚିଯିବାରୁ ସେ ଦୃଢ଼ତାର ଅଭିନୟ କଲେ ।

ମନୋରମା କାର୍‌ରୁ ଓହ୍ଲାଇ କହିଲା—ବାବୁଜୀ, ବର୍ତ୍ତମାନ ପାଇଁ ଯିବା ବନ୍ଦ କରନ୍ତୁ । ଏତେ ଉତ୍କଣ୍ଠିତ କାହିଁକି ଯିବାକୁ ! କଥା କ'ଣ ?

ଚକ୍ରଧର ପୁସ୍ତକ ଗଣ୍ଠିଲି ଧରି କହିଲେ—କଥା କିଛି ନାହିଁ । ସେମିତି କିଛି ଥିଲେ ମୁଁ ଆପଣଙ୍କୁ କହି ନଥାନ୍ତି !

ମନୋରମା—ପ୍ରୟାଗରେ କ'ଣ ଭଲ ଚାକିରି ମିଳିଗଲା ?

ଚକ୍ରଧର—ନାଇଁ, ଏବେ ତ ମିଳିନାହିଁ । ତେବେ ଚେଷ୍ଟା କରିବି ।

ମନୋରମା—ଆପଣ କେତେ ଟଙ୍କା ମଧ୍ୟରେ ଚାକିରି ପାଇବେ ବୋଲି ଆଶା କରୁଛନ୍ତି ?

ଚକ୍ରଧର ଦେଖିଲେ, ଆଉ ବାହାନା କଲେ ଚଳିବନାହିଁ । ସାବଧାନତାର ସହ ପଦକ୍ଷେପ ନେବା ଦରକାର । କହିଲେ—କେବଳ ଚାକିରି ଲୁହା ଅଛିର ଅନେକ କାରଣ ଅଛି । ଗାଡ଼ି

ଯାଉଛାରେ ଛାଡ଼ୁଛି । ମୁଁ ମିତ୍ରମାନଙ୍କୁ ସୂଚନା ଦେଇ ଦେଇଛି । ନ ହେଲେ ମୁଁ ଆପଣଙ୍କୁ ସବୁ କଥା କହନ୍ତି ।

ମନୋରମା—ଆପଣ ଏଇ ଗାଡ଼ିରେ ଯାଇ ପାରିବେନାହିଁ । ଯେ ପର୍ଯ୍ୟନ୍ତ ମୁଁ ନ ଜାଣିଛି ଆପଣ କାହିଁକି ଯାଉଛନ୍ତି—ସେଯାଏଁ ମୁଁ ଆପଣଙ୍କୁ ଯିବାକୁ ଦେବିନାହିଁ ।

ଚନ୍ଦ୍ରଧର—ମୁଁ ଏଇ ପାଞ୍ଚ ଦଶଦିନ ମଧ୍ୟରେ ଆସି ଆପଣଙ୍କୁ ସବୁକଥା କହିବି । ମୋର ମିତ୍ରଗଣ ଷ୍ଟେସନକୁ ମୋତେ ନେବା ପାଇଁ ଆସିଥିବେ । ଭାବନ୍ତୁ, ସେମାନଙ୍କୁ କେତେ କଷ୍ଟ ହେବ ।

ମନୋରମା—ମୁଁ କହି ଦେଇଛି—ଆପଣ ଏଇ ଗାଡ଼ିରେ ଯାଇ ପାରିବେନାହିଁ ।

ଚନ୍ଦ୍ରଧର—ଆପଣଙ୍କୁ ସବୁ କଥା ଜଣା ଥିଲେ ଆପଣ ମୋତେ କଦାପି ଅଟକାନ୍ତେ ନାହିଁ । କ୍ୟାନ୍ତ ବାଧ୍ୟ ହୋଇ ନିଜ ଘର ଛାଡ଼େ । ମୋ ପାଇଁ ବର୍ତ୍ତମାନ ଏଠାରେ ରହିବା ଅସମ୍ଭବ ।

ମନୋରମା—ତେବେ କ'ଣ ଏଠି ଅନ୍ୟ ଘର ନାହିଁ ରହିବାକୁ ?

ଚନ୍ଦ୍ରଧର—କିନ୍ତୁ ଗୋଟାଏ ଜାଗାରେ ଅଲଗା ଘର କରି ରହିବା କେଡ଼େ ଅସୁନ୍ଦର କଥା ! ଲୋକେ କ'ଣ ଭାବିବେ !

ମନୋରମା—ଆପଣ ତ ଅନ୍ୟର କଥାକୁ ଖାତିର୍ କରନ୍ତିନାହିଁ ।

ଚନ୍ଦ୍ରଧର—କେବଳ ସିଦ୍ଧାନ୍ତ ବିଷୟରେ ।

ମନୋରମା—ତେବେ କ'ଣ ଅକାରଣରେ ଘରୁ ପଳେଇଯିବା ଆପଣଙ୍କର ସିଦ୍ଧାନ୍ତ ! ଶୁଣନ୍ତୁ, ମୋତେ ଆପଣଙ୍କ ଘରର ଅବସ୍ଥା ଅଳ୍ପ ବହୁତ ମାଲୁମ । ଏମାନେ ନିଜ ସମ୍ପତ୍ତିର ଛାଡ଼ିବାକୁ ନାରାଜ । ଅହଲ୍ୟାକୁ କିଛି ଦିନ ମୋ ସହିତ ରହିବାକୁ ଦେଉ ନାହାନ୍ତି କାହିଁକି ! ମୁଁ ଜଗଦୀଶପୁରରେ ରଖିବାକୁ ସ୍ଥିର କରିଛି । ଆପଣ ସେଇଠି ରହି ପାରନ୍ତି । ମୋର ବହୁ ଦିନରୁ ଇଚ୍ଛା ଥିଲା, ଆପଣ କିଛିଦିନ ମୋର ଅତିଥି ହୋଇ ରହନ୍ତେ । ସେ ତ ମଧ୍ୟ ଆପଣଙ୍କ ଘର । ମୁଁ ନିଜର ଭାଗ୍ୟ ବୋଲି ମନେ କରିବି । ମୁଁ ଆପଣଙ୍କୁ କେବେ କିଛି ମାଗିନାହିଁ; ଆଜି ମୋର ଏତିକି କଥା ମାନି ନିଅନ୍ତୁ । ହେଇ, କିଏ ଲୋକ ଆସୁଛି । ମୁଁ ଘର ଭିତରକୁ ଯାଉଛି । ଏ ବିଛଣାପତ୍ର ଇତ୍ୟାଦି ଖୋଲି ରଖି ଦିଅନ୍ତୁ ।

ଚନ୍ଦ୍ରଧର—ନାହିଁ ମନୋରମା, ମୋତେ ଯିବାକୁ ଦିଅ ।

ମନୋରମା—ଆପଣ ମାନିବେନାହିଁ ?

ଚନ୍ଦ୍ରଧର—ଏ କଥା ମାନିବିନାହିଁ ।

ମନୋରମା—ମୋତେ କାନ୍ଦୁଥିବାର ଦେଖି ମଧ୍ୟ ।

ମନୋରମାର ଅକ୍ଷିରୁ ଅଶ୍ରୁ ନିର୍ଗତ ହେଲା । ଚକ୍ରଧରଙ୍କ ଆଖି ମଧ୍ୟ ସଜଳ ହୋଇଗଲା । କହିଲେ—ମନୋରମା ମୋତେ ଯିବାକୁ ଦିଅ । ମୁଁ କବାବ ଦଉଛି, ଖୁବ୍ ଶୀଘ୍ର ଫେରି ଆସିବି ।

ମନୋରମା—ଭଲ କଥା, ଯାଆନ୍ତୁ । କିନ୍ତୁ ଗୋଟିଏ କଥା ଆପଣଙ୍କୁ ମାନିବାକୁ ପଡ଼ିବ । ମୋର ଏହି ଉପହାର ଗ୍ରହଣ କରିବାକୁ ହେବ ।

ଏହା କହି ସେ ନିଜର ହ୍ୟାଣ୍ଡବ୍ୟାଗ ଚକ୍ରଧରଙ୍କୁ ବଢ଼େଇଲା ।

ଚକ୍ରଧର—ଏଥିରେ କ'ଣ ଅଛି ?

ମନୋରମା—କିଛି ନାହିଁ ।

ଚକ୍ରଧର—ଯଦି ନ ନେବି ?

ମନୋରମା—ତେବେ ମୁଁ ନିଜ ହାତରେ ଆପଣଙ୍କର ଏ ଜିନିଷପତ୍ର ଉଠାଇ ଘରେ ନେଇ ରଖିଦେବି ।

ଚକ୍ରଧର—ଆପଣଙ୍କୁ ଏତେ କଷ୍ଟ କରିବାକୁ ପଡ଼ିବ ନାହିଁ । ମୁଁ ଏଇ ତୁମର ବ୍ୟାଗ୍ ନେଉଛି । ଯାଉଛି । ଏ ବ୍ୟାଗ୍‌ର ଓଜନରୁ ଜାଣି ପାରୁଛି । ମୋତେ ସେଠାରେ ବୋଧେ କୌଣସି ଗୁରୁକୁ ଖୋଜିବାକୁ ପଡ଼ିବ ନାହିଁ ।

ମନୋରମା ଘର ଭିତରକୁ ଗ୍ଲଲିଗଲା । ନିର୍ମଳା ପଚାରିଲେ—ମାନିଲା କି ନାହିଁ ଝିଅ ?

ମନୋରମା—ମାନିଲେ ନାହିଁ । କହି କହି ହାରିଗଲି ।

ମୁନ୍‌ସୀ—ଆଉ କିଏ କହିଲେ ମାନିବ ।

ଘୋଡ଼ାଗାଡ଼ି ଆସିଗଲା । ଚକ୍ରଧର ଓ ଅହଲ୍ୟା ଯାଇ ବସିଲେ । ମନୋରମା ମଧ୍ୟ ନିଜ କାର୍‌ରେ ବସି ଗ୍ଲଲିଲେ । ଘରର ଅନ୍ୟମାନେ ଦୁଆରେ ଠିଆହୋଇ ରହିଲେ ।

( ୨୯ )

ହାବଜନକ କାମ କରିବା ପାଇଁ ଯେ କୌଣସି ସ୍ଥାନରେ କ୍ଷେତ୍ରର ଅଭାବ ନାହିଁ, କେବଳ ନିଃସ୍ୱାର୍ଥ ସେବାଭାବ ରହିଲେ ହେଲା । ଚକ୍ରଧର ପ୍ରୟାଗକୁ ଆସିବାର ଅଳ୍ପଦିନ ମଧ୍ୟରେ ନେତା ହୋଇଗଲେ । ତାଙ୍କଠାରେ ଦେଶପ୍ରତି ଅନୁରାଗ ଥିଲା, କାମ କରିବାରେ ଉତ୍ସାହ ଥିଲା ଏବଂ ସଙ୍ଗଠନ କରିବା ପାଇଁ ଯୋଗ୍ୟତା ଥିଲା । ତାଙ୍କଭଳି ନିଃସ୍ୱାର୍ଥପର ବ୍ୟକ୍ତି ସାଙ୍ଗ

ସହରରେ ଜଣେ ମାତ୍ର ନ ଥିଲା । ଅନ୍ୟମାନେ ନିଜର ଚାଲିରୁ ସମସ୍ତ ସେବାକାର୍ଯ୍ୟ ମାତ୍ରେ ବିନିଯୋଗ କରୁଥିଲେ । ଅର୍ଥ ଉପାର୍ଜନ ସେମାନଙ୍କର ମୁଖ୍ୟ ଉଦ୍ଦେଶ୍ୟ ଥିଲା । ଚକ୍ରଧରଙ୍କର କିନ୍ତୁ ସେବା ବ୍ୟତୀତ ଅନ୍ୟକାମ ନ ଥିଲା । ତାଙ୍କର କଣ ସୁବିଧା ଅସୁବିଧା ଅଛି, ସେକଥା କେହି ପଚାରୁ ନ ଥାନ୍ତି । ଘୋଡ଼ା ଚଢ଼ିବା ପାଇଁ ସମସ୍ତେ ଉତ୍ସୁକ, କିନ୍ତୁ ଘୋଡ଼ାକୁ ଘାସ ଦେବାପାଇଁ ଜଣେ ହେଲେ କେହି ନାହାନ୍ତି । ସହର ଉପକଣ୍ଠରେ ସେ ଗୋଟିଏ ଛୋଟିଆ ଘର ଭଡ଼ାରେ ନେଇ ରହିଲେ ଏବଂ ବଡ଼ କଷ୍ଟରେ ଚଳିଲେ । ଆଗରୁ ତାଙ୍କ ଯାହା ମିଳିଥିଲା, ସବୁ ମୁନ୍‌ସୀ ବକ୍ସଟରଙ୍କୁ ଅର୍ପଣ କରି ଦେଇଥିଲେ । ଏଠାରେ ଟଙ୍କାର ଘୋର ଅଭାବ । ଚକ୍ରଧର ଜାଣିଲେ ବୃହତ୍ ଜନସାଧାରଣଙ୍କ କରିବାକୁହେଲେ କିଛି ସ୍ଥାୟୀ ଉପାର୍ଜନ ହେବା ଉଚିତ । ନିଜ ପାଇଁ ତାଙ୍କର ଚିନ୍ତା ନ ଥିଲା । କିନ୍ତୁ ଅହଲ୍ୟାକୁ ଏ ଦରିଦ୍ରତାର ପରୀକ୍ଷାରେ ପକାଇବାକୁ ସେ ଚାହୁଁ ନ ଥିଲେ । ଅହଲ୍ୟା ଏବେ ବେଶି ଚିନ୍ତିତ ଜଣା ପଡ଼ୁଥିଲା । ସେ କିଛି ଅଭିଯୋଗ ତ କରୁ ନ ଥିଲା । କିନ୍ତୁ ଦେଖିଲେ ଜାଣିହେବ, ସେ ସେ ନିଜ ଅବସ୍ଥାରେ ସନ୍ତୁଷ୍ଟ ନୁହେଁ । ଗହଣାଗାଣ୍ଠି, ଶାଢ଼ୀ ଲୁଗା ପ୍ରତି ତା'ର ଲାଳସା ନ ଥିଲା, ବୁଲାବୁଲି ପ୍ରତି ରୁଚି ନ ଥିଲା । କିନ୍ତୁ ଖାଇବା ପିଇବା କଷ୍ଟ ସହିପାରୁ ନ ଥିଲା । ଚକ୍ରଧରଙ୍କୁ ଏପରି ଅବସ୍ଥାରେ ଦେଖି ସେ ଦୁଃଖିତ ହେଉଥିଲା । ଯଦି ଅନ୍ୟ ସମସ୍ତେ ପ୍ରଥମେ ନିଜ ଘରେ ଦୀପ ଜଳେଇ ପରେ ମନ୍ଦିରରେ ଜାଳଉଛନ୍ତି, ତେବେ ସେ କାହିଁକି ନିଜ ଘରକୁ ଅନ୍ଧାର ରଖି ମନ୍ଦିରରେ ଦୀପ ଜଳେଇବାକୁ ଯିବେ । ଅନ୍ୟମାନଙ୍କର ମଟର, ପିଆନ ଦରକାର ହେଲେ ସ୍ୱାଙ୍କ ପାଇଁ ସାଇକେଲ ତ ଲୋଡ଼ା । ଅନ୍ୟମାନେ ଧନଶାଳୀ ହୁଅନ୍ତୁ, ଆମକୁ ଓ ଖାଇବା ପାଇଁ ପେଟେ ମିଳିବା ଦରକାର । ପ୍ରାଣ ଦେଇ ତ ସେବା କରିହୁଏ ନାହିଁ । ତଥାପି ଏ ଉତ୍ସର୍ଗ ଦ୍ୱାରା ଚକ୍ରଧରଙ୍କ ଯଦି ଯଶର ବଡ଼ ଭାଗ ମିଳନ୍ତା, ତେବେ ସମ୍ଭବତଃ ଅହଲ୍ୟା ସନ୍ତୋଷ ପ୍ରକାଶ କରନ୍ତା । କିନ୍ତୁ ଅନ୍ୟମାନେ ଆଦୌ କଷ୍ଟ ନ କରି ଚକ୍ରଧରଙ୍କ ଠାରୁ ଅଧିକ ଯଶଭାଗୀ ହେବାର ଦେଖି ତା'ର ଧୈର୍ଯ୍ୟଚ୍ୟୁତ ଘଟୁଥିଲା । ଯଦି କେବଳ ଢୋଲ ପିଟି, ନିଜ ଘର ପୂର୍ତ୍ତି କରି ଯଶ ଉପାର୍ଜନ କରିହୋଇ ପାରୁଛି, ତେବେ ଏ ତ୍ୟାଗ ଏବଂ କଷ୍ଟର ଆବଶ୍ୟକତା କ'ଣ । ଜନତା ଧନଶାଳୀଲୋକଙ୍କୁ ଯେପରି ଆଦର ସମ୍ମାନ କରେ, ସେପରି ସେବକଙ୍କୁ ନୁହେଁ । ସେବାଭାବ ସହ ଧନଥିବା ଦରକାର । ଦରିଦ୍ର ସେବକ, କେତେ ନିଷ୍ଠାର ସହ କାମ କରୁ ପଛେ—ଜନତା ପାଇଁ ପ୍ରାଣବଳି ଦେଉ ପଛେ, ଧନୀବ୍ୟକ୍ତି ଅଳ୍ପ ସେବା କରି ଯେତେ ଯଶ ପାଏ, ସେ ସେତେ ପାଏନା । ଚକ୍ରଧରଙ୍କର ଆତ୍ମଦମନ ଅହଲ୍ୟାକୁ ଏଇଥିପାଇଁ ଖରାପ ଲାଗୁଥିଲା । ସେ ମୁହଁରେ କିଛି ନ କହି ମନେମନେ ଦୁଃଖିତ ହେଉଥିଲା ।

ଚକ୍ରଧରଙ୍କୁ ନିଜ ଖର୍ଚ୍ଚ ସମ୍ଭାଳିବା ପାଇଁ କଷ୍ଟ ହୁଅନ୍ତାନ । ତାଙ୍କର ଲେଖା ଖୁବ୍ ଭଲ । ପ୍ରଥମାସରେ ଦୁ'ଗୋଟା ଲେଖା ବିଭିନ୍ନ ଖବରକାଗଜକୁ ନେଇ ସେ ଭଲ ପଇସା

ରୋଜଗାର କରିପାରନ୍ତି । କିନ୍ତୁ ଟଙ୍କା ପଠାଇବା ପାଇଁ ବଜ୍ରଧରଙ୍କର ବାରମ୍ବାର ପତ୍ର ତାଙ୍କୁ ନାକେଦମ୍ କରୁଛି ।

ମନୋରମା ଜଗତ୍‌ସିଂହପୁର ଯାଇ ସଂସାର ବନ୍ଦୀ ହୋଇ ଯାଇଥିଲା । ଯିବା ଆସିବା ବନ୍ଦ । ରାଜ୍ୟମାମଲାରେ ଚୁପ୍ । ଧନ ଦୌଲତ ଘୃଣା । ବୁଢ଼ୀକନ୍ଥା ଗ୍ରସ୍ତ ସନ୍ନ୍ୟାସିନୀ ଭଳି କେବଳ ନିଜ କୋଠରୀ ଭିତରେ ବସିରହୁଛି ।

ମାର୍ଗଶିର ମାସ । ଖୁବ୍ ଶୀତ ଆରମ୍ଭ ହୋଇଯାଇଥିଲା । ଚନ୍ଦ୍ରଧର ଏ ଯାଏଁ ଶୀତଲୁଗା କିଣି ନାହାନ୍ତି । ଅହଲ୍ୟା ପାଖରେ ପୁରୁଣା ଶୀତଲୁଗା ଅଛି । କିନ୍ତୁ ଚନ୍ଦ୍ରଧରଙ୍କର ଯାହା ପୁରୁଣା ଥିଲା ମୁନସୀଙ୍କ ଯୋଗୁଁ ସେ ନେଇଗଲେ । ନିଜେ ବ୍ୟବହାର କଲେ, ନ ହେଲେ କାହାକୁ ଦେଇଦେଲେ । ଗୋଟାଏ କମ୍ବଳ ଦରକାର । କିନ୍ତୁ ପଇସାର ଅଭାବ । ଏହି ଏହି ସମୟରେ ଲକ୍ଷ୍ନୌର ଏକ ମାସିକ ପତ୍ର କାର୍ଯ୍ୟାଳୟରୁ ୨୫ ଟଙ୍କାର ଗୋଟେ ମନିଅର୍ଡର ଆସିଲା, ସେ ଟଙ୍କା ନେଇ ଅହଲ୍ୟା ପାଖରେ ବସି ଶୀତଲୁଗା କିଣିବା ପ୍ରୋଗ୍ରାମ କଲେ ।

ଅହଲ୍ୟା କହିଲା—ମୋର ଦରକାର ନାହିଁ । ତୁମ ପାଇଁ ଗୋଟେ ଭଲ କମ୍ବଳ ୧୫ ଟଙ୍କା ଭିତରେ କିଣ । ବାକି ଟଙ୍କାରେ ଗୋଟେ ଉଲ୍ କୁରୁତା ଏବଂ ହଲେ ଯୋତା କର । ଯୋତା ଫାଟିଗଲାଣି ।

ଚନ୍ଦ୍ରଧର—୧୫ ଟଙ୍କାରେ କମ୍ବଳ କ'ଣ ହବ । ୩।୪ ଟଙ୍କାରେ କମ୍ବଳ ମୋ ପାଇଁ ଯଥେଷ୍ଟ । ବାକି ଟଙ୍କାରେ ତୁମପାଇଁ ଝଣ୍ଟେ ଆଲୁଆନ୍ ଆଣି ଦଉଛି । ସକାଳୁ ଉଠି ତୁମକୁ କାମ କରିବାକୁ ପଡ଼ୁଛି । ସର୍ଦ୍ଦି ହେଲେ ମୁସ୍କିଲ୍ । ମୋର ଭଲ କୁରୁତା ଦରକାର ନାହିଁ । ବରଂ ତୁମପାଇଁ ଦରକାର । ମୁଁ ତ ଟାଣୁଆ ଅଛି, ଥଣ୍ଡା ସହି ପାରିବ ।

ଅହଲ୍ୟା—ଖୁବ୍ ଟାଣୁଆ । ଦର୍ପଣ ପାଖକୁ ଯାଇ ଚେହେରା ଦେଖ । ଏଠାକୁ ଆସିବା ପରେ ଅଧେ ବି ଦେହ ନାହିଁ । ଏଠାକୁ ଆସିଲେ ତୁମ ସ୍ୱାସ୍ଥ୍ୟର ଅବସ୍ଥା ଏପରି ହେବ ଜାଣି-ଥିଲେ । ମୁଁ ଘରୁ ଗୋଡ଼ କାଢ଼ି ନ ଥାନ୍ତି । ମୋତେ କୁଆଁ ବୋଲି କହୁଥିଲେ । କଣ ହୋଇଯାଉଥିଲା ! ମୋର ଆଲୁଆନ-ଫାଲୁଆନ ଦରକାର ନାହିଁ । ତୁମେ ଆଜି କମ୍ବଳ, କୁରୁତା, ଯୋତା ଆଣ । ସତ କହୁଛି, ମତେ ବେଶୀ ହଇରାଣ କରିବ ତ ଆଗ୍ରା ଚାଲିଯିବି ।

ଚନ୍ଦ୍ରଧର—ତୁମର ଏ ଜିଦ୍ ମୋତେ ଭଲ ଲାଗେନା । ମୁଁ କେତେ ବର୍ଷ ହେଲା ଦେଖି ଏଇ ଢଙ୍ଗରେ ଜୀବନ ବିତାଇବା ପାଇଁ ସାଧନା କରିଆସୁଛି । ମୁଁ ଦୁର୍ବଳ ହେଲେ କ'ଣ ହେଲା, ଖରା-ବର୍ଷା-ଶୀତ ଖୁବ୍ ସହିପାରେ । ଏଠାକୁ ନଅ ଦଶମାସ ହେଲା ଆସିଲେଣି, ଦେଖିଛ ମୋତେ ସର୍ଦ୍ଦି, ମୁଣ୍ଡବ୍ୟଥା କେବେ ହେବା ? ତୁମ ପାଇଁ ଏବେ ହେଉ, ଏଣିକି ଯେଉଁ ଟଙ୍କା ଆସିବ, ତହିଁରେ ମୁଁ କରିବ ।

ଏହି ସମୟରେ ଡାକବାଲା ଦୁଆରେ ଡାକିଲା । ଚନ୍ଦ୍ରଧର ଯାଇ ଚିଠି ନେଇ ଆସିଲେ ଏବଂ ପଢ଼ି ପଢ଼ି ଭିତରେ ପଶିଲେ । ଅହଲ୍ୟା ପଚାରିଲେ—ପିତାଙ୍କ ଦେଇଛନ୍ତି କି ? ଦେଖି ସବୁ ଭଲ ଅଛି ତ ?

ଚନ୍ଦ୍ରଧର—ମୁଁ ଆସିବା ପରେ ସେମାନଙ୍କ ଉପରେ କି ଗ୍ରହ ପଡ଼ିଯାଇଛି ଯେ, ଯେତେବେଳେ ଦେଖ ବିପତ୍ତି । ଏବେ ମଙ୍ଗଳା ବେମାର ପଡ଼ିଥିଲା । ପୁଣି ମାଆଙ୍କୁ ବେମାର । ବାବାଙ୍କର କାଣ । ଲେଖିଛନ୍ତି ୫୦ ଟଙ୍କା ପଠା ।

ଅହଲ୍ୟା—ମା' କଣ ବେଶି ବେମାର ପଡ଼ିଛନ୍ତି ?

ଚନ୍ଦ୍ରଧର—ହଁ, ଲେଖିଛନ୍ତି ତ ।

ଅହଲ୍ୟା—ଯାଇ ଦେଖି ଆସ ।

ଚନ୍ଦ୍ରଧର—ତୁମକୁ ଏକୋଲା ଛାଡ଼ି ।

ଅହଲ୍ୟା—ଭୟ କ'ଣ ?

ଚନ୍ଦ୍ରଧର—ଏବେ ଟଙ୍କା କୋଉଠୁ ପଠେଇବ କହିଲ ।

ଅହଲ୍ୟା—ତୁମେ କହୁନ । ବୈରାଗୀ ହୋଇ ତ ବସିଯାଇଛ । ଯଦି ବୈରାଗୀ ହେବାର ଥିଲା ଘରସଂସାର କରୁଥିଲ କାହିଁକି ? ମୋତେ ବିବାହ କରି ତୁମେ ଦୁଃଖରେ ବିପଦକୁ ଡାକି ଆଣିଲ । ଭଲ ଉପାୟ ହଉଛି' ମୋତେ ମା'ଙ୍କ ପାଖକୁ ପଠେଇ ଦିଅ । ବିଚାରୀ ଏକାକି କାନ୍ଦି କାନ୍ଦି ଦିନ କାଟୁଥିବେ । ମୁଁ ଗଲେ ଟିକିଏ ଶାନ୍ତି ପାଇବେ ।

ଚନ୍ଦ୍ରଧର—ତା'ହେଲେ ଦୁହେଁଯାକ ଚାଲ ଯିବା ।

ଅହଲ୍ୟା—ନାଇଁ ବାବା, ତମେ ଗଲେ ମୋତେ କଲବଲ କରିବ । ମୁଁ ସିଧାରେ ଲେଖିଦଉଛି—କାହାକୁ ପଠେଇ ମୋତେ ନେଇଯାଆନ୍ତୁ ।

ଚନ୍ଦ୍ରଧର—ବାବାଙ୍କ ଉପରେ ବଡ଼ କ୍ରୋଧ ଆସୁଛି । ବୃଥାରେ ମୋତେ ହଇରାଣ କରୁଛନ୍ତି । ମା' ବେମାର କଥା ଖାଲି ବାହାନା ।

ଅହଲ୍ୟା—ବାହାନା ହେଉ କି ସତ ହେଉ—ପଚାଶି ଟଙ୍କା ପଠେଇଦିଅ । ଲେଖିଦିଅ, ବାକି ପଠେଉଛି । ତମ ଭାଗ୍ୟରେ କମୁଲା ନାହିଁ ।

ଚନ୍ଦ୍ରଧର—ଲେଖିଦଉଛି—ମୁଁ ବଡ଼ ହଇରାଣରେ ଚଳୁଛି । ଟଙ୍କା କାହିଁ ଯେ ପଠେଇବି ।

ଅହଲ୍ୟା—ବାଃ ! ଏତିକି ଟଙ୍କା ପାଇଁ ଏତେ ମିଛ ! କଣ ଭାବିବେ ! ପଠେଇ ଦିଅ ।

ଚନ୍ଦ୍ରଧର ଟିକିଏ ଚିନ୍ତାକରି କହିଲେ—କାହାଠାରୁ କରଜ ଆଣିଲେ ଭଲ ହେବ ।

ଅହଲ୍ୟା—ନାଇଁ, ମୁଁ ହାତ ଯୋଡ଼ୁଛି କରଜ କରନାହିଁ । ଏହା ଅପେକ୍ଷା ମନା କରିଦେବା ବରଂ ଭଲ ।

ଚନ୍ଦ୍ରଧର—ଏପଟେ କେଉଁଠି ମହାଜନଟାରୁ ଆଣିବା, ଦିଏ ମାଗିବନି । ଆମ ଇଚ୍ଛା ଯେତେବେଳେ ହେବ ସୁଝିବା ।

ଅହଲ୍ୟା—ଏମିତି ମହାଜନ କୋଉଠି ଅଛି ବାବୁ ! କେହି ସାଙ୍ଗ ! ସାଙ୍ଗଠାରୁ ତ ଆଦୌ କରଜ ଆଣିବା କଥା ନୁହେଁ । ତା' ନାଁ କହିଲ, ଶୁଣେ ।

ଚନ୍ଦ୍ରଧର—ରାଣୀ ମନୋରମା । ଆସିଲାବେଳେ ସେ ଗୋଟିଏ ବ୍ୟାଗ୍ ଦେଇଥିଲା । ଗାଡ଼ିରେ ଖୋଲି ଦେଖିଲି ତହିଁରେ ପାଞ୍ଚହଜାର ଟଙ୍କା ଅଛି । ସିଏ ଯେମିତି ଥୁଆ ହୋଇଛି, କିଛି କାଢ଼ିନି ।

ଅହଲ୍ୟା—ତେବେ ଭୁଲରେ ମଧ୍ୟ କାଢ଼ନି ।

ଚନ୍ଦ୍ରଧର—ତେଣେ ବାବା ଜବନ ରଖିବେନି ଯେ ।

ଅହଲ୍ୟା—ଟଙ୍କା ନାହିଁ ବୋଲି ବରଂ ଲେଖିଦିଅ । ରାଣୀଙ୍କର ଧନ ସୁଯୋଗ ଉର୍ଣ୍ଣି ଲେଉଟେଇ ଦେବାକୁ ହେବ । ସେ ତ ଆମକୁ ଭୁଲିଗଲେଣି, ଚିଠି ଖଣ୍ଡେ ବି ଦଉ-ନାହାନ୍ତି ।

ଚନ୍ଦ୍ରଧର—ଘର ଝଗଡ଼ାରୁ ତ ଫୁରୁସତ ମିଳୁ ନ ଥିବ । ରାଜାସାହେବଙ୍କୁ ବିବାହ କରି ନିଜର ଜବନ ମାଟି କରିଦେଲି ।

ଅହଲ୍ୟା—ହୃଦୟଟି ବଡ଼ ଉଦାର ।

ଚନ୍ଦ୍ରଧର—ସେ ଯଦି ସାହାଯ୍ୟ ନ କରୁଥାଆନ୍ତା, ରାଜ୍ୟରେ ଅନେକ ସେବାସଂସ୍ଥା ସମ୍ପୂର୍ଣ୍ଣ ବନ୍ଦ ହୋଇ ସାରନ୍ତାଣି ।

ରାତିସାରା ଅହଲ୍ୟା ଭାବିବାକୁ ଲାଗିଲା—ମୁଁ କିଛି କାମ କରିପାରିବି କି ନାହିଁ । ସିଲେଇ କରିବା, ଶାଢ଼ିରେ ଲତା ପକେଇବା କାମ ତ ମୋ ହାତରେ ଭଲ ହେବ । କିନ୍ତୁ ପଇସା ପାଇଁ ଏ କାମ କରାଯାଉଛି ଜାଣିଲେ ଚନ୍ଦ୍ରଧର ସମ୍ମତ ହେବେ ତ ! ଦିନେ ସେ ଗୋଟିଏ ମାସିକ ପତ୍ରିକାରେ ଜଣେ ଦେବଚନ୍ଦ୍ରଙ୍କର ଲେଖା ବାହାରିଥିବା ଦେଖିଲା । ଉଭୟେ ସାଙ୍ଗ ହୋଇ ଆଗ୍ରାରେ ପଢ଼ୁଥିଲେ । ଅହଲ୍ୟା ସବୁଦା ତା'ଠାରୁ ଭଲ ନମ୍ବର ରଖେ । ସେ ସଙ୍ଗେ ସଙ୍ଗେ କଲମ କାଗଜ ନେଇ ବସିଗଲା ଏବଂ ସେହି ଲେଖା ଉପରେ ଏକ ସମାଲୋଚନା ଲେଖିଗଲା । ସେ ଏତେ ଜୋର୍‌ରେ ଲେଖିଲା ଯେ, ସତେ ଯେପରି ଦୌଡ଼ି ପଳାଉଥିବା ଭାବ ଓ ବିଚାର ସମୂହକୁ ଗୋଟେଇ ପକାଉଛି । ଶବ୍ଦ ଏବଂ ବାକ୍ୟ ଆପେ ଆପେ ଚାଲି ଆସୁଥିଲା । ଘଣ୍ଟେ ମଧ୍ୟରେ ଚାରି ପାଞ୍ଚ ପୃଷ୍ଠା ଲେଖି ପକାଇଲା । ତାକୁ ପଢ଼ି ଦେଖିଲା, ଲେଖାଟା ତା'ସାଙ୍ଗ ଲେଖା ଠାରୁ ଭଲ ଲାଗୁଛି । ସମ୍ପାଦକ ପାଖକୁ ପଠେଇଲେ କାଳେ ସ୍ୱୀକୃତ ନ ପାଇବ ବୋଲି ଦିନ କାଳ ଭାବି ଭାବି ଶେଷରେ ପଠେଇ ଦେଲା । ତୃତୀୟ ଦିନ ଉତ୍ତର ଆସିଲା ଲେଖାଟି ସ୍ୱୀକୃତ ପାଇଛି । ଆଉ ଆଉ ଲେଖାମାନ ପଠାଇବାକୁ ଅନୁରୋଧ ।

ତାପରେ ସତ୍ୟ ଦିନ ଡାକବାଲା ୨୫ ଟଙ୍କାର ମନିଅର୍ଡ଼ର ଦେଲା । ଅହଲ୍ୟା ଆନନ୍ଦରେ ଅଧୀର ହୋଇପଡ଼ିଲା । ତା'ପରେ ସେ ଲେଖାଲେଖି କରିବା ଆରମ୍ଭ କରିଦେଲା ।

ପୌଷମାସ । ଖୁବ୍ ଶୀତ । ଦିନେ ଚନ୍ଦ୍ରଧର ସେବାକାର୍ଯ୍ୟରୁ ରାତି ୧୦ଟାରେ ଘରକୁ ଫେରିଲେ । ଦେଖିଲେ ଅହଲ୍ୟା ଚୁଲିପାଖରେ ବସି ନିଆଁ ପୋଉଁଛି । ସେ ଆଜି ଭାରି ଖୁସି ଥିବାର ଦେଖାଯାଉଛି । ରାତିରେ ସବୁଦିନ ରୁଟି ତରକାରୀ ଖିଆ ହେଉଥିଲା । ଆଜି ପୁରି ଆଳୁଆ ହୋଇଛି । ମଜାରେ ଖିଆପିଆ ହେଲା । ଶୋଇବାବେଳକୁ ଦେଖିଲେ ଗୋଟିଏ ଉତ୍ତମ କମ୍ବଳ ପଡ଼ିଛି । ବିସ୍ମିତ ହୋଇ ପଚାରିଲେ—ଏ କମ୍ବଳ କେଉଁଠୁ ଆସିଲା ?

ଅହଲ୍ୟା—ମୋ ପାଖରେ ଥିଲା । ଭଲ ହୋଇଛି କି ନାହିଁ ?

ଚନ୍ଦ୍ରଧର—ତୁମ ପାଖରେ ତ କମ୍ବଳ ନ ଥିଲା । ଏଣିକି କହିଲ, ୨୦ ଟଙ୍କାରୁ ତ କମ୍ ହୋଇ ନ ଥିବ । ଟଙ୍କା କୁଆଡ଼ୁ ଆସିଲା ?

ଅହଲ୍ୟା—କହୁଛି । ମୁଁ 'ଆର୍ଯ୍ୟଜଗତ'କୁ ଦୁଇଟି ପ୍ରବନ୍ଧ ପଠେଇଥିଲି । ତାର ପୁରସ୍କାର ସ୍ୱରୂପ ମୋଟେ ୩୦ ଟଙ୍କା ମିଳିଥିଲା । ଏବେ ଆଉଗୋଟେ ପ୍ରବନ୍ଧ ବି ଲେଖୁଛି ।

ଚନ୍ଦ୍ରଧର—କାହିଁ ଦେଖି 'ଆର୍ଯ୍ୟଜଗତ' ?

ଚନ୍ଦ୍ରଧରକୁ 'ଆର୍ଯ୍ୟଜଗତ'ର ଦୁଇଟି ଅଙ୍କରେ ପ୍ରକାଶିତ ଦୁଇଟିଯାକ ପ୍ରବନ୍ଧ ମନଯୋଗ ଦେଇ ପଢ଼ି ଆଶ୍ଚର୍ଯ୍ୟ ହେଲେ । ଏପରି ସୁନ୍ଦର ଭାଷା ! ଭାବ ମଧ୍ୟ ଗମ୍ଭୀର । ପଢ଼ିସାରି କହିଲେ—ଖୁବ୍ ଭଲ ହୋଇଛି । ପ୍ରଥମ ଚେଷ୍ଟାରେ ପୁରସ୍କାର ମିଳିଲା । କିନ୍ତୁ ମୋ ପାଇଁ ଏତେ ମୂଲ୍ୟର କମ୍ବଳ କ'ଣ ଦରକାର !

ପରଦିନ ଜଳପାନ ପରେ କୁଆଡ଼େ ନ ଯାଇ ଲେଖାପଢ଼ାରେ ବ୍ୟସ୍ତ ରହିଲେ । ସନ୍ଧ୍ୟାରେ କୁମାରସଭାକୁ ଯିବାକୁ ହେବ । ବକ୍ତୃତା ଦେବାର ଅଛି ବିଷୟ ଅଛି 'ସମାଜ ସେବା' । ସନ୍ଧ୍ୟାରେ ସଭାକୁ ଯାଇ ବିଷୟ ବଦଳିଗଲା । 'ବ୍ରହ୍ମଚର୍ଯ୍ୟର ମହିମା' ସମ୍ବନ୍ଧରେ ଘଣ୍ଟେଯାଏ କହିଗଲେ । ସାତଟା ରାତିକୁ ଫେରି ୧୦ ଯାଏ ଲେଖାରେ ଲାଗିଗଲେ । ଆଜିଠାରୁ ଏହି କାମରେ ଲାଗିଲେ । ବର୍ତ୍ତମାନ ତାଙ୍କର ବିଦ୍ୟାବୁଦ୍ଧି ସେବା ଅଧୀନରେ ନ ଥିଲା, ଥିଲା ସ୍ୱାର୍ଥର ଅଧୀନରେ । ଜୀବନ ସିଦ୍ଧାନ୍ତ ମଧ୍ୟ ବଦଳିଗଲା । ଏ ଘର ସୁବିଧା ହେଲାନି । ଅନ୍ୟ ଏକ ବିଦ୍ୟୁତ୍ ଆଲୋକ ଥିବା ଘର ଭଡ଼ା ନେଲେ । ଅହଲ୍ୟା ନିଜେ ସେତେ ନ ଲେଖିଲେ ବି ଚନ୍ଦ୍ରଧରଙ୍କୁ ସାହାଯ୍ୟ କଲା । ଲେଖାକୁ ସଂଶୋଧନ କରିବା, ପୁଣି ଥରେ ଲେଖିବା ଇତ୍ୟାଦି କାମ କଲା । ଖବରକାଗଜରେ ସମ୍ପାଦକମାନେ ଆଗ୍ରହ କରି ଲେଖା ନିଅନ୍ତି । ଲୋକେ ସେ ଲେଖା ଖୁବ୍ ଆଗ୍ରହରେ ମଧ୍ୟ ପଢ଼ନ୍ତି । ଭାଷା ଅଳଂକୃତ, ଭାବ ସୁନ୍ଦର, ବିଷୟ ମଧ୍ୟ ଉପଯୁକ୍ତ । ତାଙ୍କର ଲେଖା ଅଧିକାଂଶ ଦାର୍ଶନିକ ହୋଇଥାଏ ।

ଚନ୍ଦ୍ରଧରଙ୍କ ନିଜ କୃତି ଉପରେ ଗର୍ବ ନ ଥିଲା । ପ୍ରଚୁର ଧନମିଳୁ ଥିଲା । ୟୁରୋପ, ଆମେରିକା କାଗଜରେ ମଧ୍ୟ ତାଙ୍କ ଲେଖା ବାହାରେ । ସମାଜରେ ତାଙ୍କର ଆଦର କମ୍ ନ ଥିଲା ।

ଅହଲ୍ୟା ଖୁବ ଖୁସି । ସେ ଏବେ ସରଳ ବାଳିକା ନୁହେଁ, ଗୌରବଶୀଳା ଯୁବତୀ । ଗୃହ ପରିଚାଳନାରେ କୁଶଳା । ପତି ସେବାରେ ପ୍ରବଣା । ଉଦାର ଓ ଅତି ଚତୁର । ଭଗବାନ ଗୋଟିଏ ବାଳକ ମଧ୍ୟ ଦେଲେ । ଯାହା ଟିକିଏ କମ୍ ଥିଲା ତାହା ମଧ୍ୟ ପୂର୍ଣ୍ଣ ହୋଇଗଲା ।

ଏହିପରି ପାଞ୍ଚବର୍ଷ କଟିଗଲା ।

ଦିନେ କାଶୀରୁ ରାଜା ବିଶାଳ ସିଂହ ଟେଲିଗ୍ରାମ କଲେ—'ମନୋରମା ଖୁବ୍ ବେମାର, ବଞ୍ଚିବାର ଆଶା ନାହିଁ । ଶୀଘ୍ର ଆସ ।' ଚକ୍ରଧରଙ୍କ ହାତରୁ କାଗଜ ଖସିପଡ଼ିଲା । ଅହଲ୍ୟା ଧରି ପକାଇ ନ ଥିଲେ ସ୍ୱୟଂ ପଡ଼ିଯାଇ ଥାଆନ୍ତେ । ବ୍ୟସ୍ତ ହୋଇପଡ଼ି କହିଲେ—ମୋ ଲୁଗା-ପଟା ଯୋଗାଡ଼ି ଦିଅ । ମୁଁ ଏଇ ଗାଡ଼ିରେ ଯିବି ।

ଅହଲ୍ୟା—କ'ଣ ହୋଇଛି । ଏବେ ତ ବାବା ଲେଖିଥିଲେ ସବୁ କୁଶଳ ବୋଲି ।

ଚକ୍ରଧର—କ'ଣ ହେଇଛି କିଏ କହିବ ! କିନ୍ତୁ ଇଏ ସବୁ ଗ୍ରହ କଳହର ଫଳ ।

ଅହଲ୍ୟା—କହିବ ତ ମୁଁ ଯିବି । ଦେଖିବାକୁ ମନ ହେଉଛି । ତାଙ୍କର ବ୍ୟବହାର ଭୁଲି ହେଉନି ।

ଚକ୍ରଧର—ଡାକ୍ତର ଯୋଗେନ୍ଦ୍ର ବାବୁଙ୍କୁ ସଙ୍ଗରେ ନେଇଯିବା । କିନ୍ତୁ ତୁମେ ମୋ ସହିତ ଫେରି ଆସି ପାରିବ ନାହିଁ । ମନୋରମା ଏତେଶୀଘ୍ର ତୁମକୁ ଛାଡ଼ିବ ନାହିଁ ।

ଅହଲ୍ୟା—ସେ ଆଗ ଭଲ ହୋଇଯାଆନ୍ତୁ । ଫେରିବା କଥା ଦେଖାଯିବ । ତୁମେ ଆଗେ ଯାଇ ଡାକ୍ତର ବାବୁଙ୍କୁ ପ୍ରସ୍ତୁତ କର । ମୁଁ ସବୁ ଯୋଗାଡ଼ୁଛି ।

ଦିନ ଦଶଟାରେ ଡାକ ଗାଡ଼ି ଧରିଲେ । ଅହଲ୍ୟା ଝରକା ପାଖରେ ବସି ମନୋହର ଦୃଶ୍ୟାବଳୀ ଦେଖୁଥିଲା । ଚକ୍ରଧର ବାରମ୍ବାର ଘଡ଼ି ଦେଖୁଥିଲେ—ଆଉ କେତେ ସମୟ ପରେ ଗାଡ଼ି ପହଞ୍ଚିବ । ମୁନ୍ନୁ ଝରକା ବାଟେ ଡେଇଁ ପଡ଼ିବାକୁ ଜୋର ଲଗାଉଥିଲା ।

( ୩୦ )

ରାତି ଆଠଟାରେ ଚକ୍ରଧର ଜଗଦୀଶପୁରରେ ପହଞ୍ଚିଲେ । ରାଜଭବନ ଆଗରେ ହଜାର ହଜାର ଲୋକଙ୍କ ଭିଡ଼ । ଅନ୍ନଦାନ ଦିଆଯାଉଛି । ସିପାହୀମାନେ ଧକ୍କା ପରେ ଧକ୍କା ଦେବାରେ ଲାଗିଛନ୍ତି । କାଙ୍ଗାଳମାନଙ୍କ ଠେଲାଠେଲି କମ୍ ନୁହେଁ । ସେମାନେ ଭାବୁଥିଲେ ବୋଧେ ଆମପାଳି ପଡ଼ିବା ପୂର୍ବରୁ ସବୁ ଶେଷ ହୋଇ ଯାଇଥିବ । ମୁନ୍‌ସୀ ବଜ୍ରଧର ବାରମ୍ବାର ଚିତ୍କାର କରି କହୁଥିଲେ—କାହିଁକି ଜଣକ ଉପରେ ଜଣେ ପଡ଼ୁଛ ! ସମସ୍ତଙ୍କୁ

ମିଳାବ—କେହି ଖାଲି ଚିକେନ । ଶହ ଶହ ବହୁ। ଗୃହ୍ଲାଳ ଗରମ ଅଛି । କିନ୍ତୁ ତାଙ୍କ ଆଶ୍ବାସନାର ଫଳ କିଛି ମିଳୁ ନ ଥିଲା । ଏତେ କାଙ୍ଗାଳ କୋଉଠୁ ଆସିଗଲେ କେଜାଣି !

ବନ୍ଧୁ ମୋଟର ଆସିବା ଦେଖି ମୁନ୍‌ସୀଜୀ ଭିତରକୁ ଅଡେଇ ଦୌଡ଼ିଆସି ଚକ୍ରଧରଙ୍କୁ କୁଣ୍ଢାଇ ଧରିଲେ । ପିତା ଓ ପୁତ୍ର ଉଭୟେ କାନ୍ଦୁଥିଲେ, ପିତାଙ୍କରେ ପୁତ୍ର ସ୍ନେହ, ପୁତ୍ରର ପିତୃଭକ୍ତି । ପାର୍ଶ୍ୱଦର୍ଶୀ ପରେ ସାକ୍ଷାତ । ଅହଲ୍ୟା ପଛ ପଛରେ ଠିଆ ହୋଇଛି । ମୁନ୍ନୁ କୋଳରେ ଥାଇ କୌତୂହଳରେ ଉଭୟେ କାନ୍ଦୁଥିବାର ଦେଖୁଥିଲା । ସେ ଭାବୁଥିଲା ଏ ଉଭୟଙ୍କ ମଧ୍ୟରେ ବୋଧେ ମାଡ଼ପିଟ ହୋଇଗଲା । ବାବୁଜୀଙ୍କୁ ବେଶି ମାଡ଼ ବସିଛି । ତେଣୁ ସେ ବେଶି କାନ୍ଦୁଛନ୍ତି । ସେ ମଧ୍ୟ ରଡ଼ି ଛାଡ଼ିଲା ।

କିନ୍ତୁ କଥାବାର୍ତ୍ତା ହେବା ପୂର୍ବରୁ ରାଜା ସାହେବ ଦୌଡ଼ି ଆସିଲେ । ମୁଖରେ ନୈରାଶ୍ୟ ଏବଂ ଚିନ୍ତାର ରେଖା । ଶରୀର ମଧ୍ୟ ଦୁର୍ବଳ । ଚକ୍ରଧରଙ୍କୁ କୁଣ୍ଢାଇ ପକାଇ ପଚାରିଲେ—ମୋ ଟେଲିଗ୍ରାମ କେବେ ମିଳିଲା ?

ଚକ୍ରଧର—ସକାଳ ଆଠଟାରେ ରାଣୀଜୀଙ୍କର ଅବସ୍ଥା କିପରି ଅଛି ?

ରାଜା—ତାହା ତ ନିଜ ଆଖିରେ ଦେଖିବ, ମୁଁ କ'ଣ କହିବି । ଭଗବାନହିଁ ଭରସା । ଏ ମହାଶୟ ଶଙ୍ଖଧର ନା ?

ଏହା କହି ବାଳକକୁ କୋଳେଇ ନେଲେ ଏବଂ ସ୍ନେହପୂର୍ଣ୍ଣ ନେତ୍ରରେ ଚାହିଁ କହିଲେ—ମୋ ସୁଖଦା ଠିକ୍ ଏହିପରି ଥିଲା । ଯେପରି ଜଣା ପଡୁଛି ଇଏ ତା'ର ଶ୍ରେଷ୍ଠ ଭାଇ । ତା'ର ଛବି ଏବେ ମଧ୍ୟ ମୋ ଆଖି ଆଗରେ ନାଚ ଉଠୁଛି । ମୁହଁ ତ ଠିକ୍ ଏହିପରି ।

ଭିତରକୁ ଯାଇ ଚକ୍ରଧର ମନୋରମାକୁ ଦେଖିଲେ । ମୋଟା ଗଦି ଭିତରେ ସେ ଏପରି ଲାଗି ଯାଇଥିଲା, ଜଣାଯାଉଥିଲା—ସତେ ଯେମିତି ପଲଙ୍କଟା ଖାଲି, କେବଳ ଗୁଦଡ଼ଟେ ପଡ଼ିଛି । ଚକ୍ରଧରଙ୍କ ତୁଣ୍ଡ ବାଣୀ ସେ ଗୁଦଡ଼ ଭିତରୁ ମୁହଁ କାଢ଼ିଲା ।

ରାଜା ସାହେବ ଧୀର କଣ୍ଠରେ କହିଲେ—ନୋରା, ତୁମ ବାବୁଜୀ ଆସିଛନ୍ତି ।

ମନୋରମା ତକିଆରେ ସାହାଯ୍ୟ ନେଇ କହିଲା—ମୋର ବଡ଼ ଭାଗ୍ୟ । ଆସନ୍ତୁ ବାବୁଜୀ । ଆପଣଙ୍କୁ ଦେଖିବାର ସୌଭାଗ୍ୟ ମିଳିଲା । ଟେଲିଗ୍ରାମ ଯାଇ ନ ଥିଲେ, ଆପଣ ବା କାହିଁକି ଆସିଥାନ୍ତେ ?

ଚକ୍ରଧର—ମୋତେ ଆଦୌ ଜଣା ନ ଥିଲା । ଟେଲିଗ୍ରାମ ପାଇ ଜାଣିଲି ।

ରାଜା—ମୁଁ ବାରମ୍ବାର କହିଲି, ସେ ଆସିବା ସମ୍ଭବ ନୁହେଁ । ତାଙ୍କୁ ସମୟ କାହିଁ ! କିନ୍ତୁ ମୋ ମନ କହୁଥାଏ, ଖବର ପାଇଲେ ଆପଣ ରହି ପାରିବେନି । ସହରର ସବୁ ଚିକିତ୍ସକ ଦେଖି ସାରିଲେଣି । ବର୍ତ୍ତମାନ ଈଶ୍ୱର ଭରସା ।

ଚକ୍ରଧର—ମୁଁ ମଧ୍ୟ ଜଣେ ଡାକ୍ତରଙ୍କୁ ଆଣିଛି । ବଡ଼ ଭଲ ଡାକ୍ତର ।

ମନୋରମା—(ବାଳକକୁ ଦେଖି) ଆଚ୍ଛା, ଅହଲ୍ୟା ଦେବୀ ମଧ୍ୟ ଆସିଛନ୍ତି । ଏଠାକୁ ଆସିଲ ଅହଲ୍ୟା, ମୁଁ ଟିକିଏ ଗୋଡ଼ରେ ଧରେ ।

ରାଜା—ଏହାର ଚେହେରା ସୁଖଦା ସହ ଏକଦମ୍ ମିଳିଯାଉଛି ନୋରା । ବିଲ୍‌କୁଲ୍ ତା'ର ଛୋଟ ଭାଇ ଭଳି ମାଲୁମ୍ ହଉଛି ।

'ସୁଖଦା' ନାମ ଶୁଣି ଅହଲ୍ୟା ପ୍ରଥମେ ଚମକି ପଡ଼ିଥିଲା । ଏବେ ସେହି ଶବ୍ଦ ପୁଣି ଶୁଣି ପୁଣି ମଧ୍ୟ ଚମକି ପଡ଼ିଲା । ସେ ଓଢ଼ଣା ସାମାନ୍ୟ ଟେକି ରାଜାସାହେବଙ୍କୁ ଚାହିଁଲା । ପୂର୍ବ ସ୍ମୃତି ସାମାନ୍ୟ ଜାଗ୍ରତ ହେଲା ।

ବାଳକକୁ ସ୍ପର୍ଶ କରିବା ସଙ୍ଗେ ସଙ୍ଗେ ମନୋରମାର ଜର୍ଜର ଶରୀରରେ ସ୍ଫୂର୍ତ୍ତି ସ୍ରୋତ ପ୍ରବାହିତ ହେଲା । ଯେତେ ଯେମିତି କିଏ ଲିଭି ଆସୁଥିବା ପ୍ରଦୀପର ବଳିତାକୁ ତେଜି ଦେଲା । ବାଳକକୁ କୋଳରେ ଧରି ସେ ଅପୂର୍ବ ଆନନ୍ଦ ଅନୁଭବ କଲା । ବାଳକକୁ ଧରି ସେ ଉଠିବସିଲା ଏବଂ କହିଲା—ଅହଲ୍ୟା, ମୁଁ ଆଉ ମୁନ୍ନାକୁ ତୁମକୁ ଦେବିନାହିଁ । ଇଏ ମୋର । ତୁମେ ଏତେଦିନ ଯାଏଁ ମୋତେ ଠକୁଥିଲ, ତାର ଇଏ ସଜା ।

ରାଜାସାହେବ ମନୋରମାକୁ ଧରିପକାଇ କହିଲେ—ଶୋଇପଡ଼—ଶୋଇପଡ଼ । ଦେହରେ ପବନ ବାଜୁଛି । ଏ କ'ଣ କରୁଛ ! ଯାଉଛ କୁଆଡେ ?

କିନ୍ତୁ ମନୋରମା ବାଳକକୁ ଧରି କୋଠରୀ ବାହାରକୁ ଚାଲିଆସିଲା । ରାଜାସାହେବ ତା' ପଛେ ପଛେ ଦୌଡ଼ିଲେ, କାଳେ ପଡ଼ିଯିବ । କୋଠରୀ ଭିତରେ କେବଳ ଚକ୍ରଧର ଓ ଅହଲ୍ୟା ରହିଗଲେ । ଅହଲ୍ୟା ଧୀର କଣ୍ଠରେ କହିଲା—ମୋର ଏବେ ମନେପଡ଼ୁଛି—ମୋ ନାଁ ଥିଲା ସୁଖଦା ।

ଚକ୍ରଧର ବେପରୁଆ ଭାବରେ କହିଲେ—ହଁ, ଇଏ ତ କିଛି ନୂଆ ନାଁ ନୁହେଁ ।

ଅହଲ୍ୟା—ମୋ ବାବାଙ୍କ ଚେହେରା ରାଜା ସାହେବଙ୍କ ଚେହେରା ପରି । ଚକ୍ରଧର ସେହିପରି ବେପରୁଆ ହୋଇ କହିଲେ—ହଁ, ଅନେକ ଲୋକଙ୍କ ଚେହେରା ଏକା ଭଳି ଦେଖାଯାଏ ।

ଅହଲ୍ୟା—ନାହିଁ, ବିଲ୍‌କୁଲ ଏହିପରି ।

ଚକ୍ରଧର—ହୋଇପାରେ ।

ଅହଲ୍ୟା—ତୁମେ ରାଜା ସାହେବଙ୍କୁ ପଚାର, ସେ ତାଙ୍କ ସୁଖଦାକୁ କେବେ ହଜେଇ ଦେଇଥିଲେ ।

ଚକ୍ରଧର—ଆହେ ଚୁପ୍ ହୋଇ ବସ ମ, ତୁମେ ଏତେ ଭାଗ୍ୟଶାଳୀ ନୁହଁ । ରାଜାସାହେବଙ୍କ ସୁଖଦା କୁଆଡ଼ି ହଜିନ, ମରି ଯାଇଥିବ ।

ରାଜାସାହେବ ବାଳକଟିକୁ କୋଳରେ ଧରି ମନୋରମା ସହ କୋଠରୀ ଭିତରକୁ ଆସିଲେ । ଚକ୍ରଧରଙ୍କ କଥାର ଶେଷ ଅଂଶ ତାଙ୍କ କାନରେ ପଡ଼ିଲା । କହିଲେ—ନାହିଁ ବାବୁଜୀ, ମୋର ସୁଖଦା ମରିନାହିଁ, ତ୍ରିବେଣୀ ମେଳାରେ ହଜି ଯାଇଥିଲା । ଆଜକୁ କୋଡ଼ିଏ ବର୍ଷ ହେଲାଣି ମୁଁ ପତ୍ନୀକୁ ସଙ୍ଗରେ ନେଇ ତ୍ରିବେଣୀ ସ୍ନାନକୁ ପ୍ରୟାଗ ଯାଇଥିଲି । ସେଇଠାରେ ସୁଖଦା ହଜି ଯାଇଥିଲା । ତା'ର ବୟସ ପ୍ରାୟ ଚାରି ବର୍ଷ ହୋଇଥିଲା । ବହୁତ ଖୋଜିଲି, କିନ୍ତୁ ଖବର ମିଳିଲା ନାହିଁ । ତା'ର ମାତା ତା' ବିୟୋଗରେ ସ୍ୱର୍ଗବାସ କଲା । ମୁଁ ମଧ୍ୟ କେତେ ଦିନଯାଏଁ ପାଗଳ ଭଳି ହୋଇଗଲି ।

ଅହଲ୍ୟା ସାମନାକୁ ଆସି ନିଃସଙ୍କୋଚ ଭାବରେ କହିଲା—ମୁଁ ତ ତ୍ରିବେଣୀ ସ୍ନାନରେ ହଜି ଯାଇଥିଲି । ଆଗ୍ରାର ସେବା ସମିତି ମୋତେ କେଉଁଠି କାନ୍ଦୁଥିବାର ଦେଖିଲେ । ମୋତେ ଆଗ୍ରା ନେଇଗଲେ । ବାବୁ ଯଶୋଦାନନ୍ଦନ ମୋତେ ଲାଳନପାଳନ କଲେ ।

ରାଜା—ବର୍ତ୍ତମାନ ତମର ବୟସ କେତେ ହେବ ?

ଅହଲ୍ୟା—ଚବିଶି ଚାଲିଛି ।

ରାଜା—ଘର କଥା କିଛି ମନେ ଅଛି ? ତୁମ ଦୁଆରେ କେଉଁ ଗଛ ଥିଲା ?

ଅହଲ୍ୟା—ବୋଧେ ଗୋଟେ ବରଗଛ ଥିଲା ।

ରାଜା—ଆଚ୍ଛା, ତୁମର ମାତା କିପରି ଥିଲା ? କିଛି ମନେ ପଡ଼ୁଛି ?

ଅହଲ୍ୟା—ହଁ, ମନେ ପଡ଼ୁଛି, ରଙ୍ଗ ଥିଲା ଶ୍ୟାମଳ, ପତଳା, କିନ୍ତୁ ଲମ୍ବା ଲୋକ ସବୁବେଳେ ପାନ ଖାଏ ।

ବିଶାଳସିଂହ ଏ ସବୁ ଶୁଣି କ୍ରମେ ଉତ୍କଣ୍ଠିତ ହୋଇ ଉଠୁଥିଲେ ।

ରାଜା—ଘରେ ସବୁ କିଏ କିଏ ଥିଲେ ?

ଅହଲ୍ୟା—ବୁଢ଼ୀ ମା କାହାଣୀ ଶୁଣାଉଥିଲା । ଜଣେ ବୁଢ଼ା ଚାକର ଥିଲା । ଦୁଆରେ ଗୋଟେ ବଡ଼ ଘୋଡ଼ା ବନ୍ଧା ହୋଇ ରହୁଥିଲା । ଦୁଆରେ ଗୋଟେ କୂଅ ଥିଲା । ରାଜା-ସାହେବଙ୍କର ସନ୍ଦେହ ଦୂର ହୋଇଗଲା । ସେ ଆଉ ନିଜ ଆୟତ୍ତରେ ରହି ପାରିଲେ ନାହିଁ ।

ରାଜା—ବାସ୍ ବାସ୍ । ମା, ଆ ମା ମୋ ପାଖକୁ । ଆରେ ! ତୁ ତ ମୋ ସୁଖଦା । ମୁଁ ବାଳକକୁ ଦେଖି ଅନୁମାନ କରି ନେଇଥିଲି । ଆରେ, ମୋ ସୁଖଦା ମିଳିଗଲା ! ମୋ ସୁଖଦା ମିଳିଗଲା !

ଚକ୍ରଧର—ପାଟିତୁଣ୍ଡ କରନ୍ତୁ ନାହିଁ । ସମ୍ଭବତଃ ଆପଣ ଭ୍ରମରେ ପଡ଼ିଛନ୍ତି ।

ରାଜା—ମୋଟେ ନୁହେଁ । ସାମାନ୍ୟ ଟିକିଏ ଭ୍ରମ ନାହିଁ । ମୋ ସୁଖଦା ଏଇ । ସେ ଯେତେସବୁ କହିଗଲା, ସବୁ ଠିକ୍ । ମୋର ତିଳେ ମାତ୍ର ସନ୍ଦେହ ନାହିଁ । ଭଗବାନଙ୍କର କି

ଗଲା ! ଆସ ବାପା ଚନ୍ଦ୍ରଧର, ତୁମକୁ ମୁଁ ଆଲିଙ୍ଗନ କରେ । ଏ ଯାଏଁ ତୁମେ ମୋର ମିତ୍ର ଥିଲ, ଏବେ ମୋର ପୁତ୍ର । ନୋର୍‌, ଭଗବାନଙ୍କର ଲୀଳା ଦେଖ । ହେ ଭଗବାନ୍ !

ଚନ୍ଦ୍ରଧର ବିନମ୍ରଭାବରେ ଦଣ୍ଡାୟମାନ ହୋଇଥିଲେ । ମନୋରମା ଆନନ୍ଦରେ ଅଧୀର । ଅନଲ୍ୟ ଏ ଯାଏଁ କାନ୍ଦୁଛନ୍ତି । ହେମା ତ୍ରିବେଣୀ ଆସି ଦ୍ୱାରରେ ଦେଖା ଦେଲେ । ରାଜା ସାହେବ ବାହାରକୁ ଆସି କହିଲେ—କୁଆଡ଼େ ଯାଉଛ ତ୍ରିବେଣୀ ! ମୋ ସୁଖଦା ମିଳିଗଲା । ଆସ ଦେଖ, ଏଇ ତା'ର ପୁଅ ।

ତ୍ରିବେଣୀ ହେଉଁସାରେ ଠିଆ ହୋଇଗଲେ ଏବଂ ସନ୍ଦେହାତ୍ମକଭାବରେ କହିଲେ କ'ଣ ସ୍ୱର୍ଗରୁ ଫେରି ଆସିଲା । ଏହା କହି ସେ ମୁହଁ ମୋଡ଼ି ଚାଲିଗଲେ ।

ରାଜାସାହେବ ଦେଓ୍ୱାନଖାନା ଆଡ଼େ ଚାଲିଲେ । ବାହାରେ କାଙ୍ଗାଳଙ୍କର ଭିଡ଼ । ଭିତରେ କେତେ କର୍ମଚାରୀ ବସିଥିଲେ । ଉଚ୍ଚ ସ୍ୱରରେ ରାଜା କହିଲେ—ବନ୍ଧୁଗଣ, ତୁମ୍ଭେମାନେ ଜାଣିଥିବ, କୋଡ଼ିଏ ବର୍ଷ ପୂର୍ବେ ତ୍ରିବେଣୀ ସ୍ନାନରେ ମୋର କନ୍ୟା ସୁଖଦା ହଜି ଯାଇଥିଲା । ସେହି ସୁଖଦା ଆଜି ମୋତେ ମିଳିଯାଇଛି । ଏଇ ବାଳକ ତା'ର ପୁତ୍ର । ଆଜିଠାରୁ ତୁମ୍ଭେମାନେ ଏହାକୁ ନିଜର ଯୁବରାଜ ବୋଲି ଭାବିବ । ମୋ ପରେ ଏଇ ହେବ ରାଜ୍ୟର ରାଜା । ସୈନ୍ୟମାନଙ୍କୁ ଖବର ଦିଅ, ସେମାନେ ଯୁବରାଜଙ୍କୁ ସଲାମ ଦେବେ । ନହବତ ବାଜୁ । ଆଜିଠାରୁ ସାତ ଦିନରେ ରାଜକୁମାରର ଅଭିଷେକ ହେବ । ଏବଠାରୁ ଆୟୋଜନ କର ।

ଏହି ହୁକୁମ ଦେଇ ରାଜାସାହେବ ଠାକୁରଙ୍କ ପାଖରେ ପହଞ୍ଚିଲେ । ପୂଜା ପାଇଁ ଭୋଗ ପ୍ରସ୍ତୁତ ଚାଲିଥିଲା । ସାଧୁସନ୍ଥମଣ୍ଡଳୀ ଜମା ହୋଇଥିଲେ । ଜଣେ ପଣ୍ଡିତ ପୁରାଣ ପାଠ କରୁଥିଲେ । କିନ୍ତୁ ଶ୍ରୋତାମାନଙ୍କର କାନ କେତେବେଳେ ଘଣ୍ଟି ବାଜିବ ସେ ଆଡ଼କୁ ଥିଲା । ସହସା ରାଜା ସାହେବ ଆସି ଠାକୁରଙ୍କ ସମ୍ମୁଖରେ ବାଳକକୁ ବସେଇ ଦେଲେ । ନିଜେ ସାଷ୍ଟାଙ୍ଗ ପ୍ରଣିପାତ କଲେ । ଏତେ ଭକ୍ତିରେ ସେ ଆଜିଯାଏଁ ଠାକୁରଙ୍କୁ ଦଣ୍ଡବତ କରି ନ ଥିଲେ । ଆଜି ସମସ୍ତ ସଂସାର ଆନନ୍ଦରେ ନାଚୁଥିଲା ଭଳି ତାଙ୍କୁ ଜଣାଗଲା । ଆଜି ତାଙ୍କର ଚିର ସଞ୍ଚିତ କାମନା ପୂର୍ଣ୍ଣ ହୋଇଛି । ଏପରି ଭାବରେ ପୂର୍ଣ୍ଣ ହୋଇଛି, ଯାହା ସେ କେବେ ଆଶା କରି ନ ଥିଲେ । ଏହା ଭଗବାନଙ୍କର ଦୟା ନୁହେଁ ତ କ'ଣ ! ପୁତ୍ର ରତ୍ନ ସମ୍ମୁଖରେ ସଂସାରରେ ଆଉ ଅଧିକ ସମ୍ପଦ କ'ଣ ଅଛି ! ପୁତ୍ରହିଁ ଆକାଂକ୍ଷାର ସ୍ରୋତ, ଚିନ୍ତାର ଆଗାର, ପ୍ରେମର ବନ୍ଧନ ଏବଂ ଜୀବନର ସର୍ବସ୍ୱ । ସେହି ପୁତ୍ର ଆଜି ବିଶାଳସିଂହଙ୍କୁ ମିଳିଗଲା । ବର୍ତ୍ତମାନ ସଂସାରଟା ତାଙ୍କ ପାଇଁ ସ୍ୱର୍ଗ ।

ପୂଜାରୀ କହିଲେ—ଭଗବାନ ରାଜକୁମାରଙ୍କୁ ଚିରଞ୍ଜିବୀ କରନ୍ତୁ ।

ରାଜା ନିଜ ହୀରାମୁଦି ଅଙ୍ଗୁଠିରୁ କାଢ଼ି ପୂଜାରୀଙ୍କୁ ଦେଇଦେଲେ । ଜଣେ ବାବାଜି ଏହିଭଳି ଆଶୀର୍ବାଦ ଦେଇ ସେହି ବଗିଚା ଜମି ପାଇଗଲେ । ଠାକୁର ମନ୍ଦିରରୁ

ଘରକୁ ଫେରି ଦେଖିଲେ ଚନ୍ଦ୍ରଧର ଭୋଜନ କରୁଛନ୍ତି ଏବଂ ମନୋରମା ପରିବେଷଣ କରୁଛି । ମନୋରମା ମୁଖମଣ୍ଡଳରୁ ହାର୍ଦ୍ଦିକ ଉଲ୍ଲାସର କାନ୍ତି ନିର୍ଗତ ହେଉଥିଲା । ଏଇ ଦଶ ମିନିଟ୍ ପୂର୍ବରୁ ମୃତ୍ୟୁଶଯ୍ୟାରେ ପଡ଼ିଥିବା ମନୋରମା ଏଇ—ଏବେ ଦେଖିଲେ ଏହା କେହି ଅନୁମାନ କରି ପାରିବେ ନାହିଁ ।

( ୩୧ )

ଯୌବନ ସମୟ ଜୀବନର ସ୍ୱର୍ଗ । ବାଲ୍ୟକାଳରେ ଆମେ କଳ୍ପନାରେ ଭାସୁ, ଯୌବନ କାଳରେ ସେହି କଳ୍ପନାକୁ ପ୍ରତ୍ୟକ୍ଷ କରୁ ଏବଂ ବୃଦ୍ଧାବସ୍ଥାରେ ସେହି ସ୍ୱରୂପର ସ୍ୱପ୍ନ ଦେଖୁ । କଳ୍ପନା ପଙ୍ଗୁ, ସ୍ୱପ୍ନ ମିଥ୍ୟା । ଜୀବନର ସାର କେବଳ ପ୍ରତ୍ୟକ୍ଷ । ଆମର ହାର୍ଦ୍ଦିକ ଏବଂ ମାନସିକ ଶକ୍ତିର ବିକାଶ ହେଉଛି ଯୌବନ । ଯଦି ସଂସାରର ସମ୍ପତ୍ତି ଗୋଟିଏ ପାଖରେ ଏବଂ ଯୌବନକୁ ଅନ୍ୟ ପାଖରେ ରଖି ଦିଆଯାଏ, କେହି ସେ ବିପୁଳ ଧନରାଶିକୁ ଗ୍ରହିବା ପାଇଁ ଇଚ୍ଛା କରେ ନାହିଁ । ବାସ୍ତବିକ ଯୌବନହିଁ ଜୀବନର ସ୍ୱର୍ଗ । ରାଣୀ ଦେବପ୍ରିୟାଙ୍କ ଭଳି ସୌଭାଗ୍ୟବତୀ ଆଉ କିଏ ଅଛି ! ରାଣୀ ଦେବପ୍ରିୟାଙ୍କର ଯୌବନ-ଦ୍ୱାର ପୁଣି ଖୋଲି ଯାଇଛି ।

ସନ୍ଧ୍ୟା ସମୟ । ଦେବପ୍ରିୟା ପର୍ବତ ଗୁମ୍ଫାର ଏକ ଶିଳା ଉପରେ ଚେତନା ଶୂନ୍ୟ ଅବସ୍ଥାରେ ପଡ଼ିଛନ୍ତି । ମହେନ୍ଦ୍ର ଆଶାପୂର୍ଣ୍ଣ ନେତ୍ରରେ ତାଙ୍କ ମୁଖମଣ୍ଡଳକୁ ଅନାଇଁ ରହିଛନ୍ତି । ତାଙ୍କ ଶରୀର ଅତ୍ୟନ୍ତ ଦୁର୍ବଳ ହୋଇଯାଇଛି । ମୁହଁ ଶେତା ଏବଂ ଚକ୍ଷୁ କୋଟରଗତ । ଯକ୍ଷ୍ମାରୋଗୀ ଭଳି ଦେଖାଯାଉଛନ୍ତି । ଶ୍ୱାସ ପ୍ରଶ୍ୱାସ ନେବାରେ କଷ୍ଟ ହେଉଛି । ତାଙ୍କ ଚକ୍ଷୁରେ ଆଶାର ପଲକ ଦେଖି ଜୀବନର ସତ୍ତା ଅଛି ବୋଲି କେହି ବିଶ୍ୱାସ କରିବ । ଆଜି ତାଙ୍କ ତପସ୍ୟାର ଅନ୍ତିମ ଦିବସ । ଆଜି ଦେବପ୍ରିୟାଙ୍କର ପୁନର୍ଜନ୍ମ ହେବ । ଶୁଷ୍କ ବୃକ୍ଷ ପଲ୍ଲବିତ ହେବ । ଆଜି ପୁଣି ତାଙ୍କ ଯୌବନ ସରୋବରରେ ତରଙ୍ଗ ଉଠିବ । ଆକାଶରେ କୁସୁମ ଫୁଟିବ । ସେ ବାରମ୍ବାର ତାଙ୍କ ଚେତନାଶୂନ୍ୟ ହୃଦୟରେ ହାତ ରଖି ରକ୍ତ ସଞ୍ଚାର ତଥା ଜୀବନ ଥିବାର କୌଣସି ଲକ୍ଷଣ ନ ଦେଖି ବ୍ୟଗ୍ର ହୋଇ ଉଠୁଛନ୍ତି ।

ହଠାତ୍ ମହେନ୍ଦ୍ର ଚମକି ପଡ଼ି ଠିଆ ହୋଇଗଲେ । ଆତ୍ମୋଲ୍ଲାସରେ ମୁଖମଣ୍ଡଳ ଉଜ୍ଜ୍ୱଳ ହୋଇ ଉଠିଲା । ଦେବପ୍ରିୟାଙ୍କର ହୃଦୟତନ୍ତ୍ରୀରେ ଜୀବନସଙ୍ଗୀତର କୋମଳ କମ୍ପନ ଦେଖା ଦେଇଛି । ବୀଣାର ଅସ୍ପୁଟ ସ୍ୱରରୁ ଧୀରେ ଧୀରେ ଯେପରି ଗୀତର ସ୍ୱରୂପ ପ୍ରକଟିତ ହୁଏ, ସେହିପରି ଦେବପ୍ରିୟାଙ୍କର ଶ୍ରୀହୀନ, ସଙ୍କାଶୂନ, ପ୍ରାଣହୀନ ମୁଖମଣ୍ଡଳରେ ଜୀବନର ସ୍ୱରୂପ ଅଙ୍କିତ ହେବାକୁ ଲାଗିଲା । ମୁହୂର୍ତ୍ତିକ ମଧ୍ୟରେ ତାଙ୍କର ଅଧରରେ ରକ୍ତିମା ଖେଳି ହୋଇଗଲା,

ଆଖି ଖୋଲିଗଲା, ମୁଖରେ ଶ୍ରୀ ବିକଶିତ ହୋଇଗଲା । ସେ ଅଳସ ଭଙ୍ଗି ବର୍ଜିତ ଚକ୍ଷୁରେ ଏଣେ ତେଣେ ଗୃହିଁ ଶିଳା ଉପରେ ଉଠି ବସିଲେ । ତାଙ୍କର ମୁଖଚନ୍ଦ୍ର ଗୋଲକଲାରେ ଅଲୋକିତ ହୋଇଉଠିଲା । ଇଏ ସେଇ ଦେବପ୍ରିୟା, ଯିଏ ଗୃକଣ ବର୍ଷ ପୂର୍ବେ ଅଶା ଓ ଭୟ କମ୍ପିତ ହୃଦୟରେ ପତିମ୍ବହକୁ ଆସିଥିଲେ । ସେହି ସମୟର ଯୌବନ, ସେହି ସମୟର ମୁଗ୍ଧ ନେତ୍ର, ସେହି ସୁଧାମୟ ହସ, ସେହି ସମୟର ସୁକୋମଳ ଗାତ୍ର ! ସେ ନିଜର ନୂତନ ଜୀବନ ଅନୁଭବ କରୁଥିଲେ । କାୟାକଳ୍ପ ହୋଇ ଯାଇଥିଲେ ମଧ୍ୟ ପୂର୍ବ ଜୀବନର ସମସ୍ତ କଥା ମନେ ପଡ଼ୁଥିଲା । ବୈଧବ୍ୟ କାଳର ବିଳାସିତା ଭୀଷଣ ରୂପ ଧାରଣ କରି ତାଙ୍କ ସମ୍ମୁଖରେ ଠିଆ ହୋଇଥିଲା । ଲଜ୍ଜା ଏବଂ ଗ୍ଲାନିରେ ସେ କିଛି କହିପାରୁ ନ ଥିଲେ । ନିଜ ପତିଙ୍କର ଏହି ପ୍ରେମମୟ ତପସ୍ୟା ସମ୍ମୁଖରେ ନିଜର ବିଳାସମୟ ଜୀବନ ଅତ୍ୟନ୍ତ ଘୃଣିତ, ଲଜ୍ଜାପ୍ରଦ ମାଲୁମ ହେଉଥିଲା ।

ମହେନ୍ଦ୍ର ହସିହସି କହିଲେ—ପ୍ରିୟେ, ଆଜି ମୋର ଜୀବନ ସଫଳ ହୋଇଗଲା । ଏବେ କିଛିକ୍ଷଣ ପୂର୍ବରୁ ତୁମର ଦଶା ଦେଖି ମୁଁ ନିଜ ଦୁଃସାହସ ହେତୁ ପଶ୍ଚାତ୍ତାପ କରୁଥିଲି ।

ଦେବପ୍ରିୟା ମହେନ୍ଦ୍ରଙ୍କୁ ପ୍ରେମମୁଗ୍ଧ ନେତ୍ରରେ ଗୃହିଁ କହିଲେ—ପ୍ରାଣନାଥ, ତୁମେ ମୋର ଯେଉଁ ଉପକାର କଲ, ତା'ର ପ୍ରତିଦାନ ପାଇଁ ମୋ ପାଖରେ କିଛି ନାହିଁ ।

ଦେବପ୍ରିୟାଙ୍କର ମନ ହେଉଥିଲା—ସ୍ୱାମୀଙ୍କ ଚରଣରେ ମୁଣ୍ଡରଖି କହିବେ—ତୁମେ ମୋତେ ଉଦ୍ଧାର କଲ । ମୋତେ ଏପରି ଏକ ଅଲଭ୍ୟ ବସ୍ତୁ ପ୍ରଦାନ କଲ, ଯାହା ଆଜିଯାଏଁ କେହି ପାଇ ନାହାନ୍ତି, ଯାହା ସର୍ବଦା ମାନବ କଳ୍ପନାର ସ୍ୱର୍ଣ୍ଣିମ ସ୍ୱପ୍ନ । କିନ୍ତୁ ଲଜ୍ଜାରେ ତାଙ୍କର ପାଟି ଖୋଲି ହେଲାନି ।

ମହେନ୍ଦ୍ର—ସତ କହିଲ, ତୁମେ କେବେ ବିଶ୍ୱାସ କରିଥିଲ, ତୁମର କାୟାକଳ୍ପ ହୋଇପାରିବ ବୋଲି !

ଦେବପ୍ରିୟା—ପ୍ରିୟତମ, ଏକଥା କାହିଁକି ପଚାରୁଛନ୍ତି ! ମୋର ତୁମ ଉପରେ ବିଶ୍ୱାସ ନ ଥିଲେ ଆସିଥାନ୍ତି କାହିଁକି !

ନିଜର ମୁଖଛବି ଦେଖିବା ପାଇଁ ଦେବପ୍ରିୟାଙ୍କର ପ୍ରବଳ ଇଚ୍ଛା ହେଉଥିଲା । କିନ୍ତୁ ଦର୍ପଣ ଏଠି କାହିଁ !

ମହେନ୍ଦ୍ର—ତୁମେ ଜାଣ ଏ କ୍ରିୟା କେତେଦିନ ଲାଗିଲା ?

ଦେବପ୍ରିୟା—ମୁଁ କ'ଣ ଜାଣେ !

ମହେନ୍ଦ୍ର—ପୂରା ତିନିବର୍ଷ ।

ଦେବପ୍ରିୟା—ତିନିବର୍ଷ ! ତିନିବର୍ଷ ହେଲା ତୁମେ ମୋ ପାଇଁ ତପସ୍ୟା କରୁଛ ?

ମହେନ୍ଦ୍ର—ତିନି କଣ, ତିରିଶ ବର୍ଷ କରିବାକୁ ପଡ଼ିଥିଲେ ବି ମୁଁ ପଛେଇ ନ ଥା'ନ୍ତି ।

ଦେବପ୍ରିୟା—ଆମେ ବର୍ତ୍ତମାନ କେଉଁଠାରେ ?

ମହେନ୍ଦ୍ର—ଏକ ପର୍ବତ ଗୁମ୍ଫାରେ । ମୁଁ ମନ୍ତ୍ରୀଙ୍କ ହାତରେ ରାଜ୍ୟଭାର ଅର୍ପଣ କରି ତୁମ ସହ ଏଠାକୁ ଚାଲିଆସିଲି । ରାଜ୍ୟ ଚିନ୍ତାରେ ପଡ଼ି ମୁଁ ଏ ସ୍ୱର୍ଗ କେବେହେଲେ ପାଇପାରି ନ'ଥାନ୍ତି । ତୁମ ପାଇଁ ମୁଁ ଏପରି ଅନେକ ରାଜ୍ୟ ତ୍ୟାଗ କରି ଦେଇପାରେ ।

ଦେବପ୍ରିୟାଙ୍କୁ ଏପରି ବସ୍ତୁ ମିଳିଗଲା, ଯାହା ସମ୍ମୁଖରେ ରାଜ୍ୟ, ବୈଭବ ତୁଚ୍ଛ । ବନ୍ୟ ଜୀବନର କଳ୍ପନା ତାଙ୍କୁ ଅତ୍ୟନ୍ତ ସୁଖଦ ଜଣାଗଲା । ପ୍ରେମାନନ୍ଦ ଭୋଗ ପାଇଁ, ସ୍ୱାମୀଙ୍କ ପ୍ରତି ଭକ୍ତି ପ୍ରଦର୍ଶନ ପାଇଁ ଏଠାରେ ଯେତେ ସୁଯୋଗ ଅଛି, ସେତେ ରାଜଭବନରେ କାହିଁ ! ତାଙ୍କର ଆଉ ବିଳାସ ଆକାଂକ୍ଷା ନାହିଁ, ଅଛି କେବଳ ପତିପ୍ରେମରୁ ଆନନ୍ଦଲାଭ । ଆନନ୍ଦରେ ରହିଲେ ରାଜ୍ୟର ଆବଶ୍ୟକତା ନାହିଁ ପ୍ରିୟତମ !

ମହେନ୍ଦ୍ର—ମୋତେ ଖୁସି କରେଇବା ପାଇଁ ଏହା କହୁଛ ନା ଅନ୍ତରରୁ କହୁଛ ?

ଦେବପ୍ରିୟା—ନା ପ୍ରାଣନାଥ, ଅନ୍ତରରୁ କହୁଛି । ମୋ ପାଇଁ ତୁମେ ହିଁ ସବୁକିଛି ।

ମହେନ୍ଦ୍ର ହସିହସି କହିଲେ—ଏଠାର ଜୀବନ ସମ୍ବନ୍ଧରେ ତୁମର ଧାରଣା ନାହିଁ । ବୈଶାଖ, ଜ୍ୟେଷ୍ଠର ପ୍ରଚଣ୍ଡ ଗ୍ରୀଷ୍ମ, ଶୀତଦିନର ହେମାଳ ପବନ ଓ ହାଡ଼ଭଙ୍ଗା ଶୀତ । ବର୍ଷାର ମୂଷଳଧାର—କଳ୍ପନା ତୁମେ କରି ପାରିବନି । ମୁଁ ଭାବୁଛି, ତୁମର କୋମଳ ଶରୀର ଏସବୁ ସହି ପାରିବନି ।

ଦେବପ୍ରିୟା—ତୁମ ସହିତ ରହି ମୁଁ ସମସ୍ତ କିଛି ଆନନ୍ଦର ସହ ସହିପାରିବି ।

ଦେବପ୍ରିୟା ଗୁମ୍ଫା ବାହାରକୁ ଆସି ଦେଖିଲେ, ଚତୁର୍ଦ୍ଦିଗ ଅନ୍ଧକାରାବୃତ । କିନ୍ତୁ ପର ମୁହୂର୍ତ୍ତରେ ତାଙ୍କୁ ସବୁ ଦେଖାଗଲା । ଦେବପ୍ରିୟା ମନରେ ଏକ ବିଚିତ୍ର ଆଶଙ୍କା ଉତ୍ପନ୍ନ ହେଲା—ମୋର ସେହି ନିକୃଷ୍ଟ ଜୀବନ ପୁଣି ମୋର ସର୍ବନାଶ କରିଦେବ ନାହିଁ ତ !

( ୩୬ )

ରାଜା ବିଶାଳ ସିଂହ କେତେବର୍ଷ ହେଲା ରାଜକାର୍ଯ୍ୟ ପ୍ରାୟ ଛାଡ଼ି ଦେଇଥିଲେ । ମନ୍ତ୍ରୀ ବଜ୍ରଧର ଏବଂ ଦେଓ୍ୱାନ ସାହେବଙ୍କର କରେପୂଅ ବାର ହେଉଥିଲା । ଗୁରୁଦେବଙ୍କ ସିଂହ ନିଜ ରାଗରଙ୍ଗରେ ମସ୍ତ । ଏବେ ପୂରା ବଳିଆ ସାହେବ । ପ୍ରଜାଙ୍କର ସୁଖଦୁଃଖର ଚିନ୍ତା ଯଦି କେହି କରୁଥାଏ, ସେ ହେଉଛି ମନୋରମା । ରାଜାସାହେବଙ୍କର ଆଉ କିଛି ଚିନ୍ତା ନାହିଁ । ମନୋରମା ହିଁ ତାଙ୍କର ଜୀବନ ଧନ । ରାଣୀମାନଙ୍କୁ ସେ ଖୁସି ରଖିଥିଲେ । ବିଶେଷ କରି ରୋହିଣୀକୁ । କାରଣ ପୁଣି କ'ଣ କହିବ ଯଦି ମନୋରମା ଆଉ ଜୀବନରେ ରହିବନି ।

ଏହି ବାଳକଟି ଆସି ରାଜାସାହେବଙ୍କ ଜୀବନରେ ନୂତନ ଉତ୍ସାହ ଭରିଦେଲା । ଏ ଯାଏଁ ତାଙ୍କ ଜୀବନର ଲକ୍ଷ୍ୟ କିଛି ନ ଥିଲା । ମନରେ ପ୍ରଶ୍ନ ଉଠୁଥିଲା—କାହାପାଇଁ କରିବେ ! ଦ୍ରଉମା ଯଦି ନାହିଁ, ମନ୍ଦର ତୋଳାହେବ କାହିଁକି ?

ମୁନସୀଙ୍କ ଏ ଯାଏଁ ଦେଓ୍ୱାନ ସାହେବଙ୍କ ସହ ମିଶି ସ୍ୱାର୍ଥ ସାଧନରେ ଲାଗୁଥିଲେ । ଏବେ ସେ କାହାକୁ ପାସଙ୍ଗରେ ପକାଉନାହାନ୍ତି । ସେ ନିଜକୁ ରାଜା ବୋଲି ଭାବୁଛନ୍ତି । ଦେଓ୍ୱାନ ସାହେବ ମନୋରମାର ପିତା ଏବଂ ମୁନସୀଙ୍କ ରାଜକୁମାରଙ୍କ ବୁଢ଼ାବାପା । କିଏ ବା ଦବିବ ! କର୍ମଚାରୀମାନଙ୍କଉପରେ ଏବେ ଯେମିତି ଗାଳିଗୁଲଜ ହେଉଛି, କେବେ ସେମିତି ହେଉ ନ ଥିଲା । ଯେନତେନ୍ ପ୍ରକାରେ ଟଙ୍କା ମିଳୁଥିଲା, ସେଥିରେ ଚଳୁଥିଲେ । କିନ୍ତୁ ଏବେ ତ ରାଜ୍ୟର ମାଲିକ । ରାଜାସାହେବ ମଧ୍ୟ ତାଙ୍କୁ ସମ୍ମାନ ଦେଉଥିଲେ ।

କର୍ମଚାରୀମାନଙ୍କ ଉପରେ ଲାଲ ଆଖି ଓ ଗାଳିମନ୍ଦ କଥା ଚକ୍ରଧରଙ୍କ କାନରେ ପଡ଼େ । ସେ ଅତ୍ୟନ୍ତ ଲଜ୍ଜିତ ଏବଂ ଦୁଃଖିତ ହୁଅନ୍ତି । କର୍ମଚାରୀଙ୍କୁ ଗାଳି, ଗରିବଙ୍କୁ ମାଡ଼, ରାଣୀ ମହଲରେ କଳି, ରାଜ୍ୟରେ ଦଙ୍ଗାହାଙ୍ଗାମା—ଏ ସବୁ ଚକ୍ରଧର ପ୍ରତିଦିନ ଦେଖୁଛନ୍ତି । କେତେଥର ନିଜେ ମଧ୍ୟ ବାଧ୍ୟ ହୋଇ ଚାକରକୁ ମାଡ଼ ମାରିବା ପର୍ଯ୍ୟନ୍ତ ଗଲେଣି । ସବୁଠାରୁ କଠିନ ସମସ୍ୟା—ନିଜ ସିଦ୍ଧାନ୍ତରୁ ସେ ଦୂରେଇ ଯାଉଛନ୍ତି । ଅନେକ ସମୟରେ ଭାବୁଛନ୍ତି, ଶାନ୍ତିକୁଟୀରକୁ ଚାଲିଯିବା ପାଇଁ ।

କିନ୍ତୁ ଅହଲ୍ୟା ଚରମ ସୁଖ ଭୋଗ କରୁଛି । ବହୁଦିନ ଦୁଃଖ ଭୋଗପରେ ଏବେ ସୁଖ ମିଳିଛି ଏବଂ ସେଥିରେ ସେ ମଗ୍ନ । ସାରାଦିନ ଆମୋଦ ପ୍ରମୋଦ ବ୍ୟତୀତ ଆଉ କିଛି କାମ ନାହିଁ । ତାର ମୁଖଛବି ପୂର୍ଣ୍ଣଚନ୍ଦ୍ର ଭଳି ତେଜୋମୟ ହୋଇଗଲାଣି । ତାର ସରଳତା, ନମ୍ରତା, କର୍ମଶୀଳତା ଅନ୍ତର୍ଦ୍ଧାନ ହୋଇଯାଇଛି ।

ଶଙ୍ଖଧର ଏବେ ମନୋରମା ପାଖରେ ରହୁଛି । ଅହଲ୍ୟା କେବେ କେବେ ତାକୁ ଅନ୍ୟ ପିଲାଭଳି କୋଳରେ ଧରେ । କିନ୍ତୁ ସେ ତା'ପାଖରେ ରହେନି, ମନୋରମା ତା'ର ମାଆ । ମନୋରମାର ଜୀବନ ଏଇ ବାଳକଠାରେ ।

ଏବେ ଚକ୍ରଧର ଅହଲ୍ୟାକୁ ଆଉ ନିଜର ମନକଥା କେବେ କହନ୍ତି ନାହିଁ । ଏ ସମ୍ପଦ ତା'ର ସର୍ବନାଶ କରିଦେଇଛି । ଏ ସୁଖ ବିଳାସ ଛାଡ଼ି ସେ ଅଉ ତାଙ୍କ ସଙ୍ଗରେ ଯିବାକୁ ରାଜିହେବା ସମ୍ଭବ ନୁହେଁ । ବରଂ ଏପରି ପ୍ରସ୍ତାବ ଦେଲେ ହସରେ ଉଡ଼େଇ ଦବ । ଯଦି ସେ ଦୃଢ଼ ଭାବରେ ମୋତେ ଯିବାକୁ ମନ କରିବ, ତେବେ ମୁଁ ବା କିପରି ଯିବ ? ଯଦିବା ସେ ମୋ ସହ ବାଧ୍ୟହୋଇ ଯିବ ତେବେ ମନୋରମା ଶଙ୍ଖଧରକୁ ତ ଛାଡ଼ିବନି । ଶଙ୍ଖଧରକୁ ଛାଡ଼ି ଅହଲ୍ୟା ବା ଯିବ କିପରି ! ଶଙ୍ଖଧରକୁ ମନୋରମା ବାଧ୍ୟ ହୋଇ ଦେଲେ ବି ସେ ବିୟୋଗ ବେଦନା ସହିପାରିବ ତ ! ଏହିଭଳି ଅନେକ କଥା ମନରେ ଉଠିବା ହେତୁ ସେ ନିଜର କର୍ତ୍ତବ୍ୟ ସ୍ଥିର କରିପାରୁ ନ'ଥାନ୍ତି ।

ଦିନେ ଚକ୍ରଧର ବସି କ'ଣ ପଢ଼ୁଛନ୍ତି, ମୁନ୍‌ସୀ ବଜ୍ରଧର ଆସି କହିଲେ—ବାପା, ଟିକିଏ ରାଜ୍ୟଆଡ଼େ ବୁଲାବୁଲି କରୁନୁ କାହିଁକି ! ତୁ କି ଢଙ୍ଗର ପିଲା, ମୁଁ ତ ଟିକିଏ ହେଲେ ବୁଝିପାରୁନି ! ବଡ଼ବଡ଼ ରାଜାମାହାରାଜ ଏକୁଟିଆ କ'ଣ ଦେଖିବେ ! ଏବେ ତ ଈଶ୍ୱରଙ୍କ ଦୟାରୁ ରାଜ୍ୟ ଆମର । ତୁ ଏମିତି ବେପରୁଆ ହେଲେ କେମିତି ଚଳିବ ! ହାତୀ, ଘୋଡ଼ା, ମଟର ସବୁ ଅଛି । ଘରେ ବସି ରହିଲେ କିଏ ତତେ ଚହ୍ନିବ !

ଚକ୍ରଧର ଉଦାସୀନ କଣ୍ଠରେ କହିଲେ—ମୁଁ ଏ ଝଂଝଟରେ ପଡ଼ିବାକୁ ଚାହେଁନା । ମୁଁ ତ ଏଠାରୁ ଚାଲିଯିବା ପାଇଁ ପ୍ରସ୍ତୁତ ହୋଇ ରହିଛି ।

ଚକ୍ରଧର ମୁହଁକୁ ମୁନ୍‌ସୀଜୀ ଆଁ କରି ଚାହିଁରହିଲେ । କଥାଟା ଏପରି ଅଶ୍ରୁତପୂର୍ବ ଥିଲା ଯେ, ସେ ବୁଝି ପାରିଲେନି । କହିଲେ—ସେଇ ଭୂତ ପୁଣି ମୁଣ୍ଡରେ ଚଢ଼ିଲାଣି !

ଚକ୍ରଧର—ଆପଣ ତାକୁ ଭୂତଭଡ଼ା କହନ୍ତୁ ବା ପାଗଳାମି କହନ୍ତୁ, ମୋତେ ତହିଁରେ ଯେତେ ଆନନ୍ଦ ମିଳୁଛି, ଏଥିରେ ନୁହେଁ । ବରଂ ମୋର ଆପଣଙ୍କୁ ଅନୁରୋଧ, ଆପଣମାନେ ଘରେ ବସି ଭଗବାନଙ୍କ ନାମ କୀର୍ତ୍ତନ କରନ୍ତୁ । ଆବଶ୍ୟକ ପଡ଼ିଲେ ମୁଁ ସାହାଯ୍ୟ କରିବି ।

ମୁନ୍‌ସୀ—ମୁଁ ଦେଖୁଛି, ତୁ ନିଜ ହୋସ୍‌ରେ ନାହୁଁ । କେତେ ବଡ଼ ବଡ଼ ଜମି ପାଇଁ ରକ୍ତନଦୀ ବହିଯାଉଛି । ଆଉ ତୁ ଏତେ ବଡ଼ ରାଜ୍ୟ ପାଇ ଏମିତି କହୁଛୁ ! କ'ଣ ତୋର ହୋଇଛି ! ସେ ସବୁ ମନରୁ ପୋଛି ରାଜ୍ୟ ଚଳେଇବାରେ ମନଯୋଗୀ ହୁଅ । ଭଗବାନ ତୋ ଉପରେ କୃପା ଦୃଷ୍ଟି ଦେଇଛନ୍ତି । ତାଙ୍କୁ ଧନ୍ୟବାଦ ଦେ ।

ଚକ୍ରଧର ଦେଖିଲେ ଆଉ ଏମାନେ ଶାନ୍ତିରେ ବସେଇ ଦେବେନି । ଆଜି ବାବା କହିଲେ, କାଲି ଅହଲ୍ୟା ଉପଦେଶ ଦେବ । ରାଜାମହାରାଜ ମଧ୍ୟ କୌଣସି କାମ ଲଦିବେ । ଶୀଘ୍ର ଏଠାରୁ ଚାଲିଯିବା ଉଚିତ । ପୁଣି ମାସେ ଚାଲିଗଲା । କିଛି ସ୍ଥିର କରି ପାରିଲେନି ।

ଦିନେ ଚକ୍ରଧର ମଟର ଧରି ସେତିକି ବାହାରେ ବୁଲି ଆସିବାକୁ ବାହାରିଲେ । ଗରମ ଦିନ । ଖୋଲା ପବନରେ ବୁଲିବାକୁ ମନ ହେଲା । ମଫସଲ ଆଡ଼େ ଦୂରକୁ ଚାଲିଗଲେ । ସନ୍ଧ୍ୟା ହୋଇଗଲା । ଆଗକୁ ଆଗକୁ ସଡ଼କ ଖରାପ । ସହସା ରାସ୍ତାରେ ଗୋଟାଏ ପ୍ରକାଣ୍ଡ ଷଣ୍ଢ ଠିଆ ହୋଇଥିବାର ଦେଖିଲେ । ହର୍ଣ୍ଣ ଦେଲେ । ସେଇଟା ଆଡ଼େଇ ହେବା ପରିବର୍ତ୍ତେ ଫଁ ଫଁ ଶବ୍ଦ କରି ଶିଙ୍ଗ ଟେକି ସାମନାକୁ ଆସିଗଲା । ଚକ୍ରଧର ଗୋଟେ ବାଡ଼ି ଧରି କାର୍‌ରୁ ଓହ୍ଲାଇ ପିଟିବାକୁ ବାହାରିଲେ । କିନ୍ତୁ ସେ ଯିବ କ'ଣ, ସିଙ୍କୁ ଭୁସି ଦେବାକୁ ଗୋଡ଼େଇଲା । ଚକ୍ରଧର ଘୁଞ୍ଚି ପିଛି ଦୌଡ଼ିଲେ । ଷଣ୍ଢଟା ମଧ୍ୟ ପଛେ ପଛେ ଦୌଡ଼ିଲା । ଚକ୍ରଧର ଦେଖିଲେ ଆଉ ଉପାୟ ନାହିଁ । ଲାଗିକୁ ସଡ଼କ ଦାଢ଼ରେ ଗୋଟାଏ ଗଛଥିଲା । କଲବଲ ହୋଇ ସେହି ଗଛରେ ଚଢ଼ିଗଲେ । ଷଣ୍ଢ ଗଛ ମୂଳେ ପହଞ୍ଚି ମିନିଟିଏ ଯାଏଁ ଗଛକୁ ଭୁଷି ଲାଗିଲା । କିନ୍ତୁ ଲୋକ ନ ମିଳିବାରୁ କାର ପାଖକୁ ଦୌଡ଼ିଆସି ଶିଙ୍ଗରେ କାର୍‌ଟାକୁ ଠେଲି ଠେଲି ଦୌଡ଼ିଲା । କିଛି ଦୂର ଯିବା ପରେ କାର୍‌ଟା ଗୋଟେ ଗଛରେ

ଧକ୍କା ବାଜି ଅଟକି ଗଲା । ଷଣ୍ଢ ଲାଞ୍ଜ ଟେକି ପଛକୁ ହଟିଯାଉଥାଏ, ଦୁଇ ଅଗକୁ ଦେଇ କାର୍‌କୁ ତାଳୁରେ ଧକ୍କା ମାରୁଥାଏ । ଏହିପରି କିଛି ସମୟ କଲା ପରେ ଗୋଟା ଓଲଟି ପଡ଼ିଲା । ତଥାପି ଷଣ୍ଢ ଛାଡ଼ୁ ନାହିଁ । ତା'ର ଚକକୁ ମାଇଲା ତାଳୁ । କାର୍‌ର ଚକା ଫାଟିଗଲା, କେତେ କଳ ବିଗିଡ଼ିଗଲା । ଚକ୍ରଧର ଗଛ ଉପରେ ବସି ଏ ତାମସା ଦେଖୁଛନ୍ତି । ଷଣ୍ଢ ଯେତେବେଳେ ହାଲିଆ ହୋଇ ପଡ଼ିଲା, ସ୍ଥାନ ଛାଡ଼ି ବିଜୟ ଗର୍ବରେ ହମ୍ବାଳି ଛାଡ଼ି ଛାଡ଼ି ଚାଲିଗଲା । ଚକ୍ରଧରଙ୍କ ଚନ୍ତା ଫେରିବ କିପରି ! ପାଦରେ ଯେବେ ବନ୍ଧୁକ ଥାଆନ୍ତା, ତେବେ ଏ ପାଶ୍ୱାଣ୍ଡକୁ ସେ ଛାଡ଼ି ନ ଥା'ନ୍ତେ । ମନରେ କ୍ରୋଧ—ଷଣ୍ଢଗୁଡ଼ାଏ ଗଛି ଛାଡ଼ି ଦେଉଛନ୍ତି । କାହାର ଏ ଷଣ୍ଢ ! ଦେଖିବି ତା'କୁ ।

ଚକ୍ରଧର ଗଛରୁ ଓହ୍ଲାଇ କାର୍ ପାଖରେ ପହଞ୍ଚି ଅବସ୍ଥା ଦେଖିଲେ । କାର୍‌କୁ ସିଧା କରି ସଡକ ଉପରକୁ ନ ଆଣିଲେ, ଚାଲୁ ଅବସ୍ଥାରେ ଅଛି କି ନାହିଁ, ଜାଣି ହେବ ନାହିଁ । ଏକାକୀ ଏ କାମ ସମ୍ଭବ ନୁହେଁ । ରାସ୍ତାରେ ମଧ୍ୟ କେହି ଦେଖାଯାଉ ନାହାନ୍ତି । ଅଳ୍ପ ଦୂରରେ ଗୋଟେ ଗାଁ ଦେଖାଯାଉଛି । ଷଣ୍ଢ ପ୍ରତି ସତର୍କ ଦୃଷ୍ଟି ରଖି ଚାଲିଲେ । ଗାଁ ଭିତରେ ପହଞ୍ଚିଲେ । କୃଷକମାନେ ଆଖୁ କିଆରିରେ ପାଣି ମଡ଼ାଇ ଫେରିଛନ୍ତି । ଛୋଟିଆ ଗାଁଟିଏ । କିଏ ବଳଦଙ୍କୁ ଆହାର ଦେଉଛି । କିଏ ଖାଉଛି, କିଏ ଗାଈ ଦୁହୁଁଛି । ଚକ୍ରଧର ଜଣକୁ ପଚାରିଲେ—ଏ ଗାଁ ନାଁ କ'ଣ ?

ବ୍ୟକ୍ତି—ଭଇଁସର ।

ଚକ୍ରଧର—କାହାର ଏ ଗାଁ ?

ବ୍ୟକ୍ତି—ମହାରାଜାଙ୍କର । କେଉଁଠୁ ଆସିଲ ?

ଚକ୍ରଧର—ଆମେ ସେଇଠୁ ଆସିଛୁ । ସେ ବଦମାସ୍ ଷଣ୍ଢଟା କାହାର ?

ବ୍ୟକ୍ତି—କାହାର ସେଇଟା କେଜାଣି । ସେଇଟା ଯୋଗୁଁ ସମସ୍ତେ ହଇରାଣ । ସେ ବାଟରେ କେହି ଯାଉନାହାନ୍ତି । ବଡ଼ ହଇରାଣ କରୁଛି ।

ଚକ୍ରଧର ଷଣ୍ଢ ଆକ୍ରମଣ କଥା ବର୍ଣ୍ଣନା କରି କହିଲେ—ତୁମ୍ଭେମାନେ ମୋ ସହିତ ଆସି ମଟରଟାକୁ ଉଠେଇ ଦିଅ ।

ଏହି ସମୟରେ ଆଉ ଜଣେ କୃଷକ ଦୁଆରେ ଥାଇ କହିଲା—ସରକାର, ଭଲ କଥାରେ ମଟର ଉଠେଇ କ'ଣ କରିବ । ସେଇଟା ତ ଚାଲି ପାରିବନି ।

ଚକ୍ରଧର—ତମେ ସବୁ ଠେଲି ଠେଲି ନେଇଯିବ ।

ପ୍ରଥମ ବ୍ୟକ୍ତି—ସରକାର, ରାତିରେ ଏଇଠି ରହିଯାଅ । ସକାଳୁ ଦେଖିବା । ନ ଚାଲିଲେ ଗାଡ଼ିରେ ଲଦିକରି ନେଇଯିବା ।

ଚନ୍ଦ୍ରଧର ବିରକ୍ତ ହୋଇ କହିଲେ—କମିତି କଥା କହୁଛ ମ ! ମୁଁ ବୁଢ଼ାଟାଏ ଏଇଠି ପଡ଼ି ରହିବି ! ତୁମକୁ ଏଇ ଘାଙ୍ଗେ ଘାଙ୍ଗେ ଯିବାକୁ ପଡ଼ିବ ।

ଚନ୍ଦ୍ରଧରଙ୍କ ସେ ଲୋକ ଚିହ୍ନିନ । ଭାବିଲା—ରାଜାଘର କର୍ମଚାରୀ ତ କେତେ, ଆସୁଛନ୍ତି ଯାଉଛନ୍ତି—କିଏ ହୋଇଥିବ । ପୁଣି ଏମାନେ ସମସ୍ତେ ଠାକୁର ଜାତିର । ଠାକୁର-ମାନଙ୍କଠାରୁ ଅନ୍ୟ ଯେଉଁ କାମ କରାଯାଇ ପାରେ । କିନ୍ତୁ ବେଠି ନାଁ ଶୁଣିଲେ ଏମାନେ ଲଙ୍ଗୁଡ଼ରେ ଠିଆ ହୁଅନ୍ତି । କୃଷକ ଜଣକ କହିଲା—ହେ ସାହେବ, ଏବେ ଆମେ ଯାଇ ପାରିବୁନି । ଯେବେ ବେଠି ଚାହିଁ, ତେବେ ଉତ୍ତର ପଟରେ ଚମାର ଗାଁ ଅଛି, ସେଇଠିକି ଯାଅ ।

ଚନ୍ଦ୍ରଧର କ୍ରୋଧାନ୍ୱିତ ହୋଇ କହିଲେ—ମୁଁ କହୁଛି, ତୁମକୁ ଯିବାକୁ ପଡ଼ିବ ।

କୃଷକ ଦୃଢ଼ତାର ସହ କହିଲା—ହେ ସାହେବ, ହାତ ପାଣି ହୋଇନୁ । ଆମେ ଠାକୁର । ଏହା କହି ଘର ଭିତରକୁ ଯିବାକୁ ପାଦ ବଢ଼େଇଲା ।

ଚନ୍ଦ୍ରଧର—ମୁଁ ଭଲରେ କହୁଛି—ତମେ ଶୁଣୁନ । ଗୋଟିଏ ଚପରାଶି ଆସି ଧମକ ଦେଇ ଦେଲେ ଗାଁ ସାରା ମେଣ୍ଢା ଭଳି ତା' ପଛେ ପଛେ ଧାଇଁବ ।

କୃଷକ ସେଇଠି ଠିଆ ହୋଇ କହିଲା—ଚପରାଶି ଧମକେଇବ ! କ'ଣ ଗୋରୁ ହେଇଛୁ ଆମ ଇଚ୍ଛା, ଆମେ ଯିବୁନି, କ'ଣ ହାତରେ ହଉଚ, କର ।

ଚନ୍ଦ୍ରଧର ଆଉ ସମ୍ଭାଳି ପାରିଲେନି । ସଙ୍ଗୀଣ ଭଳି ମାଡ଼ି ଆସି କୃଷକକୁ ଧକାଏ ମାରି କହିଲେ—ଯିବୁ ନା ଦେବି ଦଶଟି ପାହାର !

ଚନ୍ଦ୍ରଧର କସରତବାଲା । ଧକ୍କା ଖାଇ କୃଷକ ତଳେ ପଡ଼ିଲେ । ସେ ମଧ୍ୟ ଦୁର୍ବଳ ନୁହଁ ଧରି ପକେଇଲେ ଚନ୍ଦ୍ରଧର ଖସି ପାରିବେନି । ଭାବିଲା—ହାକିମ ଲୋକ ହୋଇଥିବ । ନ ହେଲେ ଏତେ ସାହସ ହୁଅନ୍ତାନି । ଚନ୍ଦ୍ରଧର ଭାବିଲେ, ଲୋକଟା ଉଠିଲେ ବୋଧେ ଆକ୍ରମଣ କରିବ । ଆହୁରି ଧକାଏ ଦେଲେ । ସହସା ସାମନା ଘରୁ ଲଣ୍ଠନଟାଏ ଧରି ଜଣେ ଲୋକ ବାହାରକୁ ଆସିଲା ଏବଂ ଚନ୍ଦ୍ରଧରଙ୍କୁ ଦେଖି ଚିହ୍ନିପାରି କହିଲା—ଆରେ ଭଗତଜୀ, ତୁମେ ଏ ବେଶ କେବଠୁ ଧରିଲଣି ? ମୋତେ ଚିହ୍ନି ପାରୁଛ ! ମୁଁ ତୁମ ସାଥିରେ ଜେଲରେ ଥିଲି ।

ଚନ୍ଦ୍ରଧର ସେଙ୍ଗେ ସଙ୍ଗେ ଚିହ୍ନିଲେ—ଧନ୍ନାସିଂହ । ଚନ୍ଦ୍ରଧରଙ୍କର ସବୁ ରାଗ କୁଆଡ଼େ ଉଡ଼ିଗଲା । ଲଜ୍ଜିତ ହୋଇ କହିଲେ—କ'ଣ ତୁମ ଘର ଏଇ ଗାଁରେ ଧନ୍ନା ?

ଧନ୍ନାସିଂହ—ହଁ ସାହାବ । ଯାହାକୁ ତମେ ଧକା ମାରିଲ, ମୋ ସାନ ଭାଇ । ଖାଇ ବସିଥିଲି । ତମ ସ୍ୱର ଶୁଣି ଦୌଡ଼ିଛି । ତମେ ଏତେ ଗରମ କ'ଣ ! ତମେ ତ ଏପରି କଡ଼ା ନୁହଁ । ଦାରୋଗାକୁ ବଞ୍ଚେଇବା ପାଇଁ ସଙ୍ଗୀନ ଭୁଷା ନିଜେ ଖାଇଥିବା ଭଗତଜୀ ତମେ କି ! ଅଳ୍ପ ଟିକିଏ କଥାରେ ଏତେ ତେଜ କିଆଁ !

ଚକ୍ରଧରଙ୍କ ମୁହଁରୁ ପାଣି ମରିଗଲା । ତୁଣ୍ଡରୁ କଥା ବାହାରିଲାନି । ତାଙ୍କ ଜୀବନର ସମସ୍ତ ଯଶ ମୁହୂର୍ତ୍ତକ ମଧ୍ୟରେ ଲୁଚି ହୋଇଗଲା ।

ଧନ୍ନାସିଂହ ଖଇର ହାତ ଧରି ଉଠାଇଲା ଦେଲେ ସେ 'ଇଲେ ବୋଉଲେ' ବୋଲି ଚିତ୍କାର କଲା । ଦ୍ୱିତୀୟ ଥର ଧକ୍କାରେ ତାର ହାତ ମୋଡ଼ି ହୋଇଗଲା । ଧନ୍ନାସିଂହ ଖାରିଲା, ହାତଟା ଖଣ୍ଡି ଯାଇଛି । ଚକ୍ରଧରଙ୍କ ପ୍ରତି ଯାହା ଭକ୍ତି ଥିଲା, ସବୁ ଉଡ଼ିଗଲା । ଆରକ୍ତ ନେତ୍ରରେ ଗୃହିଁ କହିଲା—ସରକାର, ତମେତ ସ୍ୱାର ହାତଟା ଖଣ୍ଡି ଦେଲ । (ଦାନ୍ତ ଚିପିବାଇ) କ'ଣ ଆଉ କହିବ, ଦୁଆରକୁ ଅସିଥିବ ଆଉ ପୁରୁଣା କଥା ଟିକିଏ ମନେ ପଡ଼ୁଛି, ନ ହେଲେ ତମର ହାତଟା ଇଲେ ଗୁଣ୍ଡ କରି ଦେଇଥାଆନ୍ତି । ତମେ କେତେ ବଦଳି ଗଲ ! ମୁଁ ଆଖିରେ ନ ଦେଖିଥିଲେ, କେବେ ବିଶ୍ୱାସ କରି ନ ଥା'ନ୍ତି । ତୁମକୁ ଜାଣିସ୍ଥି କିଛି ଧନ ସମ୍ପତ୍ତି କ ବଡ ପଦ ମିଳି ଯାଇଛି, କାନ୍ତି ଆମକୁ ଅନାଥ ଭାବନ । ଏବେ ଯାଇ ମହାରାଜାଙ୍କୁ କହିଲେ, ତମେ ବନ୍ଦୀ ହୋଇଯିବ । ବାବୁ ଚକ୍ରଧରଙ୍କ ନାମ ଶୁଣିଛ ? ଆଉ କୋଉ ସରକାରି ଲୋକର ସାହସ ନାହିଁ ମ ବେଠି ଝଟେଇବ । ନୌକର କମ୍ପା ସମ୍ପତ୍ତି ପାଇ ନଜର ପୂର୍ବଦିନଗୁଡ଼ାକ ଭୁଲିଯିବା ଉଚିତ ନୁହେଁ । ତୁମକୁ ମୁଁ ମୋର ଗୁରୁ ଏବଂ ଦେବତା ବୋଲି ଭାବିଥିଲି । ତୁମରି ଉପଦେଶରେ ମୁଁ ମୋର ପୁରୁଣା ଅଭ୍ୟାସ ଛାଡ଼ି ଦେଇଥିଲି । ଜୁଆ ଖେଳୁନି କି ନିଶା ଖାଉନି । ଯେଉଁ ଠେଙ୍ଗାରେ ପଚାଶ ଲୋକଙ୍କ ମୁଣ୍ଡ ଫଟେଇ ଦେଇଥିଲି, ସେ ଠେଙ୍ଗାକୁ ହାଣି ଜାଳି ଦେଇଛି । ମନ୍ନାସିଂହତ କିଛି କହୁନି । କହୁଥିଲି—ବୁଢଟା ରହିଯାଅ, ସକାଳୁ ପହଞ୍ଚେଇଦେବୁ । ଏଥିରେ ଖରାପ କ'ଣ ଥିଲା ! ମୁଁ ତ ହେଇଥିଲେ କହିଥା'ନ୍ତି, ଅମେ ତୁମର ଚାକର ନୋହୁଁ, ଯାଅ ମୋଟର କିମିତି ନଉଚ ନିଅ । ସେ ତମ ସହିତ ଭଲ ବ୍ୟବହାର କରିବାରୁ, ତମେ ତାକୁ ମାରିଲ । ଏବେ କହ, ତା' ହାତ କିମିତି ଭଲ ହବ ? ସତ କଥା—ପଦ ପାଇଲେ ମଦ ବଢ଼ିଯାଏ ।

ଚକ୍ରଧର ଗ୍ଲାନିରେ ଅସ୍ଥିର ହୋଇ କହିଲେ—ଧନ୍ନାସିଂହ, ମୁଁ ଖୁବ୍ ଲଜ୍ଜିତ । ମୋତେ କ୍ଷମା କର । ଯେଉଁ ଦଣ୍ଡ ତୁମେ ଚାହୁଁଛ, ଦିଅ ।

ଏହା କହି କହି ତାଙ୍କର କଣ୍ଠରୋଧ ହୋଇଗଲା । ଧନ୍ନାସିଂହ ଗଦ୍‌ଗଦ୍ ହୋଇ କହିଲା—ଅରେ ଭଗବାନ, ଏମିତି କହନ୍ତି । ତମେ ମୋର ଗୁରୁ । ତୁମକୁ ମୁଁ ମୋର ଦେବତା ବୋଲି ଭାବୁଛି । କ୍ରୋଧରେ ମୁହଁରୁ କ'ଣ ବାହାରି ପଡ଼ିଲା, କିଛି ଭାବନି । ଭାଇ, ମୋର ଭାଇ ମନ୍ନାସିଂହ । ଖାଇ ଶକ୍ତ ହେଉ ପଛେ, ମାଡ଼ ଖାଉଥିଲେ କୋଉ ଭାଇ ସମ୍ଭାଳିବ ! ମୋତେ ତମର ଦାସ ବୋଲି ଭାବ, ଜଙ୍ଗଲରେ ଯିମିତି ଭାବୁଥିଲ । କାହିଁ ତମ ମୋଟର ? ଚାଲ, ମୁଁ ଉଠେଇଦେବି । ନାଇଁ ଯଦି ହୁକୁମ କରିବ, ଶଗଡ଼ ଯୋଚିବ ।

ଚକ୍ରଧର କାନ୍ଦି କାନ୍ଦି କହିଲେ—ସେ ପର୍ଯ୍ୟନ୍ତ ତାଙ୍କର ହାତ ଭଲ ନ ହୋଇଛି, ସେ ପର୍ଯ୍ୟନ୍ତ ମୁଁ ଯିବିନି ଧନ୍ନାସିଂହ । ହଁ ଜଣେ ଲୋକ କରିଦିଅ, ମୋର ଚିଠି ନେଇ ଜଗଦୀଶପୁରରେ ଦେଇଦେବ ।

ଧନ୍ନାସିଂହ—ଜଗଦୀଶପୁରରେ ତମର କିଏ ଅଛୁ ଭାଇ ? କ'ଣ ଦୁଜଧାମାରେ ସୁଜନର ମିଳିଯାଇଛୁ ?

ଚକ୍ରଧର—ସୁଜନର କନେ । ମୁଁ ମୁନ୍ସୀ ବଜ୍ରଧରଙ୍କ ପୁଅ ।

ଧନ୍ନାସିଂହ ବିସ୍ମିତ ହୋଇ କହିଲା—ତମେ କ'ଣ ବାବୁ ଚକ୍ରଧର ! ଧନ୍ୟ ଭଗ°—ସରକାରଙ୍କର ଦର୍ଶନ ମିଳିଲା ।

ଏହା କହି ଘରକୁ ଦୌଡ଼ିଗଲା । ଗୋଟେ ଖଟିଆ ଆଣି ପକେଇ ଦେଲା । ଦୌଡ଼ିଯାଇ ଗାଆଁରେ ଖବର ଦେଲା । ମୁହୂର୍ତ୍ତିକ ମଧ୍ୟରେ ଗାଁ ଲୋକେ ଆସି ଜମା ହୋଇଗଲେ ସମସ୍ତେ ଯଶ ଗାନ କଲେ । ଆପଣ ସାକ୍ଷାତ ଭଗବାନ, ଆପଣଙ୍କ ଯୋଗୁଁ ଆମ ଦୁଃଖ ଯାଇଛି ବୋଲି କହିଲେ ।

ଜଣେ ଠାକୁର କହିଲା—ସରକାର ଯଦି ଚାହାଁ ଦେଇଥାନ୍ତେ, ମୋଟରଟାକୁ କାନ୍ଧେଇ କାନ୍ଧେଇ ନେଇ ପହଞ୍ଚାଇ ଦେଇଥା'ନ୍ତୁ ।

ମନ୍ନାସିଂହ କହିଲା—ସରକାର ଦେଖିବାକୁ ପତଳା ସିନା ହାତଟା ଲୁହା ।

ଧନ୍ନାସିଂହ—ଅରେ ପାଗଳ, ଭଗବାନଙ୍କ ହାତ ପାଦରେ ଜୋରଥିବାରୁ ସିନା ଦେବତାମାନେ କମ୍ପି ଉଠୁଛନ୍ତି ।

ହଠାତ ସଡ଼କ ଆଡ଼େ ଆଲୋକ ଦେଖାଗଲା । ଦୁଇଟା ମଟର ଧୀରେ ଧୀରେ ଆସୁଥିବାର ଦିଶିଲା । ଓଲଟି ପଡ଼ିଥିବା କାର୍ ପାଖରେ ଠିଆ ହେଲେ । ଚକ୍ରଧର ଭାବନେଲେ—ଖୋଜିବା ପାଇଁ କେହି ଆସିଗଲେ । ସମସ୍ତେ ସେଠାକୁ ଚାଲିଲେ । ପାଖକୁ ଯାଇ ଦେଖିଲେ ମନୋରମା ପାଞ୍ଚଜଣ ସଶସ୍ତ୍ର ସିପାହୀ ଧରି ଆସିଛନ୍ତି । ଚକ୍ରଧରଙ୍କୁ ଦେଖି ରାଣୀ ଆଶ୍ଚର୍ଯ୍ୟ ହୋଇ କହିଲେ—ବାବୁଜି, କିଛି ଆଘାତ ଲାଗିନି ତ ! ଆଉ ଏକୁଟିଆ ବୁଲି ଆସିବାକୁ ଆପଣଙ୍କୁ ଦିଆଯିବ ନାହିଁ ।

( ୩୩ )

ଦେବପ୍ରିୟା ହେଉ ଗୁମ୍ଫାରେ କିଛି ମାସ କଟେଇଲେ । ମନପ୍ରାଣ ଦେଇ ସେ ପତି ସେବା କରନ୍ତି । ପର୍ବତକୁ ତଳକୁ ଯାଇ ଝରଣାରୁ ପାଣି ଆଣନ୍ତି । ଗଛରୁ କାଠ ଭାଙ୍ଗି ଆଣି ଜଙ୍ଗଲୀ ଫଳ ସିଝାନ୍ତି । ମଝିରେ ମଝିରେ ମହେନ୍ଦ୍ର ବାର୍ଦ୍ଧକ ପାଇଁ କୁଆଡ଼େ ଚାଲି ଯାଆନ୍ତି । ଗୁମ୍ଫାରେ ଦେବପ୍ରିୟା ଏକାକୀ ରହନ୍ତି । ମୁହୂର୍ତ୍ତିକ ପାଇଁ ସେ ପତ୍ନୀ ପାଖରେ ବସିବାକୁ ସମୟ ପାଆନ୍ତି ନାହିଁ । ଏହି ଗୁମ୍ଫାରେ ଅନେକ ବୈଜ୍ଞାନିକ ଯନ୍ତ୍ର ରଖି କାମରେ ଲାଗି ଥାଆନ୍ତି ।

ଦେବପ୍ରିୟାଙ୍କୁ ଏ ବିରହ ବ୍ୟଥା ଖୁବ୍ ବାଧେ । ଭାବନ୍ତି—ସ୍ୱାମୀଙ୍କର ହୃଦୟ କେଡ଼େ କଠୋର ! ସେ ପ୍ରେମଭାବ କୁଆଡ଼େ ଗଲା! ମୁଁ କ'ଣ ଅପରାଧ କଲି !

ଦେବପ୍ରିୟାଙ୍କ ଭଳି ଅନନ୍ୟ ସୁନ୍ଦରୀ ସଂସାରରେ ନାହାନ୍ତି । ସେ ଜଙ୍ଗଲି ଫୁଲର ଅଳଙ୍କାର ଲଗାନ୍ତି, ହସନ୍ତି, କଟାକ୍ଷ କରନ୍ତି । କିନ୍ତୁ ପତିଙ୍କ ହୃଦୟରେ ପ୍ରବେଶ କରି ପାରନ୍ତି ନାହିଁ । ଭାବନ୍ତି—ଏପରି ଜୀବନରେ ମରିବାର ଦେବ ଇଚ୍ଛା ଥିଲା—ଏ ରୂପ ଯୌବନ ଦେଲେ କାହିଁକି !

ଦିନେ ଦେବପ୍ରିୟା ସ୍ୱାମୀଙ୍କୁ କହିଲେ—ତୁମେ ମୋର କାୟା ପରିବର୍ତ୍ତନ କରିଦେଲ । କିନ୍ତୁ ମୋ ମନକୁ ବଦଳେଇଲ ନାହିଁ ?

ମହେନ୍ଦ୍ର ଗମ୍ଭୀର ଭାବରେ କହିଲେ—ଯେ ପର୍ଯ୍ୟନ୍ତ ପୂର୍ବ ସଂସ୍କାରର ପ୍ରାୟଶ୍ଚିତ୍ତ ନ ହୋଇଛି, ସେ ଯାଏଁ ମନର ଭାବନା ବଦଳି ପାରିବ ନାହିଁ ।

ଏ ବାକ୍ୟର ଅର୍ଥ ଯାହା ହେଉନା କାହିଁକି, ଦେବପ୍ରିୟା ଭାବିଲେ ମୋର ପୂର୍ବ ସଂସ୍କାର ହେତୁ ସ୍ୱାମୀ ମୋତେ ଘୃଣା କରୁଛନ୍ତି । ସେ ବିକଳ ହୋଇ ଉଠିଲେ । ସେଥିପାଇଁ କ'ଣ କ୍ଷମା ନାହିଁ ! ତେବେ କାହିଁକି ଏ କାୟାକଳ୍ପ ! ସେତ ପତିପ୍ରେମ ସୁଖ ଭୋଗ ପାଇଁ ସବୁ କିଛି ତ୍ୟାଗ କରିଛନ୍ତି । ପୂର୍ବ ସଂସ୍କାର ପାଇଁ ଦଣ୍ଡ ଭୋଗ କରିବାକୁ ତ ନୁହେଁ । ତେବେ ଏଠାରୁ ଚାଲି ନ ଯିବ କାହିଁକି ! ଚିର କଷ୍ଟ ପାଉଥିବା ଠାରୁ ଅପେକ୍ଷା, ଚକ୍ଷୁ ନ ଥିବା ବରଂ ଭଲ । କିନ୍ତୁ ବିୟୋଗର କଳ୍ପନାରେ ଭୟଭୀତ ହୁଅନ୍ତି ।

ଶେଷରେ ସେ ଚାଲିଯିବା ପାଇଁ ସ୍ଥିର କଲେ । ଶଯ୍ୟାର ଧ୍ୱନି । ମହେନ୍ଦ୍ର ବାହାରେ ଶିଳା ଉପରେ ପଡ଼ିଛନ୍ତି । ଦେବପ୍ରିୟା ଆସି କହିଲେ—ଆପଣ ଶୋଇଛନ୍ତି ନା କ'ଣ !

ମହେନ୍ଦ୍ର ଉଠିପଡ଼ି କହିଲେ—ନା ଶୋଇନାହିଁ । ମୁଁ ଏପରି ଏକ ଯନ୍ତ୍ରର କଳ୍ପନା କରୁଛି, ଯାହା ସାହାଯ୍ୟରେ ମଣିଷ ଇନ୍ଦ୍ରିୟ ସଂଯମ କରିପାରିବ ।

ଦେବପ୍ରିୟା—ମୁଁ ଆପଣଙ୍କୁ କହିବାକୁ ଆସିଛି—ଆମେ ମୋତେ ତ୍ୟାଜ୍ୟ ବୋଲି ମନେ କରିଛନ୍ତି । ତେଣୁ ମୋତେ ହର୍ଷପୁର ପଠେଇ ଦିଅନ୍ତୁ ।

ମହେନ୍ଦ୍ର—ମୁଁ ତୁମକୁ ତ୍ୟାଜ୍ୟ ମନେ କରିନାହିଁ । ପ୍ରିୟେ, ତୁମେ ମୋର ଚିରସଙ୍ଗିନୀ । ତୁମେ ମୋର ଜୀବନକୁ ସାର୍ଥକ କରିଛ । ମୁଁ ତୁମ ପ୍ରେମ ଶକ୍ତିର ବିକାଶ ମାତ୍ର ଅଟେ ।

ଦେବପ୍ରିୟା ଏହି ପ୍ରେମମୟ ବାଣୀରେ ଗଦ୍‌ଗଦ୍ ହୋଇ କହିଲେ—ତେବେ ଆପଣ ମୋ ସହିତ ବାର୍ତ୍ତାଳାପ କରୁନାହାନ୍ତି କାହିଁକି ? ମୋଠାରୁ ଅଲଗା ହୋଇ କାହିଁକି ରହୁଛନ୍ତି ? ଆପଣ ତ ଜାଣନ୍ତି, ପତିପ୍ରେମ ନାରୀର ଏକମାତ୍ର ଆଧାର ।

ମହେନ୍ଦ୍ର କରୁଣ ସ୍ୱରରେ କହିଲେ—ପ୍ରିୟେ, କ'ଣ କହିବି । ପ୍ରେମ ଲାଳସାରେ ମୁଁ ତୁମ ପାଖକୁ ଭିକ୍ଷୁକ ରୂପେ ଯାଇଥିଲି । କିନ୍ତୁ ଏ ସାଧନା ମୋର ଶରୀରକୁ ଏପରି କରି ଦେଇଛି

ଯେ, ସେହି ଲଳସାରେ ମୁଁ ତୁମ ପାଖକୁ ଗଲେ ମୋର ସର୍ବାଙ୍ଗ ଜଳି ଉଠୁଛି । ସତେ ଯେମିତି ମୁଁ ଅଗ୍ନିକୁଣ୍ଡରେ ପଡ଼ିଯିବାକୁ ଯାଉଛି । ତୁମର ମନେ ଅଛି, ଥରେ ମୁଁ ହାତ ଧରି ପକାଇଥିଲି । ମୋତେ ଗୋଟାଏ ଟାଙ୍ଗଲି ତାଡ଼ିଆ ଧରି ପକାଇଲା ପରି ଲଗିଲା । ଏହାର କାରଣ କ'ଣ ! ବିଧାତା କାହିଁକି ଆମ ମିଳନପଥେ ବାଧକ ହେଉଛନ୍ତି ! ଏହା ମୋ ଲାଳସାର ଦଣ୍ଡ, ବ୍ୟତୀତ ମୁଁ ଅନ୍ୟ କିଛି ଭାବି ପାରୁନାହିଁ ।

ନାରୀ ବୁଦ୍ଧି ତୀକ୍ଷ୍ଣ । ସେହି ଦିନଠାରୁ ଦେବପ୍ରିୟା ତପସ୍ୱିନୀ ଭଳି ଚଳିଲେ । ପତିଙ୍କୁ ଲାଳସାପୂର୍ଣ୍ଣ ଦୃଷ୍ଟିରେ ନ ଦେଖି ସେବାରେ ମନଯୋଗୀ ହେଲେ । ରମଣୀର ହୃଦୟ ସେବାର ସୂକ୍ଷ୍ମ ପରମାଣୁରେ ନିର୍ମିତ । ତା'ର ପ୍ରେମ ସେବା, ତା'ର ଅଧିକାର ମଧ୍ୟ ସେବା ! ଏପରି କି ତା ର କ୍ରୋଧ ମଧ୍ୟ ସେବାପୂର୍ଣ୍ଣ ।

ଥରେ ମହେନ୍ଦ୍ର କହିଲେ—ପ୍ରିୟେ, ଆସ, ମୁଁ ତୁମକୁ ଆକାଶ ଭ୍ରମଣ କରେଇବି । ମୋର ମହାକାଶଯାନ ନିର୍ମିତ ହୋଇଗଲା ।

ମହେନ୍ଦ୍ର ସାତବର୍ଷର ଅକ୍ଳାନ୍ତ ପରିଶ୍ରମରେ ଏହି ଯାନ ନିର୍ମାଣ କରିଛନ୍ତି । ଏହି ଯାନର ବିଶେଷତା ହେଉଛି—ବର୍ଷା ତୋଫାନରେ ମଧ୍ୟ ସ୍ଥିର ଭାବରେ ଚାଲେ । ଇଚ୍ଛା ହେଲେ ନାହିଁମ ଗତି ଘଣ୍ଟାରେ ଏକ ହଜାର ମାଇଲ । ଏଥିରେ ବସି ପୃଥିବୀର ପ୍ରତ୍ୟେକ ବସ୍ତୁ ସ୍ପଷ୍ଟ ଭାବରେ ଦେଖି ହୁଏ । ଦୂର ଦେଶର ବିଦ୍ୱାନଙ୍କ ଭାଷଣ ଏବଂ ଗାୟକର ଗୀତ ଶୁଣି ହୁଏ । ଏହା ଏକ ଅଦ୍ଭୁତ ଯାନ । ମହେନ୍ଦ୍ର କହିଲେ—ମାନବ ବୁଦ୍ଧି ଏ ଯାଏଁ ଯାହା ଆବିଷ୍କାର କରିଛି, ତା'ର ପୂର୍ଣ୍ଣ ବିକାଶ ତୁମେ ଦେଖିବ ।

ଏହା କହି ସେ ଦେବପ୍ରିୟାଙ୍କ ହାତ ଧରି ଚାଲିଲେ । ଜ୍ୟୋତ୍ସ୍ନା ବାହାରେ ସବୁକିଛି ସ୍ୱର୍ଣ୍ଣମୟ ଦେଖାଯାଉ ଥିଲା । ଶାନ୍ତିର ସାମ୍ରାଜ୍ୟ ସ୍ଥିର ହୋଇ ରହିଥିଲା । ପୃଥିବୀ ବିଶ୍ରାମ ନେବାକୁ ଯାଉଥିଲା ।

ଦୁଇଜଣ ଆରୋହୀଙ୍କୁ ଧରି ଯାନ ଅନନ୍ତ ଆକାଶରେ ବିଚରଣ କରିବାକୁ ଲଗିଲା । ଯାନ ସିଧା ଚନ୍ଦ୍ର ଆଡ଼କୁ ଯାଉଥିଲା । ଚନ୍ଦ୍ରର ଅବୟବକରଣ ଦେଖି ଦେବପ୍ରିୟା ଭୟଭୀତ ହୋଇ ପଡ଼ିଲେ ।

ହଠାତ୍ ସଙ୍ଗୀତର ମଧୁର ସ୍ୱର ଶୁଣି ଦେବପ୍ରିୟା ପଚାରିଲେ—ଏ ଗୀତ କିଏ ଗାଉଛି ?

ମହେନ୍ଦ୍ର—ମୋର ସ୍ୱାମୀଜୀ ଈଶ୍ୱର ଭଜନ ଗାନ କରୁଛନ୍ତି । ମୁଁ ତାଙ୍କ ସହ କଥାବାର୍ତ୍ତା କରୁଛି ଶୁଣ । 'ଶୁଣ···ସ୍ୱାମୀଜୀ କ'ଣ କରୁଛନ୍ତି ?'

'ବାବୁ, ଭଗବାନଙ୍କୁ ସ୍ତୁତି କରୁଛି । ତୁମ ସହିତ ଦେବପ୍ରିୟା ତ ଅଛନ୍ତି !

ଯାନ ଆହୁରି ଉପରକୁ ଗଲା । ପୃଥିବୀ ପୃଷ୍ଠରୁ ଚନ୍ଦ୍ରର ଆକାର ଯେପରି ଦେଖାଯାଏ, ସେଠାରୁ ନକ୍ଷତ୍ରଗୁଡ଼ିକର ଆକାର ସେହିଭଳି ଦେଖାଗଲା । ମହେନ୍ଦ୍ର ବୀଣା ଉଠାଇ କହିଲେ,

ପ୍ରିୟେ, ତୁମର ମଧୁର ଗୀତ ଶୁଣିବାକୁ ଇଚ୍ଛା ହେଉଛି । ତୁମେ ଯେଉଁ ବେଳେ ଯେଉଁ ଗୀତଟି ଗାଅ, ସେଇଟି ବୋଲ ।

ଦେବପ୍ରିୟା ସ୍ୱାମୀଙ୍କର କଥା ଟାଳି ପାରିଲେ ନାହିଁ । ତାଙ୍କୁ ଯେପରି ଜଣାପଡ଼ିଲା, ଏହା ସ୍ୱାମୀଙ୍କର ଅନ୍ତିମ ଆଦେଶ । ଦେବପ୍ରିୟା ଗୀତଟି ଗାଇଲେ—

ପ୍ରେମ, କରୁଣା ଏବଂ ନୈରାଶ୍ୟପୂର୍ଣ୍ଣ ଗୀତଟି ଶୁଣି ମହେନ୍ଦ୍ରଙ୍କ ଆଖିରୁ ଅଶ୍ରୁଧାରା ନିର୍ଗତ ହେଲା । ବିୟୋଗ ପୀଡ଼ିତ ହୃଦୟ ତାଙ୍କର ଏ ସ୍ୱର ଦ୍ୱାରା ଆଘାତ ପାଇଲା । ସହସା ତାଙ୍କର ମନ ପ୍ରବଳ ଆବେଗରେ ଆନ୍ଦୋଳିତ ହେଲା । ଭାବିଲେ—ଏ ଉତ୍ତମ କେତେ ଦିନ ଥାଉ ! ଏ ଜୀବନ ପ୍ରତି ଭରସା ବା କ'ଣ ! ଏ ଚିରସଂଚିତ ଅଭିଳାଷ କ'ଣ ଧୂଳିସାତ୍ ହୋଇଯିବ !

ମହେନ୍ଦ୍ର ଦେବପ୍ରିୟାଙ୍କର ସୁକୋମଳ ହାତକୁ ଧରି କହିଲେ—ପ୍ରିୟେ, ଅନନ୍ତ ବିୟୋଗ ଅପେକ୍ଷା ଅନନ୍ତ ବିଶ୍ରାମ ବରଂ ଭଲ ।

ଦେବପ୍ରିୟାଙ୍କ ହାତରୁ ବୀଣା ଖସି ପଡ଼ିଲା । ସେ ଦେଖିଲେ ମହେନ୍ଦ୍ରଙ୍କର କାମପ୍ରଦୀପ୍ତ ଅଧର ତାଙ୍କ ମୁଖ ପାଖକୁ ଆସିଯାଇଛି, ହାତ ଆଲିଙ୍ଗନ କରିବାକୁ ଖୋଲିଯାଇଛି । ଦେବପ୍ରିୟା ମୁହୂର୍ତ୍ତିକ ପାଇଁ—କେବଳ ଏକ ମୁହୂର୍ତ୍ତିକ ପାଇଁ ସବୁ କିଛି ଭୁଲିଗଲେ । ତାଙ୍କର ଦୁଇବାହୁ ମହେନ୍ଦ୍ରଙ୍କ ଗଳାରେ ଲମ୍ବିଗଲା ।

ହଠାତ୍ ଏକ ପ୍ରକାଣ୍ଡ ଶବ୍ଦ ହେଲା । ଦେବପ୍ରିୟା ଚମକି ପଡ଼ିଲେ । ସେ ଅନୁଭବ କଲେ—ଯାନଟା ଖୁବ୍ ଜୋର୍‌ରେ ତଳକୁ ଖସି ପଡ଼ୁଛି । ସେ ମହେନ୍ଦ୍ରଙ୍କ କର-ପାଶରୁ ନିଜକୁ ମୁକ୍ତ କରି କହିଲେ—ପ୍ରାଣନାଥ, ଯାନ ତଳକୁ ଖସି ପଡ଼ୁଛି ।

ମହେନ୍ଦ୍ର କିଛି ଉତ୍ତର ଦେଲେ ନାହିଁ ।

ଦେବପ୍ରିୟା ପୁଣି କହିଲେ—ଯାନକୁ ଅଟକାନ୍ତୁ, ପଡ଼ିଯାଉଛି ।

ମହେନ୍ଦ୍ର ବ୍ୟଥିତ କଣ୍ଠରେ କହିଲେ—ପ୍ରିୟେ, ଆଉ ଏହାକୁ ରୋକାଯାଇ ପାରିବ ନାହିଁ । ପ୍ରିୟେ, ଏହା ମୋ ଜୀବନର ଅନ୍ତିମ ସମୟ । ତୁମର ଭୟ କରିବାର କିଛି ନାହିଁ । ଏ ଯାନ ଭୂମିରେ ପିଟି ହେବ ନାହିଁ । ତୁମେ ହର୍ଷପୁର ଯାଇ ରାଜ୍ୟ ଅଧିକାର କରିବ । ମୁଁ ପୁଣି ଆସିବି । ଆମେ ପୁଣି ମିଶିବା ।

ଏହା କହିବା ପରେ ପରେ ମହେନ୍ଦ୍ର ତଳକୁ ଖସି ପଡ଼ିଲେ । ଦେବପ୍ରିୟା ତାଙ୍କୁ ଧରି ରଖିବାକୁ ଚେଷ୍ଟା କରି ବିଫଳ ହେଲେ । ସେ କେବଳ ଠିଆ ହୋଇ କାନ୍ଦିବାକୁ ଲାଗିଲେ । ଯାନ ତଳକୁ ତଳକୁ ଖସି ଆସୁଥିଲା ।

( ୩୪ )

ଚକ୍ରଧରଙ୍କୁ ହଠାତ୍ ନିଦ ନାହିଁ । ଦୁର୍ବଳ ବ୍ୟକ୍ତି ଉପରକୁ ହାତ ଉଠାଇବା—ଜୀବନର ଇଏ ପ୍ରଥମ ଘଟଣା । ହାୟ ! ମୋର ଏ କାୟା ପରିବର୍ତ୍ତନ ! ନୈତିକ ଅଧୋପତନ ! ମୋ ଉପରେ ଇଏ ପ୍ରଭୁତ୍ୱର ଯାଦୁ ! ଏହି ବାତାବରଣରେ ଚିତ୍ତ ମନୋବୃତ୍ତିକୁ ସ୍ଥିର ରଖିବା ଅସମ୍ଭବ । ଧନରେ ଧର୍ମ, ଦୟା, ଉଦାରତା ସମ୍ଭବପର ଏବଂ ଗର୍ବ ବି ସମ୍ଭବପର ।

ଚକ୍ରଧର ଏପରି ଚିନ୍ତାମଗ୍ନ ଥିବାବେଳେ ଅହଲ୍ୟା ସଜ୍ଜିତ ଶୟନାଗାରର ମଖମଲ ଗଦି ଉପରେ ଅଳସ ଭଙ୍ଗୁଥିଲା । କାନ୍ଥରେ ଏକ ବିରାଟ ଦର୍ପଣ । ସେଥିରେ ନିଜର ରୂପ ଦେଖି ମୁଗ୍ଧ ହୋଇ ଯାଇଥିଲା । ସେହିସା ଶଙ୍ଖଧର ତା' ପାଖରେ ଆସି ଠିଆ ହେଲା । ଅହଲ୍ୟା ହାତ ବଢ଼ାଇ କହିଲା—ବାପାରେ, ମୋ କୋଳକୁ ଆ ।

ଶଙ୍ଖଧର ତା' ଖେଳଣା ଘୋଡ଼ାଟା ଖୋଜୁଥିଲା—କହିଲା—ମୋଲ ଘୋଲା···

ଅହଲ୍ୟା—ମୁଁ ତୋର ମା' ପରା—ଆ ।

ଶଙ୍ଖଧର—ମୋର ମା' ଲାନୀ ।

ଅହଲ୍ୟା—ମୁଁ କଣ ରାଣୀ ନୁହଁ ?

ଶଙ୍ଖଧର କୁତୁହଳରେ ଦେଖି କହିଲା—ତୁମେ ଲାନୀ ନୁହଁ, ମା ଲାନୀ ।

'ତୁମେ ଲାନୀ ମା' ନୁହଁ, ତୁମେ ଲାନୀ ମା' ନୁହଁ । କହି କହି ଶଙ୍ଖଧର ଦୌଡ଼ି ପଳାଇ ଗଲା । ଅହଲ୍ୟା ଅନ୍ୟ ପ୍ରକାର ବୁଝିଲା । ଇଏ ମନୋରମାର କୁଟମନ୍ତ୍ର । ସେ ମୋର ରାଜମାତା ଗୌରବ ଛଡ଼େଇ ନେବା ଚାହେଁ । ସେ ବାଳକକୁ ଧରି ଆଣିବାକୁ ଉଠୁଥିବା ବେଳେ ଚକ୍ରଧର ଆସି ପହଞ୍ଚିଲେ । ତାଙ୍କୁ ଦେଖି କ୍ରୁଦ୍ଧ ହୋଇ ଚଡ଼ା ଗଳାରେ କହିଲା—ରାତିରେ ତ ଆଉ ଆପଣଙ୍କର ଦେଖା ମିଳିଲା ନାହିଁ ।

ଚକ୍ରଧର—ତମେ କାହିଁକି ଜାଣିବ ! ଅଧଘଣ୍ଟେକାଳ ବସି ରହିଲି । ତମେ ଘୁଙ୍ଗୁଡ଼ି ମାରିବାରେ ବ୍ୟସ୍ତ । ନ ଉଠିବାରୁ ଚାଲିଗଲି । ଏଠାକୁ ଆସି ଶୋଇବାରେ ଖୁବ୍ ଦକ୍ଷ ହୋଇଯାଇଛ ।

ଅହଲ୍ୟା—ବାହାନା କାଢ଼ୁଛ ! ତୁମେ ରାତିରେ ଏଠାକୁ ଆସି ନାହଁ । ବାରଟା ଯାଏଁ ମୁଁ ଚାହିଁଛି । ତୁମେ ଚୁଲବୁଲ କରିବାରେ ଦକ୍ଷ ହୋଇ ଗଲଣି । ଏବେ ତ ମୋର ଅନ୍ୟ ଏକ ଚିନ୍ତା ।

ଚକ୍ରଧର—ଏ ପର୍ଯ୍ୟନ୍ତ ଯେତେ ଚିନ୍ତା ଅଛି ସେଥିରେ ତ ତୁମର ନିଦ ଏପରି, ଆଉ ଏକ ଚିନ୍ତା ହେଲେ ଆଖି ବୋଧେ ଆଉ ଖୋଲିବନାହିଁ ।

ଅହଲ୍ୟା—ପ୍ରକୃତରେ କ'ଣ ମୁଁ ବେଶି ଶୋଉଛି ।

ଚକ୍ରଧର—ତୁମର କ'ଣ ସନ୍ଦେହ ହେଉଛି ? ଘଡ଼ି ଦେଖିଲ । ଆଠଟା ବାଜିଲଣି । ତୁମେ ପାଞ୍ଚଟାରୁ ଉଠି ଘର କାମ କରୁଥିଲ ନା !

ଅହଲ୍ୟା—ସେତେବେଳ କଥା ଛାଡ଼ । ଏବେ ଏତେ ସକାଳୁ ଉଠିବା ଦରକାର କ'ଣ ?

ଚକ୍ରଧର—ତେବେ କ'ଣ ସାରା ଜୀବନ ଏଠି ଅତିଥି ହୋଇ ରହିବ ?

ଅହଲ୍ୟା ବିସ୍ମିତ ହୋଇ କହିଲ—କହିବାର ଉଦ୍ଦେଶ୍ୟ ?

ଚକ୍ରଧର—ଉଦ୍ଦେଶ୍ୟ—ଆମେ ଏଠାକୁ ଅନେକ ଦିନ ହେଲା ଆସିଲେଣି । ଏବେ ନିଜ ଘରକୁ ଯିବା ଉଚିତ ।

ଅହଲ୍ୟା—ନିଜ ଘର କେଉଁଠି ?

ଚକ୍ରଧର—ଯେଉଁଠି ନିଜେ ରୋଜଗାର କରି ଖାଇବା, ସେଇଠି ନିଜର ଘର ।

ଅହଲ୍ୟା—ଲଲ୍ଲୁ କୁଉଠି ରହିବ ?

ଚକ୍ରଧର—ଲଲ୍ଲୁକୁ ଏଇଠି ଛାଡ଼ି ଦେଇପାର । ସେ ରାଣୀ ମନୋରମାଙ୍କୁ ଖୁବ୍ ଆଦର ଗଲାଣି ।

ଅହଲ୍ୟା—ବୁଝିଗଲ । ଏଇଥିପାଇଁ ରାଣୀଜୀ ତାକୁ ଏତେ ଭଲ ପାଉଛନ୍ତି । ଏ କଥା ତୁମେ ନିଜେ ଚିନ୍ତାରୁ କହୁଛ ନା ରାଣୀଜୀ କିଛି କହିଛନ୍ତି ?

ଚକ୍ରଧର—ସେ କ'ଣ କହିବେ ! ମୁଁ ନିଜେ ଏଠାରେ ରହିବାକୁ ଚାହେଁନା । ଶ୍ୱଶୁର ଘର ଭାତ ବହୁତ ଖିଆ ହେଲାଣି । ଖାଇବାକୁ ତ ଖୁବ୍ ମିଠା ଲାଗେ ଏବଂ ତହିଁରେ ବୁଦ୍ଧି ଭ୍ରଷ୍ଟ ବି ହୋଇଯାଏ । ଅନ୍ୟମାନଙ୍କର ହଜମ ହୋଇପାରେ, କିନ୍ତୁ ମୋର ହଜମ ହଉନାହିଁ । ଏତେ ଦିନ ମଧ୍ୟରେ ଆମେ ଉଭୟେ କ'ଣ ନାଇଁ କ'ଣ ହୋଇଗଲେଣି । ଏଠାରେ ଆଉ କିଛି ଦିନ ରହିଲେ ମୁଁ କୁଆଡ଼କ ହେବିନାହିଁ । କାଲି ମୁଁ ଜଣେ ଗରିବ କୃଷକକୁ ମାରମାରି ଅଧାମରା କରିଦେଲି । ତାର ଭୁଲ ହଉଚି—ସେ ମୋ ପାଖରେ ଅସିଲାନାହିଁ ।

ଅହଲ୍ୟା—ଇଏ କ'ଣ ଗୋଟେ କଥା ? ମଫସଲିଆଙ୍କ ମୂର୍ଖତା ପ୍ରତି ସମୟେ ସମୟେ କ୍ରୋଧ ତ ଆସି ଯାଉଛି । ମୁଁ ତ ଏଠି ଦାସୀଗୁଡ଼ାଙ୍କ ଉପରେ ପାଟିତୁଣ୍ଡ କରୁଛି । କାଇଁ ମୋର ତ ମନ ହଉ ନାହିଁ ଘର ଛାଡ଼ି ଚାଲିଯିବାକୁ ।

ଚକ୍ରଧର—ତୁମର ଘର, ତୁମେ ରହିପାର । ମୁଁ କିନ୍ତୁ ଯିବାକୁ ସ୍ଥିର କରି ସାରିଛି । ଅହଲ୍ୟା ଅଭିମାନରେ ମୁଣ୍ଡଟେକି କହିଲ—ତୁମେ ନ ରହିଲେ ମୁଁ ଏଠି ରହିବା କ'ଣ ଦରକାର ! ଚାଲ । ହଁ, ବାବାଙ୍କୁ ଟିକିଏ ପଚାର । ତାଙ୍କୁ ନ ପଚାରି ଯିବାଟା ଉଚିତ ହବନାହିଁ । କିନ୍ତୁ ଗୋଟେ କଥା, ଆମେ ଏଠାରୁ ଯିବା ପରେ ପରେ ଏଠାର ସବୁ କାରବାର ବିଗିଡ଼ି ଯିବ ।

ରାଣୀ ମନୋରମାଙ୍କୁ ଦେଖୁଛନ୍ତି ତ । ଟଙ୍କା ପଇସାକୁ ଗୋଡ଼ ମାଟି ବୋଲି ଭାବୁଛନ୍ତି । ଅଳ୍ପଦିନ ମଧ୍ୟରେ ରାଜ୍ୟ ଦେବାଳିଆ ହେଇଯିବ । ଦିନେ ନା ଦିନେ ମୋ ଉପରେ ପଡ଼ିବ ।

ଚକ୍ରଧର ବହୁ ସମୟ ଯାଏଁ ଚିନ୍ତା କରି ଶେଷରେ ଠିକ୍ କଲେ, କାହାକୁ କିଛି ନ କହି ଚାଲିଯିବାକୁ ହେବ । ଏହା ବ୍ୟତୀତ ଅନ୍ୟ ଉପାୟ ନାହିଁ । ଏଠାକୁ ଅଯଥା ଅହଲ୍ୟାକୁ ନେଇ ଆସିଲି । ବର୍ତ୍ତମାନ ସ୍ତ୍ରୀ ଓ ପୁତ୍ର ଉଭୟଙ୍କୁ ତ୍ୟାଗ କରିବାକୁ ପଡ଼ିବ ।

ମନୋରମା ଏହି ସମୟରେ ଶଙ୍ଖଧରକୁ ଧରି ବଗିଚାକୁ ଏହିବାଟେ ଯାଉଥିଲା । ଚକ୍ରଧରଙ୍କୁ ଦେଖି ଠିଆ ହେଲା । ବୋଧେ ସେ ଦେଖିବାକୁ ଚାହୁଁଥିଲା—ଅହଲ୍ୟା ଅଛି କି ନାହିଁ । ଅହଲ୍ୟା ଥିଲେ ତାଙ୍କ ସଙ୍ଗେ ଚାଲିଯିବ । କିନ୍ତୁ ଅହଲ୍ୟା ସେତେବେଳକୁ ସେଠାରେ ନ ଥିଲା । ଦୁଆର ମୁହଁକୁ ଆସି କହିଲା—ବାବୁଜୀ, ରାତିରେ ଶୋଇନ କି ! ଆଖି ଲାଲ ଦିଶୁଛି !

ଚକ୍ରଧର—ନିଦ ହେଲାନାହିଁ । ଦୋଦୁଲ୍ୟମାନ ଅବସ୍ଥାରେ ପଡ଼ିଛି—ଯିବି ନା ରହିବି / ଶେଷରେ ସ୍ଥିର କଲି, ଏଠାରେ ଆଉ ରହିଲେ ମୋର ଜୀବନ ନଷ୍ଟ ହୋଇଯିବ ।

ମନୋରମା—ଲଲ୍ଲୁ, ଇଏ କିଏ କହିଲୁ !

ଶଙ୍ଖଧର ଲଜକୁଲ ଲଜରା ହୋଇ କହିଲା—ବାପୁଜୀ ।

ମନୋରମା—ତାଙ୍କ ସାଥିରେ ଯିବୁ ?

ବାଳକ ଶାଢ଼ିକାନିରେ ମୁହଁ ଲୁଚାଇ କହିଲା—ଲକ୍ଷ୍ମୀ ମା' ସାଥିରେ ଯିବି ।

ଚକ୍ରଧର ହସି ହସି କହିଲେ—ରାଣୀମା'ଙ୍କୁ ଛାଡ଼ି ଆଉ କାହା ହାଥରେ ସେ ଯିବନାହିଁ !

ମନୋରମା—ଫେରିବେ କେବେ ?

ଚକ୍ରଧର—କହି ହେବନାହିଁ । କିନ୍ତୁ ଖୁବ୍ ଶୀଘ୍ର ଫେରିବା ସମ୍ଭବ ନୁହେଁ । ଏହି ପ୍ରଲୋଭନରୁ ଉଦ୍ଧାର ପାଇବା ପାଇଁ ମୋତେ ଅନେକ ଦୂର ଯିବାକୁ ପଡ଼ିବ ।

ରାଣୀ ହସି ହସି କହିଲେ—ମୋତେ ମଧ୍ୟ ସାଙ୍ଗରେ ନେଇ ଚାଲନ୍ତୁ ।

ଏହା କହିବା ପରେ ରାଣୀଙ୍କର ଆଖି ସଜଳ ହୋଇଗଲା ।

ଚକ୍ରଧର ଗମ୍ଭୀର ହୋଇ କହିଲେ—ଏହା ତ ହୋଇ ନ ପାରେ ରାଣୀ ମନୋରମା ! ଯେତେବେଳେ ତୁମେ ବାଳିକା ଥିଲ, ସେତେବେଳେ ତୁମେ ଥିଲ ମୋ ନିକଟରେ ଦେବୀର ପ୍ରତିମା ଏବଂ ଏବେ ମଧ୍ୟ ଦେବୀପ୍ରତିମା ।

ମନୋରମା—କଥା ବୁଲାନ୍ତୁନି ବାବୁଜୀ ! ଆପଣ ମୋତେ ସଦାବେଳେ ଠକି ଠକି ଆସିଛନ୍ତି । ଏବେ ମଧ୍ୟ ସେଇ ନୀତି ଧରିଛନ୍ତି । ସତ କହୁଛି—ମୋତେ ନେଇ ଚାଲନ୍ତୁ । ଆଚ୍ଛା, ମୁଁ ରାଜା ସାହେବଙ୍କୁ ରାଜି କରେଇ ଦଉଛି । ତା'ହେଲେ ତ ଆପଣଙ୍କର ଆଉ କିଛି ଆପତ୍ତି ନ ଥିବ ।

ଚନ୍ଦ୍ରଧର—ମନୋରମେ, ଥଟ୍ଟା କରୁଛ ନା, ଅନ୍ତରରୁ କହୁଛ ?

ମନୋରମା—ଅନ୍ତରରୁ କହୁଛି—ଥଟ୍ଟା ନୁହେଁ ।

ଚନ୍ଦ୍ରଧର—ମୁଁ ଆପଣଙ୍କୁ ସାଙ୍ଗରେ ନେବ ନାହିଁ ।

ମନୋରମା—କାହିଁକି ?

ଚନ୍ଦ୍ରଧର—ବହୁତ କାହିଁକିର ଅର୍ଥ ନ କହିଲେ ବି ସ୍ପଷ୍ଟ ହୋଇଯାଏ ।

ମନୋରମା—ତେବେ ଆପଣ ଏବେ ମଧ୍ୟ ମୋତେ ବୁଝି ନାହାଁନ୍ତି । ମୋର ମଧ୍ୟ ଅନେକ ଧନରୁ ସେବା କରିବାର ଅଭିଳାଷ ଅଛି । ମୁଁ ଭୋଗ ବିଳାସ କରିବା ପାଇଁ ଆସି ନ ଥିଲି । ଈଶ୍ୱରଙ୍କୁ ସାକ୍ଷୀ ରଖି କହୁଛି—ଭୋଗ ବିଳାସରେ କେବେ ମୁଁ ଲିପ୍ତ ହୋଇନାହିଁ । ଧନକୁ ମୁଁ ଭଲ ପାଏ—କେବଳ ସେବା ପାଇଁ ଏବଂ ସେବକମାନଙ୍କୁ ସାହାଯ୍ୟ କରିବା ପାଇଁ । ସତ କହୁଛି—ପୁରୁଷ ଯେତେ ବିଦ୍ୱାନ ଏବଂ ଅଭିଜ୍ଞ ହୁଅନ୍ତୁ ନା କାହିଁକି—ନାରୀଙ୍କୁ ବୁଝିବାର ସାମର୍ଥ୍ୟ ସେମାନଙ୍କର ନ ଥାଏ । ଗ୍ରନ୍ଥ ପଢ଼ନ୍ତୁ, ନ ଜାଣନ୍ତୁ । ଅହଲ୍ୟା ତପସ୍ୟା କରିଥିଲି ।

ଚନ୍ଦ୍ରଧର—ସେ ତ ସାଥିରେ ଯିବାକୁ କହୁଛି ।

ମନୋରମା—କିଏ ! ଅହଲ୍ୟା ! ସେ ଆପଣଙ୍କ ସହିତ ଯାଇପାରିବ ନାହିଁ । ଆପଣ ନେଲେ ମଧ୍ୟ ଦିନକିଦିନ ମଧ୍ୟରେ ଏଠାରେ ପହଞ୍ଚିବାକୁ ପଡ଼ିବ । ମୁଁ ସେତେବେଳେ ଯାହା ଥିଲି, ଏବେ ମଧ୍ୟ ସେଇଆ । କିନ୍ତୁ ସେ ନିଜକୁ ଭୁଲି ଯାଉଛି ।

ଏହା କହି ସେ ଶଙ୍ଖଧରଙ୍କୁ ଧରି ଦଉଡ଼ି ଆଡ଼କୁ ଧୀର ମନ୍ଥର ଗତିରେ ଚାଲିଗଲା । ଚନ୍ଦ୍ରଧର ଠିଆ ହୋଇ ଭାବିଲେ—ମୁଁ କ'ଣ ପ୍ରକୃତରେ ମନୋରମାକୁ ବୁଝି ପାରିନାହିଁ ! ତାକୁ ବିଳାସିନୀ ବୋଲି ଭାବିବା ମୋର ନିଶ୍ଚୟ ଭୁଲ । ନାରୀମାନଙ୍କ ଅନ୍ତରରେ କ'ଣ ଉଚ୍ଚ ଏବଂ ପବିତ୍ର ଭାବ ନାହିଁ ! ଆମେ ସେମାନଙ୍କୁ କାମିନୀ, ରମଣୀ, ସୁନ୍ଦରୀ ଆଦି ବିଳାସସୂଚକ ନାମ ଦେଇ ବାସ୍ତବରେ ସେମାନଙ୍କଠାରେ ଥିବା ଏକତା, ତ୍ୟାଗକୁ ଭୁଲିଯାଉଛୁ । ଯଦି ସବୁ ପୁରୁଷ ବାସନାପ୍ରିୟ ନୁହନ୍ତି, ତେବେ ସବୁ ସ୍ତ୍ରୀ କାହିଁକି ବାସନାପ୍ରିୟ ହେବେ ।

ଚନ୍ଦ୍ରଧର କିଛି ସମୟ ଯାଏଁ ସେଠାରେ ଠିଆ ହୋଇ ବାହାରକୁ ଚାଲିଗଲେ । କୌଣସି କାମରେ ମନ ଲାଗିଲା ନାହିଁ । ଯଶୋଦାନନ୍ଦନଙ୍କ ଉପରେ ରାଗ ଆସିଲା । ମୋ କାନ୍ଧରେ ଏଥିରୁ ଗୋଟେ ବାନ୍ଧି କି ବିପଦରେ ପକେଇଲେ । ମୁଁ ରାଜା ଝିଅକୁ ବିବାହ କରିବାକୁ ଆଦୌ ଚାହୁଁ ନଥିଲି । ଧନୀକୁଳର କନ୍ୟାଙ୍କୁ ମୋର ଭାରି ଭୟ । ବିଧାତା ମୋର ସହ ଏ ଖେଳ ଖେଳିଲ !

ସନ୍ଧ୍ୟାରେ ରାଜା ସାହେବଙ୍କୁ ପଚାରିବାକୁ ଗଲେ । ରାଜାସାହେବ ଅଶ୍ରୁପୂର୍ଣ୍ଣ ଚକ୍ଷୁରେ କହିଲେ—ବାବୁଜୀ, ଆପଣ ବଡ଼ ନିଦଆ । ମୋ କଥା ବା କାହିଁକି ଶୁଣିବେ ! କିନ୍ତୁ ମୁଁ କହିବି—ଅହଲ୍ୟା କାନ୍ଦି କାନ୍ଦି ମରିଯିବ ଏବଂ ଆପଣଙ୍କୁ ଖୁବ୍ ଶୀଘ୍ର ଫେରିଆସିବାକୁ ପଡ଼ିବ ।

ଯଦି ଆପଣ ତାକୁ ସଙ୍ଗରେ ନେଇଯିବେ, ତେବେ ଶଙ୍ଖଧର ମଧ ଯିବ ଏବଂ ମୋର ସ୍ୱର୍ଣ୍ଣ ଲଙ୍କା ପୋଡ଼ି ଛାରଖାର ହୋଇଯିବ । ଆପଣଙ୍କୁ ଏଠାରେ କି କଷ୍ଟ ହଉଚି ?

ଚକ୍ରଧର ଗୋଟାଏ କଥାକୁ ବାରମ୍ବାର ଦୋହରେଇବା ଅଗ୍ରୀପ ମନେକଲେ । ଟିକିଏ ବିରକ୍ତି ପ୍ରକାଶ କରି କହିଲେ—ଏଠି ମୋର କିଛି କଷ୍ଟ ନାହିଁ ବୋଲି ତ ଯାଉଛି । ବିଳାସରେ ପଡ଼ି ଜୀବନକୁ ନଷ୍ଟ କରିବା ମୁଁ ଚାହେଁନା ।

ରାଜା—ଏ ରାଜ୍ୟ କିଏ ସମ୍ଭାଳିବ ?

ଚକ୍ରଧର—ରାଜ୍ୟ ସମ୍ଭାଳିବ ! ମୋ ଜୀବନର ଆଦର୍ଶ ନୁହେଁ । ପୁଣି ଆପଣ ତ ଅଛନ୍ତି ।

ରାଜା—ତୁମେ ଭାବୁଚ ମୁଁ ବହୁତ ଦିନ ବଞ୍ଚିବି ବୋଲି । ସୁଖୀବାକ୍ତି ବେଶିଦିନ ବଞ୍ଚିପାରେ ନାହିଁ, ବାପା ! ଏ ଦଣ୍ଡ ମୋର ମୃତ୍ୟୁ ସାମଗ୍ରୀ । ମୁଁ ମିଛ କହୁନାହିଁ । ମୋର ଦିନ ନିକଟେଇ ଗଲାଣି ବୋଲି ମୁଁ ଅନୁଭବ କରୁଛି । ଶଙ୍ଖଧର ମୋର ଶତ୍ରୁ ରୂପେ ଆସିଛି । ହେଇ ଦେଖ ତରବାରି ଧରି ଦୌଡ଼ୁଛି । କିରେ ଶଙ୍ଖଧର, ତରବାରି କାହିଁକି ଆଣିଛୁ ?

ଶଙ୍ଖଧର—ତମକୁ ମାରିବି ।

ରାଜା—କିରେ ବାବା, ମୁଁ ତୋ'ର କ'ଣ କ୍ଷତି କଲି ?

ଶଙ୍ଖଧର—ମାଆ ଲଛି କାନ୍ଦୁଚି, ତମେ କାହିଁକି ମାରିଲ !

ରାଜା—ହେଇ ଦେଖ, ଗୋଟେ ନୁଆ ଅପରାଧ ମୋ ଉପରେ ଲଦି ଦେଲା । ଚାଲ୍, ଦେଖିବା, ଲଛି ମାଆକୁ କିଏ ମାରିଲା । କ'ଣ ସତରେ କାନ୍ଦୁଛନ୍ତି ?

ଶଙ୍ଖଧର—ଭଉଉବେଳୁ କାନ୍ଦୁଛନ୍ତି ।

ମନୋରମା କାନ୍ଦିବା ଖବର ଶୁଣି ରାଜା ବ୍ୟାକୁଳ ହୋଇ ଉଠିଲେ । ଭିତରକୁ ଯାଇ ଦେଖିଲେ ପ୍ରକୃତ କଥା । ପଦ୍ମଫୁଲରୁ କାକର ବିନ୍ଦୁ ଖସି ପଡ଼ୁଛି । ଆତୁର ହୋଇ ପଚାରିଲେ—କଥା କ'ଣ ନୋରା ! ଦେହ କିପରି ଅଛି ?

ମନୋରମା ଲୁହ ପୋଛି କହିଲା—ଭଲ ଅଛି ତ ।

ରାଜା—ତେବେ ଆଖି କାହିଁକି ଲାଲ ଦିଶୁଛି ?

ମନୋରମା—ଅହଲ୍ୟା ବାବୁଜୀ ସଙ୍ଗେ ଯାଉଛି । ଲଲୁକୁ ମଧ ନେବେ ।

ରାଜା—ଏ କଥା ତୁମକୁ କିଏ କହିଲା ?

ମନୋରମା—ଅହଲ୍ୟା ।

ରାଜା—ଅହଲ୍ୟା ଯାଇ ପାରିବ ନାହିଁ ।

ମନୋରମା—ଆପଣ ବାବୁଜୀଙ୍କୁ ଟିକିଏ ବୁଝେଇ ଦଉନାହାନ୍ତି କାହିଁକି ?

ରାଜା—ମୁଁ ବୁଝେଇଲେ ସେ ଶୁଣିବେନି । କେହି ବି ବୁଝେଇଲେ ମାନିବେ ନାହିଁ ।

ମନୋରମା—ତା' ହେଲେ···

ରାଜା—ଯିବେ ଯଦି ଯାଆନ୍ତୁ । କିନ୍ତୁ ଖୁବ୍ କମ୍ ଦିନ ମଧ୍ୟରେ ଫେରିବାକୁ ବାଧ୍ୟ ହେବେ ।

ଆଜି ଚକ୍ରଧରଙ୍କୁ ଖାଇବା, ପିଇବା, ଶୋଇବାରେ ରୁଚି ନାହିଁ । ଅହଲ୍ୟା ଆଖିରୁ ଆଜି ନିଦ କୁଆଡ଼େ ଚାଲିଯାଇଛି । ଅଧରାତି ଯାଏଁ ଏଣୁ ତେଣୁ ଗପ କରିବାକୁ ଲାଗିଲା । ଶେଷକୁ ଚକ୍ରଧର କହିଲେ—ରାତି ବହୁତ ହେଲାଣି । ମୋତେ ଶୋଇବାକୁ ଦିଅ । ଗରମଦିନ । ଦୁଆର ଖୋଲି କରି ପବନ ଶୁଅନ୍ତୁ । ଚକ୍ରଧର ଗୃହର ଦେହରେ ପକାଇ ଶୋଇବାର ଅଭିନୟ କଲେ । ଅହଲ୍ୟା କିଛି ସମୟ ପରେ ଦେଖିଲା, ନିଦ ଆସିଗଲାଣି । ତେଣୁ ସେ ଉଠି ଦୁଆର ଖିଲିକି ଦେଇ ସୁଇଚ୍ ଅଫ୍ କରି ଶୋଇଲା । ଅଳ୍ପ ସମୟ ପରେ ତାକୁ ନିଦ ହୋଇଗଲା । ଚକ୍ରଧର ଦେଖିଲେ ଅହଲ୍ୟାର ଘୁଙ୍ଗୁଡ଼ି ଆରମ୍ଭ ହୋଇଗଲା । ସେ ଧୀରେ ଧୀରେ ଉଠିଲେ । ଅନ୍ଧାର । ଦୁଆରଟା କୁଆଡ଼େ ବହୁ ସମୟ ଯାଏଁ ଖୋଜିଖୋଜି ପାଇଲେ ନାହିଁ । ପୁଣି ନିଜ ଖଟପାଖକୁ ଆସି ଦୁଆର ସିଧା ଯିବେ ବୋଲି ମନ କଲେ । କିନ୍ତୁ ଖଟ ବି ମିଳୁନାହିଁ । ବହୁ ଚେଷ୍ଟା ପରେ ଦୁଆର ମିଳିଗଲା । ଧୀରେ କିଳଣୀ ଖୋଲି ଦୁଆର ମେଲେଇଲେ । ଦୁଆରଟା ହଠାତ୍ ଯେମିତି ଆଜି ଶବ୍ଦ କରିବାକୁ ଜିଦ୍ଧି ବସିଥିଲା । କେଁ କେଁ ଶବ୍ଦ ହେବାରୁ ଅହଲ୍ୟାକୁ ଛନକା ଲାଗିଲା । ଉଠିପଡ଼ି ଖଟ ଦଉଣ୍ଡିଲା । ନାହାନ୍ତି । ଉଠି ବାହାରକୁ ଆସି ଦେଖିଲା, ଚକ୍ରଧର ଗଣ୍ଠିଲିପଞ୍ଚ ଧରି ମନୋରମା ଶୋଇଥିବା କୋଠରି ଆଡ଼େ ଯାଉଛନ୍ତି ।

ଚକ୍ରଧର ଭାବିଲେ—ଶଙ୍ଖଧରକୁ ଟିକିଏ ଝରକାବାଟେ ଗୃହିଁଦେଇ ଯିବେ । ସାରା ରାଜଭବନ ଗଭୀର ନିଦରେ ଶୋଇଛି । ପଛରୁ ଅହଲ୍ୟା ଡାକିଲା—କୁଆଡ଼େ ଯାଉଛ ? ଚକ୍ରଧର ଚମକିପଡ଼ି ଫେରିଲେ । କହିଲେ—ଅହଲ୍ୟା କ'ଣ ନିଦ ଭାଙ୍ଗିଗଲା ?

ଅହଲ୍ୟା—ମୁଁ କ'ଣ ଶୋଇଥିଲି ! ତୁମର ହାବଭାବ ଦେଖି ମୁଁ ଜାଣିଥିଲି, ତମେ ଆଜି ଚାଲି ଯିବ । କିନ୍ତୁ ମୁଁ କହି ଦଉଚି—ମୁଁ ସାଥିରେ ଯିବି ।

ଚକ୍ରଧର—ତୁମକୁ ମୋ ସହ ଗଲେ କଷ୍ଟ ହେବ । ମୁଁ ତ ଶୀଘ୍ର ଫେରି ଆସିବି ।

ଅହଲ୍ୟା--ପ୍ରାଣେଶ, ମୁଁ ତୁମ ସହିତ ବହୁତ କଷ୍ଟ ସହିଛି । ଏବେ କି କଷ୍ଟ ! ମୁଁ ଅନାଥିନୀ ଥିଲି । ତୁମେ ମୋତେ ଉଦ୍ଧାର କଲ । ତାହା କ'ଣ ମୁଁ ଭୁଲିଯିବି ! ମୁଁ ବିଳାସର ଦାସୀ ନୁହେଁ । ଭାବିଥିଲି—ଈଶ୍ୱର ତ ସୁଖ ଦେଇଛନ୍ତି, ନ ଭୋଗିବି କାହିଁକି !

ଚକ୍ରଧର—ଶଙ୍ଖଧର ?

ଅହଲ୍ୟା—ତାକୁ ସାଙ୍ଗରେ ନେବା ।

ଚକ୍ରଧର—ରାଣୀ ଯିବାକୁ ଦେବେନାହିଁ । ରାଜା ସାହେବଙ୍କର ଅବସ୍ଥା କ'ଣ ହେବ !

ଅହଲ୍ୟା—ତାହା ତ ତୁମେ ଜାଣିଛ, ମୋତେ କ'ଣ କହୁଛ ?

ଚକ୍ରଧର—ତା ହେଲେ ଯାଉନଥା, ତୁମେ ମୋତେ ଯିବାକୁ ଦବନାହିଁ ।

ଘର ଅଧରେ ଏ ଗହଳ ଶୁଣି ମନୋରମା ଉଠିପଡ଼ିଲା । ସେ ଏ ଯାଏଁ ଶୋଇ ନ ଥିଲା । ଦରଓ୍ୱାନକୁ ମଧ୍ୟ ସୂଚନା ଦେଇଥିଲା । ଅହଲ୍ୟାର ଶବ୍ଦ ତା କାନରେ ପଡ଼ିଗଲା । ସେ ଆସି ଦେଖିଲା—ଚକ୍ରଧର ହତବୁଦ୍ଧି ହୋଇ ଠିଆ ହୋଇଛନ୍ତି । ସେ ଜାଣିଥିଲା, ଚକ୍ରଧରଙ୍କୁ ରୋକି ହେବ ନାହିଁ । ରାଜ୍ୟ, ଧନ ସମ୍ପତ୍ତିକୁ ସେ ତୃଣବତ୍ ଜ୍ଞାନ କରନ୍ତି । ସେ ବାହିଁ ତାଙ୍କର ସମ୍ପତ୍ତି । ଶଙ୍ଖଧରକୁ ମୁଁ ରଖିଦେଲେ ସେମାନଙ୍କ ମନରେ କେତେ କଷ୍ଟ ହେବ ! ସେ ଚକ୍ରଧରଙ୍କୁ ପୁତ୍ର ବଧୂର କଷ୍ଟ ଦେବନାହିଁ । ରାଜାସାହେବଙ୍କର ହାଲ କ'ଣ ହେବ । ସେ ଖିଆଲ ତା'ର ରହିଲନାହିଁ । ଆମ କହିଲା—ବାବୁଜୀ, ଅପଣ ମୋ କଥା ଭାବନ୍ତୁନାହିଁ । ଆପଣଙ୍କ ମନ ସେଠାରେ ସ୍ଥିର ରହିବନାହିଁ । ମୁଁ କ'ଣ ! ଯେମିତି ଥିଲି, ସେମିତି ରହିବି । ଆପଣ ପୁଅକୁ ନେଇ ଯାଆନ୍ତୁ । ହଁ, ଏତିକି କରିବେ, ସମୟେ ସମୟେ ମୋ ପାଖକୁ ଆଣିବେ । କିନ୍ତୁ ଏ ଘରରେ କାହିଁକି ! ଛିଅ କଣ ଘରେ ବଢ଼ାହୁଏ ! ଆଉ ଦି ଚାରିଦିନ ରହନ୍ତୁ । ମୋର ସ୍ନେହ ଶଙ୍ଖଧରକୁ ଆଉ ଟିକିଏ ଦିଅନ୍ତୁ ।

ଏହା କହି କହି ମନୋରମା କାନ୍ଦି ପକାଇଲା । ଚକ୍ରଧର ଗଦ୍‌ଗଦ୍ କଣ୍ଠରେ କହିଲେ—ସେ ଆପଣଙ୍କୁ ଛାଡ଼ି ମୋ ସାଥିରେ ଯିବ ତ ! ଆପଣଙ୍କୁ ନ ଦେଖିଲେ ତ ଦିନେ ହେଲେ ରହିପାରିବନାହିଁ ।

ମନୋରମା—ତା' ମୁଁ କିପରି କହିବି ? ପିତାମାତା ବାଳକକୁ ଯେପରି ସ୍ନେହ ଆଦର କରିପାରନ୍ତି, ଅନ୍ୟ କ'ଣ ପାରିବ ?

ଅହଲ୍ୟା ବିଚଳିତ ହୋଇ ପଡ଼ିଲା । ପତିଙ୍କୁ ଅଟକେଇ ରଖିବା ପାଇଁ ଏଇ ଏକମାତ୍ର ବାହାନା । ସେ କେବେ ଯିବାକୁ ଚାହୁଁ ନ ଥିଲା କି ପତି ଯାଆନ୍ତୁ ବୋଲି ଇଚ୍ଛା କରୁ ନ ଥିଲା । ଶଙ୍ଖଧର ବାହାନାରେ ନିଜର ମନୋଭାବ ଲୁଚେଇ ଥିଲା । ରାଣୀ ଶଙ୍ଖଧରକୁ କଦାପି ଛାଡ଼ିବେନି ବୋଲି ତା'ର ବିଶ୍ୱାସ ଥିଲା । କିନ୍ତୁ ତା' ହାତରୁ ସେ ଶିଶୁ ଛଡ଼େଇ ନେବାରୁ ତା'ର ସନ୍ଦେହ ହେଲା—ଏଥିରେ କିଛି ରହସ୍ୟ ଅଛି । ତୀବ୍ର ସ୍ୱରରେ କହିଲା—ତେବେ ଏ ସବୁ ପ୍ରେମ କ'ଣ ଲୋକ ଦେଖାଣିଆ ! ଅପଣ ତ କହୁଥିଲେ, ଇଏ ମୋର ପ୍ରାଣ, ଇଏ ମୋର ଜୀବନର ଆଧାର—ଏ କ'ଣ ସବୁ ବାହାନା ! ଆମର ଆଖିରେ ଧୂଳି ପକେଇବା ପାଇଁ ଏ ସବୁ ସୂଆଙ୍ଗ ! ଆପଣ ଆମ ସମସ୍ତଙ୍କୁ ତଡ଼ି ଅଖଣ୍ଡ ରାଜ୍ୟ ଭୋଗ କରିବାକୁ ଚାହାନ୍ତି ! ଏ କଥା ହୋଇପାରିବ ନାହିଁ । ମୋ ପୁତ୍ରର ଅହିତ ଆପଣ କରି ପାରିବେନାହିଁ । ଏଠାରୁ ମୁଁ ପାଦେ ଘୁଞ୍ଚିବିନି । ଯଦି ଆପଣ ଭାବୁଥାଆନ୍ତି, ସମସ୍ତଙ୍କୁ ତଡ଼ି ନିଜର ବାପ ଭାଇଙ୍କୁ ଏଠି ଆଣି ବସେଇବେ—ତେବେ ଆପଣ ଭୁଲ ଭାବୁଛନ୍ତି ।

ଏହା କହି କହି କ୍ରୋଧରେ ଅହଲ୍ୟା ରାଜା ସାହେବଙ୍କ ଶୟନ ଗୃହ ଆଡ଼କୁ ଚାଲିଗଲା । ମନୋରମା ସ୍ତମ୍ଭିତ ହୋଇଗଲା । ତା'ର ଆଖିରୁ ଟପ୍ ଟପ୍ ଲୁହ ଝରିପଡ଼ିଲା ।

ଚକ୍ରଧର ଆଉ ମନୋରମାକୁ କେଉଁ ମୁହଁ ଦେଖେଇବେ ! ଅହଲ୍ୟାର ଏ ବଜ୍ର କଠୋର ଶବ୍ଦ ତାଙ୍କୁ ଯେତେ ପୀଡ଼ା ଦେଲା, ସମ୍ଭବତଃ ମନୋରମାକୁ ସେତେ ଦେଇ ନ ଥିବ । ଯେଉଁ ଅହଲ୍ୟା ନମ୍ରତା, ଶାଳୀନତା, ମଧୁରତାର ଦେବୀ ଥିଲା, ସିଏ ଆଜି ଏପରି ପିଶାଚୀ ହେଲା କିପରି ! ମନ ହେଲା—ଆଉ ତାକୁ ମୁହଁ ଦେଖେଇବେ ନାହିଁ କି ତା'ର ମୁହଁ ଦେଖିବେ ନାହିଁ । ଉପକାରର ଏହି ବ୍ୟବହାର ! ଏହା ତ ନୀଚତାର ଚରମ ସୀମା ।

ମନୋରମା ଏ ଯାଏଁ ମୁଣ୍ଡ ତଳକୁ ପୋତି ଠିଆ ହୋଇଥିଲା । ଚକ୍ରଧର ନିଜର ହ୍ୟାଣ୍ଡ-ବ୍ୟାଗ୍ ଧରି ବାହାରକୁ ଚାଲିଲେ । ଦରଓ୍ୱାନ୍ ପଚାରିଲା—ସରକାର, ଏତେବେଳେ କୁଆଡ଼େ ଯାଉଛନ୍ତି ?

ଚକ୍ରଧର ସ୍ମିତ ହସି କହିଲେ—ଭିତରେ ବଡ଼ ଗରମ ହେଉଛି, ନିଦ ହେଉନାହିଁ । ଟିକିଏ ପବନଆରେ ବୁଲିବାକୁ ଯାଉଛି ।

ଦରଓ୍ୱାନ୍—ମୁଁ ସାଙ୍ଗରେ ଯିବି ?

ଚକ୍ରଧର—ନାହିଁ ।

ବାହାରକୁ ଆସି ଚକ୍ରଧର ରାଜଭବନକୁ ଚାହିଁଲେ । ଏହି ଦିବ୍ୟଭବନ ସହସ୍ର ନେତ୍ର ବିଶିଷ୍ଟ ପିଶାଚିନୀ ଭଳି ଜଣା ପଡ଼ିଲା । ଯେତେ ଯେମିତି ସେ କହୁଛି—ତୁ ଚାଲିଗଲେ କିଏ କ'ଣ ଦୁଃଖ କରିବ ! ସେ ଚିନ୍ତା କରେନା । ଏଠାରେ ଏଇ ଆଡ଼ମ୍ବର ରହିବ । ତୋ ପାଇଁ କେହି ଟିକିଏ ଲୁହ ଗଡ଼େଇବେ ନାହିଁ । ଯେଉଁ ଲୋକ ମୋ ଆଶ୍ରୟକୁ ଆସନ୍ତି, ସେମାନଙ୍କର ମୁଁ କାପ୍ସାକଲ୍ପ କରିଦିଏ । ତା'ର ଆତ୍ମାକୁ ମହାନିଦ୍ରାର କୋଳରେ ଶୁଆଇଦିଏ ।

କୁଆଡ଼େ ଯିବେ ଚକ୍ରଧର ଚିନ୍ତା କରୁଛନ୍ତି—ସହସା ଭବନରୁ ଦି ତିନିଜଣ ଲଣ୍ଠନ ଧରି ଆସିଲେ । ନିକଟକୁ ଆସିବାରେ ଜଣାଗଲା ମନୋରମା । ତିନିଜଣ ସିପାହୀ ସାଙ୍ଗରେ । ଚକ୍ରଧର ବୁଝିଗଲେ—ତାଙ୍କୁ ଖୋଜିବାକୁ ଆସୁଛନ୍ତି । ତାଙ୍କ ମନରେ ପ୍ରବଳ ଇଚ୍ଛା ହେଲା ଯାଇ ପାଦତଳେ ପଡ଼ି କହନ୍ତେ—ଦେବୀ, ମୁଁ ତୁମ ଦୟାର ପାତ୍ର ହେବାର ଯୋଗ୍ୟ ନୁହେଁ । ମୁଁ ନୀଚ, ପାମର, ଅଭାଗା । ମୋତେ ଯିବାକୁ ଦିଅ । ମୋ ଦ୍ୱାରା ତୁମକୁ ସର୍ବଦା କଷ୍ଟ ମିଳୁଛି ଏବଂ ମିଳିବ ।

ମନୋରମା ସିପାହୀଙ୍କୁ କହୁଥିଲା—ବେଶିଦୂର ଯାଇ ନ ଥିବେ । ତୁମେ ଦୁଇଜଣ ଏ ପାଖେ ଯାଅ, ମୁଁ ସେଆଡ଼େ ଦେଖୁଛି । ଏତିକି କହିବ—ରାଣୀଜୀ କହୁଛନ୍ତି, ଯାଆନ୍ତୁ ପଛେ—ମୋ ସହ ସାକ୍ଷାତ କରିଯାଆନ୍ତୁ ।

ଚନ୍ଦ୍ରଧର ବଗିଚ୍ଛର ଏକ କୁଞ୍ଜ ଅନ୍ଧ ଆଲରେ ରହିଗଲେ । ମନୋରମା କନ୍ତୁ ବାଟ ଯାଇ ଫେରି ଆସିଲା । ଅନ୍ୟ ସିପାହିଙ୍କୁ କହିଲା—ଏଠାରେ ଖୋଜିବା ବୃଥା । ବରଂ ଷ୍ଟେସନକୁ ଯିବା ଭଲ । ସେମାନେ ଭିତରକୁ ଚାଲିଯିବା ପରେ ଚନ୍ଦ୍ରଧର ଜୋର୍‌ରେ ଚାଲିଲେ ।

ହଠାତ୍ ରାସ୍ତା କଡ଼ରେ ଗୋଟାଏ କୂଅ ପାଖରେ କେତେ ଲୋକ ବସିଥିବାର ଦେଖିଲେ । ମଝିରେ ଗୋଟାଏ ଶବ । କେତେଜଣ କାଠ ନେଇ ଜମା କରୁଛନ୍ତି । ଧନ୍ନାସିଂହ ପାଟି ଶୁଭିଲା । ଯଦି ଚିହ୍ନିଦେବ, ତେବେ ବଡ଼ ମୁସ୍କିଲ ହେବ ।

ଧନ୍ନାସିଂହ କହୁଥିଲା—ମରଣ ଆସିଲେ କିଏ କ'ଣ କରିବ ! ବାବୁଙ୍କ ହାତରେ ଠେଙ୍ଗା ନ ଥିଲା । ଢ ଗୁରି ଘୁଷା ଦେଇଥିବେ । ଏଥିକିରେ ସେଇଦିନଠୁ ବିଚାରା ଉଠି ପାରିଲାନାହିଁ !

ଅନ୍ୟ ବ୍ୟକ୍ତି—ଜାଗା ଅଜାଗା ଅଛି ତ ! ପିଠିକି ଘୁଷେ ମାର, କିଛି ହେବନି । ଖାଲି 'ଧମ୍' କିନା ଶବ୍ଦଟେ ହବ । କିନ୍ତୁ ଘୁଷା ଯଦି କଙ୍କାଳରେ, ନାହିଁ ମୁଣ୍ଡାରେ ବାଜେ— ତେବେ ତ ଗୁଳି ଭଳି କାମ ଦବ । ମନ୍ନାର ଅଜାଗାରେ ବସିଗଲା ।

ଧନ୍ନାସିଂହ—ବାବୁଜୀ ଶୁଣିଲେ ବଡ଼ ବ୍ୟଥିତ ହେବେ । ସେଦିନ କିମିତି ତାଙ୍କ ମୁଣ୍ଡରେ ଭୂତ ଚଢ଼ିଲା କେଜାଣି ! ବଡ଼ ଦୟାବାନ୍ । କାହାକୁ ଆଖି ଟେରେଇ ଚାହିଁବା ଲୋକ ନୁହଁ । ଜଙ୍ଗଲରେ ଆମେ ସବୁ ତାଙ୍କୁ ଭଗବାନ୍ ବୋଲି ଡାକୁଥିଲୁଟି ।

ଜଣେ ବୁଢ଼ା—ଭାଇ, ଜଙ୍ଗଲ କଥା ଅଲଗା । ସେଠି ଦୟାବାନ୍ ହେଇଥିବେ । ସେତେବେଳେ ତ ରାଜାଠାକୁର ନ ଥିଲେ । ରାଜ୍ୟ ପାଇ ଯେବେ ଦୟାବାନ୍ ହେବେ, ତେବେ ସିନା ଜାଣିବ ଦୟାଳୁ ବୋଲି ।

ଧନ୍ନାସିଂହ—ଦାଦା, ରାଜ୍ୟ ପାଇଲେ ବି ସେ ଫାଳି ଉଠିବା ଲୋକ ନୁହଁ । ତୁମେ ଦେଖିଲ ନା, ଗଲା ବାସିଦିନ ସବୁ ଗୁଡ଼ ବଣ୍ଟଦେଲେ ।

ବୁଢ଼ା—ଆରେ ପାଗଲା, ଜୀବନ ବଦଳରେ ଖଜଣା ଟିକସ ଗୁଡ଼ କରିଦବାଟା କ'ଣ ବଡ଼ କଥା ? ଜୀବନ ବଦଳରେ ଜୀବନ । ମନ୍ନାର ଅଭାଗିନୀ ବିଧବା 'ଗୁଡ଼' ନେଇ କ'ଣ ଚାଟିବ ! ତା'ର ଅନାଥ ବାଳକ 'ଗୁଡ଼' କୋଳରେ ଖେଳିବେ ନା 'ଗୁଡ଼'କୁ ବାବା ବୋଲି ଡାକିବେ ! ତୁ ଦୟାଳୁ ବୋଲି କହୁଛୁ । ମୁଁ ତ କହିବି ହତ୍ୟାକାରୀ ରାଜା ବୋଲି ରକ୍ଷା ପାଇଗଲେ । ଆଉ କିଏ ହେଇଥିଲେ ଫାଶୀ । ଇଲେ ହାବୁଡ଼େ ପଡ଼ନ୍ତା ଯଦି କଞ୍ଚା ଖାଇଯାଆନ୍ତି ।

ଚନ୍ଦ୍ରଧରଙ୍କୁ ଲାଗିଲା—ମନ୍ନାସିଂହ କୋକେଇରୁ ଉଠି ତାଙ୍କୁ ଖାଇଯିବାକୁ ଦୌଡ଼ୁଛି । ଚାରିଆଡ଼୍ ସବୁଠେ ଯେପରି ଦାନବ ଧ୍ୱନି ଶୁଭୁଛି—ଏଇଟା ହତ୍ୟାକାରୀ, ହତ୍ୟାକାରୀ, ହତ୍ୟାକାରୀ, ହନ୍ତକ ।

ଚନ୍ଦ୍ରଧର ସେଠାରେ ଆଉ ମୁହୂର୍ତ୍ତେ ଠିଆ ହୋଇ ରହିପାରିଲେ ନାହିଁ । ସେ ଆଗକୁ ଆଗକୁ ମାଡ଼ି ଚାଲିଲେ । ତାଙ୍କୁ କର୍ତ୍ତବ୍ୟର ମାର୍ଗ ପରିଷ୍କାର ଦେଖାଗଲା । ପୂର୍ବ ଦିଗକୁ ଚାହିଁ ଦେଖିଲେ, ସିନ୍ଦୁର ଫାଟିବା ଉପରେ ।

( ୩୪ )

ପାଞ୍ଚବର୍ଷ ହେଲାଣି, ଶଙ୍ଖଧରଙ୍କର ପତ୍ତା ନାହିଁ । ଗ୍ରୀଷ୍ମ ସମୟ । ଦିନରେ ପ୍ରଚଣ୍ଡ, ଗ୍ରୀଷ୍ମପ୍ରବାହ, ରାତିରେ ଭୀଷଣ ଗରମ । କିନ୍ତୁ ଅହଲ୍ୟାର ଏବେ ପଙ୍ଖା କି ବେଣାଚେଟା ପାଟିର ଆବଶ୍ୟକତା ପଡୁନାହିଁ । ଏହି ବର୍ଷୋଟିକରେ ଏବେ କାନ୍ଦିବା ବ୍ୟତୀତ ଆଉ କିଛି କାମ ନାହିଁ । ବିଳାସର କୌଣସି ଜିନିଷପ୍ରତି ଆଉ ଆସକ୍ତି ନାହିଁ । ମନୋରମା ପ୍ରତି ବି ଉ ସେ ବ୍ୟବହାର ନାହିଁ । ଶଙ୍ଖଧର ବ୍ୟତୀତ ସେ ଏବେ ମୁହୂର୍ତ୍ତେ ବଞ୍ଚିବା ଅସମ୍ଭବ ଜଣାପଡ଼ୁଛି । ପତିକୁ ହରାଇ ସେ ଏବେ ନିଜକୁ ପାଉଛି । ସେ ଏବେ ବାରମ୍ବାର ନିଜକୁ ଧିକ୍କାର କରୁଛି ।

ଶଙ୍ଖଧର ତାକୁ ପଚାରେ—ମା, ବାବା କେବେ ଆସିବେ ? ସେ କାହିଁକି ଚାଲିଗଲେ ? ଆସୁନାହାନ୍ତି କାହିଁକି ? ତୁମେ ତାଙ୍କୁ କାହିଁକି ଛାଡ଼ିଦେଲ ମା' ? ତୁମେ ତାଙ୍କ ସଙ୍ଗେ କାହିଁକି ଗଲନି ? ମୁଁ ତାଙ୍କ ସହ ବୁଲିଥା'ନ୍ତି । ମା' ସେ କଣ ବହୁତ ପାଠ ପଢ଼ିଛନ୍ତି ? ରାଣୀ ମା' କହୁଛନ୍ତି—ସେ ମଣିଷ ନୁହଁ, ଦେବତା । ମା', ସେ କଣ ସତେ ଦେବତା ? —ଅହଲ୍ୟା ପାଖରେ ଏ ସବୁ ପ୍ରଶ୍ନର ଉତ୍ତର କିଛି ନ ଥିଲା ।

ଶଙ୍ଖଧର ପିତାଙ୍କର ବହି ସବୁ ଓଲଟ ପାଲଟ କରି ଦେଖେ ଏବଂ କହେ ମୁଁ ବଡ଼ ହେଲେ ଏ ବହି ସବୁ ପଢ଼ିବି । ନିର୍ମଳା ଶଙ୍ଖଧରକୁ ଦେଖିଲେ ଆନନ୍ଦରେ ଅଧୀର ହୋଇଯାଆନ୍ତି । ଅହଲ୍ୟାର ମୁହଁ ଦେଖିବାକୁ ଚାହାନ୍ତି ନାହିଁ । କହନ୍ତି—ସେଇ ମୋ ପୁଅକୁ ଘରୁ ତଡ଼ିଦେଲା । ମୁନ୍‌ସୀ ବାରମ୍ବାର ତାଙ୍କୁ ଅନୁରୋଧ କରନ୍ତି—ଯାଇ ଜଗଦୀଶପୁରରେ ରହ । କିନ୍ତୁ ସେ ଯିବାକୁ ନାରାଜ ।

ମୁନ୍‌ସୀଙ୍କୁ ଏବେ ଟ୍ରେଜେରୀରୁ ଏକହଜାର ଟଙ୍କା ପେନ୍‌ସନ ମିଳୁଛି । ରାଜାସାହେବ ତାଙ୍କୁ ନୋକରୀରୁ ଅବସର ଦେଇଛନ୍ତି । ସେ ଏବେ ଅଧିକାଂଶ ସମୟ ଘରେ ରହନ୍ତି । ସଙ୍ଗୀତ ପ୍ରେମ ବଢ଼ିଯାଇଛି । ସାହରେ ଏବେ କେହି ଗରିବ ନାହାନ୍ତି । ଟଙ୍କା ତାଙ୍କ ହାତରେ ରହେନି । ବାଣ୍ଟିବା ତାଙ୍କର ଅଭ୍ୟାସ—ଧର୍ମ ପାଇଁ ଦାନ ନୁହେଁ, ଆନନ୍ଦ ପାଇଁ । ଏବେ ମଧ୍ୟ ଅଭାବ । ଯାଇ ମନୋରମାଙ୍କୁ ବାରକଥା କହି ଟଙ୍କା ଆଣନ୍ତି । ମନୋରମା ତାଙ୍କ ଗୀତ ଶୁଣି ହସିଦିଅନ୍ତି ଏବଂ ଟଙ୍କା ଦିଅନ୍ତି । ତଥାପି ମୁନ୍‌ସୀଜୀ କରଜ କରନ୍ତି । ତାଙ୍କୁ ବେଶି ଆନନ୍ଦ ଲାଗେ—ଶଙ୍ଖଧରକୁ ଧରି ସାହରେ ବୁଲିବା ଏବଂ ପିଲାମାନଙ୍କୁ ମିଠେଇ ଓ ପଇସା ବାଣ୍ଟିବା ।

ଦିନେ ଶଙ୍ଖଧର ଦିନ ୯ଟାରେ ଆସି ପହଞ୍ଚିଲା । ସାଥିରେ ଗୁରୁସେବକ ସିଂହ । ସେ ଏବେ ରାଜ୍ୟର ବିଭାଗବନ୍ଧନ ଅଧିକାରୀ । ଯେଉଁ କାମ ଯେତେବେଳେ ଦରକାର ସେ କରନ୍ତି ।

ନିର୍ମଳା ତୁଳସୀ ଚଉଁରାରେ ଜଳ ଦେଉଥିଲେ । ଶଙ୍ଖଧର ପଚାରିଲା—ଜେଜେମା, ତୁମେ ପୂଜା କାହିଁକି କରୁଛ ?

ନିର୍ମଳା ଶଙ୍ଖଧରକୁ—କୋଳେଇ ନେଇ କହିଲେ—ବାପା, ଭଗବାନଙ୍କୁ ମାଗୁଛି, ମୋର ମନକାମନା ପୂର୍ଣ୍ଣକର ।

ଶଙ୍ଖଧର—ଭଗବାନ ସମସ୍ତଙ୍କର ମନକଥା ଜାଣନ୍ତି ?

ନିର୍ମଳା—ହଁ ବାପା, ଭଗବାନ ସବୁ ଜାଣନ୍ତି ।

ଶଙ୍ଖଧର—ଜେଜେମା, ତମର ମନୋକାମନା କ'ଣ ?

ନିର୍ମଳା—ତୁମର ବାବା ଆସନ୍ତୁ, ତୁମେ ଜଲଦି ବଡ଼ ହୋଇଯାଅ ।

ଶଙ୍ଖଧର ବାହାରକୁ ଯାଇ ମୁନ୍‌ସୀଜୀଙ୍କ ପାଖରେ ପହଞ୍ଚିଲା । ତାଙ୍କ ପାଖରେ ବସି ସିତାର-ଧୂନ୍ ଶୁଣିଲା ।

ପରଦିନ ଶଙ୍ଖଧର ସ୍ନାନ ପରେ ଜଳପାନ କଲାନାହିଁ । ଗୁରୁସେବକ ପାଖକୁ ପଢ଼ିବାକୁ ମଧ୍ୟ ଆସିଲାନି । କୁଆଡ଼େ ଗଲା କେଜାଣି, ଅହଲ୍ୟା ଏଣେତେଣେ ଖୋଜି ପାଇଲାନି । ନୋରମା ପାଖକୁ ଆସି ଦେଖିଲା । ସେଠି ବି ନାହିଁ । ଦାସୀମାନଙ୍କୁ ପଚାରିବାରେ ସେମାନେ କହିଲେ—ଗାଧୋଇବା ଆମେ ଦେଖିଛୁ । ତା'ପରେ କୁଆଡ଼େ ଗଲେ ଦେଖିନୁ । ଚାରିଆଡ଼େ ଖୋଜାଗଲା । ଉଭୟେ ବଗିଚା ଭିତରକୁ ଦୌଡ଼ିଲେ । ସେଠାରେ ବି ନାହିଁ । ସହସା ବଗିଚାର ଗୋଟାଏ କଣରେ ନିସ୍ତବ୍ଧ ସ୍ଥାନରେ ଦେଖାଗଲା । ଉଭୟେ ପାଦ ଚପି ଚପି ସେଠାକୁ ଯାଇ ଗଛ ଆଢୁଆଳରେ ଠିଆ ହୋଇ ଚାହିଁଲେ । ଶଙ୍ଖଧର ସେଠାରେ ଥିବା ତୁଳସୀ ଗଛ ପାଖରେ ବସି ଆଖି ବନ୍ଦ କରି ଧ୍ୟାନ କରୁଛି । ସାମନାରେ କିଛି ଫୁଲ ପଡ଼ିଛି । ଉଭୟେ ଯାଇ ତା'ପାଖରେ ଠିଆ ହୋଇପଡ଼ିଲେ । ଶଙ୍ଖଧର ସେମାନଙ୍କୁ ଦେଖି ଲଜ୍ଜିତ ହୋଇ ଉଠି ସିଧା ଘରଆଡ଼କୁ ଚାଲିଲା ।

ମନୋରମା—ଏଠାରେ କଣ କରୁଥିଲୁ ପୁଅ ?

ଶଙ୍ଖଧର—କିଛି ନାହିଁ ତ । ବୁଲୁଥିଲି ।

ମନୋରମା—ନାଇଁ ମ, କଣ ତ କରୁଥିଲୁ !

ଶଙ୍ଖଧର—ତୁମକୁ କଣ ମିଳିବ ?

ଅହଲ୍ୟା—ତୁମକୁ କହିବନି । ମୋତେ କହିବ । ମୁଁ ତାର ମାଆ । ମୋ ପୁଅ ସବୁ କହିବ । ହଁ ବାପା, କହିଲୁ କଣ କରୁଥିଲୁ । ମୋ କାନରେ କହିଦେ । ମୁଁ କାହାକୁ କହିବିନି ।

ଶଙ୍ଖଧର ଆଖିରୁ ଲୁହ ଗଡ଼ିପଡ଼ିଲା । କହିଲା—କିଛି ନାହିଁ । ମୁଁ ବାବା ଶୀଘ୍ର ଫେରିଆସିବା ପାଇଁ ପ୍ରାର୍ଥନା କରୁଥିଲି । ପ୍ରାର୍ଥନା କଲେ ଭଗବାନ ସମସ୍ତଙ୍କର ମନୋକାମନା ପୂର୍ଣ୍ଣ କରନ୍ତି ।

ସରଳ ବାଳକର ଏ ପିତୃଭକ୍ତି ଦେଖି ଉଭୟେ କାନ୍ଦି ପକାଇଲେ । ଶଙ୍ଖଧର ପୁଣି ପଚାରିଲା—ମା', ତୁମେ ବାବାଙ୍କ ପାଖକୁ ଚିଠି ଦେଉନ ।

( ୩୭ )

ଏଣେ କିଛିଦିନ ହେଲା ଲବଙ୍ଗ ତୀର୍ଥଯାତ୍ରାକୁ ଚାଲିଯାଇଥିଲା । ଗୁରୁସେବକ ଯୋଗୁଁ ତାର ଏ ତୀର୍ଥଯାତ୍ରା । ସେ ଗଲାଦିନୁ ଦେଓ୍ୱାନ ସାହେବଙ୍କର ଅବସ୍ଥା ଭଲ ନୁହେଁ । ଏପରିକି ଏବେ ଗୁରୁସେବକ ଭାବୁଛନ୍ତି, ଲବଙ୍ଗ ମା' ବାବାଙ୍କ ହିତ ପାଇଁ ଘରେ ରହିବା ନିତାନ୍ତ ଦରକାର । ଏବେ କୌଣସି ଚାକର ସପ୍ତାହରୁ ଅଧିକ ରହୁନାହାନ୍ତି । ଦେଓ୍ୱାନ ସାହେବଙ୍କର ମଦ ମାତ୍ରା ଦିନକୁ ଦିନ ବଢ଼ି ବଢ଼ି ଚାଲିଛି । ଭୋଜନ ଏବେ ଖୁବ୍ କମ୍ କରୁଛନ୍ତି । ଲବଙ୍ଗ ପ୍ରତିଦିନ ଦୁଇ ତିନସେର ଦୁଧ, ପାଏ ଘିଅ ତାଙ୍କ ପେଟରେ ପକାଉଥିଲା । ଏହି କଳାରେ ସେ ନିପୁଣା । ପଥ୍ୟ ସେବାର ଅପୂର୍ବ ସିଦ୍ଧାନ୍ତ ତାକୁ ହିଁ ଜଣା । ଚାଳିଶି ବର୍ଷ ବୟସ ପରେ ବ୍ୟକ୍ତିର ଖାଦ୍ୟଯୋଜନା କ'ଣ ହେଲେ ସେ ସର୍ବଦା ସୁସ୍ଥ ରହିବ, ଲବଙ୍ଗକୁ ଜଣା । ସେ କହେ—ଘୋଡ଼ା ଆଉ ମରଦ କେବେ ବୁଢ଼ା ହୁଅନ୍ତି ନାହିଁ, ଯଦି ସେମାନଙ୍କୁ ଖାଦ୍ୟ ଦିଆଯାଏ ।

ଦେଓ୍ୱାନ ସାହେବଙ୍କର ସେ କାର୍ଯ୍ୟଦକ୍ଷତା, ସେହି ତତ୍ପରତା, ସେହି ବିଚାରଶୀଳତା—ଯାହାଦ୍ୱାରା ସେ ଚପରାଶିରୁ ଦେଓ୍ୱାନ ହୋଇପାରିଲେ—ଏବେ ଆଉ ନାହିଁ । ତାଙ୍କର କ'ଣ ଏମିତି ହୋଇଗଲା ଭାବି ଲୋକେ ଆଶ୍ଚର୍ଯ୍ୟ ହେଉଥିଲେ ।

ଦିନେ ଭାଇ-ଭଉଣୀ ଏ ବିଷୟରେ କଥାବାର୍ତ୍ତା ହେଲେ । ମନୋରମା କହିଲା—ଭାଇ ତୁମେ କଣ ଲବଙ୍ଗମାଆଁକୁ ଭୁଲିଗଲ ! ବାବାଙ୍କ ଅବସ୍ଥା ଦେଖୁଛ କି ନାହିଁ ?

ଗୁରୁସେବକ—ଆଦୌ ଖାଉନାହାନ୍ତି । ଯେତେବେଳେ ଦେଖ—ମଦ ।

ମନୋରମା—ତୁମେ ଲବଙ୍ଗମାଆଁକୁ ଶୀଘ୍ର ଡାକିଆଣ । ସେଇ ତାଙ୍କୁ ଠିକ୍ ରଖିପାରିବ । ତାଙ୍କ ଅବସ୍ଥା ଦେଖି ମୋତେ ଭୟ ଲାଗୁଛି ।

ଗୁରୁସେବକ—କଣ କରିବ । ଅନେକଥର କହିଲିଣି ଡାକି ଆଣିବା, ଶୁଣୁନାହାନ୍ତି । ଓଲଟି ଏମିତି ଚିଠି ଖଣ୍ଡେ ଖଣ୍ଡେ ତା' ପାଖକୁ ଲେଖି ଦେଉଛନ୍ତି ଯେ ପଢ଼ିଲେ ହାଡ଼ ଜଳିବ । ସେ ତ ବଡ଼ ଜିଦ୍‌ଖୋର । ଏମିତି ଚିଠି ପାଇଲେ ଆସିବ ?

ମନୋରମା—ନା ଭାଇ, ସେ ଯେତେ ଜିଦ୍‌ଖୋର ହେଉ ପଛେ, ବାବାଙ୍କର ଦେହ ଖରାପ ଶୁଣିଲେ ରହିବ ନାହିଁ ।

ଗୁରୁସେବକ—ହୋଇବ, ସତ କହୁଛ—ସେ ଆସିବା ନିତାନ୍ତ ଦରକାର । କିନ୍ତୁ ବାବାଙ୍କୁ ପଚାରିଲେ ସେ ମନା କରୁଛନ୍ତି ।

ମନୋରମା—ତୁମେ କ'ଣ ଭାବୁଛ ସେ ଅନ୍ତରରେ ମନା କରୁଛନ୍ତି । ଯେଉଁଦିନ ମାଆଙ୍କର ସ୍ୱର୍ଗବାସ ହେଲା, ବାପା ନିଜକୁ ସମ୍ପୂର୍ଣ୍ଣ ରୂପେ ତା' ଠାରେ ଅର୍ପଣ କରିଦେଲେ ।

ଲବଙ୍ଗ ମା' ନ ସମ୍ଭାଳିଥିଲେ, ବାବାଙ୍କର ପ୍ରାଣ ରହୁ ନ ଥା'ନ୍ତା । କୌଣସି ଶବାହୃତା ସ୍ତ୍ରୀର ଏପରି ପତିଭକ୍ତି ମୁଁ ଶୁଣିନି । ଯଦି ବାବାଙ୍କୁ ବଞ୍ଚେଇବାର ଇଚ୍ଛା, ଶୀଘ୍ର ଲବଙ୍ଗମାଆଙ୍କୁ ଡାକିଆଣ ।

ଗୁରୁସେବକ—ମୁଁ ତ ଯାଇପାରିବ ନାହିଁ ନୋରା ।

ମନୋରମା—କାହିଁକି ! କଣ ଅପମାନ ଲାଗିବ ?

ଗୁରୁସେବକ—ସେ ଭାବିବ, ଗରଜ ପଡ଼ିବାରୁ ଡାକ ଆସିଛି, ଆସିଲେ ମୁଣ୍ଡରେ ବସିବ ; ତା' ମିଜାଜ୍ ବଢ଼ିଯିବ ।

ମନୋରମା—ଛିଇ, ଏପରି କଥା ମୁହଁରୁ ବାହାର କରନାହିଁ । ଲବଙ୍ଗ ମା' ଦେବୀ । ସେ ତୁମକୁ ଓ ମୋତେ ପାଳିଛୁ । ତା' ପ୍ରତି ତୁମର ଏ ମନୋଭାବ ଦେଖି ମୋତେ ବଡ଼ ଦୁଃଖ ଲାଗୁଛି ।

ଗୁରୁସେବକ—ତାକୁ ମୁଁ ଅଉ କିଛି କହିବନି । ତା' କାମରେ ମୁଁ ଭୁଲରେ ମଧ୍ୟ ବାଧା ଦେବିନାହିଁ । କିନ୍ତୁ ଡାକିବାକୁ ଯିବିନାହିଁ ।

ମନୋରମା— ତା' ହେଲେ ମୁଁ ଯିବି । କିଛି ଆପତ୍ତି ଅଛି ?

ଗୁରୁସେକ—ତୁ ଯିବୁ ?

ମନୋରମା—କାହିଁକି ? ମୁଁ କଣ କି ? ତାକୁ ଭୁଲିଲେ ମୁଁ କୃତଘ୍ନ ହେବି । ତା'ର ଚରଣାମୃତ ପାନ କରିବାକୁ ମୋର ଇଚ୍ଛା । ତା'ରିଣ ଜୀବନରେ ମୁକ୍ତି ହେବନି । ସେ ଏବେ କେଉଁଠାରେ ଥିବ ?

ଗୁରୁସେବକ—ନାହିଁ, ମୁଁ ଯିବି ।

ପରଦିନ ଦେଓ୍ୱାନ ସାହେବଙ୍କୁ ଜ୍ୱର ହେଲା । ୧୦୪ ଡିଗ୍ରୀ । ଅଧୈର୍ଯ୍ୟ ହୋଇ ଡାକ୍ତରଙ୍କୁ ଡାକି ଆଣିଲେ । ମନୋରମା ମଧ୍ୟ ଖବର ପାଇ ଆସିଗଲା । ଆସିବା ସଙ୍ଗେ ସଙ୍ଗେ ଗୁରୁସେବକକୁ କହିଲା—ମୁଁ କାଲି କହିଥିଲି ଶୀଘ୍ର ଯାଇ ଲବଙ୍ଗ ମା'କୁ ନେଇ ଆସିବା ପାଇଁ । ତୁମେ ତ ଯାଇଥିଲେ ଏବେ ଫେରି ଆସନ୍ତଣି ହରିଦ୍ୱାରରୁ ।

ଗୁରୁସେବକ—ମୁଁ ତ ଯିବାକୁ ପ୍ରସ୍ତୁତ । କିନ୍ତୁ ମୋତେ ଯିବାକୁ ଦେଲେ ତ ! ବାବାଙ୍କୁ ପଚାରିବାରୁ ସେ ମୋତେ ମୂର୍ଖ ବୋଲି କହିଲେ ।

ମନୋରମା—ତାଙ୍କୁ ପଚାରିବା ତୁମର କ'ଣ ଦରକାର ? ଏବେ ବି ସମୟ ଅଛି । ମୁଁ ଅଛି, ତୁମେ ଏଇ ଗାଡ଼ିରେ ଚାଲିଯାଅ । ବାବାଙ୍କର ବେମାର ଶୁଣି ସେ ଆଉ ରହିବନାହିଁ । କେବଳ ତୁମର ଭୟରେ ସେ ଆସୁନି । ଯାଅ ।

ଦେଓ୍ୱାନ ସାହେବ ମନୋରମାକୁ ଦେଖି କହିଲେ—ଆ ନୋରା, ମୋତେ ଆଜି ଜ୍ୱର ହୋଇଗଲା । ଗୁରୁସେବକ କହୁଥିଲା ତୁ ଲବଙ୍ଗକୁ ଡାକିବାକୁ ଯାଉଛୁ ବୋଲି ମା', ଏଥିରେ

ତୋତେ ଅପମାନ ହେବ । ତା'ର ଇଚ୍ଛା ହେଲେ ଆସିବ, ନ ହେଲେ ନାହିଁ । ତୁ ତାକୁ ଡାକିବାକୁ ଗଲେ ଲୋକେ କ'ଣ କହିବେ !

ମନୋରମା—ଲୋକେ ଯାହା କହନ୍ତୁ—ମୁଁ ଭାଇଙ୍କୁ ପଠେଇ ଦେଲିଣି । ସେ ଗାଡ଼ିରେ ବସି ସାରିବେଣି ।

ହରସେବକ—ସତେ ! କିନ୍ତୁ ଲବଙ୍ଗ କ'ଣ ଆସିବ ?

ମନୋରମା—ନ ଆସିଲେ ମୁଁ ଯିବି । ବୁଝେଇ ସୁଝେଇ ନେଇ ଆସିବି ।

ହରସେବକ—ତୁ ଯିବୁ ବୁଝେଇବା ପାଇଁ ! ରାଣୀ ମନୋରମା ଯିବ କେଉଟୁଣୀଟାକୁ ବୁଝେଇ ସୁଝେଇ ଆଣିବାକୁ !

ମନୋରମା—ମନୋରମା ଲବଙ୍ଗ କେଉଟୁଣୀର ଦୁଧ ଖାଇ ବଡ଼ ନ ହୋଇଥିଲେ, ଆଜି ରାଣୀ ମନୋରମା ହୋଇଥାନ୍ତା କି ?

ହରସେବକଙ୍କ ଶୁଷ୍କମୁଖରେ ହରଷର ଆଭା ଖେଳିଗଲା । ପ୍ରସନ୍ନ ହୋଇ କହିଲେ—ନୋରା, ପ୍ରକୃତରେ ତୁ ଦୟାର ଦେବୀ । ଦେଖ୍, ଲବଙ୍ଗ ଆସିଲାବେଳକୁ ମୁଁ ନ ଥିଲେ ତା' କଥା ବୁଝିବୁ । ସେ ମୋର ବହୁତ ସେବା କରିଛି । ମୁଁ ତାର ଉପକାର ସୁଝିପାରିବିନି । ଗୁରୁସେବକ ତାକୁ କଷ୍ଟ ଦେବ । ଘରୁ ବାହାର କରିଦେବ । କିନ୍ତୁ ତୁ ତାକୁ ରକ୍ଷା କରିବୁ । ମୁଁ ଚାହିଁଲେ ଏ ସମସ୍ତ ସମ୍ପତ୍ତି ଲବଙ୍ଗ ନାଁରେ ଲେଖି ଦେଇପାରିବି । ଏ ସମ୍ପତ୍ତି ମୁଁ କରିଛି । କିନ୍ତୁ ଲବଙ୍ଗ କିଛି ନେବନାହିଁ । ସେ ଦୁଷ୍ଟ ମୋ ସମ୍ପତ୍ତିରୁ ଏକ ପଇସା ବି ଛୁଇଁବ ନାହିଁ । ବରଂ ସେ ନିଜର ଗହଣାଗାଣ୍ଠି ଦରକାର ପଡ଼ିଲେ ଏଇ ଘରେ ଖର୍ଚ୍ଚ କରିଦେବ । ସେ କେବଳ ସମ୍ମାନ ଚାହେଁ । ଟିକିଏ ଆଦର ପାଇଲେ ମୁଣ୍ଡରେ ବସେଇବ । ଘରର ସ୍ୱାମିନୀ ହୋଇ ଭୋକରେ ସିନା ମରିବ, ଦାସୀ ହୋଇ ସୁନାଗୁଣ୍ଡା ଖାଇବ ନାହିଁ । ଏଇ ତା'ର ସ୍ୱଭାବ । ଗୁରୁସେବକ ଆଜିଯାଏଁ ତାକୁ ଚହ୍ନିପାରିଲାନି । ନୋରା, ଯେଉଁଦିନୁ ସେ ଗଲାଣି, ସେଇଦିନୁ ମୋର ଅବସ୍ଥା ଖରାପ । ନିଜ ଉପରେ ମୋର ଭରସା ରହୁନି । ଶରୀରଶକ୍ତି କମିଯାଉଛି । କର୍ତ୍ତବ୍ୟ ଜ୍ଞାନ ଲୋପ ପାଉଛି । ତୋର ନିଜର ପିଲାଦିନ କଥା ମନେଅଛି ନୋରା !

ମନୋରମା—ହଁ ବାବା, ଠିକ୍ ମନେଅଛି । ମୋତେ କୋଳରେ ଧରି ଖେଳେଇବାଠାରୁ ମନେଅଛି । ହରସେବକ ବାଷ୍ପରୁଦ୍ଧ କଣ୍ଠରେ କହିଲେ—ତା' ପୂର୍ବର କଥା ନୋରା, ଗୁରୁସେବକ ଛଅବର୍ଷର ହୋଇଥିଲା । ତୋତେ ବର୍ଷେ ହୋଇଥିଲା । ତୋର ମା' ଚାଲିଗଲା । ମୋତେ ଚତୁର୍ଦ୍ଦିଗ ଅନ୍ଧାର ଦିଶିଲା । ଆତ୍ମହତ୍ୟା କରିବାକୁ ମନହେଲା । ନୋରା, ତୁ ଯେମିତି, ତୋର ମା' ବି ଠିକ୍ ସେମିତି । ତା'ର ସ୍ୱଭାବ ମଧ୍ୟ ତୋରି ଭଳି । ମୁଁ ବିଲକୁଲ ପାଗଳ ହୋଇଯାଇଥିଲି । ମୋତେ ରକ୍ଷା କଲା ଲବଙ୍ଗ । ତା'ର ସେବା ମୋତେ ମୁଗ୍ଧ କରିଦେଲା । ତା'ର ରୂପ ଏବଂ ଯୌବନ ପ୍ରତି ମୁଁ ଆକୃଷ୍ଟ ହୋଇ ନ ଥିଲି । ତୋର ମାତା ପରେ କାହାର ରୂପ-ଯୌବନ ବା ମୋତେ ମୁଗ୍ଧ କରିବ ! ଲବଙ୍ଗର ହୃଦୟ ମୋତେ ମୁଗ୍ଧ କଲା ।

ତୁମର ମାତା ମଧ୍ୟ ଏପରି ସବୁ ଭୁଲି ତୁମ୍ଭମାନଙ୍କର ଲାଳନପାଳନ କରି ପାରି ନ ଥା'ନ୍ତା । ଗୁରୁସେବକଙ୍କୁ କି ରୋଗ ହେଲା ଚାଳିଶ ଦିନ, ପ୍ରତି ଦୁଇ ମିନିଟ୍‌ରେ ମୁଣ୍ଡାମୁଣ୍ଡା ରକ୍ତ ବାନ୍ତି ହେଲା । ଡାକ୍ତର, ବୈଦ୍ୟ, ଝଡ଼ା-ଫୁଙ୍କା, ଦେଉଁଗୁଆ ସବୁ ହାରି ମାନିଲେ । ଶୁଖି କଣ୍ଟା ହୋଇଗଲା । ମୃତ୍ୟୁ ମୁଖରୁ ରକ୍ଷା କଲା ଲବଙ୍ଗ । କୌଣସି ମାତା ନିଜ ପୁତ୍ରର ଏପରି ସେବା କରିପାରିବନାହିଁ । ଯିଏ ତାର ତ୍ୟାଗମୟ ସ୍ନେହକୁ ଦେଖେ, କଭି କାମୁଡ଼ି ପକାଏ । ସେ କ'ଣ ଧନ ଲୋଭରେ ଏପରି ତ୍ୟାଗ କରିଥିଲା ! ଲୋଭ କ'ଣ ତ୍ୟାଗ ହୁଏ ! ଆଜି ଗୁରୁସେବକ ତାକୁ ଘରୁ ତଡ଼ୁଛୁ । ସେ ବୁଝୁଛୁ ଲବଙ୍ଗ ମୋ ଧନ ଉପରେ ଆଖି ପକାଇଛୁ ବୋଲି । ମୂର୍ଖ ବୁଝିପାରୁନି, ଯେତେବେଳେ ତା'ର ହାଡ଼ ଦିଖଣ୍ଡ ଲବଙ୍ଗ ନିଜ କୋଳରେ ଧରି ମୃତ୍ୟୁ ମୁଖରୁ ଲେଉଟାଇ ଆଣିଲା, ସେତେବେଳେ ଧନ କୋଉଠି ଥିଲା ? ସତ କହିବାକୁ ଗଲେ ଏ ଘରକୁ ଲକ୍ଷ୍ମୀ ଆସିଲେ ଲବଙ୍ଗ ସମୟରେ । ବରଂ ଲକ୍ଷ୍ମୀ ଲବଙ୍ଗ ରୂପରେ ଆସିଲେ । ଲବଙ୍ଗ ହିଁ ମୋ ଭାଗ୍ୟକୁ ଗଢ଼ିଲା । ଯାହା କିଛି ହୋଇଛି, ସେଇ କରିଛି । ମୁଁ ତ ନିମିତ୍ତ ମାତ୍ର ଥିଲି ।

କିଛିଏ ପରେ ପୁଣି କହିଲେ—ମୋର ମନ ଅଧୀର ହୋଇ ପଡ଼ୁଛି । କଷ୍ଟ କିଛି ନାହିଁ । କୌଣସି ପୀଡ଼ା ନାହିଁ । କିନ୍ତୁ ଦୀପରେ ତେଲ ନ ଥିଲା ପରି ମୁଁ ଅନୁଭବ କରୁଛି । ନୋରା, ଗୁରୁସେବକ ସଂଧ୍ୟା ସୁଦ୍ଧା ଆସିଯିବ ?

ମନୋରମା—ହିଁ ବାବା, ପହଞ୍ଚିଯିବେ ।

ହରିସେବକ—ମା, ମୋର ଔଷଧ ଲବଙ୍ଗ ପାଖରେ । ଯେ ପର୍ଯ୍ୟନ୍ତ ସେ ଥିଲା, ମୋ ମୁଣ୍ଡ କେବେ ବିନ୍ଧି ନାହିଁ । ମୋର ମୂର୍ଖତା ଦେଖ, ଯେତେବେଳେ ସେ ତୀର୍ଥ ଯାତ୍ରାକୁ ଯିବ ବୋଲି କହିଲା—ସେତେବେଳେ ମୁଁ ଯଦି କହିଥା'ନ୍ତି ତୁ ମୋତେ କାହା ହାତରେ ଟେକି ଦେଇ ଯାଉଛୁ ବୋଲି ସେ ଆଦୌ ଯାଇ ନଥା'ନ୍ତା । କିନ୍ତୁ ମୁଁ କିଛି ନ କହି ଚୁପ୍ ରହିଲି ।

କଥା କହିବା ଭିତରେ ଦେଓ୍ୱାନ୍‌ସାହେବ ବାରମ୍ବାର ଚମକି ପଡ଼ି ଦୁଆର ଆଡ଼କୁ ଚାହୁଁ ଥା'ନ୍ତି । ମନୋରମା ପିତାଙ୍କର ଏ ଲକ୍ଷଣ ଦେଖି ଭୟ କରି ଯାଉଥାଏ ।

ହରିସେବକ—ଗୋଟିଏ କଥା ପଚାରିବି ନୋରା, କହିବୁ ?

ମନୋରମା—ଖୁସିରେ ପଚାରନ୍ତୁ ବାବା ।

ହରିସେବକ—ତୁ ନିଜ ଭାଗ୍ୟରେ ସନ୍ତୁଷ୍ଟ ଅଛୁ ?

ମନୋରମା—ଏ କଥା ଆପଣ କାହିଁକି ପଚାରୁଛନ୍ତି ? ମୁଁ କ'ଣ କେବେ କିଛି ଅଭିଯୋଗ କରିଛି ?

ହରିସେବକ—ନା ନୋରା, ତୁ କେବେ ଅଭିଯୋଗ କରିନାହୁଁ କି କରିବୁନାହିଁ । କିନ୍ତୁ ମୁଁ ତୋ ପ୍ରତି ଯେଉଁ ଅତ୍ୟାଚାର କରିଛି, ତା'ର ବେଦନାରେ ଆଜି ମୋର ଅନ୍ତଃକରଣ ପୀଡ଼ିତ ହେଉଛି । ମୁଁ ତୋ'ର ସର୍ବନାଶ ସାଧନ କରିଛି କେବଳ ମୋର ତୃଷ୍ଣା ପାଇଁ । ଲବଙ୍ଗ

ବେକେତେ ବଦ୍‌ବୋଧ କଲି, କିନ୍ତୁ ମୁଁ ଶୁଣିଲିନାହିଁ । ତୁ ଛନ୍ଦ ନ ହୋଇ ମଧ୍ୟ ସୁଖୀ ରହି ପାରି-ଥାଆନ୍ତୁ । କିନ୍ତୁ ମୋର ତୃଷ୍ଣା ମୋତେ ଅନ୍ଧ କରି ଦେଲା ।

ମନୋରମା—ବାବା, ଆପଣ ଏପରି କଥା କହନ୍ତୁନାହିଁ । ଲବଙ୍ଗ ମା' କାଲି ସଂଧ୍ୟାସୁଦ୍ଧା ଆସି ପହଞ୍ଚିଯିବ ।

ଦେଓ୍ୱାନ୍ ସାହେବ ଅନେକ ସମୟଯାଏଁ ଉପରକୁ ନିର୍ନିମେଷ ନୟନରେ ଚାହିଁ ରହିଲେ । ମନୋରମା ହେନ୍ଦ୍ରପରି ଠିଆ ହୋଇଥାଏ । ଦେଓ୍ୱାନ୍ ସାହେବଙ୍କର ଦୃଷ୍ଟି ଯେତେ ଯେପରି ଅନନ୍ତ ଆକାଶ ଅତିକ୍ରମ କରି ଚାଲିଯାଉଛି । ସହସା ସେ କ୍ଷୀଣ ସ୍ୱରରେ କହିଲେ—ନୋରା ।

ମନୋରମା—ମୁଁ ଏଇଠି ଅଛି ବାବା ।

ଦେଓ୍ୱାନ୍—ଦୁଆତ କଲମ ନେଇ ମୋ ପାଖକୁ ଆସିଲୁ । ଆଉ କେହି ତ ଏଠାରେ ନାହାନ୍ତି ? ମୋର ଦାନ-ପତ୍ର ଲେଖି ଦେ । ଗୁରୁସେବକର ଲବଙ୍ଗ ସହ ପଡ଼ିବନାହିଁ । ମୋ ପରେ ସେ ବହୁ କଷ୍ଟ ପାଇବ । ମୁଁ ମୋର ସମସ୍ତ ସମ୍ପତ୍ତି ଲବଙ୍ଗକୁ ଦେଇ ଦେବି । ସମ୍ପତ୍ତି ଲୋଭରେ ସେ ଲବଙ୍ଗକୁ ଭକ୍ତି କରିବ । ତୁ ଏହା ଲେଖିଦେ ଏବଂ ତୁ ସାକ୍ଷୀ ରହ । ଟିକିଏ ବୋଷ୍ଟକୁ ଡାକ ଦେ । ମୁଁ ତାକୁ ବୁଝେଇ ଦେବି । ଏ ଉଇଲ୍‌ଟା ତୁ ନିଜ ପାଖରେ ରଖିବୁ । ଦରକାର ବେଳେ ବାହାର କରିବୁ ।

ମନୋରମା ଭିତରକୁ ଯାଇ କାନ୍ଦିବାକୁ ଲାଗିଲା । ଚେଷ୍ଟାକଲେ ମଧ୍ୟ ଅଶ୍ରୁଧାରା ବନ୍ଦ ହେଉ ନାହିଁ । ଭାଉଜ ପଚାରିଲେ—କ'ଣ ଝିଅ, ବାବାଙ୍କ ଦେହ ବେଶୀ ହେଲା କି ! ଏହା କହି କହି ସେ ଦେଓ୍ୱାନ୍‌ସାହେବଙ୍କ ପାଖରେ ଆସି ଠିଆ ହେଲା । ତାଙ୍କର ଆଖିରୁ ଲୁହ ଝରି ପଡ଼ିଲା । ସେ ଦେଓ୍ୱାନ୍ ସାହେବଙ୍କ ପାଦରେ ମୁଣ୍ଡରଖି କାନ୍ଦିବାକୁ ଲାଗିଲେ ।

ଦେଓ୍ୱାନ୍ ସାହେବ ତାଙ୍କ ମୁଣ୍ଡରେ ହାତରଖି ଆଶୀର୍ବାଦ ଦେଇ କହିଲେ—ବୋହୂ, ମୋର ଅନ୍ତିମ ସମୟ ଆସିଗଲା । ଗୁରୁସେବକ ଆସିବା ପର୍ଯ୍ୟନ୍ତ ରହି ପାରିବି କି ନା ସନ୍ଦେହ । ମୋ ପରେ ଲବଙ୍ଗ ମଧ୍ୟ ବେଶି ଦିନ ରହିବନାହିଁ । ତା'ମନରେ ଦୁଃଖ ଦବନାହିଁ । ମୁଁ ଏତିକି ମାଗୁଛି । ତୁ ବଡ଼ ଘରର ଝିଅ । ଯାହା କିଛି କରିବୁ, ତା'ପରାମର୍ଶ ନେଇ କରିବୁ । ତହିଁରେ ସେ ଖୁସି ହେବ । ଈଶ୍ୱର ତୋର ସୌଭାଗ୍ୟକୁ ଅମର କରନ୍ତୁ ।

ଏହା କହିବା ପରେ ଦେଓ୍ୱାନ୍ ସାହେବ ଆଖି ବନ୍ଦ କଲେ । ଅଧଘଣ୍ଟେ ପରେ ଆଖି ଖୋଲି ଉତ୍ସୁକତାର ସହ ଏଣେ ତେଣେ ଚାହିଁଲେ । କହିଲେ—ଆସିନାହିଁ ! ବୋଧେ ଭେଟ ହୋଇ ପାରିବନାହିଁ ।

ମନୋରମା କାନ୍ଦି କାନ୍ଦି କହିଲା—ବାବା, ମୋତେ ମଧ୍ୟ କିଛି କହନ୍ତୁ । ମୁଁ କ'ଣ କରିବି ?

ଦେଓ୍ୱାନ୍ ସାହେବ ଆଖି ବନ୍ଦ କ —ଲବଙ୍ଗକୁ ଦେଖିବୁ ।

ଅଳ୍ପ ସମୟ ପରେ ବ୍ରଜାସାହେବ ଆସି ପହଞ୍ଚିଲେ । ଅହଲ୍ୟା ମଧ୍ୟ ତାଙ୍କ ସଙ୍ଗରେ ଆସିଥିଲା । ମୁନସୀ ବଜ୍ରଧର କୁଆଡ଼ୁ ଖବର ପାଇ ଦୌଡ଼ି ଆସିଲେ । ରାଜ୍ୟର ଶହ ଶହ କର୍ମଚାରୀ ଜମା ହୋଇଗଲେ । ଡାକ୍ତର ମଧ୍ୟ ଆସି ପହଞ୍ଚିଲେ । କିନ୍ତୁ ଦେଓ୍ୱାନ୍ ସାହେବ ଆଖି ଖୋଲୁନଥିଲେ ।

ସଂଧ୍ୟା ହୋଇ ଯାଇଥିଲା । କୋଠରୀ ନିସ୍ତବ୍ଧ । ସମସ୍ତେ ଅବନତ ମସ୍ତକରେ ଠିଆ ହୋଇଥିଲେ—ଯେତେ ଯେପରି ଶ୍ମଶାନରେ ଭୂତଗଣ ଠିଆ ହୋଇଛନ୍ତି । ସମସ୍ତେ ଆଶ୍ଚର୍ଯ୍ୟ—ଏତେ ଜଲଦି କ'ଣ ହୋଇଗଲା ! କାଲି ସଂଧ୍ୟା ପର୍ଯ୍ୟନ୍ତ ତ ଦପ୍ତରରେ ଆନନ୍ଦରେ କାମ କରୁଥିଲେ ।

ଦେଓ୍ୱାନ୍ ସାହେବ ଅଚେତ ହୋଇ ପଡ଼ିଥିଲେ । ଆଁଖିରୁ ଡବଡବ ଲୁହ ଝରି ପଡୁଥିଲା । ସେ ବେଦନା କିଏ ବା ଅନୁମାନ କରିବ !

ହଠାତ୍ ଦୁଆରେ ଘୋଡ଼ାଗାଡ଼ିଆସି ଠିଆ ହେଲା । ଶବ୍ଦ ଶୁଭିଲା—ଆସିଗଲେ—ଆସିଗଲେ—ଲବଙ୍ଗ ମା' ଆସିଗଲେ ।

ଲବଙ୍ଗ ଅଳ ହିଁ ସଦରଦ୍ୱାରରୁ ବାହାରିଲେ । ଗୁରୁସେବକ ସହ ତା'ର ସାକ୍ଷାତ୍ ହୋଇନାହିଁ । ଏତେ ଲୋକ ଜମା ହୋଇଥିବାର ଦେଖି ତାଙ୍କ ହୃଦୟ ଅଧୀର ହୋଇ ଉଠିଲା । ସେ କୋଠରୀରେ ପହଞ୍ଚିବାରୁ ଅନ୍ୟମାନେ ଆଡ଼େଇ ହୋଇଗଲେ । କେବଳ ମନୋରମା, ତା'ର ଝିଅ ଏବଂ ଅହଲ୍ୟା ରହିଲେ ।

ଲବଙ୍ଗ ଦେଓ୍ୱାନ୍ ସାହେବଙ୍କ ମଥାରେ ହାତ ରଖି ରୁଦ୍ଧ ସ୍ୱରରେ କହିଲେ—ମୋତେ କ'ଣ ଛାଡ଼ି ଦେଇ ଚାଲିଯିବ ?

ଦେଓ୍ୱାନ୍ ସାହେବଙ୍କର ଆଖି ଖୋଲିଗଲା । ବର୍ତ୍ତମାନ ସେ ଆଖିରେ କେତେ ସ୍ନେହ ! ଦୁଇହାତ ପ୍ରସାରି କହିଲେ—ଲବଙ୍ଗ, ଅଭଟିକିଏ ଆଗରୁ ଆସିଲୁନାହିଁ କାହିଁକି ?

ଲବଙ୍ଗ ସେହି ପ୍ରସାରିତ ହାତ ମଝିରେ ନିଜର ମସ୍ତକ ରଖି ଅନ୍ତିମ ପ୍ରେମାଲିଙ୍ଗନରେ ଆନନ୍ଦ ବିହ୍ୱଳ ହୋଇ ପଡ଼ିଲେ । ଏହି ନିର୍ଜୀବ, ମରଣୋନ୍ମୁଖ ପ୍ରାଣୀର ଆଲିଙ୍ଗନରେ ସେ ଅଭୂତପୂର୍ବ ଆତ୍ମବଳ, ବିଶ୍ୱାସ ଓ ତୃପ୍ତି ଅନୁଭବ କଲେ । ଏହି ଆନନ୍ଦରେ ସେ ଶୋକ ଭୁଲିଗଲେ । ପଚିଶିବର୍ଷର ଦାମ୍ପତ୍ୟ ଜୀବନରେ ସେ ଏତେ ଆନନ୍ଦ ଲାଭ କରି ନ ଥିଲେ । ଆଜି ସେ ଅନୁଭବ କଲେ—ଯେଉଁ ଚରଣରେ ମୁଁ ନିଜକୁ ସମର୍ପଣ କରିଥିଲି, ଶେଷ ପର୍ଯ୍ୟନ୍ତ ସେ ମୋର ହୋଇରହିଲା ।

ଲବଙ୍ଗ ଏହିପରି ବିସ୍ମୃତ ଅବସ୍ଥାରେ ଥିବାବେଳେ ମନୋରମାର କାନ୍ଦ ଶୁଣି ଚମକି ପଡ଼ି ଦେଓ୍ୱାନ୍ ସାହେବଙ୍କ ମୁଖକୁ ଚାହିଁଲେ । ତାପରେ ସେ ସ୍ୱାମୀଙ୍କ ଚରଣରେ ମସ୍ତକ ରଖି କାନ୍ଦି କାନ୍ଦି ହୋଇ କାନ୍ଦି ଉଠିଲେ । ମୁହୂର୍ତ୍ତକ ମଧ୍ୟରେ ସାରା ଘର କାନ୍ଦି ଉଠିଲା ।

ଅଧଡ଼ିତ ଗଡ଼ିଗଲା । ଶବ ଗୁରୁସେବକ ଅପେକ୍ଷାରେ ପଡ଼ିରହିଲା । କାନ୍ଦିଦା ଲୋକେ କାନ୍ଦି କାନ୍ଦି ଚୁପ୍ ହୋଇଗଲେ । ଲବଙ୍ଗ ଶୋକଗ୍ରହରୁ ବାହାରି ଗ୍ରାଣ୍ଡ ଉପରକୁ ଗଲେ ଏବଂ ସଡ଼କ ଆଡ଼କୁ ଅନାଇଲେ । ବୁଲାବୁଲି କରିବା ଲୋକଙ୍କର ଭ୍ରମଣ ଶେଷ ହୋଇ ଯାଇଥିଲା । କେତେବେଳେ କମିତ ଗୋଟିଏ ଦାଇଁଟା ଗାଡ଼ି ବଙ୍ଗଳା ସାମନା ଦେଇ ଗ୍ରୀଲ ଯାଉଥିଲା । ଲବଙ୍ଗ ଭାବୁଥିଲେ—ଗୁରୁସେବକ ଏତେବେଳଯାଏଁ ଫେରିଲେନାହିଁ କାହିଁକି । ଗାଡ଼ି ତ ଏଠାରେ ଦାଇଁଟା ବେଳେ ଆସି ପହଞ୍ଚେ । ଏବେ କ'ଣ ଦାଇଁଟା ବାଜିନାହିଁ ! ଆସୁଥିବ ।

ମନୋରମା ବସିରହି ଦେଓ୍ୱାନ୍‌ସାହେବଙ୍କର ଅନ୍ତିମ ଉପଦେଶର ମର୍ମ ବୁଝିବାକୁ ଚେଷ୍ଟା କରୁଥିଲା । ତା'ର କାନରେ ସେ ବାକ୍ୟଟି ପ୍ରତିଧ୍ୱନିତ ହେଉଥିଲା—ଲବଙ୍ଗକୁ ଦେଖିବୁ ।'

( ୩୭ )

ଜଗଦୀଶପୁର ଠାକୁର ମନ୍ଦିରକୁ ପ୍ରତିଦିନ ବହୁ ସାଧୁ ମହାତ୍ମା ଆସନ୍ତି । ଶଙ୍ଖଧର ସେମାନଙ୍କ ପାଖରେ ବସେ । ସେମାନଙ୍କ କଥା ମନ ଦେଇ ଶୁଣେ ।

ଦିନେ ମନୋରମା ସହ ସେ ଲବଙ୍ଗ ପାଖକୁ ଗଲା । ଲବଙ୍ଗ ଅନେକ ସମୟ ଯାଏଁ ତୀର୍ଥକଥା ବର୍ଣ୍ଣନା କଲା । ଶଙ୍ଖଧର ମନୋଯୋଗ ଦେଇ ଶୁଣିଲା ପରେ କହିଲା—ଆଈମା, ତୁମେ ତ ବହୁତ ସାଧୁ ସନ୍ନ୍ୟାସୀ ଦେଖିଥିବ ।

ଲବଙ୍ଗ—ହଁ ବାବା, ଦେଖିଛୁ । ଜଣେ ସନ୍ନ୍ୟାସୀ ତ ଠିକ୍ ତୋ ବାବା ଚେହେରାକୁ ନବ ଆଣିବ । ମୋତେ କ'ଣ ଏତେ କଥା ଜଣା ଥିଲା !

ଶଙ୍ଖଧର—ଜଟା ଦାଢ଼ୀ ଥିଲା ?

ଲବଙ୍ଗ—ଜଟାଫଟା କିଛି ନାହିଁ । ବସ୍ତ୍ର ମଧ୍ୟ ଗେରୁଆ ନୁହଁ । କିନ୍ତୁ ହାତରେ ଗୋଟିଏ କମଣ୍ଡଳୁ । ଯେତେଦିନ ଜଗନ୍ନାଥଧାମରେ ରହିଲି, ପ୍ରତିଦିନ ସେ ଥରେ ଆସନ୍ତି । ପଚାରନ୍ତି —ମାତାଜୀ, କିଛି ଅସୁବିଧା ହଉନାହିଁ ତ ! ଅନ୍ୟଯାତ୍ରୀଙ୍କୁ ମଧ୍ୟ ପଚାରନ୍ତି । ମୁଁ ଯେଉଁ ଧର୍ମଶାଳାରେ ରହୁଥିଲି, ସେଠାରେ ଜଣକୁ ଥରେ ହଇଜା ହେଲା । ନିଜେ ସେ ଟେକି ନେଇ ଡାକ୍ତରଖାନାକୁ ନେଲେ । ଭଲ କରି ଆଣିଲେ । ହାତରୁ ପଇସା ଦେଇ ତା' ଗାଆଁକୁ ପଠେଇ ଦେଲେ । ଲୋକେ ତ କହନ୍ତି, କୋଉ ରାଜା ସନ୍ନ୍ୟାସୀ ହୋଇ ଯାଇଛି । କ'ଣ କହିବି, ଠିକ୍ ବାବୁଙ୍କ ସହ ମିଳି ଯାଉଥିଲା ଚେହେରା । କିଛି ଦିନ ପରେ ଶୁଣିଲି—ରାମେଶ୍ୱର ଚାଲିଗଲେଣି ।

ଶଙ୍ଖଧର—ତମେ ତା'ର କର ଦେଲନାହିଁ ? ଆମେ ସାଙ୍ଗେ ସାଙ୍ଗେ ଯାଇ ପଢ଼ିଣ୍ଣ ଯାଇଥାଆନ୍ତୁ ।

ଲବଙ୍ଗ—ଆରେ, ମୁଁ କ'ଣ ଜାଣିଛୁ ?

ଶଙ୍ଖଧର ରାମେଶ୍ୱର କଥା ଭୂଗୋଲ ବହିରୁ ପଢ଼ିଥିଲା । କିନ୍ତୁ ସେ ଅଳ୍ପଜ୍ଞାନରେ ସନ୍ତୁଷ୍ଟ ହେଲନାହିଁ । ମନୋରମା ଓ ଲବଙ୍ଗ କଥାବାର୍ତ୍ତା ହେଉଥିବା ବେଳେ ବାହାରକୁ ଆସି ଡ୍ରାଇଭରକୁ କହିଲା—ମୋତେ ଘରେ ପହଞ୍ଚାଇ ଦିଅ ।

ଡ୍ରାଇଭର—ମହାରାଣୀ ମା' ଯିବେନାହିଁ ?

ଶଙ୍ଖଧର—ମୋର ଜରୁରୀ କାମ ଅଛି । ମୋତେ ଛାଡ଼ିଦେଇ ଆସିବ ।

ଘରେ ପହଞ୍ଚି ପୁସ୍ତକାଳୟରେ ଏ ଭଳି କିଛି ପୁସ୍ତକ ଖବ ଖୋଜିବାକୁ ଯାଉଛି, ଗୁରୁସେବକଙ୍କୁ ଦେଖିଲା । ଅଜିକାଲି ଏ ମହାଶୟ ଦେଓ୍ୱାନ୍ ପଦପାଇଁ ଖୁବ୍ ଲାଲାୟିତ । ରାଜାସାହେବ କିନ୍ତୁ ଟାଳଟୁଳ କରୁଛନ୍ତି । ତାଙ୍କୁ ଶଙ୍ଖଧର କହିଲା—ଗୁରୁଜୀ, ତୀର୍ଥସ୍ଥାନ କଥା ଲେଖାଥିବା ବହି ଆମ ପୁସ୍ତକାଳୟରେ ଅଛି ?

ଗୁରୁସେବକ—ସେମିତି କିଛି ବହି ତ ନାହିଁ ।

ଶଙ୍ଖଧରକୁ ଏବେ ତେରବର୍ଷ ବୟସ । ଚରିତ୍ରରେ ତା'ର ଦୃଢ଼ତା ଦେଖା ଦେଇଥିଲା । ଯେଉଁ କଥା କରିବାକୁ ଇଚ୍ଛା କରେ, ନ କଲାଯାଏଁ ବସି ରହେନାହିଁ । ବଜାରକୁ ଯାଇ ବିଭିନ୍ନ ପୁସ୍ତକ ଦୋକାନ ବୁଲି ବଣ୍ଡଲେ ହେବ ବହି ଧରି ଘରକୁ ଫେରିଲା ।

ରାଜାସାହେବ ଭୋଜନକୁ ଯାଇ ଦେଖିଲେ ଶଙ୍ଖଧର ନାହିଁ । ଅହଲ୍ୟା ଯାଇ ଦେଖିଲା ଗୁଡ଼ାଏ ବହି ଧରି ଘାଣ୍ଟୁଚି । ଅହଲ୍ୟା କହିଲା—ଚାଲି ଖାଇବୁ । ଦାଦାଜୀ ରହିଁ ବସିଛନ୍ତି ।

ଶଙ୍ଖଧର—ନାହିଁ ମା, ମୋତେ ଭୋକ ହଉନାହିଁ ।

ଅହଲ୍ୟା—ଗୁଡ଼ାଏ ତ ନୂଆ ବହି ଆଣିଛୁ । ଭୋକ ଲାଗିବ କୁଆଡୁ ? କି ବହି ? ଆ, ଖାଇ-ସାରି ଦେଖିବୁ ।

ଶଙ୍ଖଧର—ନାହିଁ ମା' ମୋତେ ବିଲ୍‌କୁଲ ଭୋକ ନାହିଁ ।

ଅହଲ୍ୟା ତା'ପାଖରେ ବସିପଡ଼ି ବହିଗୁଡ଼ିକ ଦେଖିଲା । ଜଗନ୍ନାଥ, ବଦ୍ରିନାଥ, କାଶୀ, ରାମେଶ୍ୱର । ଏ ବହି କେଉଁଠୁ ଆଣିଲୁ ?

ଶଙ୍ଖଧର—ଅଜି ବଜାରରୁ ଆଣିଛି । ଆଇମା କହୁଚ—ବାବାଜୀଙ୍କ ଭଳି ଜଣକୁ ଜଗନ୍ନାଥଧାମରେ ଦେଖିଥିଲା । ସେ ଏବେ ରାମେଶ୍ୱର ଯାଇଛନ୍ତି ।

ଅହଲ୍ୟା ଦୟାହଜଳ ନେତ୍ରରେ, ଶଙ୍ଖଧରକୁ ରହିଁଲା । ତା'ର ମୁଖରୁ କଥା ବାହାରିଲନାହିଁ । ମାତୃ ହୃଦୟ କରୁଣାରେ ପୁଲକିତ ହୋଇ ଉଠିଲା । ଶଙ୍ଖଧରକୁ ଛାତିରେ ଲଗାଇ ଅଶ୍ରୁବେଗ

କ୍ରୋଧ କରି କହିଲା—ବାପା, ଯଦି ନ ଯିବୁ, ତେବେ ମୁଁ ଏଠିକି ନେଇ ଆସୁଛି । ଏଇଠି ବସି ଖାଇନେବୁ । ଶଙ୍ଖଧର—ଆଚ୍ଛା ମା', କାହା ହାତରେ ପଠେଇ ଦିଅ, ତମେ କାହିଁକି ଆସିବ ?

ସଙ୍ଗେ ସଙ୍ଗେ ଅହଲ୍ୟା ଥାଳିରେ ଖାଦ୍ୟ ନେଇ ଆସି ଶଙ୍ଖଧର ପାଖରେ ରଖିଦେଲେ । ଶଙ୍ଖଧର ଏବେ ଖାଇବା କଥା ଭୁଲି ଯାଇଛି । ସେ ଭାବୁଥିଲା ବାବା ବାହାରେ କୁଉଠି ଆରାମରେ ଥିବେ । କିନ୍ତୁ ଏବେ ତା'ର ସନ୍ଦେହ ହେଲା ସେ ସନ୍ନ୍ୟାସୀ ହୋଇ ଯାଇଛନ୍ତି । କେଉଁ ଗଛ ମୂଳେ ଶୋଉଥିବେ । ଭଲ ଖାଇବାକୁ ମିଳୁଥିବ କି ନାହିଁ । ମୁଁ କାହିଁକି ଏ ରାଜସୀ ଖାନା ଖାଇବ ! ସେଇଥି ପାଇଁ ସେ ମାଆଙ୍କୁ କହିଥିଲା କାହା ହାତରେ ପଠେଇ ଦେବାକୁ । ଏବେ ମାଆ ନିଜେ ନେଇ ଆସିଲେ । ଯଦି ନ ଖାଇବ ମାଆ କ'ଣ ଭାବିବେ । ଗୁଣ୍ଡାଡ ପାଟିକି ନେବାକୁ ଇଚ୍ଛା ହଉନାହିଁ । ମୁଁ ଏଠି ରୂପା ଥାଳିରେ ମୋହନଭୋଗ ଖାଉଥିବି । ବାବାଙ୍କୁ ତେଣେ ଖାଇବାକୁ ମିଳୁ ନ ଥିବ । ଥାଳି ପାଖରେବସି ଗୁ ଣ୍ଡାଏ ଧରି କାଇଁ କାଇଁ ହୋଇ କାନ୍ଦି ଉଠିଲା । ଅହଲ୍ୟା ତା'ର ମନୋଭାବ ଜାଣିପାରି ସ୍ୱୟଂ କାନ୍ଦିବାକୁ ଲାଗିଲେ । କିଏ କାହାକୁ ବୁଝେଇବ !

ଆଜିଠାରୁ ଅହଲ୍ୟା ସତର୍କ ରହିଲା । କୋଉ ମୁହୂର୍ତ୍ତିରେ ଶଙ୍ଖଧର ପିତାଙ୍କୁ ଖୋଜିବା ପାଇଁ ଚାଲିଯିବ । ତାକୁ ଏକୁଟିଆ ଖେଳିବାକୁ ଛାଡ଼ିଲେନାହିଁ । ବଜାରକୁ ଛାଡ଼ିଲେ ନାହିଁ । ସମସ୍ତଙ୍କୁ ମନାକଲେ ଯେ ତା' ଆଗରେ ତା' ପିତାଙ୍କ ଚର୍ଚ୍ଚା କରନାହିଁ ।

ଏବେ ସେ ଅନୁତାପ କରିବାକୁ ଲାଗିଲା । ଶଙ୍ଖଧରକୁ ନେଇ ସ୍ୱାମୀଙ୍କ ସହ ମୋର ନ ଯିବା ବଡ଼ ଭୁଲ ହୋଇଛି । ରାଜ୍ୟ ଲୋଭରେ ପତିଙ୍କୁ ହରେଇଛି, ଏବେ କେଉଁ ମୁହୂର୍ତ୍ତିରେ ପୁତ୍ରକୁ ମଧ୍ୟ ହରେଇବାକୁ ପଡ଼ିବ । ସୁଖ ଏବଂ ବିଳାସ ପ୍ରତି ଶଙ୍ଖଧରର କ୍ରମଶଃ ଉଦାସୀନତା ଦେଖି ସେ ଅତ୍ୟନ୍ତ ଚିନ୍ତିତ ହୋଇ ପଡିଲା ।

( ୭୮ )

ଠାକୁର ହରିସେବକ ସିଂହଙ୍କ କ୍ରିୟାକର୍ମ ସରୁ ଶେଷ ହେବା ପରେ ଦିନେ ଲବଙ୍ଗ ନିଜର ଲୁଗାପଟା ବନ୍ଧାବନ୍ଧ ଆରମ୍ଭ କଲା । ତା'ପାଖରେ ଯାହା ଟଙ୍କା ପଇସା ଥିଲା, ସବୁ ଗୁରୁସେବକଙ୍କୁ ଦେଇ କହିଲା—ବାପା, ମୋତେ ଏଠାରେ ରହିବାକୁ ଭଲ ଲାଗୁନାହିଁ । କୌଣସି ଗାଆଁରେ ଯାଇ ରହିବି ।

ବାସ୍ତବରେ ଲବଙ୍ଗଙ୍କୁ ଏ ଘର ଆଉ ଭଲ ଲାଗୁନଥିଲା । ଘରର ପ୍ରତ୍ୟେକ ବସ୍ତୁ ଦେଖି ଯେପରି ତାଙ୍କୁ କାମୁଡ଼ି ଗୋଡ଼ାଉଛନ୍ତି । ପଚିଶ ବର୍ଷ ଯାଏଁ ଏ ଘରର ମାଲିକଆଣୀ ରହିବା ପରେ ସେ ଏବେ କାହାର ଆଶ୍ରିତା ହୋଇ ପାରିବ ନାହିଁ । ସବୁ କିଛି ତାହାର ହାତରେ ହୋଇଛି । କିନ୍ତୁ ସେ ସବୁ ଏବେ ତା'ର ନୁହେଁ । ଏ ଘର ସେ ନିଜେ ତିଆରି କରେଇ ଥିଲା । ଘର ସେ ତିଆରି ନ କରେଇଥିଲେ ଠାକୁର ସାହେବ ଏ ପର୍ଯ୍ୟନ୍ତ କୌଣସି ଭଡ଼ା ଘରେ ପଡ଼ିଥାଆନ୍ତେ । ଘରର ସବୁ ସାମାନ ସେ ନିଜେ କିଣିଥିଲା । କିନ୍ତୁ ଏବେ ତାର କିଛି ନାହିଁ । ସବୁ ସ୍ୱାମୀଙ୍କ ସହ ଚାଲିଗଲା । ବୈଧବ୍ୟ ଶୋକ ସହ ତାଙ୍କ ମନରେ ଏ ଭାବନା ଜାଗ୍ରତ ହେଲା ଯେ, ସେ ଅନ୍ୟର ଖାଉଛି ।

ଗୁରୁସେବକ କିନ୍ତୁ ପୂର୍ବାପେକ୍ଷା ଏବେ ଲବଙ୍ଗ ପ୍ରତି ବେଶି ନଜର ଦେଉଥିଲେ । କିନ୍ତୁ ସମୟେ ସମୟେ ଏପରି କିଛି ଘଟି ଯାଉଥିଲା । ଯାହାଦ୍ୱାରା ପରାଧୀନତାର ସ୍ମୃତି ଜାଗ୍ରତ ହେଉଥିଲା । କୌଣସି ଚାକରବାକର ଏବେ ତା'ଠାରୁ ବେତନ ନେବାକୁ ଆସୁ ନାହାନ୍ତି । ବାକୀ କର୍ମଚାରୀ ତାଙ୍କୁ ଖୁସାମତ କରିବାକୁ ଏବେ ଆଉ ଆସୁନାହାନ୍ତି । ଗୁରୁସେବକ ଏବଂ ତାଙ୍କ ସ୍ତ୍ରୀଙ୍କ ବ୍ୟବହାରରେ କିଛି ତ୍ରୁଟି ନାହିଁ । କିନ୍ତୁ ମଫସଲର ଲୋକେ ଆଉ ଭେଟି ଆଣି ତା' ହାତରେ ଦେଉନାହାନ୍ତି । ସହରର ଭଡ଼ାବାଲା ଦୋକାନୀ ଭଡ଼ାଟଙ୍କା ଦେବା ପାଇଁ ତା' ପାଖକୁ ଆସୁନାହାନ୍ତି । ଗୁରୁସେବକ ଅବଶ୍ୟ କାହାକୁ କିଛି କହିନାହିଁ । ପ୍ରଥା ଏବଂ ରୀତି ଏସବୁକୁ ଓଲଟ ପାଲଟ କରି ଦେଇଛି । କିନ୍ତୁ ଏ ସବୁ କଥା ତା'ର ଆହତ ହୃଦୟକୁ ବ୍ୟଥା ଦେଉଛି । ତା'ର ମଧୁର ସ୍ମୃତିରେ କିଛି କ୍ଷଣ ପାଇଁ ଗ୍ଳାନିର ଛାୟା ପଡ଼ୁଛି । ଏଥିପାଇଁ ସେ ଏଠାରୁ ଯାଇ କୌଣସି ମଫସଲରେ ରହିବାକୁ ଚାହୁଁଛନ୍ତି । ଠାକୁର ସାହେବ ଯଦି ତା' ନାଁଆରେ କିଛି ଲେଖିଲେନାହିଁ, କାହିଁକି ସେଠି ପଡ଼ିଥିବ ! ଏବେ ତ କେତେ କୁଡ଼ିଆ—ପଟେ ରୁଟି ଦରକାର । ଏଥିପାଇଁ ନିଜେ ପରିଶ୍ରମ ମଧ୍ୟ କରିପାରିବ । କୁଡ଼ିଆ ଛାଡ଼ି ମହଲ ସୁଖ-ଭୋଗର ଏଇ ଦଣ୍ଡ ।

ଗୁରୁସେବକ କହିଲେ—କହିବୁନି, କେଉଁଠିକି ଯିବାକୁ ଚାହୁଁଛୁ ?

ଲବଙ୍ଗ—ଭଗବାନ ଯେଉଁଠିକି ନେବେ । କୋଉ ଶାଶୁ ଶଶୁରଙ୍କର ଘର ତ ନାହିଁ ଯେ କହିବି ।

ଗୁରୁସେବକ—ଭଉଣୀ, ତୁ ଚାଲିଗଲେ ମୋର କେତେ ବଦନାମ ହେବ ! ଦୁନିଆ କହିବ, ଜଣେ ବିଧବାକୁ ପୋଷି ପାରିଲେନାହିଁ । ତାକୁ ଘରୁ ବାହାର କରିଦେଲା । ମୁଁ ଆଉ କେଉଁଠି ମୁହଁ ଦେଖେଇ ପାରିବିନାହିଁ । ତୋର ଯଦି କିଛି ଅଭିଯୋଗ ଅଛି, ତେବେ ମୋତେ କହ । କୌଣସି ବସ୍ତୁର ଆବଶ୍ୟକ ଅଛି ତ ମୋତେ କହ । ମୋ ତରଫରୁ ଯଦି କିଛି ଅବହେଳା ହେବ, ତେବେ ତୁ ଯାହା ଚାହିଁବୁ କରିବୁ । କିନ୍ତୁ ଏମିତି ମୁଁ କେବେହେଲେ ଯିବାକୁ ଦେବିନାହିଁ ।

ଲବଙ୍ଗ—କ'ଣ ବାନ୍ଧ ରଖିବୁ ?

ଗୁରୁସେବକ—ହଁ, ବାନ୍ଧ ରଖିବ ।

ଏଇ ଦୁରାଗ୍ରହପୂର୍ଣ୍ଣ କଥା ହେତୁ ସେ ଗୁରୁସେବକଙ୍କୁ ପସନ୍ଦ କରେ । ଲବଙ୍ଗର ହୃଦୟ ପୁଲକିତ ହୋଇଗଲା । ଏଇ କଥା ତା'ର ଆତ୍ମୀୟତାପୂର୍ଣ୍ଣ ବୋଲି ଜାଣିଲା । ସେ ଟିକିଏ ତେଜ ଗଳାରେ କହିଲେ—ବାନ୍ଧ ରଖିବୁ କାହିଁକି ! ମୋଠି କ'ଣ ଅଧିକାର ଅଛି ?

ଗୁରୁସେବକ—ହଁ ଅଛି । ନ ଥିଲେ ତିରିଶି ବର୍ଷ କାଳ ଏଠି ରହିଥା'ନ୍ତୁ କିପରି ? ଆଉ କେହି ଆସି ରହିଗଲେନାହିଁ । ବାବା ଗୃହିଁଥିଲେ ତିନିଜଣ ବାନ୍ଧା ହୋଇଥାନ୍ତେ । ପରେ ରକ୍ଷିତା ରଖି ପାରିଥାଆନ୍ତେ । ତାହାପରୁ ସେ କାହିଁକି କଲେନାହିଁ । ଯେଉଁ ସମୟରେ ମୋ ମାଆଙ୍କର ମୃତ୍ୟୁ ହେଲା, ସେ ସମୟଟା ଥିଲା ବାବାଙ୍କର ଯୌବନ ସମୟ । କିନ୍ତୁ ଆଜି ତାଙ୍କର ଭକ୍ତଙ୍କର ଶତ୍ରୁ ମଧ କହି ପାରିବନାହିଁ ତାଙ୍କ ଚରିତ୍ରରେ ଦୋଷ ଥିଲା ବୋଲି । ସେ ଅବଶ୍ୟ ହୋଇଥିଲେ ତୋର ସେବାର ଶିକାରରେ । ତା' ନ ହୋଇଥିଲେ ଆଜି ଏମିତି ପରି ନ ଥା'ନ୍ତା । ମୁଁ ସତ କହୁଛି—ଯଦି ତୁ ପରୁ ପାଦ ବାହାରକୁ ବାହାର କରିବୁ, ଦୁନିଆ ମୋର ବଦନାମ କରୁ ପଛେ, ମୁଁ ତୋର ଗୋଡ଼ ଭାଙ୍ଗିଦେବ । ତୁ ଯାହା ଗୃହିଁବୁ ତାହା କରିବୁ । ଯୁଆଡ଼େ ଗୃହିଁବୁ ସିଆଡ଼େ ଯିବୁ—କେହି କିଛି କହିବେନାହିଁ ? ତୋର ନାମ ସହିତ ମୋର ଏବଂ ମୋର ପୂଜ୍ୟ ବାବାଙ୍କର ଇଜ୍ଜତ ବନ୍ଧା ହୋଇଛି ।

ଲବଙ୍ଗର ମନହେଲା ଗୁରୁସେବକର ପାଦତଳେ ବସି ଭୂହେ କାନ୍ଦିବ ଏବଂ ତାକୁ କୁଣ୍ଢାଇ ପକାଇ କହିବ—ବାପ, ମୁଁ ତୋତେ କୋଳରେ ଖେଳେଇଚି । ତୋତେ ଛାଡ଼ି ଭଲା କୁଆଡ଼େ ଯାଇ ପାରିବ ! କିନ୍ତୁ ସେ କୃତ୍ରିମ ଭାବରେ କହିଲେ—ଆରେ ଅଚ୍ଛା କଥା । ମୋତେ ବାନ୍ଧ ରଖିବୁ ।

ଗୁରୁସେବକ ବାହାରକୁ ଗ୍ଲିଗଲା ପରେ ଲବଙ୍ଗ ନିଜ କୋଠରୀ ଭିତରକୁ ଆସି ଖୁବ୍ କାନ୍ଦିଲେ । ଗୁରୁସେବକ କ'ଣ କୌଣସି ଦାସୀକୁ କହିପାରି ଥାଆନ୍ତା—ମୁଁ ତୋତେ ବାନ୍ଧ ରଖିବ ! କେବେ ନୁହେ । କିନ୍ତୁ ନିଜ ସ୍ତ୍ରୀକୁ ଏହା କହି ପାରିବ—କାରଣ ସ୍ତ୍ରୀ ସହିତ ତା'ର ଇଜ୍ଜତ ବନ୍ଧା ହୋଇଛି । ଅନେକ ସମୟ ପରେ ଦାସୀକୁ କହିଲେ—ଆରେ ଶୁଣିଲୁ—ମୋର ମୁଣ୍ଡଟା କାହିଁକି ବଥଉଚି । ଟିକିଏ ଚିପିଦେଲୁ ।

କେତେ ମାସ ପରେ ଆଜି ଲବଙ୍ଗ ମୁଣ୍ଡ ଚିପିଦେବାକୁ କହିଲେ । କାହାକୁ କିଛି କହିବାକୁ ତା'ର ସଙ୍କୋଚ ହେଉଥିଲା । କାଳେ ନ ମାନିବ । ଗୁକର୍ବାକରଙ୍କ ହୃଦ ହୃଦୟରେ ଶ୍ରଦ୍ଧା ପୂର୍ବପରି ଥିଲା । ଏ ପାଟିଗୁଣ୍ଡ ଗ୍ୱକରବାକରଙ୍କ କାନରେ ପଡ଼ିଥିଲା । ସେମାନେ ଅନୁମାନ କଲେ ଗୁରୁସେବକ ଲବଙ୍ଗକୁ ଗାଳି ଦେଉଚି । ତେଣୁ ସ୍ୱଭାବତଃ ଲବଙ୍ଗ

ପ୍ରତି ସେମାନଙ୍କର ସହାନୁଭୂତି ଜାତ ହେଲା । ସେମାନେ ପରସ୍ପର ମଧ୍ୟରେ ଇଙ୍ଗିତପୂର୍ଣ୍ଣ ଟିକାଟିପଣୀ କରୁଥିଲେ । ଦାସୀ ତାଙ୍କର ହୁକୁମ ପାଇ ଘଙ୍ଗେ ସଙ୍ଗେ ତେଲ ଆଣି ମୁଣ୍ଡ ଚପିଲା । ସେ ନିଜର ମନୋଭାବ ପ୍ରକାଶ କରିବା ପାଇଁ ଇଏ ଏକ ଭଲ ସୁଯୋଗ ମନେ କରି କହିଲା—ମାଲିକାଣୀ ଆଜି ସାନବାବୁ କୋଉ କଥାରେ ବିଗିଡ଼ି ଥିଲେସ ! ତମେ ଏଠୁ ଗ୍ଲଲିଗଲେ ମାଲିକାଣୀ, ନହେଲେ ଦାସୀ ଗୁଳିର ରହିବେନାହିଁ । ସମସ୍ତେ ଠିକ୍ କରିଚନ୍ତି, ଯୋଉଦିନ ମାଲିକାଣୀ ଏଠୁ ଗ୍ଲଲିଯିବେ, ଆମେ କେହି ରହିବାନାହିଁ ।

ଲବଙ୍ଗ ନମ୍ର ଭାବରେ କହିଲା—ଭାଗ୍ୟ ଶ୍ରେଷ୍ଠ ନ ହେଲେ କାହାର ଗାଳି କାହିଁକି କିଏ ଶୁଣନ୍ତା !

ଦାସୀ—ନାଇଁ ମାଲିକାଣୀ, ଭାଗ୍ୟ ଖରାପ କହନ୍ତୁ । ଠାକୁରମାହେବ ମଲାବେଳେ ଖାଲି ତମରି ନାଁ ଘୋଷି ହେଲେ ।

ସହସା ମନୋରମା କୋଠରୀ ଭିତରେ ପ୍ରବେଶ କଲା । ମୁଣ୍ଡରେ ତେଲ ଘଷୁଥିବାର ଦେଖି କହିଲା—କଣ ମା’, ମୁଣ୍ଡ ବିନ୍ଧୁଛି କି ?

ଲବଙ୍ଗ—ନାଇଁଲେ ମା’, ଦେହ ଭଲ ଅଛି । ଆ ବସ ।”

ମନୋରମା ଦାସୀକି କହିଲା—ତୁ ଯା’ । ମୁଁ ଘଷି ଦଉଚି । ଦୁଆର ମୁହଁରେ ଛପି ହୋଇ କଥା ଶୁଣିବୁନାହିଁ । ତେଣେ ଦୂରକୁ ଗ୍ଲଲିଯିବୁ ।

ଦାସୀ ଏମାନଙ୍କ କଥା ଶୁଣିବା ପାଇଁ ହଟସ୍ତ ହେବାକୁ ପଡ଼େଇ ନ’ଥାନ୍ତା । ଏ ହୁକୁମ୍ ଶୁଣି ଚୁପ୍ ହୋଇ ଗ୍ଲଲିଗଲା । ମନୋରମା ମୁଣ୍ଡ ଚପିଦେବାକୁ ବସିଲା । କିନ୍ତୁ ଲବଙ୍ଗ ତା’ର ହାତକୁ ଧରି ପକେଇ କହିଲା—ନାଇଁ ମା’, ଥାଉ । ବହୁନ୍ନ ମ । ଏମିତି ଟିକିଏ ତାଳି ହେଲି ତ । ତୁ ଚପିବା ଉଚିତ ନୁହେଁ । କିଏ ଦେଖିଲେ କହିବ—ବୁଢ଼ୀଟା ପାଗଳୀ ହୋଇ ଗଲଣି । ରାଣୀ ହାତରେ ମୁଣ୍ଡ ଚପଉଛି ।

ମନୋରମା ମୁଣ୍ଡ ଚପି କହିଲା—ରାଣୀ ମୁଁ ଯୋଉଠି—ସେଇଠି । ଏଠାରେ ମୁଁ ତୁମର ନୋକ୍ସ । ଆଜି ଭାଇ ଯାଇ ତୁମ ଉପରେ ଖୁବ୍ ବିଗୁଡ଼ୁଥିଲେ । ଗୋଡ ଘର୍ଷି ଦେବ, ଗଳା ଚପିଦେବ । କେତେ ପଗ୍ଲରିଲି—କଥା କ’ଣ, କହ । କିନ୍ତୁ ରାଗରେ କିଛି କହିଲେନାହିଁ । ଭାଇ ହେଲେ କ’ଣ ହବ, ତାଙ୍କର ଅନ୍ୟାୟ ମୁଁ ସହି ପାରୁନାହିଁ । ସେ ନିଜକୁ ଏ ଘରର ମାଲିକ ବୋଲି ଭାବୁଛନ୍ତି । ବାବା ମୋ ନାଁରେ ସବୁ ଛାଡ଼ି ଦେଇଛନ୍ତି । ମୁଁ ଯାହାକୁ ଗ୍ଲହିଁବି ରଖିବି, ଯାହାକୁ ଗ୍ଲହିଁବି ବାହାର କରିଦେବି । ବାବା ତା’ର ସ୍ୱଭାବ ଭଲ ଭାବରେ ଜାଣି-ଥିଲେ । ମୁଁ ଏଯାଏଁ ତୁମକୁ କହିନ ମା’,—ସୁବିଧା ମିଳି ନଥିଲା—ଆଜି ଭାଇଙ୍କର କଥା ଶୁଣି କହୁଛି—ବାବା ତାଙ୍କର ସବୁ ସମ୍ପତ୍ତି ତୁମ ନାଆଁରେ ଲେଖି ଦେଇଛନ୍ତି ।

ଏ ସୂଚନାର ପ୍ରଭାବ ଟିକିଏ ହେଲେ ଲବଙ୍ଗ ଉପରେ ପଡ଼ିଲାନାହିଁ । କୌଣସି ପ୍ରକାର ଉଲ୍ଲାସ, ଉତ୍ସୁକତା କିମ୍ବା ଗର୍ବ ତାଙ୍କ ମୁହଁରେ ଫୁଟିଲାନାହିଁ । ସେମିତି ଉଦାସୀନ ଭାବରେ ଖଟ ଉପରେ ପଡ଼ିରହିଲା ।

ମନୋରମା ପୁଣି କହିଲା—ସେ ଲେଖି ଦେଇଥିବା ଓ୍ୱିସିୟତନାମା (ୱିଲ୍) ମୋ ପାଖରେ ଅଛି ଏବଂ ମୁଁ ତହିଁରେ ସାକ୍ଷୀ ପଡ଼ିଛି । ସେ ମହାଶୟ ଏହାକୁ ଦେଖିଲେ ଆଖି ଖୋଲିଯିବ ।

ଲବଙ୍ଗ ଗମ୍ଭୀର ଭାବରେ କହିଲା—ନୋଟ୍, ସେ ଓ୍ୱିସିୟତନାମା ତାକୁହିଁ ଦେଇଦେ । ତୋର ବାବା ବୃଥାରେ ଲେଖିଲେ । ମୁଁ ତାଙ୍କର ସମ୍ପତ୍ତି ନୁହେଁ, ତାଙ୍କର ସ୍ନେହ ଆଦର ଚାହିଁଥିଲି । ଭଗବାନଙ୍କୁ ସାକ୍ଷୀ ରଖି କହୁଛି ଝିଅ, ଏହି ବିଷୟରେ ମୋ ପରି ଭାଗ୍ୟ ଖୁବ୍ କମ୍ ସ୍ତ୍ରୀଙ୍କର ଥିବ । ମୁଁ ତାଙ୍କର ପ୍ରେମ-ଧନ ପାଇ ସନ୍ତୁଷ୍ଟ । ଏହା ବ୍ୟତୀତ ମୋର ଅନ୍ୟ କୌଣସି ଧନ ପ୍ରତି ଲୋଭ ନ ଥିଲା । ମୁଁ ମୋ ପଥରେ ଯଦି ଠିକ୍ ଥିବି, ତେବେ ମୋତେ ଶାଗଭାତର ଅଭାବ ରହିବନାହିଁ । ଗୁରୁଦେବକକୁ ମୁଁ କୋଳରେ ଖେଳେଇଚି, ତାକୁ ପାଳିଛି, ପୋଷିଛି । ସେ ମୋ ସ୍ୱାମୀର ପୁଅ । ତା'ର ହକ ମୁଁ କେବେହେଲେ ଛଡ଼େଇ ନେଇ ପାରିବନାହିଁ । ତା ସାମନାରେ ବଢ଼ା ହୋଇଥିବା ଥାଳି କେମିତି ଉଠେଇ ନେବି ! ସେ କାଗଜ ଚିରି ଫିଙ୍ଗିଦେ । ଲେଖି ଦେଇ ସେ ନିଜ ପ୍ରତି ଏବଂ ଗୁରୁସେବକ ପ୍ରତି ଅନ୍ୟାୟ କରିଛନ୍ତି । ଗୁରୁଦେବକ ନିଜ ବାପର ପୁଅ । ସେ ମୋତେ ମାନୁ ବା ନ ମାନୁ—ମୁଁ ତାକୁ ନିଜର ବୋଲି ଭାବେ । ତୁ ମୋ ମୁଣ୍ଡ ପାଖରେ ବସି ମୋ ମୁଣ୍ଡ ଚିପି ଦଉଛୁ, ଧନ ଦ୍ୱାରା କ'ଣ ଏ ସୁଖ ମୋତେ ମିଳିପାରିବ ! ମୁଁ ସାରା ସଂସାରର ରାଣୀ ହୋଇଥିଲେ ଯେଉଁ ସୁଖ ମିଳନ୍ତା । ଗୁରୁଦେବକ ମୁହଁରୁ 'ମାଆ' ଶବ୍ଦ ଶୁଣିଲେ ତା'ଠାରୁ ଅଧିକ ସୁଖୀ ହେବି—ଏ କଥା ଗୁରୁସେବକକୁ କହିଦବୁ ।

ଲବଙ୍ଗର ଆଖି ସଜଳ ହୋଇ ପଡ଼ିଲା । ମନୋରମା ତା' ଆଡ଼କୁ ପ୍ରେମ, ଶ୍ରଦ୍ଧା, ଗର୍ବ ଏବଂ ଆଶ୍ଚର୍ଯ୍ୟର ସହ ଅନାଇଁ ରହିଥିଲା—ସତେ ଯେପରି ଲବଙ୍ଗ ଗୋଟିଏ ଦେବୀ ।

( ୩୯ )

ରାଣୀ ବସୁମତୀ ଅନେକ ଦିନ ହେଲା ସ୍ନାନ, ଧ୍ୟାନ, ବ୍ରତ, କୀର୍ତ୍ତନ ପ୍ରଭୃତିରେ ମଗ୍ନ । ରାଜ୍ୟ ସମ୍ପର୍କରେ ସେ କିଛି ଜାଣନ୍ତି ନାହିଁ । ଭକ୍ତି ତାଙ୍କର ବାସନାଗୁଡ଼ିକୁ ଶାନ୍ତ କରିଦେଇଥିଲା ।

ଖୁବ୍ କମ୍ ଖାଆନ୍ତି, ପୁଣି ବଳରେ ଅଳେ, ବସନ, ଭୂଷଣ ପ୍ରତି ମଧ ତାଙ୍କର ଅସ୍ପୃତ ନ ଥିଲା । ତପସ୍ୱିନୀ ଭଳି ଦେଖାଯାଉଥିଲେ ।

ରାଣୀ ନ୍ନମପ୍ରିୟାଙ୍କର ସେଇ ଗୋଟିଏ ରସ—ସଙ୍ଗୀତ ପ୍ରତି ଅନୁରାଗ । ଏହା ବ୍ୟତୀତ ପୁରାତନ ମୁଦ୍ରା, ଦେଶଦେଶାନ୍ତରର ଡାକ ଟିକଟ ସଂଗ୍ରହ ଏବଂ ଏହିଭଳି ସାମଗ୍ରୀ ସଂଗ୍ରହ କରିବାର ନିଶା ଥିଲା । ତାଙ୍କ କୋଠରୀଟି ଗୋଟିଏ ଯାଦୁଘର । ସେ ପ୍ରଥମରୁ ଦୁନିଆଁର ଏ ଝିନ୍‌ଝଟରୁ ନିଜକୁ ଅଲଗା ରଖୁଥିଲେ ।

ଏବେ କିନ୍ତୁ ଦିନ ହେଲା ରାଣୀ ହେହ୍ଣଙ୍କ ମନ ଭକ୍ତ ପ୍ରତି ଟାଣିବା ଦେଖାଯାଉଥିଲା । ଇଏ ତ ପ୍ରଥମେ ଇର୍ଷାରେ ଜଳୁଥିଲେ । ଏବେ ସେ ସାକ୍ଷାତ୍ କ୍ଷମା ଓ ଦୟାର ଦେବୀ । ଅହଲ୍ୟାକୁ ସେ ଖୁବ୍ ଭଲ ପାଉଥିଲେ । କେବେ କେବେ ତା' ପାଖରେ ବସି ବହୁ ସମୟ ଧରି କଥାବାର୍ତ୍ତା କରୁଥିଲେ । ଶଙ୍ଖଧର ମଧ ରେହ୍ଣୀଙ୍କୁ ଖୁବ୍ ଭଲ ପାଉଥିଲା । ଶଙ୍ଖଧରକୁ ଯିଏ ସ୍ନେହ ଆଦର କରିବ, ରାଜାସାହେବ ତାର ଦାସ । ଦିନେ ରୋହ୍ଣୀ ଗୋଟିଏ ସୁନାର ଘଡ଼ି ଶଙ୍ଖଧରକୁ ପୁରସ୍କାର ଦେଲେ । ଶଙ୍ଖଧର ପ୍ରଥମଥର ପାଇଁ ପୁରସ୍କାର ମଜ୍ଜା ପାଇଲା । ଖୁବ୍ ଖୁସି ହେଲା । ମନୋରମା କିନ୍ତୁ ଏ ଯାଏଁ ରୋହ୍ଣୀ ପ୍ରତି ସତର୍କ ରହେ । ସେ ଖୋଲାଖୋଲି ତ କିଛି କହୁ ନ ଥିଲା । କିନ୍ତୁ ରୋହ୍ଣୀ ପାଖକୁ ଶଙ୍ଖଧରର ଯିବାଟାକୁ ସେ ପସନ୍ଦ କରୁନଥିଲା ।

ଯେଉଁଦିନ ମନୋରମା ପିତାଙ୍କର ଉଇଲ କଥା କହିବା ପାଇଁ ରାଜାଙ୍କ ପାଖକୁ ଯାଇଥିଲା, ସେହି ଦିନର କଥା । ସଂଧ୍ୟା ସମୟ । ରାଜା ସାହେବ ବଗିଚା ପୁଷ୍କରଣୀ କୂଳରେ ବସି ଅଟାଗୁଳା ମାଛମାନଙ୍କ ପାଖକୁ ଫିଙ୍ଗୁଥିଲେ । ହଠାତ୍ ରୋହ୍ଣୀ ତାଙ୍କ ପାଖକୁ ଆସିବାର ଦେଖିଲେ । ନିକଟକୁ ଆସିବାରୁ ରାଜା କହିଲେ—କେମିତି ଚାଲି ଆସିଲ ରୋହ୍ଣୀ ! ଆସ, ବସ ।

ରୋହ୍ଣୀ—ଆପଣ ଏଠାରେ ବସିଥିବାର ଦେଖି ଚାଲି ଆସିଲି । ମୁଁ ଆସିବା ଯଦି ଖରାପ ମନେ କରୁଛନ୍ତି, ତେବେ ଚାଲିଯିବି ।

ରାଜା—କାହିଁକି ଲଜ୍ଜିତ କରୁଚ ରୋହ୍ଣୀ । ମୁଁ ତ ସ୍ୱୟଂ ଲଜ୍ଜିତ । ମୁଁ ତୁମ ପ୍ରତି ଅନ୍ୟାୟ କରିଛି ଏବଂ ସେଥିପାଇଁ ମୋତେ କ'ଣ ଯେ ପ୍ରାୟଶ୍ଚିତ କରିବାକୁ ପଡ଼ିବ । ମୁଁ ଜାଣି ପାରୁନାହିଁ ।

ରୋହ୍ଣୀ ଶୁଷ୍କିଲ ହସ ହସି କହିଲା—ଆପଣ କିଛି ଅନ୍ୟାୟ କରିନାହାନ୍ତି । ସବୁ ପୁରୁଷ ଯାହା କରନ୍ତି, ଆପଣ ସେଇଆ କରିଛନ୍ତି । ଅନ୍ୟମାନେ ଲୁଚିଛପି କରନ୍ତି । ରାଜାମାନେ ସେହି କାମ ଖୋଲଖୋଲି କରଥା'ନ୍ତି । ସ୍ତ୍ରୀ ତ କେବେ ପୁରୁଷର ଖେଳନା, କେବେ ପାଦର ଯୋତା । ଏ ଦୁଇ ଅବସ୍ଥାରେ ତା'ର ଜୀବନ । ଆମ ସ୍ତ୍ରୀ ଜାତିକୁ ଭଗବାନ ଏଇଥିପାଇଁ

ଶଙ୍ଖଚନ୍ଦ୍ର—ଏଥିରେ ଆପଣଙ୍କର ଦୋଷ ନାହିଁ । ଆମେ ଚପଗ୍ରୂପ ହେବା ଉଚିତ ! ଅଭିମାନ ବା କଳି କଲେ, ତା'ର ଦଣ୍ଡ ବଡ କଠୋର ହୁଏ ଏବଂ ବିରୋଧ କଲେ ତ ସର୍ବନାଶ ଘଟିବ ।

ଏହା ବ୍ୟଙ୍ଗ ନ ଥିଲା, ବରଂ ରୋହିଣୀଙ୍କ ଅବସ୍ଥାର ଯଥାର୍ଥ ଏବଂ ନିଷ୍ପକ୍ଷ ସମାଲୋଚନା ଥିଲା । ରାଜାସାହେବ ମୁଣ୍ଡପୋତି ସବୁ ଶୁଣିଗଲେ । ମୁହଁରୁ ତାଙ୍କର କଥା ବାହାରିଲାନାହିଁ ।

ରୋହିଣୀ ପୁଣି କହିଲେ— ସବୁ ବୁଢ଼ିଙ୍କର ବୁଲିଚିବାଟା ଆଜକି ଷୋଳ ବର୍ଷ ହେଲା । ବାବୁ ଚକ୍ରଧରଙ୍କ ଅନୁଗ୍ରହରେ ଫେରିଆସିଲି । ଆଜିଯାଏଁ ଆପଣ କେବେ ଭୁଲିରେ ମଧ୍ୟ ପଚାରିଲେଣି କି ବଞ୍ଚିଛି କି ମରିଛି ବୋଲି । ଏହାଠାରୁ ମୋତେ ବୁଲିଯିବାକୁ ଦେଇଥିଲେ ବରଂ ଭଲ ହୋଇ ଥାଆନ୍ତା । ଆପଣ କ'ଣ ଭାବୁଛନ୍ତି—ମୁଁ କୁମାର୍ଗ ଆଡ଼କୁ ଯାଇଥାଆନ୍ତି ବୋଲି ! ନା । ମୁଁ ଗଙ୍ଗାକୋଳ ବ୍ୟତୀତ ଅନ୍ୟ କୁଆଡ଼େ ଯାଇ ନ ଥା'ନ୍ତି । ଷୋଳବର୍ଷ ମାନସିକ ପୀଡ଼ା ଭୋଗ କରିବା ଅପେକ୍ଷା, ମୁହୂର୍ତ୍ତିକର କଷ୍ଟ ଖୁବ୍ ଭଲ ହୋଇଥା'ନ୍ତା । ହାୟ୍ ଆଶା । ଏଇ ଆଶା ମୋତେ ଫେରେଇ ଆଣିଲା । ଚକ୍ରଧର ତ କେବଳ ବାହାନା । ସେଇ ଆଶା ମୋତେ ଫୁସୁଲାଫୁସୁଲି କରି ଯୁଗେ ବିତେଇ ଦେଲା । ଆପଣ ଜାଣନ୍ତି, ଏ ଷୋଳବର୍ଷ ମୋର କିପରି କଟିଛି ! କାହାକୁ ସଙ୍ଗୀତରେ ଆନନ୍ଦ ମିଳେ, ମୋତେ କିନ୍ତୁ ମିଳେନି । କିଏ ପୂଜା ପାଠରେ ସନ୍ତୋଷ ପାଏ, ମୋର କିନ୍ତୁ ନୁହେଁ । ମୁଁ ନୈରାଶ୍ୟର ସୀମା ପର୍ଯ୍ୟନ୍ତ ପହଞ୍ଚିଲିଣି । ପୁରୁଷ ଥାଇ ମୁଁ ବୈଧବ୍ୟ କଳନା କରିପାରୁନି । ମନର ଗତି ବଡ ବିଚିତ୍ର । ମୁଁ ରାଜପୁତ କନ୍ୟା, ମରିବା ଜାଣେ । କେତେଥର ମୁଁ ଆତ୍ମହତ୍ୟା କରିବାକୁ ଠିକ୍ କଲି । କିନ୍ତୁ ପ୍ରତିଥର ଭାବିଲି, ମରିଗଲେ ତ ଆପଣ ଅଧିକ ଖୁସି ହେବେ । ଯଦି ମୋର ବିଶ୍ୱାସ ହୋଇଥା'ନ୍ତା—ମୋ ଲାସ୍ ଉପରେ ଆପଣ ଆସି ଦୁଇଟୋପା ଲୁହ ନିଗାଡ଼ିବେ—ତେବେ କେଉଁଦିନୁ ଚାଲିଯାଇ ଥାଆନ୍ତି । ମୁଁ ହିଂସା ଭାବନାକୁ ମନରୁ ଦୂର କରିବା ପାଇଁ ବହୁ ଚେଷ୍ଟା କଲି । ଈର୍ଷା ଜର୍ଜରିତା ସ୍ତ୍ରୀ କଣ ଯେ କରିପାରେ, ଆପଣ ସମ୍ଭବତଃ କଳନା କରି ପାରିବେନାହିଁ । ଆଜିକି ଷୋଳ ବର୍ଷ ହେଲା ମୁଁ ଯାହା ଦେଖୁଛି, ଯଦି ସ୍ୱୟଂ ସୀତା ଏହା ଦେଖିଥାଆନ୍ତେ, ତେବେ ସୀତା ହୋଇ ରହି ପାରି ନ'ଥାନ୍ତେ । ସୀତା ଗଢ଼ିବା ପାଇଁ ରାମ ଭଳି ପୁରୁଷ ଦରକାର ।

ରାଜାସାହେବ ଅନୁତାପ-କମ୍ପିତ ସ୍ୱରରେ କହିଲେ—ରୋହିଣୀ, କ'ଣ ସମସ୍ତ ଅପରାଧ କେବଳ ମୋର !

ରୋହିଣୀ—ନା, ଆପଣଙ୍କର କିଛି ଦୋଷ ନାହିଁ । ସାରା ଅପରାଧ ମୋ କର୍ମଫଳ । ଯେଉଁ ସ୍ତ୍ରୀ ନିଜ ପୁରୁଷର ଖରାପ ଚିନ୍ତା କରେ, ସେ ସ୍ତ୍ରୀ ପିଶାଚିନୀ । ମୁଁ ଆପଣଙ୍କର ଖରାପ ଚିନ୍ତା ଷୋଳ ବର୍ଷ ହେଲା କରୁଛି । ମୋର ହାର୍ଦ୍ଦିକ ଇଚ୍ଛା ହୁଏ, ଆପଣଙ୍କର ଖରାପ ହେଉ ଏବଂ ମୁଁ ଦେଖେ । ମୁଁ କେବଳ ଆପଣଙ୍କର ଅହିତ ଏଇଥିପାଇଁ ଚାହୁଁ ଥିଲି—ଆପଣଙ୍କର ଆଖି ଖୋଲୁ, ଆପଣ ଭଲ ମନ୍ଦ ଚିହ୍ନନ୍ତୁ । ତା'ହେଲେ ସମ୍ଭବତଃ ମୋତେ ପଚାରିବେ ଏବଂ ମୁଁ ମୋର

ଯଥାର୍ଥ ଆସନ ପାଇପାରିବ । ମୁଁ ମୋର ସେବାରେ ଆପଣଙ୍କୁ ଲଜ୍ଜିତ କରିବାକୁ ଚାହୁଁଥିଲି । କିନ୍ତୁ ସେ ଅବସର ମୋତେ ମିଳିଲାନାହିଁ ।

ରାଜାସାହେବଙ୍କୁ ନାରୀହୃଦୟର ସବାତଳ ପର୍ଯ୍ୟନ୍ତ ପହଞ୍ଚିବାର ଅବସର କେବେ ମିଳି ନ ଥିଲା । ସେ ଭାବିଥିଲେ ମୁଁ ମରିଗଲେ ମଧ୍ୟ ରୋହିଣୀ ଆଖିରୁ ଲୁହ ବାହାରିବନାହିଁ । ସେ ନିଜ ହୃଦୟରେ ରୋହିଣୀର ହୃଦୟକୁ ପରଖୁଥିଲେ । ଆଜି ରୋହିଣୀର କଥା ଶୁଣି ତାଙ୍କ ପଥର ହୃଦୟ ମଧ୍ୟ ତରଳିଗଲା । ମୋତେ ପରାସ୍ତ କରିବା ପାଇଁ ତା'ର ସୁତୀକ୍ଷ୍ଣ ଅସ୍ତ୍ର ସେବା !!— ହାୟ୍ !!! ସେ ଗଦ୍‌ଗଦ୍ କଣ୍ଠରେ କହିଲେ—କ'ଣ କହିବ ରୋହିଣୀ, ସତ ମୁଁ ଜାଣିଥା'ନ୍ତି ମୋର ଖରାପ କିଛି ହେଲେ ତୁମର ଆନନ୍ଦ ହେବ, ତେବେ ମୁଁ ତହିଁପାଇଁ ଭଗବାନଙ୍କୁ ପ୍ରାର୍ଥନା କରିଥାଆନ୍ତି ।

ଅହଲ୍ୟା ଆସୁଥିବାର ଦେଖି ରୋହିଣୀ କିଛି ଉତ୍ତର ଦେଲେନାହିଁ । କିଛି ସମୟ ସେଠାରେ ଠିଆହୋଇ ଅନ୍ୟ ଆଡ଼କୁ ଚାଲିଗଲେ । ରାଜାସାହେବ ଅନୁତାପ କଲେ । ରୋହିଣୀର ଚରିତ୍ର ସମ୍ପର୍କରେ କି ଭୁଲ ଧାରଣା ମୋର ଥିଲା । ଏଇ କଥା ଯଦି ଆଗରୁ କହିଥା'ନ୍ତା, ତେବେ ଆମ ଉଭୟଙ୍କ ମଧ୍ୟରେ ଏତେ ମନୋମାଳିନ୍ୟ ହୋଇ ନଥା'ନ୍ତା । ସେ ମୋତେ ଟିକିଏ ନମ୍ର ହୋଇ କହିଥିଲେ ମୁଁ ତାକୁ ଏପରି ଉପେକ୍ଷା କରି ନ ଥା'ନ୍ତି । କିନ୍ତୁ ରମଣୀ ତ ମାନିନୀ ! ସେ କାହିଁକି ମୋତେ ଖୁସାମତ କରିଥା'ନ୍ତା ! ସବୁ ଅପରାଧ ମୋର ।

ସହସା ତାଙ୍କ ମନରେ ପ୍ରଶ୍ନ ଉଠିଲା—ଆଜି କାହିଁକି ରୋହିଣୀ ଏ ସବୁ କଥା କହିଲା ! ରାଜାସାହେବଙ୍କ ମନରେ ସନ୍ଦେହ ଜାତ ହେଲା । ଆଜି ତା'ର ମୁହଁରେ କେତେ ଦୀନତା ! କଥା କହୁ କହୁ ଆଖିରେ ଲୁହ ! କଣ୍ଠରେ କମ୍ପନ । ତା'ର ମୁଖରେ ତ ଏତେ କାରୁଣ୍ୟ କେବେ ଦେଖାଦେଇ ନ ଥିଲା । ମୁଖମଣ୍ଡଳ ତ ଗର୍ବରେ ଝଲସି ଉଠୁଥିଲା । ମୋତେ ଦେଖି ଅଭିମାନରେ ମୁହଁ ଟେକି ଚାଲିଯାଉଥିଲା । ଆଜି ଏ କାୟାକଳ୍ପ କିପରି ହୋଇଗଲା !

ରାଜାସାହେବ ଏ ବିଷୟ ଯେତେ ଚିନ୍ତା କଲେ, ତାଙ୍କ ମନରେ ସନ୍ଦେହ ସେତିକି ଘନୀଭୂତ ହେଲା । ରାତି ଅଧାରୁ ଅଧିକ ହୋଇ ଯାଇଥିଲା । ରାଣୀ ମହଲ ନିସ୍ତବ୍ଧ । ଚୌକିଦାରମାନେ ସବୁ ଶୋଇ ପଡ଼ିଥିଲେ । କିନ୍ତୁ ତାଙ୍କ ଆଖିରେ ନିଦ ନାହିଁ । ସନ୍ଦେହ ତାଙ୍କୁ ଉଦ୍‌ବିଗ୍ନ କରୁଥିଲା ।

ଶେଷରେ ରାଜାସାହେବ ପଲଙ୍କରୁ ଉଠିଲେ । ଧୀରେ ଧୀରେ ରୋହିଣୀ କକ୍ଷ ଆଡ଼କୁ ଚାଲିଲେ । ବାରଣ୍ଡାରେ ଚଉକିଆଣୀକୁ ଦେଖିଲେ । ଏ ସମୟରେ ରାଜାସାହେବଙ୍କୁ ଦେଖି ସେ ଅବାକ୍ ହୋଇଗଲା । ଯେଉଁ ଭବନାରେ ସେ କୋଡ଼ିଏ ବର୍ଷ ହେଲା ପାଦ ପକେଇ ନ ଥିଲେ, ଆଜି କିମିତି ଭୁଲ୍‌ରେ ଚାଲି ଆସିଲେ ।

ରାଜାସାହେବ ପଚାରିଲେ—ଛୋଟ ରାଣୀ କ'ଣ କରୁଛନ୍ତି ।

ଚୌକିଆଣୀ—ଏବେ ତ ଶୋଇଥିବେ । ମହାରାଜାଙ୍କର କିଛି ଖବର ଅଛି ତ କହିଲେ ପହଞ୍ଚେଇ ଦେବି ।

ରଜା—ନାହିଁ । ମୁଁ ନିଜେ ଯାଉଛି । ତୁ ଏଇଠି ରହ ।

ରଜାସାହେବ କୋଠରୀ ଦୁଆରେ ଠିଆ ହୋଇ ଭିତରକୁ ଚାହିଁଲେ । ରାଣୀ ମଶାରୀ ଭିତରେ ଚାଦର ଘୋଡ଼େଇ ହୋଇ ଶୋଇଛନ୍ତି । ଭିତରେ ପାଦ ପକାଇବାକୁ ସଙ୍କୋଚ ଲାଗିଲା । ଭୟ ହେଲା—କାଳେ ରାଣୀ କହିଦେବ—ଏଠାକୁ କାହିଁକି ଆସିଲେ ! ଏହି ଦ୍ୱାରେ ଅଧଘଣ୍ଟା ଗଲା । କେତେଥର ଧୀରେ ଧୀରେ ଡାକିଲେ ମଧ୍ୟ । ଏତେ ଡେରରେ ମଧ୍ୟ ଥରେ କଡ଼ ଲେଉଟାଉ ନାହିଁ । ଏପରିକି ନିଶ୍ୱାସ ପ୍ରଶ୍ୱାସ ଶୁଣାଯାଉନାହିଁ । ବୋଧେ ମୋ ଆସିବା କିମିତି ଜାଣିପାରି ଛଳନା କରି ଶୋଇଛି—ଦେଖିବା ରଜାସାହେବ କ'ଣ କରୁଛନ୍ତି ! ସମ୍ଭବତଃ ପରୀକ୍ଷା ନେଉଛି । ଅଭିମାନ ତ ଅଛି, ବିନୋଦ ମଧ୍ୟ ତା'ଠାରେ କମ୍ ନାହିଁ । ପୂର୍ବରୁ ଏପରି ଅନେକଥର ହୋଇଛି । ମୋର ଆସିବାର ଦେଖି ଲୁଚିଯାଏ । ମୁଁ ନିରାଶ ହୋଇ ବାହାରକୁ ଚାଲିଯିବାକୁ ଉଠିଲା ବେଳେ କୁଆଡ଼ୁ ହସି ହସି ଆସି ପହଞ୍ଚିଯାଏ । ତାରି ଅଛା ତାମସାର ଅନେକ ପୁରୁଣା କଥା ରଜାସାହେବଙ୍କର ମନେ ପଡ଼ିଲା । ଭାବିଲେ—ମୋତେ ଭ୍ରମରେ ପକେଇବା ପାଇଁ ଚାଦରଟାଏ ପଲଙ୍କର ମାଣ୍ଡି ଉପରେ ଘୋଡ଼େଇ କୁଉଠି ଲୁଚି ଠିଆ ହେଇନାହିଁତ ! ଏଇମିତି ଥରେ କରିଥିଲା । ମୁଁ ଯାଇ ଚାଦର ଘୋଡ଼େଇ ଦେଇଥିବା ମାଣ୍ଡିକୁ କୁଣ୍ଢେଇ ଶୋଇ ପଡ଼ିବାରୁ ବାହାରୁ ଆସି କହିଲା—ସେଇ ତ ତୁମର ପ୍ରିୟା, ତାକୁଇ କୁଣ୍ଢେଇ ଧରି ଶୁଅ । ମୁଁ ତୁମର କ'ଣ ! ବିନୋଦିନୀ ଆଜି ସେମିତି କରିନାହିଁ ତ !

ଏହିଭଳି ଅଧଘଣ୍ଟେକାଳ ଠିଆ ହୋଇ ଭାବିବା ପରେ କୌଣସି ସ୍ୱରଶବ୍ଦ ନ ହେବାର ଦେଖି, ଘରଆଡ଼କୁ ଚାହିଁ ଚାଦର ଟେକିଦେଲେ । ରାଣୀ ଶୋଇଛି । କିନ୍ତୁ ସେ ରାଣୀ ନୁହଁ—ରାଣୀର ଶବ ! କୋଡ଼ିଏ ବର୍ଷର ଚିନ୍ତା, ଦୁଃଖ, ଈର୍ଷା ଓ ନୈରାଶ୍ୟ—ସନ୍ତାପ ଜର୍ଜରିତ ଶରୀରେ ଆତ୍ମା କ'ଣ କେବେ ରହିପାରେ ! ସେହି ନିର୍ଜୀବ, ସ୍ଥିର, ନିର୍ନିମେଷ ନୟନରେ ଏବେ ମଧ୍ୟ ଅମୃତ ଆକାଂକ୍ଷା ଝଲସି ଉଠୁଥିଲା । ସେହି ମୁହଁରେ ତିରସ୍କାର ଥିଲା, ବ୍ୟଙ୍ଗ ଥିଲା, ଗର୍ବ ଥିଲା । ରଜାସାହେବଙ୍କୁ ସେ ଯେପରି କହୁଥିଲା—ଏବେ ତୁମର ମନ ଶାନ୍ତ ହେଲାତ ! ଏବେ ଆରାମରେ ରହ ।

ରଜାସାହେବ କାନ୍ଦିବାକୁ ଲାଗିଲେ । ତାଙ୍କର ଆତ୍ମା ଏହି ଅମାନୁଷିକ ନିଷ୍ଠୁରତା ହେତୁ ତାଙ୍କୁ ଧିକ୍‌କାର କରୁଥିଲା । ଆଜି ରାଣୀ କାହିଁକି ତାଙ୍କ ପାଖକୁ ଯାଇଥିଲା, ଜାଣି ପାରିଲେ । ସେ ମୋତେ ସୂଚନା ଦେଇଥିଲା । କିନ୍ତୁ ମୋର ବୁଦ୍ଧି ଭ୍ରମ ହେଲା । ସେତିକିବେଳେ ମୁଁ ଯଦି ଶୁଦ୍ଧ ହୃଦୟରେ ଥରେ ମାତ୍ର କହିଥା'ନ୍ତି—ପ୍ରିୟେ, ମୋ ଅପରାଧ କ୍ଷମା କର—ତେବେ ଏପରି ହୋଇ ନ ଥା'ନ୍ତା । ଅନ୍ତିମ ସମୟରେ ସେ ମୋ ପାଖକୁ କ୍ଷମାର ସଙ୍କେତ ବହନ କରି ଯାଇଥିଲା, କିନ୍ତୁ ମୁଁ ଅଧମ ବୁଝି ପାରିଲି ନାହିଁ । ହାୟ !

ହଠାତ୍ ଖିଆଲ ଆସିଲା—ଚେଷ୍ଟାକଲେ ସନ୍ତାନଟା ବଞ୍ଚିଯିବ ପରା । ଚୈକିଆଣୀଙ୍କୁ ଡାକି କହିଲେ—ଜଲଦି ଯାଇ ଦରଓ୍ୱାନକୁ କହ, ଡାକ୍ତର ଡାକିବ । ରାଣୀଙ୍କ ଅବସ୍ଥା ଖରାପ । ବୁଢ଼ୀ ଚୈକିଆଣୀ ଦେବପ୍ରିୟା ଅମଳର । ରୋହିଣୀଙ୍କ ମୁଖକୁ ଚାହିଁ କହିଲା—ଡାକ୍ତର ଡାକି କ'ଣ କରିବେ ! ଆଉ ଯଦି ମରଦପଣିଆ କରୁଛ ଅଛ ଏବେ ଦେଖେଇ ଦିଅନ୍ତୁ । ଅଭାଗିନୀର ଦୁଃଖ ଆପଣ କାହୁଁ ଜାଣିବେ ! ତାହା ମୁଁ ଜାଣେ । ସେ ଲୁହ କାନ୍ଦିନି, ରକ୍ତ କାନ୍ଦିଛି । ଆପଣ କ'ଣ ଭାବୁଛନ୍ତି—ବିଷ ଖାଇ ଦେଇଛି ବୋଲି । ତାକୁ ଯୋଉ ଦ୍ୱନ୍ଦ୍ୱ କଲେ, ପ୍ରାଣ ଯିବା ପାଇଁ ଆଉ ବିଷ କ'ଣ ଦରକାର ! ସିଏ ମରିବା'ଟା ଆଶ୍ଚର୍ଯ୍ୟ ନୁହଁ, ଆଶ୍ଚର୍ଯ୍ୟ ହଉଚି—ଆଜି ଯାଏଁ ବଞ୍ଚି ରହିଲା କିପରି ! ଗୁଡ଼, ଖାଇଥିବା ବେଳେ ଯେଉଁ ଅଭିଳାଷ ପୂରଣ କରି ପାରିଲନାହିଁ, ମଲା ପରେ କରୁଚ । ତୁମେ ତ ବୁଢ଼ାବେଳେ ବାହା ହୋଇ ବୁଦ୍ଧି ଆଉ ଲଜ୍ଜା ହରେଇ ଦେଇଚ । ଏତିକି ଦୟା ଆଗରୁ କରିଥିଲେ, ବିଚାରୀ ମରି ନ ଥାନ୍ତା !

ଚାହୁଁ ଚାହୁଁ ରାଣୀ ମହଲରେ ଖବର ବ୍ୟାପିଗଲା । ସମସ୍ତେ ଆସି ଜମା ହୋଇଗଲେ । କିନ୍ତୁ ମନୋରମା ଆସିଲା ନାହିଁ ।

( ୪୦ )

ରୋହିଣୀଙ୍କର ମୃତ୍ୟୁ ପରେ ରାଜାସାହେବ ଜଗଦୀଶପୁରରେ ରହି ପାରିଲେ ନାହିଁ । ମନୋରମାର ମଧ୍ୟ ଏଠାରେ ରହିବାକୁ ଇଚ୍ଛା ହେଲନାହିଁ । ରୋହିଣୀ ଯୋଗୁହିଁ ମନୋରମାକୁ ଏଇଠାରେ ରହିବାକୁ ପଡ଼ୁଥିଲା । ରାଜା ସାହେବଙ୍କ ଦୃଷ୍ଟି ମଧ୍ୟ ଏବେ ମନୋରମା ଆଡ଼କୁ ଫେରିଲା ପରି ମନେ ହେଉଛି । ଏବେ କୋଷାଧ୍ୟକ୍ଷ ତା'ର ଆବଶ୍ୟକତା ପୂରଣ କରିବାକୁ ତତ୍ପରତା ଦେଖାଉନାହାନ୍ତି । ରାଜାସାହେବ ମଧ୍ୟ ଏବେ ତା'ପାଖକୁ ଝୁବ୍ କମ୍ ଆସୁଛନ୍ତି । ଏପରିକି ଗୁରୁଦେବଙ୍କୁ ରାଜ୍ୟ କାରବାରରୁ ବାଦ ଦିଆଯାଇଛି । ରାଣୀ ମହଲରେ' ତାର ପ୍ରବେଶକୁ ବାରଣ କରାଯାଇଛି । ରୋହିଣୀ ପ୍ରାଣ ଦେଇ ମନୋରମାକୁ ଜୟ କରିଛି । ବସୁମତୀ ଏବଂ ରାମପ୍ରିୟାଙ୍କ ଉପରେ ରାଜାସାହେବଙ୍କର ବିଶେଷ କୃପା । ପ୍ରତି ଦୁଇ ଦିନ ଦିନରେ ଜଗଦୀଶପୁର ଯାଉଛନ୍ତି । ଏପରିକି ମଧ୍ୟାହ୍ନ ଭୋଜନ କେବେକେବେ ସେଠାରେ କରୁଛନ୍ତି । ସେ ଏବେ ନିଜର ପାପର ପ୍ରାୟଶ୍ଚିତ୍ତ କରୁଛନ୍ତି । ରାଜ୍ୟରେ ଅନ୍ୟାୟ ଅନୀତି ବୃଦ୍ଧି ପାଇଛି । ମନୋରମା ଖୋଲିଥିବା ସେବାସଂସ୍ଥା ଗୋଟିକ ପରେ ଗୋଟିଏ ବନ୍ଦ ହୋଇ ଯାଉଛି । ମନୋରମା ସବୁ ଦେଖୁଛି, ବୁଝୁଛି କିନ୍ତୁ ମୁହଁ ଖୋଲୁନି । ସେଇ ରାଜାସାହେବ, ଯିଏ ତା'ବିନା ବୁଲିବାକୁ ମଧ୍ୟ ଯାଉ ନଥିଲେ, ଏବେ ସପ୍ତାହ ସପ୍ତାହ ଧରି

ତାଙ୍କୁ ଗୃହରୁ ନାହାନ୍ତି । ଗୃହକରବାହାରଙ୍କ ଉପରେ ତା'ର ପ୍ରଭାବ ନାହିଁ । ତା'ର ସୌଭାଗ୍ୟ ସୂର୍ଯ୍ୟ ବୁଡ଼ିବୁଡ଼ି ଯାଉଛନ୍ତି । ବ୍ରାହ୍ମଣୀର ଆତ୍ମବଳିଦାନ ନିଷ୍ଫଳ ହେଲା ନାହିଁ ।

ଶଙ୍ଖଧରର ଏବେ ନୂଆ ଚିନ୍ତା । ରାଜାସାହେବଙ୍କ ଯୋଗୁଁ ଶ୍ରେଷ୍ଠ ଧନୀ ମଲେ । ବାବାଙ୍କ ଯୋଗୁଁ ମାଆଙ୍କ ହାଲ କ'ଣ ହବ ! ମାଆତ ଯେତେବେଳେ ଦେଖିଲେ କାନ୍ଦୁଛନ୍ତି । ତା'ର ନାଁ ସ୍କୁଲରେ ଲେଖେଇ ଦିଆହୋଇଛି । ଛୁଟି ମିଳିଲେ ସେ ସିଧା ଲବଙ୍ଗ ଅପା ପାଖକୁ ଯାଇ ତୀର୍ଥଯାତ୍ରା କଥା ଶୁଣେ । ସମୟେ ସମୟେ ପିଲ୍ଲମ୍ମାଙ୍କୁ ଯାଏ । ବୁଢ଼ାବାପା, ବୁଢ଼ୀ ମା' ତାକୁ ଦେଖି, ତା'ର ବାଲସୁଲଭ କଥା ଶୁଣି ମୁଗ୍ଧ ହୋଇ ଯାଆନ୍ତି ।

ଦିନେ ନିର୍ମଳା କହିଲେ—ବାପା, ତୁ ଏଠାରେ ଆସି ରହିଲୁ । ତୁ ଗଲେ ଘରଟା ଖାଇ ଗୋଡ଼େଇଲା ପରି ଲାଗୁଛି ।

ଶଙ୍ଖଧର କିଛି ଚିନ୍ତା କରି କହିଲା—ମାଆ ତ ଆସୁ ନାହାନ୍ତି । ସେ କ'ଣ ଏଠାକୁ ଆସିବେ ନାହିଁ ଜେଜେମା' !

ନିର୍ମଳା—କେଜାଣିରେ ବାପା, ମୁଁ ତା' ମନକଥା ଜାଣି ପାରୁନାହିଁ । ତୁ କହିଲୁ ଆଜି, କ'ଣ କହୁଚ ଦେଖିବା !

ଶଙ୍ଖଧର—ନାହିଁ ଜେଜେମା', ଆସିବେ । ମୁଁ ରାଜଗାଦିରେ ବସିଲେ, ରାଜଭବନ ମୋର ହେବ । ତେବେ ଯାଇ ମା' ଆସିବେ ।

ନିର୍ମଳା—ଜଲଦି ବସେ ବାପା, ଆମେ ଦେଖିବୁ ।

ଶଙ୍ଖଧର—ମୁଁ ବାବାଙ୍କ ନାଁରେ ଏକ ସ୍କୁଲ ଖୋଲିବି ।

ବଜ୍ରଧର—ଆଉ ଆମ ପାଇଁ କ'ଣ କରିବୁ ?

ଶଙ୍ଖଧର—ଆପଣଙ୍କ ପାଇଁ ଭଲ ବାଜା ମଗେଇବି ।

ବଜ୍ରଧର—ଆଚ୍ଛା, ଆଚ୍ଛା, ମୁଁ ତୋତେ ବଢ଼ିଆ ଗୀତ ଶିଖେଇଦେବି ।

ଏହିଭଳି କଥାବାର୍ତ୍ତା, ମନୋରଞ୍ଜନ ପରେ କାର୍‌ରେ ବସି ସେଦିନ ଶଙ୍ଖଧର ଘରକୁ ଫେରିବାରେ ଡେରି ହେଲା । ଅହଲ୍ୟା ପଚାରିଲା—ଆଜି ଏତେ ଡେରି କାହିଁକି ହେଲାରେ ପୁଅ । ମୁଁ କେତେବେଳୁ ତୋତେ ଚାହିଁ ବସିଛି ।

ଶଙ୍ଖଧର—ବେଶି ଡେରି ତ ହେଇନି ମା' । ଟିକିଏ ଜେଜେବାପା ଘରକୁ ଚାଲି-ଯାଇଥିଲି । ଜେଜେ ମା' କହୁଥିଲେ ତୁମେ କେବେ କେବେ ସେଠାକୁ ଯାଉନି କାହିଁକି !

ଅହଲ୍ୟା—ଏ ବିଷୟରେ କ'ଣ କିଛି କହୁଥିଲେ ?

ଶଙ୍ଖଧର—କିଛି କହୁ ନ ଥିଲେ ଯେ, ସେଠାକୁ ଗଲେ ଖରାପ କ'ଣ ? ସିଏ କିନ୍ତୁ ଇଚ୍ଛା କରନ୍ତି ତୁମେ ସେଠାକୁ ଯିବାକୁ ।

ଅହଲ୍ୟା—କ୍ଷତି କ'ଣ ! ଘର ତ ମୋର ସେଇ । ଏଠାରେ ସିନା କୁଣିଆ । କିନ୍ତୁ ତାଙ୍କ ହାବଭାବରୁ ଜଣାପଡ଼େ—ସେଠାକୁ ମୁଁ ଯିବାଟାକୁ ସେ ପସନ୍ଦ କରନ୍ତିନାହିଁ ।

ଶଙ୍ଖଧର—ମା', ମୋତେ କୁଉଠି ଦେଖିଲେ ବାବା ଚିହ୍ନି ପାରିବେ ?

ଅହଲ୍ୟା—ତୋତେ ? ବୋଧେ ଚିହ୍ନି ପାରିବେନାହିଁ । ତୁ ଖୁବ୍ ଛୋଟ ହୋଇଥିଲୁ ସେ ଚାଲିଗଲେ । ତୋତେ ଏବେ ତେରବର୍ଷ ହେଲାଣି ।

ଶଙ୍ଖଧର—କିନ୍ତୁ ମା', ମୁଁ ତାଙ୍କୁ ଦେଖିଲେ ନିଶ୍ଚେ ଚିହ୍ନିଦେବି । ସିଏ ଯେଉଁ ବେଶରେ ଆସନ୍ତୁ ନା କାହିଁକି, ମୁଁ ଚିହ୍ନି ପକେଇବି ।

ଅହଲ୍ୟା—ନାହିଁ ବାପା, ତୁ ଚିହ୍ନି ପାରିବୁନାହିଁ । ତୁ ତାଙ୍କର ଫଟୋ ଦେଖି କହୁଛୁ ସିନା । ସେ ଫଟୋ ୧୨ ବର୍ଷ ପୂର୍ବର । ତା'ପରେ ସେ ତ କେଶ ଦାଢ଼ି ରଖିଥିବେ ।

ଶଙ୍ଖଧର ଆଉ କିଛି ନ କହି ଚୁପ୍ ହୋଇ ବସି ଭାବିବାକୁ ଲାଗିଲା । ମୋତେ ତ ତେର ବର୍ଷ ବୟସ ହେଲାଣି । ମୁଁ କ'ଣ ଆଉ ଛୋଟ ! ମୋର ବୟସରେ ଅନେକ ବଡ଼ ବଡ଼ କାମ କରିଛନ୍ତି । ତା'ର ମନ ଚାଲିଯିବାକୁ ବିକଳ ହେଉଥିଲା । ସେ କାଗଜ କଲମ ଆଣି ଏକ ପତ୍ର ଲେଖି ଶେଯ ଉପରେ ରଖିଦେଲା !

ସମସ୍ତଙ୍କୁ ମୋର ପ୍ରଣାମ । ମୁଁ ଆଜି ମୋ ଖୁସିରେ ପିତାଙ୍କୁ ଖୋଜିବାକୁ ଯାଉଛି । ଆପଣମାନେ ମୋ ପାଇଁ ଟିକିଏ ହେଲେ ଚିନ୍ତା କରିବେନାହିଁ । ମୁଁ ପିତାଙ୍କୁ ଯେ କୌଣସି ମତେ ଆଣିବାକୁ ଚେଷ୍ଟା କରିବି । ଯଦି ମୋ ଭାଗ୍ୟରେ ରାଜ୍ୟ ଶାସନ କରିବାକୁ ଥିବ, ତେବେ କରିବି; ଭିକ ମାଗିବାକୁ ଥିଲେ, ଭିକ ମାଗିବି । କିନ୍ତୁ ପିତାଙ୍କର ଚରଣ ଧୂଳି ମୁଣ୍ଡରେ ନ ଲଗାଇ, ତାଙ୍କର କିଛି ସେବା ନ କରି ଫେରିବିନି । ମୋତେ ଫେରେଇ ଆଣିବା ପାଇଁ କେହି ଚେଷ୍ଟା କରିବେନାହିଁ । ଯଦି କରିବେ, ତେବେ ମୁଁ ପ୍ରାଣ ଦେଇଦେବି ।

ଅଧଘଣ୍ଟା ପରେ ଶଙ୍ଖଧର ନିଜ କୋଠରୀରୁ ବାହାରିଲା । ପାଖ କୋଠରୀରେ ରାଜାସାହେବ ଶୋଇଥିଲେ । ସେ ପଛପାଖରେ ଥିବା ବଗିଚାକୁ ଗଲା ଏବଂ ଗୋଟେ ଗୁଡ଼ୁଲିଆ ଗଛରେ ଚଢ଼ି ଆରପାଖକୁ ଡେଇଁପଡ଼ିଲା । ଖୁବ୍ ଜୋର୍‌ରେ ଚାଲିଲା ।

ଏହିଭଳି ଏକ ଅନ୍ଧାର ରାତିରେ ଚନ୍ଦ୍ରଧର ଗୁପ୍ତ ରୂପରେ ଘରୁ ପ୍ରସ୍ଥାନ କରିଥିଲେ । ଆଜି ମଧ୍ୟ ସେହିପରି ଅନ୍ଧକାର ରାତି ଏବଂ ପ୍ରସ୍ଥାନ କରୁଥିଲା ଚନ୍ଦ୍ରଧରଙ୍କର ଆତ୍ମଜ ।

ଅଭାଗିନୀ ଅହଲ୍ୟା ! ତୁ ଶୋଇଛୁ । ଥରେ ତୁ ନିଜର ପ୍ରିୟତମ ପତିକୁ ହଜେଇଥିଲୁ । ସେ ଲୁହ ତୋରଆଖିରୁ ଏ ଯାଏଁ ଶୁଖିନାହିଁ । ଆଜି ତୁ ନିଜର ପ୍ରିୟ ପୁତ୍ର, ନିଜର ପ୍ରାଣାଧାର, ନିଜର ଦୁଃଖୀଧନକୁ ହରାଉଛୁ । ଯେଉଁ ସମ୍ପତ୍ତି ପାଇଁ ତୁ ନିଜର ପତିଙ୍କୁ ଉପେକ୍ଷା କରିଥିଲୁ, ସେହି ସମ୍ପତ୍ତି କ'ଣ ଆଜି ତୋର ଅଙ୍କଶ୍ରୀ ହେଉନାହିଁ ।

( ୪୧ )

ପାଞ୍ଚବର୍ଷ ଗ୍ଭଲିଗଲା । କିନ୍ତୁ ଶଙ୍ଖଧର କି ଚନ୍ଦ୍ରଧର କେଉଁଠାରେ ହେଲେ ଖୋଜ ଖୋଜ ମିଳିଲେନାହିଁ । ରାଜା ବିଶାଳସିଂହ ଦୟା-ଧର୍ମକୁ ଜଳାଞ୍ଜଳି ଦେଇଦେଲେ । ଦୟା ଆଉ ଧର୍ମ ଦ୍ୱାରା ଯାହା କିଛି ହୁଏ, ତାହା ଅନୁଭବ କରିବା ପରେ ଏବେ ଅଧର୍ମ ଓ ଅବିଗ୍ଭର ଦ୍ୱାରା କ'ଣ ହୁଏ—ଏହି ଅନୁଭୂତି ପାଇଁ ଇଚ୍ଛା କଲେ । ରାଜ୍ୟରେ ଯେତେସବୁ ଧର୍ମାର୍ଥ କାର୍ଯ୍ୟ ହେଉଥିଲା ସବୁ ବନ୍ଦ କରିଦେଲେ । ମନ୍ଦିରରେ ଦୀପ ଜଳାଗଲା ନାହିଁ । ସାଧୁସନ୍ଥମାନଙ୍କୁ ତଡ଼ି ଦିଆଗଲା । ପ୍ରଜାମାନଙ୍କ ଉପରେ ନାନା ପ୍ରକାର ଅତ୍ୟାଗ୍ଭର ଗ୍ଭଲିଲା । ସେମାନଙ୍କର ଗୁହାରି କେହି ଶୁଣିଲେ ନାହିଁ । ରାଜାସାହେବଙ୍କର କାହାରି ପ୍ରତି ଦୟା ନାହିଁ । ଆଉ କ'ଣ ରହିଲା ଯେ ସେ ଧର୍ମକୁ ଜାବୁଡ଼ି ଧରିବେ ?

ଏତେ ଲୋକଙ୍କ ମଧ୍ୟରେ କେବଳ ଜଣେ ମାତ୍ର ଧୈର୍ଯ୍ୟ ହରାଇ ନାହିଁ—ସେ ହେଉଛି ମନୋରମା । କିନ୍ତୁ ତା'କଥା ଆଉ କେହି ଶୁଣିବାକୁ ନାହିଁ । ରାଜାସାହେବ ଏବେ ଆଉ ତା'ର ମୁହଁ ଗ୍ଭହିଁବାକୁ ଇଚ୍ଛା କରୁନାହାନ୍ତି । ସମସ୍ତ ବିପତ୍ତିର ମୂଳ କାରଣ ସେଇ ବୋଲି ସେ ଭାବିଲେ । ଯିଏ ହୃଦୟେଶ୍ୱରୀ ଥିଲା, ଯାହାର ଇଙ୍ଗିତରେ ରାଜ୍ୟ ଚଳୁଥିଲା ସେହି ମନୋରମା ଏବେ ରାଜଭବନରେ ଭିକାରୁଣୀ ଭଳି ରହୁଛି । କେହି ତାକୁ ପଗ୍ଭରୁ ନାହାନ୍ତି । ଏହି ଭୀଷଣ ଅନ୍ଧକାର ମଧ୍ୟରେ ସେହି କେବଳ ପ୍ରଦୀପବତ୍ ଜଳୁଛି । କିନ୍ତୁ ତା'ର ଆଲୋକ କେବଳ ନିଜ ପାଖରେ ରହୁଛି । ଅନ୍ଧକାରରେ ପ୍ରସାରିତ ହେଉନାହିଁ ।

ହାୟରେ ଅବୋଧ 'ବାଳକ ! ଯେଉଁ ଅଭିଷ୍ଟ ପୂରଣ ପାଇଁ ତୁ ଜୀବନର ସମସ୍ତ ଆକାଂକ୍ଷା ପରିତ୍ୟାଗ କରିଦେଲୁ । ତାହା କେତେ ଅସାଧ ଦେଖିପାରୁଛୁ ! ଏହି ବିଶାଳ ଭୂଖଣ୍ଡରେ, ଯେଉଁଠି କୋଟି କୋଟି ଲୋକ ରହନ୍ତି । ତା' ଭିତରେ ତୁ ଗୋଟିଏ ପ୍ରାଣୀକୁ ଖୋଜି ପାଇ-ପାରିବୁ ! କେଡ଼େ ଅବୋଧ ସାହସ ! ବଳୋଚିତ ସରଳ ଉତ୍ସାହର କେଡ଼େ ଅଲୌକିକ ଲୀଳା ! !

ସନ୍ଧ୍ୟା ହୋଇଯାଇଛି । ସୂର୍ଯ୍ୟଦେବ ପର୍ବତ ଆଡ଼ ପାଖେ ଲୁଚିଗଲେଣି । ରମଣୀମାନେ ପାଣି ନେବା ପାଇଁ କୂଅ ମୂଳକୁ ଆସିଲେଣି । ଏହି ସମୟରେ ଜଣେ ଯୁବକ ହାତରେ ଝଞ୍ଜଣି ଧରି କୂଅ ଚଉତରା ଉପରେ ଯାଇ ବସିଲା । ଏଇ ହେଉଛି ଶଙ୍ଖଧର । ତାର ବର୍ଣ୍ଣ, ରୂପ ବେଶରେ ଏତେ ପରିବର୍ତ୍ତନ ହୋଇଯାଇଛି ଯେ, ଅହଲ୍ୟା ମଧ୍ୟ ଚିହ୍ନି ପାରିବନାହିଁ । ସେ ଆଉ ସେହି ତେଜସ୍ୱୀ କିଶୋର ନୁହେଁ, ତାର ଗ୍ଭୟାମାତ୍ର । କେବଳ ଅସ୍ଥିପଞ୍ଜର । ଯେତେ ଯେପରି କୌଣସି ଭୟଙ୍କର ରୋଗରୁ ଉଠିଛି । ମାନସିକ ତାପ, ବେଦନା ଓ କଷାଦର ଗଭୀର ରେଖା ମୁଖମଣ୍ଡଳରେ ଦେଖାଯାଉଛି । ପାଞ୍ଚବର୍ଷର କଠୋର ଜୀବନ ସଂଗ୍ରାମ ତାକୁ ହତାଶ କରିଦେଇଛି ।

ଜଣେ ରମଣୀ ତାକୁ ଦେଖି ପଚାରିଲେ—ବିଦେଶୀ, କୋଉଠୁ ଆସିଲ ? ବେମାର ଥିବା ପରି ଦିଶୁଛ ।

ଶଙ୍ଖଧର ଆକାଶକୁ ଚାହିଁ କହିଲା—ବେମାର ନୁହେଁ ମାଆ, ବହୁ ଦୂରରୁ ଆସି ଥକିଯାଇଛି ।

ଏହା କହି ଖଞ୍ଜଣୀ ଧରି ଗୀତ ଗାଇବା ଆରମ୍ଭ କଲା—

ଏହି କ୍ଷୀଣକାୟ ଯୁବକର କଣ୍ଠରେ ଏତେ ମାଧୁର୍ଯ୍ୟ ! ଏତେ ବିକଳ ଅନୁରାଗ ! ରମଣୀମାନେ ଚିତ୍ରବତ୍ ଠିଆ ହୋଇ ରହିଗଲେ । ସେମାନଙ୍କର ହୃଦୟ ବୀଣାରୁ ମଧ୍ୟ ଯେପରି ଅନୁରକ୍ତ ଧ୍ୱନି ନିର୍ଗତ ହେଲା ।

ଜଣେ ଯୁବତୀ ପଚାରିଲା—ବାବାଜୀ, ବହୁତ ଡେରି ତ ହେଲାଣି । ଏଇଠି ରହିଯାଅ, ଆଗକୁ ତ ବହୁଦୂର ପର୍ଯ୍ୟନ୍ତ କୌଣସି ଗ୍ରାମ ନାହିଁ ।

ଶଙ୍ଖଧର—ହଁ ମାତା, ଏଠାରେହିଁ ରହିଯିବି । ମାତା, ଏଠାରେ କେହି ମହାତ୍ମା ରହୁଥିବା ଜାଣିଛନ୍ତି ।

ଯୁବତୀ—ନାହିଁ । ଏଠାରେ ତ କୌଣସି ସାଧୁ ସନ୍ଥ ନାହାନ୍ତି । ହଁ, ଦେବାଳୟ ଅଛି ।

ଦ୍ୱିତୀୟ ରମଣୀ—ଏବେ କେତେ ଦିନ ହେଲା ଜଣେ ମହାତ୍ମା ଆସି ରହିଥିଲେ । କିନ୍ତୁ ସେ ତ ସାଧୁ ବେଶରେ ନ ଥିଲେ । ସେ ଏଠାରେ ମାସେଯାଏଁ ରହିଲେ । ଗତ କାଲି ଆସିଥିଲେ ତାଙ୍କର ଦେଖା ମିଳିଥାଆନ୍ତା ।

ଜଣେ ବୃଦ୍ଧା—ସାଧୁ ସନ୍ଥ ତ ବହୁତ ଦେଖିଛୁ, ହେଲେ ଏମିତି ଉପକାରୀ ମଣିଷ ଦେଖା ନାହିଁ । ତୁମର ଘର କେଉଁଠି ପୁଅ ।

ଶଙ୍ଖଧର—କେଉଁଠି ଘର କ'ଣ ବା କହିବ ମାତା, ଏମିତି ବୁଲୁଛି ।

ବୃଦ୍ଧା—ତୁମର ପିତାମାତା ଅଛନ୍ତି ନା ?

ଶଙ୍ଖଧର—କିଛି ଜଣାନାହିଁ ମାତା । ପିତାଜୀ ତ ଅନେକ ଦିନ ହେଲା କୁଆଡ଼େ ଚାଲି ଯାଇଛନ୍ତି । ସେତେବେଳକୁ ମୁଁ ତିନିବର୍ଷର ହୋଇଥିଲି । ମାଆଙ୍କ ହାଲ୍ ଜାଣିନାହିଁ ।

ଜଣେ ଯୁବତୀ—ବୃଦ୍ଧାଙ୍କୁ କହିଲା, ଜେଜେମା, ମହାତ୍ମାଙ୍କ ଚେହେରା ସହିତ ଏହାଙ୍କ ଚେହେରା ମିଳିଯାଉଛି କି ନାହିଁ !

ବୃଦ୍ଧା—ହଁ, ଟିକିଏ ଛିଟିକା ଅଛି । ଆଚ୍ଛା ବାପା, ତୁମ ପିତାଜୀଙ୍କୁ କେତେ ବୟସ ହେବ ?

ଶଙ୍ଖଧର—ଚାଳିଶି ବର୍ଷ ଭିତରେ ହେବ ।

ବୃଦ୍ଧା—ଆଖି ବଡ ବଡ଼ ?

ଶଙ୍ଖଧର—ହଁ ।

ବୃଦ୍ଧା—ଡେଙ୍ଗା ଆଉ ଗୋରା ?

ଶଙ୍ଖଧର ଉତ୍କଣ୍ଠିତାର ସହିତ କହିଲା—ହଁ ମାତାଜୀ ।

ବୃଦ୍ଧା—ଆଚ୍ଛା, ଡାହାଣପଟ କାନ୍ଧରେ କଟା ଦାଗ ଅଛି ?

ଶଙ୍ଖଧର—କହି ପାରିବିନାହିଁ । ମୁଁ ତ ମାତ୍ର ତିନିବର୍ଷର ହୋଇଥିଲି । ସେ ଘର ଛାଡ଼ି ଚାଲିଗଲେ ।

ବୃଦ୍ଧା—ବାପା, ଯେଉଁ ମହାତ୍ମାଙ୍କ କଥା ମୁଁ କହୁଛି, ସେ ତୋର ଚେହେରା ସହିତ ମିଳି ଯାଉଛନ୍ତି ।

ଶଙ୍ଖଧର—ମାତା, ସେ କୁଆଡ଼େ ଗଲେ କହିପାରିବ ?

ବୃଦ୍ଧା—ଉତ୍ତର ଆଡ଼େ ଗଲେ । ତୋତେ କ'ଣ କହିବି ପୁଅ, ସେ ତ ମୋତେ ଜୀବଦାନ ଦେଇଛନ୍ତି । ନଦୀକୁ ସ୍ନାନ କରିବାକୁ ଯାଇଥିଲି । ଗୋଡ଼ ଖସିଗଲା । ମହାତ୍ମାଜୀ କୂଳରେ ବସି ଧ୍ୟାନ କରୁଥିଲେ । ବୁଡ଼ି ଯାଉଥିବା ଦେଖି ପହଁରି ଯାଇ ମୋତେ ଉଦ୍ଧାର କଲେ । ମାସେ କାଳ ଏଠି ରହିଲେ । କେତେ ଲୋକଙ୍କର ଜୀବନ ରକ୍ଷା କରିଛନ୍ତି । କେତେ ରୋଗୀଙ୍କୁ ତ ଯମ ମୁହଁରୁ ଭିଡ଼ି ଆଣିଛନ୍ତି ।

ଶଙ୍ଖଧର କମ୍ପିତ ସ୍ୱରରେ ପଚାରିଲେ—ତାଙ୍କର ନାମ କ'ଣ ମାତାଜୀ ।

ବୃଦ୍ଧା—ଭଗବାନ ଦାସ ।

ଏକ ଯୁବତୀ—ଏଠାରେ ତ ତାଙ୍କର ଗୋଟିଏ ଛବି ଅଛି ।

ବୃଦ୍ଧା—ହଁ ପୁଅ, ଆମ ଏଇ ଗାଁଆର ଜଣେ ବମ୍ବେଇରେ ଛବି ସବୁ ଆଙ୍କୁଛି । ସେ ଗାଁଆକୁ ଆସିଥିଲା । ମହାତ୍ମାଜୀ ନାହିଁ ନାହିଁ କରୁଥିଲେ । ତା ଉପରେ କି କୁହୁକବିଦ୍ୟା ଅଛି କେଜାଣି ବସି ସାଙ୍ଗେସାଙ୍ଗେ ଆଙ୍କି ଦେଲା ।

ଶଙ୍ଖଧରର ଛାତି ଦପ୍‌ଦପ୍ ହେଲା । କହିଲା—ସେ ଛବି ମୋତେ ଦେଖେଇ ପାରିବ ମାତା ?

ବୃଦ୍ଧାର ଇଙ୍ଗିତରେ ଜଣେ ଯୁବତୀ ଘରକୁ ଯାଇ କାଗଜରେ ଅଙ୍କା ହୋଇଥିବା ଛବିଟି ନେଇ ଆସିଲା । ଶଙ୍ଖଧର କମ୍ପିତ ହସ୍ତରେ ଛବିଟି ଦେଖି ଚିହ୍ନିପାରିଲା । ଆଶା, ଭୟ, ଚିନ୍ତା, ଓ ଅସ୍ଥିରତାରେ ବ୍ୟଗ୍ର ହୋଇ ସେ ଠିଆ ହୋଇପଡ଼ିଲା । ବୃଦ୍ଧା ଉତ୍ସୁକତାରହିି ପଚାରିଲା—କିଛି ଚିହ୍ନି ପାରୁଛୁ ପୁଅ ?

ଶଙ୍ଖଧର କିଛି ଉତ୍ତର ଦେଇ ପାରିଲେନାହିଁ । ସହସା ସେ ନିଦରୁ ଉଠିଲା ଭଳି ପଚାରିଲା—ସେ ଉତ୍ତର ଦିଗକୁ ଯାଇଛନ୍ତି ! ଆଗକୁ କୌଣସି ଗାଁ ପଡ଼ିବ ?

ବୃଦ୍ଧା—ଏଠୁ ପାଞ୍ଚ କୋଶ ଦୂରରେ ସାଇଗଞ୍ଜ ଗାଁ । କିନ୍ତୁ ରାତିରେ କୁଆଡ଼େ ଯିବୁ ପୁଅ । ଆଜି ଏଠି ରହିଯା, କାଲି ଯିବୁ ।

ଶଙ୍ଖଧର—ନାହିଁ ମାତା, ରହିପାରିବିନାହିଁ । ଏହା କହି ତକ୍ଷଣି ଧରି ଠିଆ ହେଲା । ସମସ୍ତେ ଆଶ୍ଚର୍ଯ୍ୟରେ ଅନାଇଛନ୍ତି । ଆଉ ମୁହୂର୍ତ୍ତେ ଅପେକ୍ଷା ନ କରି ଚାଲିଲା ।

ଆଗରେ ଗଗନଚୁମ୍ବୀ ପର୍ବତ ବିଶାଳ ରାକ୍ଷସ ଭଳି ଦଣ୍ଡାୟମାନ । ଶଙ୍ଖଧର ବଡ଼ କ୍ଷିପ୍ର ଗତିରେ ସଙ୍କୀର୍ଣ୍ଣ ପଥ ଦେଇ ଚାଲି ଯାଉଥିଲା ।

( ୪୬ )

ରାତିର ଗଭୀର ଅନ୍ଧକାର ଭିତରେ ଶଙ୍ଖଧର ଚାଲିଥିଲା । ପଥର ଝୁଣ୍ଟି ତାର ପାଦ ଛିଣ୍ଡି ଯାଇଥିଲା । ବେକରେ ଅଳ୍ପ ବୁନ୍ଦି ହୋଇ ଯାଉଥିଲା ଏବଂ ଶୋଷରେ ତଣ୍ଟି ଶୁଖିଯାଉଥିଲା । ଅନ୍ଧାରରେ ପଡ଼ି ଉଠି ଚାଲିଥିଲା । ପ୍ରାତଃ ହେବା ପୂର୍ବରୁ କିପରି ସେ ସାଇଁଗଞ୍ଜରେ ପହଞ୍ଚିବ । ନ ହେଲେ କୁଆଡ଼େ ପୁଣି ଚାଲି ଯିବେ । ଆଉ ଦେଖା ହୋଇ ପାରିବ ନାହିଁ ।

ହିଂସ୍ରପଶୁମାନଙ୍କର ଭୟଙ୍କର ଗର୍ଜନ ପ୍ରତି ତା'ର ଖାତିର୍ ନଥିଲା । ଏକମାତ୍ର ଲକ୍ଷ୍ୟ ସୂର୍ଯ୍ୟ ଉଦୟ ହେବା ପୂର୍ବରୁ ସାଇଁଗଞ୍ଜରେ ପହଞ୍ଚିବା । କିନ୍ତୁ ହାୟରେ ବାଳକ, କେଉଁ ରାସ୍ତାରେ ତୁ ଯାଉଛୁ ତାହା କ'ଣ ତୁ ଜାଣିପାରୁଛୁ ! ସାଇଁଗଞ୍ଜ ରାସ୍ତା ତ ଛାଡ଼ିଦେଲୁଣି । ତୁ ଅନ୍ୟ କେଉଁଠି ପହଞ୍ଚିପାରୁ ପଛା, ସାଇଁଗଞ୍ଜରେ ନୁହେ ।

ଗଗନ ମଣ୍ଡଳ ଉଷାର କିରଣରେ ଉଦ୍‌ଭାସିତ ହେଲା । ପକ୍ଷୀମାନଙ୍କର କାକଳୀରେ ବନପ୍ରଦେଶ ଶବ୍ଦାୟିତ ହୋଇ ଉଠିଲା । କିନ୍ତୁ ସାଇଁଗଞ୍ଜର ଚହ୍ନବର୍ଣ୍ଣ ନାହିଁ ।

ବହୁ ଦୂରରେ ପାହାଡ଼ ଉପରେ କେତୋଟା ଘର ଦିଶିଲା । ଭାବିଲା, ଏଇ ବୋଧେ ସାଇଁଗଞ୍ଜ । ସେ ପାହାଡ଼ ଚଢ଼ିବା ବଡ଼ କଠିନ । ଉପରକୁ ଯିବା ରାସ୍ତାମଧ୍ୟ ଶଙ୍ଖଧରକୁ ଜଣା-ନାହିଁ । କାହାକୁ ଦେଖିଲେ ବା ପଚାରନ୍ତା ! ତଥାପି ଅଣ୍ଟାଭିଡ଼ି ଚଢ଼ିଲା ।

ଗାଁଅର ଜଣେ ଲୋକ ଉପରୁ ପାଟିକଲା—ହେପଟୁ କୁଆଡ଼େ ଆସୁଛ ହଇ, ରାସ୍ତା ତ ପଶ୍ଚିମ ପଟେ । ଏ ପାଖେ ଟିକିଏ ପାଦ ଖସିବ ତ ଦୁଇଶହ ହାତ ତଳେ ଯାଇ ପଡ଼ିବ ।

କିନ୍ତୁ ଏ କଥା ଶୁଣିବାକୁ ଶଙ୍ଖଧରର ସମୟ କାହିଁ ! ସେ ଏତେ ଫୁର୍ତ୍ତିରେ ଚଢ଼ି ଯାଉଥିଲା । ଯାହା ଦେଖି ସେ ଲୋକ ଆଶ୍ଚର୍ଯ୍ୟ ହେଉଥିଲା । ଶେଷରେ ଉପରେ ଯାଇ ପହଞ୍ଚିଗଲା ।

ଲୋକଟି ପାଦରୁ ମୁଣ୍ଡଯାଏଁ ଅନାଇଁ ଶଙ୍ଖଧରକୁ ପଚାରିଲା—ତମର ତ ବଡ଼ ସାହସ ! ଆଜିଯାଏଁ ଏ ବାଟେ କେହି ଆସି ନାହାନ୍ତି । ଘର କେଉଁଠି ?

ଶଙ୍ଖଧର—ବାବା ଭଗବାନଦାସ ଏଠାକୁ ଆସିଛନ୍ତି ନା ?

ବ୍ୟକ୍ତି—କେଉଁ ଭଗବାନଦାସ ? ଏଠାକୁ ତ ସେପରି କେହି ଆସି ନାହାନ୍ତି ।

ଶଙ୍ଖଧର—ବାବା ଭଗବାନ ଦାସଙ୍କୁ ଜାଣିନା ? ଏଇ ଗାଁଆକୁ ତ ଆସିଲେ । ସାଇଁଗଞ୍ଜ ଏଇ ନା ?

ବ୍ୟକ୍ତି—ସାଇଁଗଞ୍ଜ ? ଆହା ! ସାଇଁଗଞ୍ଜ ତ ପୂର୍ବ ପଟରେ ରହିଲା । ଏ ଗାଁଅର ନାମ ବେଦମ ।

ଶଙ୍ଖଧର ହତାଶ ହୋଇ କହିଲା—ସାଇଁଗଞ୍ଜ ନୁହେ ? ତେବେ ସାଇଁଗଞ୍ଜ ଏଠାରୁ କେତେ ବାଟ ।

ବ୍ୟକ୍ତି—ପାଞ୍ଚକୋଶ ବାଟ ହେବ ଯେ. ଏ । ବାଟ କଠିନ ।

ଶଙ୍ଖଧର ହତାଶ ହୋଇ ବସି ପଡ଼ିଲା । ପାଞ୍ଚକୋଶ୍‌ବାଟ, ପୁଣି ଘାଟି ରାସ୍ତା । କିନ୍ତୁ ସମୟ ଚନ୍ଦ୍ରାନନ ଉଠି ଠିଆ ହେଲା । ଦ୍ୟ ଜଣେ କହିଲା—ଏବେ କ'ଣ ଟିକି ଭାଇ ! କିନ୍ତୁ ଶଙ୍ଖଧରର ଆଉ ଶୁଣିବାକୁ ସମୟ ନାହିଁ । ବାଟରେ ଭାବିଲା—ଏଥର ବାଟ ଭୁଲିଲେ ସର୍ବନାଶ । ଭାବିବ ମୋର ଜୀବନ କେବଳ ସେମାନେ ପାଇଁ ଭଗବାନ ଗଢ଼ିଛନ୍ତି ।

ପିତାଙ୍କ ସହ ସାକ୍ଷାତ ବେଳେ ସେ କେଉଁ ଅବସ୍ଥାର ସମ୍ମୁଖୀନ ହେବାକୁ ପଡ଼ିବ, ସେହି କଳ୍ପନାରେ ବୃନ୍ଦ ଶଙ୍ଖଧର ଆଗକୁ ବଢ଼ି ଚାଲିଥିଲା । ରାସ୍ତାରେ ଯାହାକୁ ଦେଖୁଥିଲା ପଚାରୁଥିଲା—ପାର୍ବତୀମଣ୍ଡ ଆଉ କେତେ ବାଟ ? ପ୍ରତ୍ୟେକଙ୍କଠୁ ଶୁଣିବାକୁ ମିଳୁଥିଲା—ହେଇ—ଅଳ୍ପବାଟ । ଦୁଇ ପ୍ରହର ବେଳକୁ ଦୂରରେ ମନ୍ଦିର କଳସ ଦେଖାଗଲା । ଜଣେ ଗାଈ ଚରାଳିକୁ ପଚାରିଲା—ଏଇଟା କ'ଣ ପାର୍ବତୀମଣ୍ଡ ? ଗାଈ ଚରାଳି ହଁ ଭରିବାରୁ ସେ ଆନନ୍ଦରେ ନାଚି ଉଠିଲା ।

କିନ୍ତୁ ଗାଁ ଯେତିକି ନିକଟବର୍ତ୍ତୀ ହେଲା, ଶଙ୍ଖଧର ମନରେ ସେତିକି ଆଶଙ୍କା ଓ ଭୟ ଜାତ ହେଲା । ଏଠାରୁ ଚାଲିଯାଇ ନ ଥିବେ ତ ! ଯଦି ତାଙ୍କ ସହ ଭେଟ ନ ହେବ, ତେବେ କ'ଣ ସେ ଆଉ ଆଗକୁ ଯାଇ ପାରିବ ! ନାଃ, ଯାଇ ତ ପାରିବନାହିଁ । ଆଚ୍ଛା, ମନେକର ଭେଟ ହେଲ, ଏବଂ ସେ ତାକୁ ଚିହ୍ନି ପାରି ମୁହଁ ବୁଲାଇଦେଲେ ତେବେ କ'ଣ ହେବ ! ସେ ଅବସ୍ଥାରେ କ'ଣ ମୁଁ ତାଙ୍କ ପାଦତଳେ ପଡ଼ି ପାରିବ ! ନିଜର ବିପତ୍ତି କଥା କହି ପାରିବ ! ମୁଁ ତ ଜବରଦସ୍ତି ଆତ୍ମୀୟତା ଦାବି ପାରିବ ନାହିଁ । 'ବଳେ ପଶି କୁଣିଆ' ହୋଇ ପାରିବନାହିଁ । ଯାହା କିଛି ହେଉ, ଏତେ ଦୂର ଆସି ନ ଦେଖି ତ ଫେରିବନାହିଁ । ସେ ଈଶ୍ୱରଙ୍କୁ ପ୍ରାର୍ଥନା କଲା—ମୋତେ ଚିହ୍ନି ନ ପାରନ୍ତୁ । ମୋତେ ଚିହ୍ନିଲ ଭଳି କଥା ମୁହଁରୁ ବାହାର କରିବନାହିଁ । ଭକ୍ତ ଦୂରରୁ ଭଗବାନଙ୍କୁ ଦର୍ଶନ କଲା ଭଳି ମୁଁ ଖାଲି ଦେଖି ଫେରି ଆସିବ ।

ପାର୍ବତୀମଣ୍ଡ ଦେଖାଗଲା । ପୁରୁଷ-ସ୍ତ୍ରୀ କ୍ଷେତରେ କାମ କରୁଥିଲେ । ଯାଇ ଗାଁ ଦାଣ୍ଡରେ ପହଞ୍ଚିଲେ । କେତେକ ଲୋକ ଯିବା ଆସିବା କରୁଥିଲେ କେହି ତାକୁ କିଛି ପଚାରିଲେ ନାହିଁ । ସେ ଯାଇ ମନ୍ଦିର ମଣ୍ଡପରେ ବସିଲା । ସହସା ମନ୍ଦିର ଭିତରୁ ଜଣେ ଲୋକ ଆସୁଥିବା ଦେଖି ଚମକି ପଡ଼ିଲା । ଅପଲକ ନେତ୍ରରେ ତାଙ୍କୁ ଅନାଇଁଲା ଭାବିଲା ଏ ବ୍ୟକ୍ତିର ପାଦତଳେ ପଡ଼ିଯିବ କିନ୍ତୁ ଗୋଡ଼ ଅଟକି ଉଠିଲା । ତାକୁ ଜଣା ପଡ଼ିଲା—ଯେତେ ଯେପରି କୌଣସି ନଦୀ ତା ଆଡ଼କୁ ମାଡ଼ି ଆସୁଛି । ସେ ମୂର୍ଚ୍ଛିତ ହୋଇ ତଳେ ଗଡ଼ିପଡ଼ିଲା ।

ଏ ପୁରୁଷ କିଏ ! ଯାହାର ମୂର୍ତ୍ତି ସେ ହୃଦୟରେ ଧାରଣ କରିଥିଲା, ଯାହାର ସେ ଉପାସକ ଥିଲା, ଏ ସିଏ । ସେହି ବ୍ୟକ୍ତି ।

( ୪୩ )

ଅଭାଗିନୀ ଅହଲ୍ୟାକୁ ଏ ସଂସାରଟା ଶୂନ୍ୟ ଜଣା ପଡ଼ିଲା । ପତିକୁ ପ୍ରଥମେ ହରେଇ ଥିଲା ଜୀବନର ଏକମାତ୍ର ଆଧାର ସ୍ୱରୂପ ରହିଯାଇଥିଲା ପୁଅ । ତାକୁ ମଧ୍ୟ ହରେଇଲା । ଏବେ ସେ ଆଉ କାହା ମୁହଁ ଚାହିଁ ବଞ୍ଚିବ ! ଏ ଦୁନିଆ ତାକୁ ଅନ୍ଧକାର ଭଳି ଜଣାଗଲା । ଉପରର ଦଣ୍ଡ ଖୁବ୍ ମିଳିଗଲା ! ହେ ଭଗବାନ, ଏ ଅଭାଗିନୀ ପ୍ରତି ଦୟାକର !

ଅହଲ୍ୟାକୁ ଏବେ ଏ ଭିଆସ ଖାଇ ଗୋଡ଼ାଉଛି । ସେ ଏ ଭିଆସ ଛାଡ଼ି କୁଆଡ଼େ ଚାଲିଯିବାକୁ ଚାହୁଁଛି । କୌଣସ ଝାଟିମାଟି ଘର, ଗଛ ମୂଳ, ପର୍ବତ ଗୁମ୍ଫା କିମ୍ବା କୌଣସି ନଦୀକୂଳ ଏ ଭିଆସ ଅପେକ୍ଷା ସହସ୍ରଗୁଣ ଭଲ । ପତି ଓ ପୁଅ ସହ ଗ୍ରେଟିଆ ଘରଟିରେ କେଡ଼େ ଶାନ୍ତିରେ ରହୁଥିଲା । ସେ ଦିନ ଆଉ ଫେରିବନାହିଁ । ସେ କ'ଣ ଜାଣିଥିଲା, ଏଠାକୁ ଆସିଲେ ପତି ଓ ପୁଅକୁ ହରେଇବାକୁ ପଡ଼ିବ ବୋଲି ! ପତିଙ୍କ ସହ ଚାଲି ନଗଲା କାହିଁକି ! ଭୋଗ ବିଳାସ ପ୍ରତି ତା'ର ଲୋଭ ଜାତ ହେଲା ଏଥିପାଇଁ କ'ଣ ପ୍ରାୟଶ୍ଚିତ୍ତ ନାହିଁ ! ଏ ଜୀବନରେ କ'ଣ ସ୍ୱାମୀଙ୍କର ଦେଖା ମିଳିବନାହିଁ ! ପ୍ରିୟ ପୁଅର ମୋହିନୀ ମୂର୍ତ୍ତି ସେ କ'ଣ ଦେଖି ପାରିବନାହିଁ !

ରାଜଭବନ ଏବେ ଭୂତଖାନା ହୋଇଛି । ଏହାର ମାଲିକ କେହିନାହିଁ । ରାଜାସାହେବ ଏବେ ମାସମାସ ଧରି ଅସୁସ୍ଥ ନାହାନ୍ତି । ବହୁ ସମୟରେ ସେ ଇଲାକାରେ ବୁଲୁଛନ୍ତି । ତାଙ୍କ ଅତ୍ୟାଚାର କଥା ଶୁଣି ଲୋକଙ୍କର ଲୋମ ଟାଙ୍କୁର ଉଠୁଛି । ତାଙ୍କର ସବୁ ସଦ୍‌ଭାବ ଶଙ୍ଖଧର ସଙ୍ଗେ ଚାଲିଯାଇଛି । ସେ ଭାବୁଛନ୍ତି—ମୋ ପ୍ରତି ଯଦି ଈଶ୍ୱରଙ୍କର ଦୟା ନାହିଁ, ମୋର କାହାପ୍ରତି କାହିଁକି ରହିବ ! ଈଶ୍ୱର ମୋତେ କନ୍ଦାଉଛନ୍ତି । ମୁଁ ଅନ୍ୟମାନଙ୍କୁ କନ୍ଦେଇବି । ଧର୍ମବୁଦ୍ଧି ଜାଗ୍ରତ ହେବା ପାଇଁ ଲୋକେ ଈଶ୍ୱରଙ୍କୁ ପୂଜାକରନ୍ତି । କିନ୍ତୁ କେଉଁମାନେ କରନ୍ତି ! ଯେଉଁମାନଙ୍କର ସର୍ବନାଶ ନ ହୋଇ କିଛି ରହିଯାଇଛି, ସେହିମାନେ । କିନ୍ତୁ ଯେଉଁ-ମାନଙ୍କ ପାଖରେ ନିଜକୁ ରକ୍ଷା କରିବାପାଇଁ କିଛି ନାହିଁ—ଯେଉଁମାନଙ୍କର ସର୍ବନାଶ ହୋଇ ଯାଇଛି, ତା'ର ଉତ୍ତରଦାୟୀ କ'ଣ !

ଏବେ ରାଜାସାହେବଙ୍କ ପାଖକୁ ଯିବାପାଇଁ କେହି ସାହସ କରୁ ନାହାନ୍ତି ମନୋରମାକୁ ଦେଖି ତ ସେ ବେଶି ରାଗୁଛନ୍ତି । ଅହଲ୍ୟା ମଧ୍ୟ ତାଙ୍କୁ କିଛି କହିବାକୁ ଥରଥର କମ୍ପୁଛି । ସ୍ୱାମୀ ଓ ପୁଅକୁ ଖୋଜିବା ପାଇଁ ଅନେକ କଥା ସେ ଭାବୁଛି । କିନ୍ତୁ କହିବ କାହାକୁ ! ତା' ଭୋଗଲିପ୍ସାର ଏ ଈଶ୍ୱରୀୟ ଦଣ୍ଡ ବୋଲି ସେ ମନେ କରିନେଇଛି । ଯଦି ସେ ପତିପଦକୁ ଯାଇ ଏହାର ପ୍ରାୟଶ୍ଚିତ୍ତ କରନ୍ତା, ତେବେ ତା ଭଗବାନ କ୍ଷମା ଦିଅନ୍ତେ । ଏ ଘୋର ବିପତ୍ତିରେ ମଧ୍ୟ ତା'ର ଅଭିମାନ କମିନାହିଁ । ଯିବାକୁ ଚାହେଁ, କିନ୍ତୁ କେହି ଡାକିଲେ ଯାଇ ଯିବ । ଯଦି ରାଜାସାହେବ ମୁନସୀଙ୍କୁ ଟିକିଏ ସଙ୍କେତ ଦିଅନ୍ତେ ଯେ ଅହଲ୍ୟାକୁ ଡାକି ଦିଅ,

ତେବେ ବା ସେ ଡାକନ୍ତେ । କିନ୍ତୁ ରାଜାସାହେବଙ୍କ ଢଙ୍ଗେ ତ ଭେଟ ହେଉନାହିଁ । ତେଣିକି ବି କିଛି କହିବାକୁ ସାହସ ହେଉନାହିଁ ।

ସେ ଯଦି ମନୋରମାକୁ ନିଜର ମନ କଥା କହିଥାନ୍ତା, ତେବେ ସହଜରେ କାମ ହାସଲ ହୋଇ ପାରନ୍ତା । କିନ୍ତୁ ମନୋରମା ସହିତ ତାର ପୂର୍ବରୁ ମନ ଅମେଳ ଏବଂ ଏବେ ମଧ୍ୟ । ତାକୁ ସେ କହିବ କିପରି ! ଯେଉଁ ମନୋରମା ଏବେ ଗାଇବା-ବଜାବଜି, ବୁଲାବୁଲି କରିବାରେ ମଗ୍ନ, ତାକୁ ସେ ନିଜର ମନକଥା କହିବ କିପରି ! କହିଲେ ବା ମନୋରମା ସହାନୁଭୂତି ଦେଖାଇବ କାହିଁକି ; ବରଂ ସେ କାନ୍ଦୁଥିଲେ ବି ମନୋରମା ତ ତାକୁ ଟିକିଏ ପଚାରିବାକୁ ଆସୁନି ! ନିଜ ରଙ୍ଗରେ ମସ୍ତ । ଅହଲ୍ୟାର ପୀଡ଼ା ସେ ଜାଣିବ କ'ଣ !

ମନୋରମା ପ୍ରକୃତରେ ରଙ୍ଗରଙ୍ଗରେ ବ୍ୟସ୍ତ—ଦେଖିଲେ ଯେ କେହି କହିବ । କିନ୍ତୁ ତା ହୃଦୟ କଥା କିଏ ଜାଣିପାରିବ ! ସେ ଆଶା ଓ ନୈରାଶ୍ୟ, ଶାନ୍ତି ଓ ଅଶାନ୍ତି, ଗମ୍ଭୀରତା ଓ ଉଚ୍ଛୃଙ୍ଖଳତା, ଅନୁରାଗ ଓ ବିରାଗର ଏକ ବିଚିତ୍ର ମୂର୍ତ୍ତି ହୋଇଯାଇଛି । ଯଦି ସେ ପ୍ରକୃତରେ ହସୁଛି, ଗାଉଛି—ତେବେ ତା ମୁଖର କାନ୍ତି କାହିଁ ! ଯେଉଁ କାନ୍ତି ଚନ୍ଦ୍ରକୁ ଲଜ୍ଜିତ କରୁଥିଲା, ଯେଉଁ ଚପଳତା ହରିଣୀକୁ ହରେଇ ଦେଉଥିଲା—ତାହା କାହିଁ । ସୂକ୍ଷ୍ମ ନେତ୍ରରେ ତାକୁ ଦେଖିଲେ ଜାଣିହେବ, ତା'ର ହର୍ଷ ହେଉଛି ଅନ୍ତର୍ନାଦ ଏବଂ ତା'ର ପ୍ରେମ ହେଉଛି ମର୍ମାନ୍ତିକ ବ୍ୟଥାର ଚିହ୍ନ । ମନୋରମା ସ୍ୱଳ୍ପ ବୁଦ୍ଧିରେ ଯୌବନ ଭଳି ଅମୂଲ୍ୟ ରତ୍ନ ଦେଇ ଯେଉଁ ସୁବର୍ଣ୍ଣ କଣ୍ଢେଇ କିଣିଥିଲା, ଏବେ ସେ ପକ୍ଷୀ ଭଳି ଉଡ଼ିଯାଇଛି । ଜୀବନର ସୁଖ ସେ ଧନ ଓ ଐଶ୍ୱର୍ଯ୍ୟ ବୋଲି ଭାବିଥିଲା । କିନ୍ତୁ ସେ ଏବେ ନିଜର ଭୁଲକୁ ଚିହ୍ନିପାରିଛି । ଆଲୋକ ଯେବେ ଆମ ସହନ ଶକ୍ତିରୁ ଅଧିକ ହୁଏ, ତେବେ ତାହା ଅନ୍ଧକାରରେ ପରିଣତ ହୋଇଥାଏ—କାରଣ ଆମର ଆଖି ବନ୍ଦ ହୋଇଯାଏ ।

ଦିନେ ଅହଲ୍ୟାର ଚିତ୍ତ ଏତେ ଉଦ୍‌ବିଗ୍ନ ହେଲା ଯେ, ଲଜ୍ଜା ପରିତ୍ୟାଗ କରି ମନୋରମା ପାଖରେ ଆସି ବସିଲା । ମନୋରମା ପାଖକୁ ପ୍ରାର୍ଥୀ ରୂପେ ଆସିବାକୁ ତାର ମାନସିକ ବେଦନା ଏଇଥିରୁ ମପାଯାଇ ପାରିବ—ନିଜ କୋଠରୀରୁ ମନୋରମା କୋଠରୀକୁ ଆସିବାକୁ ତାକୁ ଦୁଇଘଣ୍ଟା ସମୟ ଲାଗିଲା । କେତେଥର କୋଠରୀରୁ ବାହାରି ପୁଣି ଯାଇ ବସେ । ଶେଷରେ ଭାବିଲା—ଭଗବାନ ତା'ର ଗର୍ବ ଭାଙ୍ଗିଦେଲେ । ଆଉ ମିଥ୍ୟା ଅଭିମାନ କରି ଲାଭ କ'ଣ !

ମନୋରମା ତାକୁ ଦେଖି କହିଲା—କ'ଣ ଅହଲ୍ୟା, କାନ୍ଦୁଥିଲୁ କି ! ଏମିତି କେତେଦିନ ଯାଏ କାନ୍ଦିବୁ ?

ଅହଲ୍ୟା—ଯେତେଦିନ ଯାଏ ଭଗବାନ କନ୍ଦେଇବେ !

ମନୋରମା—ତେବେ ତ ଆହୁରି ହସିବା ଦରକାର । ଯାହାପାଇଁ ଦୟା ନାହିଁ, ତା' ପାଖରେ କାନ୍ଦିବା ମୂଲ୍ୟହୀନ । ଭଗବାନ ତାଙ୍କ ଘରେ ଭଗବାନ ହୋଇ ଥାଆନ୍ତୁ । ବର୍ତ୍ତମାନ ନ କାନ୍ଦିବା ପାଇଁ ଦୃଢ଼ ହୁଅ, ଦେଖିବା କିମିତି କାନ୍ଦ ଆସିବ ।

ଅହଲ୍ୟା—ତୁମେ ତ କଥା ଟାଆରେ ଲକ୍ଷ ଦେଉଛ ରାଣୀଙ୍କି । ତୁମ ଭଳି ହୃଦୟ କାହିଁ ପାଇବ । ତାହା ଉପରେ ପଡ଼ିଛି, ସେ ତ କାନ୍ଦିବ । ଅନ୍ୟ କେହି କାନ୍ଦିବ କାହିଁକି !

ମନୋରମା ହସିଲା । ଏଭଳି ହସ ମୂର୍ଖ ହସିପାରେ, ଜ୍ଞାନୀ ବି ହସିପାରେ । କହିଲା— ଯଦି ଭଗବାନ କାହାକୁ କଷ୍ଟ ଦେଇ ଖୁସି ହୁଅନ୍ତି, ତେବେ ତ ସେ ବିଚିତ୍ର ଜୀବ । ଯଦି ମାତାପିତା ନିଜ ସନ୍ତାନ କାନ୍ଦୁଥିବାର ଦେଖି ଆନନ୍ଦ ଲାଭ କରନ୍ତି, ତେବେ ତୁ ତାଙ୍କ କଣ କହିବୁ କହ ! ମୋତ ତା' ମୁହଁ ଚାହିଁବାକୁ ଇଚ୍ଛା ହେବନାହିଁ । ଆ, ବରଂ ଗୀତ ଗାଇବା । ମୋହାଦ୍ୱାରା ଈଶ୍ୱର ପ୍ରସନ୍ନ ହେବେ । ସେ ଯାହା କିଛି କରନ୍ତି, ସମସ୍ତଙ୍କର ଭଲ ପାଇଁ କରନ୍ତି । ଠିକ୍ ସମୟରେ ନ ଚାଲିଲେ, ତୁ ତୋ' ପୁଅକୁ ଗାଳିଦେଉ । ସେଥିପାଇଁ ଯଦି ପୁଅ ରୁଷିବ ଏବଂ ତୋତେ ଶତ୍ରୁ ବୋଲି ମନେ କରିବ, ତେବେ ତୋତେ କେତେ ଦୁଃଖ ନ ହେବ ! ଆ, ମୁଁ ତୋତେ ଭୈରବୀ ଶୁଣେଇବି, ଦେଖ୍, ମୁଁ କେମିତି ବଢ଼ିଆ ଗାଉଛି ।

ଗୀତ ଶୁଣିବା ପ୍ରସ୍ତାବକୁ ସମର୍ଥନ ନ କରି କହିଲା—ପିତାମାତା ସନ୍ତାନକୁ ଖରାପ ଆଚରଣ ପାଇଁ ଗାଳି ଦିଅନ୍ତି, ଖରାପ କାମ ପାଇଁ ଲଜ୍ଜିତ ହେବାକୁ ଏବଂ ସେଥିପାଇଁ ପ୍ରାୟଶ୍ଚିତ୍ତ କରିବାକୁ କହନ୍ତି । ଆମକୁ ଯଦି ଈଶ୍ୱର ତାଡ଼ନା କରୁଛନ୍ତି, ତେବେ ଭାବିବାକୁ ହେବ ଈଶ୍ୱରଙ୍କର ଆମ ପ୍ରତି ସେଇ ଭାବନା ଅଛି । କିନ୍ତୁ ମିଛି ତ ତାଡ଼ନା ! ମୁଁ ମଧ୍ୟ ପ୍ରାୟଶ୍ଚିତ୍ତ କରିବାକୁ ଚାହେଁ । ଏଇଥିପାଇଁ ଆପଣଙ୍କ ସାହାଯ୍ୟ ମାଗୁଛି । ମୁଁ ଅନୁଭବ କରୁଛି ଏ ସମସ୍ତ ବିଡମ୍ବନା ମୋ ବିଳାସିତାର ଫଳ । ମୋ ମନ କହୁଛି, ମୁଁ ଏଠାରୁ ଚାଲିଗଲେ ମୋର ମନୋରଥ ପୂର୍ଣ୍ଣ ହୋଇପାରିବ । ଆଜି ଯାଇ ମାଅଙ୍କୁ କହିଦିଅନ୍ତୁ, ସେ ମୋତେ ଡାକି ନିଅନ୍ତୁ ।

ଅହଲ୍ୟାର ଆଖି ଖୋଲିଲା ବୋଲି ମନୋରମା ମନେ କଲା । ତେବେ ସେ କ'ଣ ଏ ଘରୁ ବାହାରିଯାଇ ଯଥାର୍ଥ ଆନନ୍ଦ ଅନୁଭବ କରିପାରିବ ! ତାକୁ କ'ଣ ଐଶ୍ୱର୍ଯ୍ୟର ଦଣ୍ଡ ଭୋଗ କରିବାକୁ ପଡ଼ୁଛି ! ତେବେ କ'ଣ ସମସ୍ତ ଅନ୍ତର୍ବେଦନା ଏଇ ବିଳାସ ପ୍ରେମର କାରଣ !

ମନୋରମା କହିଲା—ଆଚ୍ଛା ଅହଲ୍ୟା, ମୁଁ ଆଜି ଯାଉଛି ।

ଏ କଥାବାର୍ତ୍ତାର ଚତୁର୍ଥ ଦିନ ମୁନ୍‌ସୀ ବଜ୍ରଧର ଆସି ବୋହୂକୁ ନେବା ପାଇଁ କହିଲେ । ରାଜାସାହେବ ଇଲାକାରେ ଥିଲେ । ଖବର ପାଇ ଜଗଦୀଶପୁର ଆସିଲେ । ତାଙ୍କୁ ଦେଖି ଅହଲ୍ୟା ଏକ ପ୍ରକାର ଲୁଚିଲା । ସେ ଜାଣିଲା, ରାଜାସାହେବ ବିଦାୟ ପାଇଁ ସ୍ୱୀକୃତି ଦେଲେଣି । କିନ୍ତୁ ଏତେ ଜଲଦି ଯିବାକୁ ସେ ଉତ୍ସୁକ ନ ଥିଲା । ଏଠାରୁ ଯିବାକୁ ତ ସେ ଚାହୁଁଥିଲା ଏବଂ ଦୁଃଖ ବି ହେଉଥିଲା । ଏଠାକୁ ଆସିବାର ଚଉଦ ବର୍ଷ ହୋଇଗଲା । ଏହି ଘରକୁ ନିଜ ଘର ବୋଲି ସେ ଭାବି ନେଇଛି । ଶାଶୁଘର ତା ପାଇଁ ଏକ ନିର୍ଜନ ମରୁଭୂମି । ଯେଉଁ ଘରୁ ସେ ଅଭିମାନରେ ବାହାରି ଆସିଛି, ଏବେ ନାକ ହୋଇ ସେଇ ଘରକୁ ଯିବାକୁ ହେବ । ଏମିତି

ଏବି ଖବ ଏତେ ବଡ଼ ହୋଇ ପଡ଼ିଥିଲା ଯେ, ସେଥିକୁ ରାଜାସାହେବଙ୍କ ପାଖକୁ ଯାଇ କହିଲା—ମୋତେ ଜାହିକି ବିଦାୟ କରି ଦେଉଛନ୍ତି ! ମୁଁ ଯିବାକୁ ଚାହୁଁନାହିଁ ।

ରାଜାସାହେବ ହସି ହସି କହିଲେ—ଏପରି କୌଣସି ଝିଅ ନାହାନ୍ତି, ଯିଏ ଖୁସିରେ ହସି ହସି ବାପଘରୁ ଶାଶୁ ଘରକୁ ଯାଏ । କିଏ ବା ଏପରି ପିତା ଅଛି, ଯିଏ ଖୁସିରେ ଝିଅକୁ ବିଦାୟ ଦିଏ ! ମୁଁ କ'ଣ ଚାହେଁ ତୁ ଯାଆ ବୋଲି । କିନ୍ତୁ ମୁନସୀ ବଜ୍ରଧରଙ୍କର ଆଦେଶକୁ ମୋତେ ଶିରୋଧାର୍ଯ୍ୟ କରିବାକୁ ପଡ଼ିବ । ସେ ପୁଅର ବାପ, ମୁଁ ଝିଅର ବାପ । ମୁଁ ଓ ସିଏ କେମିତି ସମାନ ହେବୁ ! ଏବଂ ବାପ ବୋଲି ମୋର ଯେଉଁ ଗର୍ବ, ତାହା ପାଳନ କରିବାର ଅବସର ଆଉ ମୋତେ ମିଳିବନାହିଁ । ଶଙ୍ଖଧର ଥାଆନ୍ତା କି, ତା'ର ବିବାହରେ ମୁଁ ମୋର ଓରମାନ ପୂରା କରିଥାଆନ୍ତି । ଏବେ ତାହା ତୋର ବିଦାୟରେ ପୂରଣ ହେବ ।

ଅହଲ୍ୟା ଏହା ପରେ ଆଉ କ'ଣ ବା କହିବ !

ପରଦିନ ରାଜାସାହେବ ବିଦାୟ ବ୍ୟବସ୍ଥା ଆରମ୍ଭ କଲେ । ସୁନାରି ଡକାଇ ଅଳଙ୍କାର ନିର୍ମାଣ କରାଗଲା । ଦରଜି ଡକାଇ ଆଣି ପୋଷାକ ତିଆରି ଆରମ୍ଭ ହୋଇଗଲା । ଗୁଡ଼ିଆମାନେ ଦିନରାତି କଡ଼େଇ ପାଖରେ ବସି ମିଠା ତିଆରି କଲେ । ଘର ରଙ୍ଗ କରାହେଲା । ରାଜା ଜମିଦାରମାନଙ୍କୁ ନିମନ୍ତ୍ରଣ କରାଗଲା । ଆଲୋକ ସଜ୍ଜା ହେଲା । ଅହଲ୍ୟା ଏ ଆଡ଼ମ୍ବର ଦେଖି ମନେ ମନେ ଖୁବ୍ ଲଜ୍ଜିତ ହେଉଥିଲା । ବୁଢ଼ୀ ବୟସରେ ପହିଲିପାଳି ! ମୁଁ ମରିବା ବାଟ ଖୋଜୁଛି, ଏଣେ ପହିଲିପାଳିକୁ ଯୋଗାଡ଼ ! କିଏ ଜାଣେ ଏ ମୋର ଅନ୍ତିମ ବିଦାୟ ହୋଇପାରେ ।

( ୪୪ )

ଶଙ୍ଖଧରର ଚେତନା ଫେରି ଆସିବା ପରେ ଦେଖିଲା ସେ ମନ୍ଦିର ମଣ୍ଡପରେ ଚକ୍ରଧରଙ୍କ କୋଳରେ ପଡ଼ିଛି । ଚକ୍ରଧର ଚମତ୍କୃତ ନେତ୍ରରେ ତାର ମୁହଁକୁ ଚାହିଁ ରହିଛନ୍ତି । ଗାଆଁର କେତେଜଣ ପଙ୍ଖା କରୁଛନ୍ତି । ହାୟ ! କେତେ ଦିନ ପରେ ଆଜି ଶଙ୍ଖଧର ଏ ସୌଭାଗ୍ୟ ପାଇଲା !

ଶଙ୍ଖଧର ପୁଣି ଆଖି ବନ୍ଦ କରିଦେଲା । ତା'ର ଚିର ସନ୍ତପ୍ତ ଆତ୍ମା ଏକ ଅଲୌକିକ ଶୀତଳତା, ଏକ ଅପୂର୍ବ ତୃପ୍ତି, ଏକ ସ୍ୱର୍ଗୀୟ ଆନନ୍ଦ ଅନୁଭବ କରୁଥିଲା । ଚକ୍ରଧର ସ୍ନେହମଧୁର ସ୍ୱରରେ କହିଲେ—ବାବା, ଦେହ କିପରି ଲାଗୁଛି ?

ଶଙ୍ଖଧର କାତର ସ୍ୱରରେ କହିଲା—ଭଲ ଲାଗୁଛି । ଆପଣଙ୍କ ନାମ ବାବା ଭଗବାନ ଦାସ ?

ଚନ୍ଦ୍ରଧର—ହଁ, ମୋତେ ଭଗବାନ ଦାସ ବୋଲି କହନ୍ତି ।

ଶଙ୍ଖଧର—ମୁଁ ଆପଣଙ୍କ ଦର୍ଶନ ପାଇଁ ଆସିଥିଲି । ବହୁ ଦୂରରୁ ଆସିଛି । ମୁଁ ବେଙ୍ଗ ଗ୍ରାମରୁ ଆପଣଙ୍କ ଖବର ପାଇଲି । ସେଠାରେ କହିଲେ ଆପଣ ସାଇଁଗଞ୍ଜ ଚାଲିଗଲେଣି । ରାସ୍ତା ବାଟ ଚାଲିଲି । କିନ୍ତୁ ସାଇଗଞ୍ଜ ମିଳିଲାନାହିଁ । ପର୍ବତ ଉପରେ ଥିବା ଅନ୍ୟ ଏକ ଗାଁରେ ପହଞ୍ଚିଲି । ସେଇଠି ମୁଁ ଜାଣିଲି । ସାଇଁଗଞ୍ଜ ରାସ୍ତା ଭୁଲିଯାଇଛି ।

ଚନ୍ଦ୍ରଧର—ବାଟରେ କୁଆଡ଼ି ରହିଗଲନାହିଁ ।

ଶଙ୍ଖଧର—ଭାବିଲି, ରହିଗଲେ ଆପଣ କାଳେ ଅନ୍ୟତ୍ର ଚାଲିଯିବେ ।

ଚନ୍ଦ୍ରଧର—କିଛି ତ ଖାଇ ନ ଥିବ !

ଶଙ୍ଖଧର—ଖାଇବା ଇଚ୍ଛା ନ ଥିଲା । ଏବେ ମୋର ଦୁଃଖ ଦୂର ହୋଇଯିବ । ଆପଣଙ୍କର ଯଶ ଶୁଣି ଆସିଛି । ଆପଣହିଁ ମୋତେ ଉଦ୍ଧାର କରିପାରିବେ ।

ଚନ୍ଦ୍ରଧର—ବାବା, ଦୁଃଖ ଦୂର କରିବେ ଭଗବାନ । ମୁଁ ତ ତାଙ୍କର କ୍ଷୁଦ୍ର ସେବକ ମାତ୍ର । କିନ୍ତୁ ପ୍ରଥମେ କିଛି ଖାଇ ଆରାମ କର । ମୋତେ ଏବେ ଅନ୍ୟ କେତେକ ରୋଗୀ ଦେଖିବା-ପାଇଁ ଯିବାକୁ ପଡ଼ିବ । ମୁଁ ସନ୍ଧ୍ୟାକୁ ଫେରିଲେ ତୁମ ସହ କଥାବାର୍ତ୍ତା କରିବି । ମୋରି ଯୋଗୁ ତୁମକୁ ଅନେକ କଷ୍ଟ ସହିବାକୁ ପଡ଼ିଲା ।

ଶଙ୍ଖଧର—ଅଗ୍ନିକୁଣ୍ଡକୁ ଗଲେ ଆପଣଙ୍କୁ ଦେଖି ପାରିବି ବୋଲି ମୁଁ ଜାଣିଥିଲେ ବି ପଛେଇ ନ ଥା'ନ୍ତି ।

ଚନ୍ଦ୍ରଧରଙ୍କ ଚିତ୍ତ ଅସ୍ଥିର ହୋଇ ପଡ଼ିଲା । ଏହି ଯୁବକର ରୂପ ଏବଂ ବାଣୀରେ କ'ଣ ଏପରି ଅଛି କେଜାଣି, କଥାବାର୍ତ୍ତା କରିବାକୁ ପ୍ରବଳ ଇଚ୍ଛା ହେଉଛି । ରୋଗୀମାନଙ୍କୁ ତ ଔଷଧ ଦେଇ ଆସିଛି, ନ ଗଲେ ବି ଚଳିବ । ପଚାରିବା ଉଚିତ—ଏ ଯୁବକ କିଏ ! କାହିଁକି ମୋତେ ସାକ୍ଷାତ କରିବାକୁ ଏତେ ଉତ୍ସୁକ ! କେଡ଼େ ସୁଶୀଳ ! କଥାରେ କେତେ ବିନୟୀ ! ରୂପ ତ ଦେବକୁମାର ଭଳି । କୌଣସି ଉଚ୍ଚ କୁଳର ହୋଇଥିବ ।

ଜଣେ ବ୍ୟକ୍ତି ପାଣି ଆଣି ଦେଲା । ଶଙ୍ଖଧର ମୁହଁହାତ ଧୋଇଲା । ପାଣି କିଛି ପିଇବାକୁ ଯାଉଁଥିଲା । ଚନ୍ଦ୍ରଧର ମନା କରି କହିଲେ—ପାଣି ଆଦୌ ପିଅ ନାହିଁ । ଆସ ମୋ ସହିତ କିଛି ଖାଇ ସାରିଲା ପରେ ପାଣି ପିଇବ ।

ମଠର ପଛରେ ଗୋଟିଏ ଶ୍ରେଷ୍ଠ ବଗିଚା । ସେଠାରେ ଗଛମୂଳେ ଚନ୍ଦ୍ରଧର ରୋଗସେବା କରୁଛନ୍ତି । ଶଙ୍ଖଧର ପାଇଁ ପୂରି ମିଠାଇ, ଦୁଧ ମଗାଇଛନ୍ତି । ତାହା ସବୁ ଶଙ୍ଖଧରକୁ ଦେଇ

ନିଜେ ତିଆରି କରିଥିବା ରୁଟି ଏବଂ ଭଜା ଖାଇବାକୁ ବାଢ଼ିଲେ । ଶଙ୍ଖଧର କହିଲା—ଆପଣ ତ ସବୁତକ ମୋତେ ଦେଇଦେଲେ । ନିଜ ପାଇଁ କିଛି ରଖିଲେନାହିଁ ।

ଚକ୍ରଧର—ମୋ ପାଇଁ ଏହି ରୁଟି ଅଛି । ଏହାହିଁ ମୋର ଖାଦ୍ୟ ।

ଶଙ୍ଖଧର—ତେବେ ମୋତେ ଦେଇ ରୁଟି ଦିଅନ୍ତୁ ।

ଚକ୍ରଧର—ମୋର ତ ତାପା ହଜମ ଶକ୍ତି କମ୍ । ରୁଟି ବ୍ୟତୀତ ମୁଁ ଆଉ କିଛି ଖାଏନାହିଁ । ଦିନକୁ ଥରେ ମାତ୍ର ଖାଏ ।

ଶଙ୍ଖଧର—ମୋର ଖାଦ୍ୟ ତ ଚଣା ଏବଂ ଛତୁଆ । ଏ ଖାଦ୍ୟ ମୁଁ କେତେ ବର୍ଷ ହେଲା ଦେଖିନାହିଁ । ଯଦି ଆପଣ ଖାଇବେନାହିଁ, ମୁଁ ବି ଖାଇବିନାହିଁ ।

ଶେଷରେ ଶଙ୍ଖଧରର ଆଗ୍ରହ ଦ୍ୱାରା ଚକ୍ରଧରଙ୍କୁ ନିୟମ ଭାଙ୍ଗିବାକୁ ପଡ଼ିଲା । ଷୋଳ ବର୍ଷ ହେଲା ଯେଉଁ ନିୟମ ସେ ପାଳନ କରି ଆସୁଥିଲେ, ସେ ନିୟମ ବଡ଼ ବଡ଼ ରାଜା-ଜମିଦାର-ଭକ୍ତଜନ ମଧ୍ୟ ଭାଙ୍ଗିପାରି ନଥିଲେ । ଆଜି ଏକ ଅପରିଚିତ ବାଳକ ଭାଙ୍ଗି ଦେଲା । ବିରକ୍ତ ହୋଇ କହିଲେ—ଭାଇ, ତୁମେ ବଡ଼ ଜିଦ୍‌ଖୋର ଜଣା ପଡ଼ୁଛ । ଆଚ୍ଛା, ମୁଁ ଖାଉଛି—ନିଅ ଖାଅ ।

ସେ ତହିଁରୁ ସାମାନ୍ୟ କିଛି କିଛି ବାହାର କରି ନିଜ ପତ୍ରରେ ରଖିନେଲେ ଏବଂ ବାକି ସବୁ ଶଙ୍ଖଧର ପତ୍ରରେ ରଖି ଦେଲେ । ଶଙ୍ଖଧର ଏବେ ବି ଖାଇଲାନାହିଁ ।

ଶଙ୍ଖଧର—ଆପଣ ତ ନେଲେନାହିଁ । ଆଣନ୍ତୁ ମୁଁ ପରଶି ଦେଉଛି ।

ଚକ୍ରଧର—ତୁମେ ଯଦି ଏପରି ଜିଦ୍ କରିବ, ମୁଁ ତୁମର ଚିକିତ୍ସା କରିବିନାହିଁ । ତୁମକୁ ମୋ ପାଖରେ ରଖିବିନାହିଁ ।

ଶଙ୍ଖଧର—ଚିକିତ୍ସା ନ କରନ୍ତୁ, ଏଇଠି ପଡ଼ି ପଡ଼ି ମରିବି । କିଏ ବା କାନ୍ଦିବାକୁ ଅଛି ?

ଏହା କହିବା ପରେ ଶଙ୍ଖଧରର ଆଖି ସଜଳ ହୋଇଗଲା । ଚକ୍ରଧର ବ୍ୟାକୁଳ ହୋଇ କହିଲେ—ଆଚ୍ଛା, ଆଣ, ନିଜେ ହାତରେ ଦିଅ । ଅପଶବ୍ଦ ମୁହଁରୁ ବାହାର କରୁଛ ! ଆଣ, କେତେ ଦେଉଛ ଦିଅ ।

ଶଙ୍ଖଧର ଅଧାରୁ ଅଧିକ ତାଙ୍କ ପତ୍ରରେ ରଖି ପଙ୍ଖାଧରି ବିଞ୍ଚିବାକୁ ବସିଗଲା । ଚକ୍ରଧର ବାତ୍ସଲ୍ୟପୂର୍ଣ୍ଣ କଠୋରତାରେ କହିଲେ—ଜଣାପଡୁଛି, ଆଜି ତୁମେ ମୋତେ ରୋଗୀ କରିଦେବ । ଭଲ, ମୁଁ ଏତେ ଖାଇ ପାରିବି !

ଶଙ୍ଖଧର—ଦେଇଥି ପାଇଁ ତ ଅଳ୍ପ ଅଳ୍ପ ଦେଲି ।

ଚକ୍ରଧର—କିଏ ଅଳ୍ପ ! ଏବେ ବସିବ ନା ମୋତେ ବିଞ୍ଚିବ !

ଶଙ୍ଖଧର—ଆପଣ ଖାଆନ୍ତୁ, ମୁଁ ପଛେ ଖାଇବି ।

ଚକ୍ରଧର—ଭାଇ, ତୁମେ ଏକ ବିଚିତ୍ର ଜୀବ । ତିନି ଦିନ ହେଲା କିଛି ଖାଇନ । କହୁଛ କ'ଣ ନା ଆପଣ ଖାଇସାରନ୍ତୁ, ମୁଁ ପଛେ ଖାଇବି ।

ଶଙ୍ଖଧର—ମୁଁ ତ ଆପଣଙ୍କ ଅଁଠା ଖାଇବ ।

ଚକ୍ରଧର ଧରସ୍ମାର ଭାବରେ କହିଲେ—କାହିଁକି ବାବା ଅଁଠା ଖାଇବ ! ଏବେ ସବୁ କଥା ତୁମ ଇଚ୍ଛା ଅନୁସାରେ ହେଉଛି ।

ଶଙ୍ଖଧର—ମୋର ବହୁଦିନ ହେଲା ଏହି ଆକାଂକ୍ଷା ଥିଲା । ଯେଉଁ ଦିନୁ ଆପଣଙ୍କର କୀର୍ତ୍ତି ଶୁଣିଛି, ସେହିଦିନୁଁ ଏହି ସୁବିଧା ଖୋଜୁଥିଲି ।

ଚକ୍ରଧର—ତୁମେ କଣ ନ ଖାଇବନାହିଁ କି ମୋତେ ବି ଖାଇବାକୁ ଦେବନାହିଁ ।

ଶଙ୍ଖଧର—ମୁଁ ତ ଆପଣଙ୍କ ଅଁଠା ଖାଇବି ।

ଚକ୍ରଧରଙ୍କୁ ପୁଣି ହାର ମାନିବାକୁ ପଡ଼ିଲା । ସେହି ଏକାନ୍ତବାସୀ, ସଂଯମୀ, ବ୍ରତଧାରୀ ଯୋଗୀ ଆଜି ଏକ ଅପରିଚିତ ବାଳକର ଦୁରାଗ୍ରହକୁ କୌଣସି ପ୍ରକାରେ ଟାଳି ପାରିଲେନାହିଁ ।

ଶଙ୍ଖଧରର ଆନନ୍ଦ କେହି ଅନୁମାନ କରି ପାରିବନାହିଁ । ପୂଜ୍ୟପିତାଙ୍କର କିଛି ସେବା କରିବାର ସୌଭାଗ୍ୟ ଆଜି ତାକୁ ମିଳିଛି । କଠିନ ତପସ୍ୟା ପରେ ଆଜି ତାକୁ ବରଦାନ ମିଳିଛି ।

ଚକ୍ରଧର ଭୋଜନ ସାରି ଉଠିଗଲା ପରେ ସେହି ପତ୍ରରେ ନିଜ ପତ୍ରର ଜିନିଷ ଢାଳି ଦେଇ ଖାଇବାକୁ ବସିଲା । ସୁଧା କ'ଣ ଏତେ ସ୍ୱାଦିଷ୍ଟ ହୋଇପାରେ ! ଚକ୍ରଧର ମୁହଁହାତ ଧୋଇ ଗଦ୍‌ଗଦ୍ କଣ୍ଠରେ କହିଲେ—ତୁମେ ଆଜି ମୋର ଦୁଇଟି ନିୟମ ଭାଙ୍ଗିଦେଲ । ନ ବୁଝି ନ ଶୁଝି ଅତିଥି କରିବାର ଏଇ ଫଳ । ଆଜି ମୁଁ ଆଉ କୁଆଡ଼େ ଯିବିନାହିଁ । ତୁମେ ଭୋଜନ ସାରି କ'ଣ କହିବାର ଅଛି କହ । ଏ ଭଳି ଏକଜିଦିଆ ପିଲାକୁ ମୁଁ ପାଖରେ ରଖିବାକୁ ଚାହେଁନା । ତୁମର ଘର କେଉଁଠି ?

ଶଙ୍ଖଧର—ମୋର ତ କୌଣସି ଘର ନାହିଁ ।

ଚକ୍ରଧର—ପିତାମାତା ତ ଥିବେ । ସେମାନେ କେଉଁଗାଆଁରେ ରହନ୍ତି ?

ଶଂଖଧର—ତାହା ମୋତେ ଜଣା ନାହିଁ । ବାବା ତ ମୋ ପିଲାସମୟରୁ ଘରୁ କୁଆଡ଼େ ଚାଲିଗଲେ । ମାଙ୍କ ସହିତ ମୋର ପାଞ୍ଚବର୍ଷ ହେଲା ସାକ୍ଷାତ ନାହିଁ ।

ଚକ୍ରଧରଙ୍କ ପାଦତଳୁ ପୃଥିବୀ ଖସି ଯାଉଥିବା ଭଳି ଜଣା ପଡ଼ିଲା । ହେ ଭଗବାନ, ଇଏ କ'ଣ ସେଇ ବାଳକ ! ସେ ନିଜକୁ ସମ୍ଭାଳି ନେଇ ପଚାରିଲେ—ତୁମେ ପାଞ୍ଚ ବର୍ଷ ପର୍ଯ୍ୟନ୍ତ କେଉଁଠି ଥିଲ ?

ଶଂଖଧର—ବାବାଙ୍କୁ ଖୋଜିବା ପାଇଁ ଆସିଛି । ବାବାଙ୍କୁ ନ ପାଇଲେ ଘରକୁ ଫିରିବି ନାହିଁ ।

ଚକ୍ରଧର—ତୁମର ନାମ କ'ଣ ବାବା ?

ଶଂଖଧର—ମୋର ନାମ ଶଂଖଧର ସିଂହ ।

ଚକ୍ରଧର—ତୁମ ପିତାଜୀଙ୍କ ନାମ ?

ଶଂଖଧର—ମୁନ୍‌ସୀ ଚନ୍ଦ୍ରଧର ।

ଚନ୍ଦ୍ରଧର—ଘର ?

ଶଂଖଧର—ଜଗଦୀଶପୁର ।

ସର୍ବନାଶ ! ଚନ୍ଦ୍ରଧର ସତେ ଯେପରି ଅନୁଭବ କଲେ, ତାଙ୍କ ଶରୀରରୁ ପ୍ରାଣ ବାହାରିଗଲା । ତାଙ୍କୁ ଚତୁର୍ଦ୍ଦିଗ ଅନ୍ଧକାର ଦେଖାଗଲା । 'ଶଂଖଧର'—ଏହି ଦେହ । ଏହି ପ୍ରଶସ୍ତ ଅନ୍ଧକାର ମଧ୍ୟରେ କୌଣସି ପକ୍ଷୀ ସତେଅବା ଘୂରି ବୁଲୁଛି ।

( ୪୫ )

ରାଜା ବିଶାଳ ସିଂହ ବଡ଼ ଧୂମ୍‌ଧାମରେ ଅହଲ୍ୟାକୁ ପହିଲିପାଳି ବିଦାୟ ଦେଲେ । ତହସିଲଦାର ସାହେବଙ୍କ ଘରେ ଏତେ ଜିନିଷ ରଖିବାକୁ ସ୍ଥାନ ନ ଥିଲା । ଲୁଗାପଟା, ବାସନକୁସନ, କାଚଜିନିଷ, କାଠର ଅଲଭ୍ୟ ବସ୍ତୁ, ଫଳ, ମିଠା, ଗାଈ, ମଇଁଷି—ସମ୍ବଲପୁରରୁ ଯାଏଁ ବୁହାଗଲା । ଦୁଇଟା ହାତୀ ଏବଂ ପାଞ୍ଚଟା ଘୋଡ଼ା ମଧ୍ୟ ମିଳିଲା । ଏମାନଙ୍କୁ ବାନ୍ଧିବା ପାଇଁ ଜାଗା ନ ଥିଲା । ପାଞ୍ଚଜଣ ଦାସୀ ଅହଲ୍ୟା ସଙ୍ଗେ ଗଲେ । ତହସିଲଦାର ସାହେବ ଅବଶ୍ୟ ନୂଆଘର ତିଆରି କରିଥିଲେ । କିନ୍ତୁ ସେ କ'ଣ ଜାଣିଥିଲେ ଏତେ ଜିନିଷ ଆସିବ ବୋଲି ! ସବୁ ଘରେ ଜିନିଷ ଭର୍ତ୍ତି । କେତେ ଜିନିଷ ପଡ଼ୋଶୀ ଘରେ ମଧ୍ୟ ରଖିବାକୁ ପଡ଼ିଲା । ନଗଦ ଲକ୍ଷେ ଟଙ୍କା ! ଏ ସବୁକୁ ଦେଖି ସେ କାନ୍ଦିଲେ ଓ ହସିଲେ । ଭୋଗ କରିବ କିଏ ! ପଚିଶ ବର୍ଷ ପୂର୍ବରୁ ମିଳି ଥିଲେ ଜୀବନରେ କିଛି ମଜା ପାଇ ଥାଆନ୍ତେ । ଏବେ ବୃଦ୍ଧାବସ୍ଥାରେ ଏ ସବୁ କ'ଣ କରିବେ ! ବିକିବା ଅପମାନଜନକ । ଶଯ୍ୟାଦି ସବୁ ବାଣ୍ଟି ଦେଲେ । କେତେ ମାସଯାଏଁ ସଦାବ୍ରତ ଖୋଲିଲା । କିଏ ମାଗିବାକୁ ଆସିଲେ ତାକୁ ମନା ନ କରିବାକୁ ଚାକରମାନଙ୍କୁ ତାଗିଦ୍ କରିଦେଲେ । ସାରା ସହରରେ ତହସିଲଦାରଙ୍କର କୀର୍ତ୍ତି ବ୍ୟାପିଗଲା । ବଡ଼ ବଡ଼ ଲୋକେ ଦେଖା କରିବାକୁ ଆସିଲେ । ଭାଗ୍ୟ ଖୋଲିବା ତ ଏମିତି । ଘରେ ଲଣ୍ଠନ କିଛି ନ ଥିଲା, ଏବେ କିନ୍ତୁ ଦୁଆରେ ହାତୀ ବନ୍ଧା ହେଉଛି ।

ଦିନକୁ ଦଶଥର ଚନ୍ଦ୍ରଧର ଉପରେ ବିଗୁଡ଼ୁଥାଆନ୍ତି—ଛତିରା, ନିଜେ ତ ଗଲା—ଗଲା, ସାଥିରେ ଟୋକାଟାକୁ ବି ନେଇଗଲା । ଦେଶରେ ଉପକାର କରୁଛି ଛତିରା ! ଏ ହାତୀ ଘୋଡ଼ା ମଟର କ'ଣ ହବ ! କାହା ଉପରେ ବସି ବୁଲିବ ! ବୋହୂ ; ହରଦମ୍ କାନ୍ଦୁଛି । ପୁଅର ମାଆ ସେ । ଶୋକ ତାକୁ ଛାଡ଼ୁନାହିଁ—ବସିବ କିଏ ! ନିର୍ମଳା କୌଣସି ଜିନିଷକୁ ଛୁଉଁନାହାନ୍ତି ।

ଅହଲ୍ୟା ଏଠାକୁ ଆହୁରି ଆଉ ଦୁଃଖିତା ହେଲା । ଗ୍ରାମ୍ୟମଣ୍ଡଳର ବଳୀୟସୀ ଜୀବନରେ ବରଙ୍କ ହୋଇ ପାପ୍ରକ୍ଷିତ କରିବାକୁ ଆସି ଥିଲା । କିନ୍ତୁ ବିପତ୍ତି ମଧ୍ୟ ତା' ପଛେ ଆସିଲା । ସମ୍ପତ୍ତିଠାରୁ ଦୂରରେ ରହିବାକୁ ଚାହୁଁଥିଲା—ଏବେ ସମ୍ପତ୍ତି ତାକୁ ଜାବୁଡ଼ି ଧରିଛି । ସେଠାରେ ତାହା ପାଖରେ ବସି ମନକୁ ଟିକିଏ ପରିବର୍ତ୍ତନ କରି ହେଉଥିଲା । ଏଠାରେ କିନ୍ତୁ ନିର୍ମଳାଙ୍କର ବାଣୀ କୁନ୍ତ ଭୁଷିଲା ପରି ଲାଗୁଛି । ବୋହୂ ହେଉ ମୁଁ ପୁଅ ଠାରୁ ଦୂରରେ ରହିଲି । ବୋହୂ ଯୋଗୁଁ ନାତି ହାତରୁ ଗଲା । ଏପରି ବୋହୂକୁ କ'ଣ ପୂଜା କରିବ ! ସମ୍ପତ୍ତି କ'ଣ ହେବ ! ଚାଟିବ ! ନିଜେ ଗାଳି ଖାଆନ୍ତୁ । ଅହଲ୍ୟା ପାଖରେ ସେବେଇ ବସିବାକୁ ଯେଉଁ ନାନା ଆସିଥିଲେ ସେ ସମସ୍ତେ ଗ୍ରହଣ କରନ୍ତୁନାହିଁ । ଅହଲ୍ୟାକୁ ତ ଅସ୍ପୃଶ୍ୟ ବୋଲି ମନେ କରନ୍ତି । ମଙ୍ଗଳା ଶାଶୁଘରୁ ଆସିଛି । ତା'ର ଇଚ୍ଛା ସବୁ ଜିନିଷ ନିଜେ ନେଇ ଯିବାକୁ । ଅହଲ୍ୟା କିନ୍ତୁ ନିଜ ଜିନିଷକୁ ଏପଟ ସେପଟ ହେବାକୁ ଦେଉନାହିଁ । ନଣନ୍ଦ ଭାଉଜ ମଧ୍ୟରେ ମଧ୍ୟ ସମୟେ ସମୟେ ଝଟଖଟ ।

ବାସନକୁସନ ମଧ୍ୟରେ ବଡ଼ବଡ଼ ହଣ୍ଡାମାନ ଥିଲା । ଗୋଟିଏ ହଣ୍ଡା ଏତେ ବଡ଼ ଥିଲା ଯେ, ତହିଁରେ ଅଢ଼େଇ ଶହ ଗରା ପାଣି ଧରିବ । ଦିନେ ମଙ୍ଗଳା ସେ ହଣ୍ଡାଟାକୁ ନିଜ ଘରକୁ ପଠେଇ ଦେଲା । କିଛି ଦିନ ପରେ ଏ କଥା ଅହଲ୍ୟା ଜାଣି ପାରିଲା ! ଶାଶୁଙ୍କୁ ପଚାରିଲା—ମା', ସେ ବଡ଼ ହଣ୍ଡାଟା କୁଆଡ଼ି ଅଛି । ଦେଖା ଯାଉନାହିଁ ।

ନିର୍ମଳା—ବାବା ମୁଁ ଜାଣିନାହିଁ କି ହଣ୍ଡା । ଘରେ ଥିଲେ କୁଆଡ଼େ ଯାଆନ୍ତା !

ଅହଲ୍ୟା—ଘରେ ଥିଲା ତ ।

ନିର୍ମଳା—ଘରେ ଥିଲେ କୁଆଡ଼େ ପଳେଇ ଯାଆନ୍ତା !

ଅହଲ୍ୟା—ଘର ଜିନିଷ ଘର ଲୋକ ବ୍ୟତୀତ ଅଉ କିଏ ଛୁଇଁ ପାରିବ କି !

ନିର୍ମଳା—ତେବେ କ'ଣ ଏ ଘରେ ସବୁ ଚୋର ଅଛନ୍ତି !

ଅହଲ୍ୟା—ତା' ତ ମୁଁ କହୁନାହିଁ । କିନ୍ତୁ ଜିନିଷଟା ଖୋଜି ବାହାର କରିବା ତ ।

ନିର୍ମଳା—ତୁ ଖୋଜି ବାହାର କର । ମୁଁ ସେ ସବୁ ନେଇ କ'ଣ କରିବି ! ସେ ସବୁ ଦେଖିଲେ ମୋ ଆଖି ଫୁଟି ଯାଉଛି । ଏଇ ସବୁ ପାଇଁ ତ ତୁ ମୋ ପୁଅକୁ ବନବାସ ପଠେଇଲୁ । ଏଇ ଜିନିଷ ପାଇଁ ନିଜର ପୁଅକୁ ହାତରୁ ଛାଡ଼ି ଦେଲୁ । ତତେ ଏ ଜିନିଷ ଭଲ ।

କଥାଗୁଡ଼ାକ କଡ଼ା । କିନ୍ତୁ ଯଥାର୍ଥ ମଧ୍ୟ । ଧନର ମୋହ ତା'ର ସର୍ବନାଶ କରିଦେଲା । ତଥାପି ସେହି ମୋହକୁ ଗଳାରେ ବାନ୍ଧିଛି । ନିର୍ମଳାଙ୍କର କଠୋର ଶବ୍ଦ ତା'ଠାରେ ଗ୍ଲାନି ଏବଂ ବିବେକର ସଂଚାର କରି ଦେଲା । ଏଇଠା ଠିକ୍ କଲା—ଏ ଜିନିଷ ବିଷୟରେ ସେ ଆଉ କିଛି କହିବନାହିଁ । ଯଦି ମାଆଙ୍କର ଲୋଭ ନାହିଁ । ତେବେ ମୋର କ'ଣ ଅଛି !

ଘରେ କେହି ଜିନିଷ ପ୍ରତି ଯତ୍ନ ନ ନେବାରୁ ଚୋରିଆଡ଼ି ଲୁଟି ହେଲା । ଘରେ କିଏ ଲୁଟି କରୁଛି କିଛି ଜାଣି ହେଉନାହିଁ । ଗୋଟିଏ ପରେ ଗୋଟିଏ ଜିନିଷ ଚାଲିଯାଉଛି । ଅହଲ୍ୟା

ଦେଖି ଦେଖୁନାହିଁ । କି ଶୁଣି ମଧ୍ୟ ଶୁଣୁନାହିଁ । କିନ୍ତୁ ନିଜ ଜୀବନର ଗୁଡ଼ାକ ଏପରି ଲୁଚି ହୋଇ ଯାଉଥିବାରୁ ଦୁଃଖ ଜାତ ହେଉଛି ।

ଏହିଭଳି କେତେ ମାସ ବିତିଗଲା । ଅହଲ୍ୟାର ଆଶାପ୍ରଦୀପ ଦିନକୁ ଦିନ କ୍ଷୀଣ ହେବାକୁ ଲାଗିଲା । ମୋହ ବନ୍ଧନରୁ ନିଜକୁ ମୁକ୍ତ କରିବା ପାଇଁ କେତେ ଚେଷ୍ଟା କଲା । କିନ୍ତୁ ମନକୁ ନିୟନ୍ତ୍ରଣ କରି ପାରୁ ନଥିଲା । କାଶୀମୁଁ ରହିବ, ନିଜ କାମ ନିଜେ କରିବ, ଯଥାକଥା ଭୋଜନ କରି ଦିନ କାଟିବ । କିନ୍ତୁ ହୋଇ ପାରୁ ନଥିଲା । ଯେଉଁ କାମ ଷୋଳ ବର୍ଷ ହେଲା କରି ଆସୁଛି, ତା'ର ବିରୁଦ୍ଧ ଆଚରଣ କରିବା ଅସ୍ୱାଭାବିକ ଜଣା ପଡୁଥିଲା । ବିଳାସିତା ତା'ର କର୍ମ ଶକ୍ତିକୁ ଦୁର୍ବଳ କରି ଦେଇଥିଲା । ଏଠାରେ ରହି ନିଜର ଉଦ୍ଧାର ପାଇଁ କିଛି ସେ କରି ପାରିବ ନାହିଁ—ଏହି ଧାରଣା ତା'ର କ୍ରମେ ବଦ୍ଧମୂଳ ହେଉଥିଲା ।

କିନ୍ତୁ ଏବେ ଯିବ କୁଆଡ଼େ ! ଏ ମନୋବୃତ୍ତି ନ ବଦଳିଲେ ତୀର୍ଥଯାତ୍ରା ଏକ ସୁଆଙ୍ଗରେ ପରିଣତ ହେବ । ଅନ୍ୟ କୌଣସି ସ୍ଥାନରେ ଏକାକୀ ରହିବା ପାଇଁ କିଛି ବାହାନା ନ ଥିଲା । ବାଗେଶ୍ୱରୀ ତା'ର ମନେ ପଡ଼ିଲେ । ସେହିଠାରେ ହିଁ କେବଳ ସୁନ୍ଦର ଦିନଗୁଡ଼ିକ କଟିଥିଲା । ଆଉ ସେଦିନ ଫେରିବନାହିଁ । ଶାଶୁ, ନଣନ୍ଦ ମିଳିଲେ । କିନ୍ତୁ ଅନ୍ୟ ଢଙ୍ଗର । ମା' ନାହିଁ, କେବଳ ବାପକୁ ପାଇଲା ଯେଉଁ ଦିନ ଜାଣିଲା ମୁଁ ରାଜାର ଝିଅ—ସେଦିନ ଆନନ୍ଦରେ ଅଧୀର ହୋଇଗଲା । ଭୂଇଁରେ ପାଦ ପଡ଼ିଲାନାହିଁ । କିନ୍ତୁ ହାୟ ! କ୍ଷଣିକ ଆନନ୍ଦ ପାଇଁ ସାରା ଜୀବନ କାନ୍ଦିବାକୁ ପଡ଼ିଲା ।

ଏବେ ଅହଲ୍ୟାର ଦିନରାତି ଚିନ୍ତା, କିପରି ବାଗେଶ୍ୱରୀଙ୍କ ପାଖକୁ ଯିବ, ଅନେକ ଦିନୁଁ ବାଗେଶ୍ୱରୀଙ୍କଠାରୁ ଚିଠି ଆସିନାହିଁ । କିନ୍ତୁ ଆଗ୍ରାରେ ଅଛନ୍ତି । ଅହଲ୍ୟା କେତେ ଥର ଆସିବା ପାଇଁ ଲେଖିଥିଲା । କିନ୍ତୁ ବାଗେଶ୍ୱରୀ ଲେଖିଥିଲେ—ମୁଁ ଆରାମରେ ଅଛି । ମୋତେ ଏହିଠାରେ ହିଁ ପଡ଼ିରହିବାକୁ ଦେ । ବର୍ତ୍ତମାନ ଅହଲ୍ୟାର ମନ ବାଗେଶ୍ୱରୀଙ୍କ ପାଖକୁ ଯିବାକୁ ଅଧୀର ହୋଇ ଉଠିଲା । ବାଗେଶ୍ୱରୀ ମଧ୍ୟ ତା'ରି ଭଳି ଦୁଃଖିନୀ । ସେ ସମସ୍ତ ଆଶା ଓ ମାୟା । ମୋହରୁ ମୁକ୍ତ ହୋଇ ସାରିଛନ୍ତି । ତାଙ୍କରି ପାଖରୁ ସେ ସହାନୁଭୂତି ପାଇ ପାରିବ । ସେ କେବଳ ନିଜର ମାତୃସ୍ନେହରେ ତା'ର ସମସ୍ତ କ୍ଲେଶ ହରଣ କରିପାରିବେ ।

ଶେଷରେ ଦିନେ ଏ ବିଷୟରେ ଶାଶୁ ସହିତ ଚର୍ଚ୍ଚା କଲା । ନିର୍ମଳା ଟିକିଏ ହେଲେ ଆପତ୍ତି କଲେନାହିଁ । ମଙ୍ଗଳା ତ ସେ ଯିବା ପ୍ରସ୍ତାବ ଶୁଣି ଖୁବ୍ ଖୁସି ହେଲା । ଘରେ ନିଜର ରାଜତ୍ୱ ଚାଲିବ । ଯେଉଁ ଜିନିଷ ଇଚ୍ଛା କରିବ, ଉଠେଇ ନେବ । ମାସ ଦୁଇଟା ଅହଲ୍ୟା ସେଠାରେ ରହିଗଲେ ମଙ୍ଗଳାର ଘର ପୂର୍ଣ୍ଣ ।

ଅହଲ୍ୟା ଯିବାପାଇଁ ପ୍ରସ୍ତୁତ ହେବାରୁ ମଙ୍ଗଳା କହିଲା—ଭାଉଜ, ତମେ ଚାଲିଗଲେ ତ ଏଠି ମୋତେ ଆଦୌ ଭଲ ଲାଗିବନାହିଁ । କେତେଦିନ ରହିବ ?

ଅହଲ୍ୟା—ଏବେ କିମିତି କହିବ ଭଉଣୀ, ସେଠାକୁ ଗଲେ ଜଣାପଡ଼ିବ ।

ମଙ୍ଗଳା—ଏତେ ଦିନ ପରେ ଯେତେବେଳେ ଯାଉଛ, ଦି ତିନି ମାସରୁ କ'ଣ କମ୍ ହବ । ତମେ ଗଲେ, ମୁଁ ମଧ୍ୟ ଚାଲିଯିବି । ଏବେ ବି ରାଣୀ ସାହେବାଙ୍କ ଦିହ ଭେଟ ହଉନାହିଁ । ଏକୁଟିଆ କମିତି ରହିବି !

ଏହା କହି ମଙ୍ଗଳା କାନ୍ଦିଲା ।

ପରଦିନ ଅହଲ୍ୟା ଆଗ୍ରା ଚାଲିଲା । ସଙ୍ଗରେ ବିଶେଷ କିଛି ଜିନିଷ ନେଲାନାହିଁ କି ଅନ୍ୟ କାହାରିକୁ ନେଲା ନାହିଁ । କେବଳ ପହଞ୍ଚେଇ ଦେବା ପାଇଁ ବୁଢ଼ା ଭଣ୍ଡାରୀଟିଏ ଗଲା । ଆଗ୍ରାରେ ପହଞ୍ଚିବାପରେ ତାକୁ ପଠେଇ ଦେଲା ।

କୋଡ଼ିଏ ବର୍ଷ ପରେ ଅହଲ୍ୟା ଆସିଲା । କିନ୍ତୁ ହାୟ ! ଏ ଘରର ଅବସ୍ଥା ଅନ୍ୟ ପ୍ରକାର ହୋଇଛି । ସବୁ ଘର ଖାଙ୍ଗି ଭୂଷୁଡ଼ି ପଡ଼ିଛି । ଅଗଣା କି ବୈଠକଖାନାର ସୀମା ନାହିଁ । ସବୁଆଡ଼େ ଚୂନ ଇଟା ମାଟି ଗଦା । ତା' ଉପରେ ମନ୍ଦାର ଓ ଦୁଦୁରା ଗଛ ସବୁ ଉଠିଛି । ଗୋଟିଏ ଛୋଟ କୋଠରୀ ମାତ୍ର ଭଲ ଅଛି । ବାଗେଶ୍ୱରୀ ସେଇ କୋଠରୀରେ ରହୁଛନ୍ତି । ତାଙ୍କ ଚେହେରା ମଧ୍ୟ ଏଇ ଘର ଭଳି ବଦଳି ଯାଇଛି । ଦାନ୍ତ ନାହିଁ, ଆଖିକି ଭଲ ଦିଶୁନାହିଁ । ମୁଣ୍ଡରବାଳ ଧଳା, ଧଳୁଭଳି ଅଣ୍ଟା ନଇଁ ଯାଇଛି । ଉଭୟେ ଉଭୟଙ୍କୁ କୁଣ୍ଢାଇ ଦୁହେ କାନ୍ଦିଲେ । ଅଶ୍ରୁର ବେଗ କମ୍ ହେବାରୁ ବାଗେଶ୍ୱରୀ କହିଲେ—ମା', ତୁ ତ ନିଜ ସାଙ୍ଗରେ କିଛି ଜିନିଷପତ୍ର ଆଣିନୁ, କ'ଣ ଫେରନ୍ତା ଗାଡ଼ିରେ ଚାଲି ଯିବାକୁ ଭାବୁଛୁ କି ! ବୁଢ଼ୀକି ତ ପୂରା ଭୁଲିଗଲୁ । ଏ ଅଳିଆ ଗଦା ଭିତରେ ତୁ ରହିବୁ ବା କାହିଁକି !

ଅହଲ୍ୟା—ମା', ଉଆଡ଼େ ରହି ମନ ଚିଟା ହେଇଗଲା, ଏବେ କିଛି ଦିନ ଏଇଠି ରହି ତୁମର ସେବା କରିବି । ଯେଉଁ ଦିନଠାରୁ ଏ ଘରୁ ଗଲି, ସେହିଦିନଠାରୁ ଦିନେ ହେଲେ ସୁଖ ପାଇନାହିଁ ।

ବାଗେଶ୍ୱରୀ—ପିଲାମାନଙ୍କର ଖବର କିଛି ମିଳିଲା ?

ଅହଲ୍ୟା—ନାହିଁ ମା', ମୁଁ ରାଜ୍ୟସୁଖରେ ଭୋଳ ହେବାର ଦଣ୍ଡ ଭୋଗ କରୁଛି । ରାଜ୍ୟସୁଖ ଭୋଗରେ ଯାହା ମିଳିଲା ତ ଦେଖିଲି । ଏବେ ତାକୁ ତ୍ୟାଗକରି ଦେଖିବି କ'ଣ ହଉଚି । କିନ୍ତୁ ମା', ତୁମେ ତ ଏବେ ବଡ଼ କଷ୍ଟରେ ଚଳୁଥିବ !

ବାଗେଶ୍ୱରୀ—କଷ୍ଟ କ'ଣ ଝିଅ ! ସ୍ୱାମୀ ବଞ୍ଚିଥିବା ବେଳେ ତାଙ୍କର ସେବା କରି ଆନନ୍ଦ ପାଉଥିଲି । ତୀର୍ଥ, ବ୍ରତ, ପୁଣ୍ୟ,ଧର୍ମ ସବୁକିଛି ତାଙ୍କ ସେବାରେ ହିଁ ଥିଲା । ସେ ତ ଗଲେ । ଏବେ ତାଙ୍କ ମର୍ଯ୍ୟାଦାର ସେବା କରୁଛି । ଆଜି ମଧ୍ୟ ତାଙ୍କର ଅନେକ ଭକ୍ତ ସାହାଯ୍ୟ କରିବାକୁ ଆଗେଇ ଆସୁଛନ୍ତି, କିନ୍ତୁ କାହିଁକି କାହାର ସାହାଯ୍ୟ ନେବି ! ତୁମର ବାବା ସର୍ବଦା ଅନ୍ୟମାନଙ୍କର ସେବା କରୁଥିଲେ । ମୁଁ କେଉଁ ମୁହଁରେ ସାହାଯ୍ୟ ପାଇଁ ହାତ ପତେଇବି !

ବୃଦ୍ଧାଙ୍କର ମୁଖମଣ୍ଡଳ ଗର୍ବରେ ଚମକି ଉଠିଲା । ତାଙ୍କ ଚକ୍ଷୁରେ ଅହଲ୍ୟା ଏକ ଦିବ୍ୟ ଜ୍ୟୋତିର ଝଲକ ଦେଖିଲା । ତା'ର ମସ୍ତକ ଲଜ୍ଜାରେ ନଇଁ ଗଲା । ବାଗେଶ୍ୱରୀ ପୁଣି

କହିଲେ :—ଖ୍ୱାଜା ମହମ୍ମଦ ଖୁବ୍ ସାହାଯ୍ୟ କରିବାକୁ ଚାହିଁଲେ । ବାପଘରୁ ଅନେକଥର ତାଗିଦ୍ ଆସିଲା—ପ୍ରତି ମାସରେ କିଛି ଟଙ୍କା ଦେବାକୁ ମଧ୍ୟ ମୋ ବଡ଼ ଭାଇ କହିଲେ । ସେ କଟେଇ ବଡ଼ ଓଜନଲ । ମୁଁ କାହାର ଦୟା ଉପରେ ନିର୍ଭର କରି ରହିବାକୁ ଚାହିଁଲିନାହିଁ । ପତିର ଅର୍ଜନକୁ ଛାଡ଼ି ଅନ୍ୟ କାହାରି ଅର୍ଜନ ଉପରେ ସ୍ତ୍ରୀର ଅଧିକାର ନାହିଁ । କେହି ମୁହଁରେ ନ କହିଲେ ବି ମନେ ମନେ ତ କହିବ । ସିଲେଇ କରି ଚଳାଇଲି । ଆରେ । ମୁଁ ତ କେବଳ କଥା କହିବାରେ ଲାଗିଗଲି । ଚାଲ ଧୂଆଧୋଇ ହୁଅ । କିଛି ଖାଇ ସାରିଲେ କଥାବାର୍ତ୍ତା ହେବ ।

କିନ୍ତୁ ଅହଲ୍ୟା ଧୂଆଧୋଇ ହେବାକୁ ଉଠିଲାନାହିଁ । ବାଗେଶ୍ୱରୀଙ୍କ ଆଦର୍ଶ ପତିଭକ୍ତିରେ ତା'ର ଆତ୍ମା ତାକୁ ତିରସ୍କାର କରୁଥିବାର ଅନୁଭବ କଲା । ସମସ୍ତ କଷ୍ଟ ସହି ପତିଙ୍କର ମର୍ଯ୍ୟାଦା ପାଳନ କରୁଛନ୍ତି । ବାପଘର ଡାକିଲେ ଯିବାରେ କେହି ଦୋଷ ଧରିବେନାହିଁ । ତଥାପି ସମସ୍ତ କଷ୍ଟ ଖୁସିରେ ବରଣ କଲେ । କିନ୍ତୁ ତୁ ବାପଘର ସମ୍ପତ୍ତି ଦେଖି ଫୁଲି ଉଠିଲୁ, ଅନ୍ଧ ହୋଇଗଲୁ । ରାଜକୁମାରୀ ଏବଂ ପରେ ରାଜମାତା ହେବା ପାଇଁ ପତିକୁ ମଧ୍ୟ ଖାତିର୍ କଲୁନାହିଁ, ବରଂ ଅବହେଳା କଲୁ । ସେ ତୋତେ ନିଜ ଢଙ୍ଗରେ ନେଇ ଯିବାକୁ ଚାହୁଁଥିଲେ । ରାଜ୍ୟ ସୁଖରେ ମାତି ତୁ ଗଲୁ ନାହିଁ । କାହୁଁଥା ।

ବାଗେଶ୍ୱରୀ ପୁଣି କହିଲେ—ବସିଛୁ କାହିଁକି ଝିଅ । ହଁ, ଦାସୀ ତ ପାଣି ଆଣିନାହିଁ, ଉଠିବୁ କେମିତି ! ମୁଁ ପାଣି ଦଉଚି—ମୁହଁହାତ ଧୁଅ । ମୁଁ ରୁଟି ସେକୁଛି । ତତେ ଭଲ ଲାଗିବ କି ନାହିଁ କେଜାଣି ! ତୁ ତ ମୋ ରୁଟିକୁ ଖୁବ୍ ପସନ୍ଦ କରୁ ।

ଅହଲ୍ୟା ସ୍ନେହମୟ ବାକ୍ୟରେ ପୁଲକିତ ହୋଇ ଉଠିଲା । ଏହି 'ତୁ' ରେ ଯେଉଁ ସୁଖ, 'ଆପଣ' 'ସରକାର'ରେ ସେ ସୁଖ କାହିଁ ! କହିଲା—ଏବେ ତ ଭୋକ ନାହିଁ ମା' । ବସ କଥାବାର୍ତ୍ତା ହେବା । ମୁଁ ମୋ ଦୁଃଖର୍ କଥା କହିବାକୁ ବ୍ୟାକୁଳ ହେଉଛି । କହ, ମୁଁ କିପରି ଉଦ୍ଧାର ହେବ ।

ବାଗେଶ୍ୱରୀ ଗମ୍ଭୀର ଭାବରେ କହିଲେ—ପତି ପ୍ରେମରୁ ବଞ୍ଚିତ ହୋଇ ସ୍ତ୍ରୀ ଉଦ୍ଧାର ପାଇବ କେମିତି ଝିଅ ! ପତିହିଁ ସ୍ତ୍ରୀର ସର୍ବସ୍ୱ । ଯିଏ ନିଜର ସର୍ବସ୍ୱ ହରେଇ ଦେଲା, ତାକୁ ସୁଖ କିପରି ମିଳିବ ! ଯାହାକୁ ନେଇ ତୁ ପତିଙ୍କୁ ତ୍ୟାଗ କଲୁ, ତାକୁ ତ୍ୟାଗ କଲେ ଯାଇ ପତିଙ୍କୁ ପାଇବୁ । ତୁ ଏତେ କର୍ତ୍ତବ୍ୟ ଭ୍ରଷ୍ଟ କିପରି ହୋଇଗଲୁ ! ଏଠାରେ ତ ତୁ ଧନ ପାଇଁ ଏତେ ବ୍ୟଗ୍ର ହେଉ ନ ଥିଲୁ । ଭଗବାନ ତୋତେ ପରୀକ୍ଷା କରୁଥିରେ । ତୁ ହାରିଗଲୁ । ଯେ ପର୍ଯ୍ୟନ୍ତ ଧନ ଏବଂ ରାଜ୍ୟର ମୋହ ନ ଛାଡ଼ିଛୁ, ସେହି ତ୍ୟାଗୀ ପୁରୁଷ ତୋତେ ମିଳିବେନାହିଁ ।

ଅହଲ୍ୟା—ମା', ସତ କହୁଛ, ମୁଁ କେବଳ ଶଙ୍ଖଧରର ହିତ ପାଇଁ ତାଙ୍କ ସଙ୍ଗେ ଗଲିନାହିଁ ।

ବାଗେଶ୍ୱରୀ—ସେହି ବର୍ଷରରେ ତୋର ଭୋଗଲାଳସା ଲୁଚି ରହି ନ ଥିଲା କି ?

ଅହଲ୍ୟା—ମୁଁ ନାହିଁ କରିପାରୁନାହିଁ ମା' ।

ବାଗେଶ୍ୱରୀ—ସମ୍ପତ୍ତି ଏଠାରେ ମଧ୍ୟ ତୋତେ ଛାଡ଼ିବନାହିଁ ।

ଅହଲ୍ୟା—ମନ. ବୋଧ ହୋଇଗଲାଣି ମା' ।

ବାଗେଶ୍ୱରୀ--ଯିଏ ସମ୍ପତ୍ତିକୁ ଦେଖି ପଳେଇଯିବ । ସମ୍ପତ୍ତି ମଧ୍ୟ ତା'ପଛେ ପଛେ ଗୋଡ଼େଇବ । ମୋର ସନ୍ଦେହ ହେଉଛି, ତୁ ତା' ଲୋଭରେ ପଡ଼ିଯାଇ ପାରୁ । ଥରେ ଚେତିଲୁନାହିଁ—ଚଉଦବର୍ଷ କାଳ କାନ୍ଦିବାକୁ ପଡ଼ିଲା, ଏବେ ଭୁଲିଲେ ସାରା ଜୀବନ କାନ୍ଦିବାରେ କଟିବ ।

( ୪୭ )

ପିତାଙ୍କ ସହିତ ରହିବା ଶଙ୍ଖଧରର ଏକମାତ୍ର ହୋଇଗଲା । ସେ ଯିବାର ନାଁ ଧରୁନାହିଁ କି ଚନ୍ଦ୍ରଧର ଯିବାକୁ ମଧ୍ୟ କହୁ ନାହାନ୍ତି । ଶଙ୍ଖଧର ଅତ୍ୟନ୍ତ ପ୍ରସନ୍ନ । ଏହି ଅଳ୍ପ ସମୟ ମଧ୍ୟରେ ତା'ର ଚେହେରା ବଦଳି ଗଲାଣି । ମୁଖମଣ୍ଡଳରେ ଯୌବନର ତେଜ ଝଲକି ଉଠିଲାଣି । ତାକୁ ଦେଖିଲେ ଯେ କେହି କହିବ—ଅଖଣ୍ଡ ବ୍ରହ୍ମଚର୍ଯ୍ୟ ବ୍ରତଧାରୀ ଋଷିକୁମାର ।

ଚନ୍ଦ୍ରଧରଙ୍କୁ ଏବେ କୌଣସି କାମ, ନିଜେ କରିବାକୁ ପଡୁନାହିଁ । ଗୋଟିଏ ଗାଁରୁ ଅନ୍ୟ ଗାଁକୁ ଗଲେ ସବୁ ଜିନଷ ଶଙ୍ଖଧର ନେଇ ଯାଉଛି । ରୋଷେଇ କରି ଦେଉଛି, ବାସନ ମାଜି ଦେଉଛି । ନିଜର ଲୁଗାପଟା ଚନ୍ଦ୍ରଧର ନିଜେ ସଫା କରୁନାହାନ୍ତି । ଉଭୟଙ୍କର ଜୀବନ ଏବେ ଆନନ୍ଦରେ କଟୁଛି । ଶଙ୍ଖଧରକୁ ନିଜ ଜୀବନର ଅନୁଭୂତି, ଦର୍ଶନ, ବିଜ୍ଞାନ, ଧର୍ମ, ଇତିହାସ ଇତ୍ୟାଦି ସମସ୍ତ କଥା ଚନ୍ଦ୍ରଧର ଶୁଣାନ୍ତି । ଶିକ୍ଷା ଦେବାରେ ସେ ଅତି ଆନ୍ତରିକତାର ସହିତ ଲାଗିଯାଆନ୍ତି । ଜଡ଼ିବୁଟି ସମ୍ବନ୍ଧୀୟ ଯେତେ ଜ୍ଞାନ ଚନ୍ଦ୍ରଧର ମହାତ୍ମାମାନଙ୍କଠାରୁ ହାସଲ କରିଥିଲେ ସବୁ ଶଙ୍ଖଧରକୁ ଶିଖାଇ ଦେଲେ । ଲୋକମାନଙ୍କଠାରୁ ଶଙ୍ଖଧରର ଶାଳୀନତା ଓ ସଜ୍ଜନତାର କଥାଶୁଣି ସେ ମନେ ମନେ ଗର୍ବ କରିଥା'ନ୍ତି । ଅତ୍ୟନ୍ତ ଆନନ୍ଦରେ ଗଦ୍‌ଗଦ ହୋଇ ପଡ଼ନ୍ତି । ତାଙ୍କର ଆଖି ସଜଳ ହୋଇ ପଡ଼େ । ସମସ୍ତେ ଜାଣିଲେ ଏହି ତେଜସ୍ୱୀ ଯୁବକ ତାଙ୍କର ପୁତ୍ର । ଉଭୟଙ୍କର ଚେହେରା ଏକା

ଦିନେ ଏକ ଗ୍ରାମରେ ପହଞ୍ଚିଲେ । ସେ ଗ୍ରାମରେ ମଲ୍ଲବିଦ୍ୟା ପ୍ରତିଯୋଗିତା ହେଉଥିଲା । ଶଙ୍ଖଧର ଯାଇ ସେଠାରେ ଠିଆ ହେଲା । ଜଣେ ପ୍ରତିଯୋଗୀ ଶଙ୍ଖଧରକୁ କୁସ୍ତି ପାଇଁ ଆହ୍ୱାନ କଲା । ସେ ଥିଲା ଶଙ୍ଖଧରର ସମାବୟସ । ଶଙ୍ଖଧର ମଧ୍ୟ ସମ୍ମତ ହେଲା । ଚନ୍ଦ୍ରଧର ଅନେକ କହିଲେ—ଏ ପିଲା କୁସ୍ତି ଲଢ଼ିବା ଜାଣେ ନାହିଁ । କ'ଣ ବା ଲଢ଼ିବ ! କିନ୍ତୁ ଶଙ୍ଖଧର କାଛ ପିନ୍ଧି ବାହାରି ପଡ଼ିଲା । ସେ ସମୟରେ ଚନ୍ଦ୍ରଧରଙ୍କର ଚେହେରା ଦେଖିବା ଯୋଗ୍ୟ । ନିଜର

ବ୍ୟଗ୍ରତାକୁ ଲୁଚେଇବା ପାଇଁ ଆଡୁଆଳରେ ଯାଇ ଠିଆ ହେଲେ । ପିଲାମାନଙ୍କ ଖେଳ ଯଦି ବାବାଜୀଙ୍କର ଭଲ ଲାଗିଲା କ'ଣ ! ପ୍ରତିଯୋଗୀ ପ୍ରଥମେ ଶଙ୍ଖଧରକୁ ଧରି ଦବେଇ ଦେଲା । ଚନ୍ଦ୍ରଧର ଆବେଗରେ ସ୍ୱୟଂ ଝୁଙ୍କି ପଡ଼ିଲେ । ଶଙ୍ଖଧର ଜୋର ମାରି ତାକୁ ଉପରକୁ ଉଠାଇ ଦେଲା । ସମସ୍ତେ ବାଃ ବାଃ କଲେ । ଚନ୍ଦ୍ରଧର ପୁଅକୁ କୁଣ୍ଢାଇ ପକାଇଲେ ।

ଏହିଭଳି ପୁଣି ମାସେ ବିତିଗଲା । ବର୍ତ୍ତମାନ ଶଙ୍ଖଧର ଭାବିଲା, କ'ଣ ଗୋଟେ ବାହାନା କରି ପିତାଙ୍କୁ ଘରକୁ ନେବା ଦରକାର । କିନ୍ତୁ ବହୁ ଚିନ୍ତାକରି କୌଣସି ବାହାନା ପାଇଲାନାହିଁ । ତେଣୁ ସେ ଠିକ କଲା, ମାଆଙ୍କ ପାଖକୁ ଚିଠି ଲେଖି ତାଙ୍କୁ ଡକେଇ ଆଣିବ । ମାଆ ଚିଠି ପାଇଲେ ନିଶ୍ଚୟ ଦୌଡ଼ି ଆସିବେ । ସମସ୍ତେ ଆସିବେ । ଆଉ ଯିବାକୁ ବାଟ ନ ଥିବ । ଏ କଥାଟା ଆଗରୁ କାହିଁକି ମୁଣ୍ଡରେ ଢୁକିଲାନାହିଁ ବୋଲି ଅନୁତାପ କଲା । ସେହି ଦିନ ରାତିରେ ମାଆଙ୍କ ପାଖକୁ ଖଣ୍ଡେ ଚିଠି ଲେଖିଲା । ସେଠାର ଠିକଣା, ରେଳଗାଡ଼ିରେ ଆସିଲେ କେଉଁଠି ଓହ୍ଲାଇବାକୁ ପଡ଼ିବ ସବୁ ଠିକ୍ ଠିକ୍ ଲେଖିଦେଲା । ଶେଷରେ ଲେଖିଲା— 'ଆସିବାରେ ବିଳମ୍ବ ହେଲେ ଭଲ ହବନାହିଁ । ପଶ୍ଚାତ୍ତାପ କରିବ । ମୁଁ ପିତାଙ୍କର ଚରଣ ସେବା ଛାଡ଼ି ରାଜ୍ୟସୁଖ ଭୋଗ କରିବାକୁ ଚାହେଁନା । ମୁଁ ନେଇଯିବା ଅସମ୍ଭବ । ମୁଁ ତାଙ୍କୁ ଚିହ୍ନି ଯାଇଛି ବୋଲି ସେ ଜାଣନ୍ତିନାହିଁ । ଯଦି ସେ ଜାଣିବେ, ତେବେ କୁଆଡ଼େ ଅନ୍ତର୍ଦ୍ଧାନ ହୋଇଯିବେ । ମୁଁ ମୋ ପରିଚୟ ତାଙ୍କୁ ଦେଇ ଦେଇଛି । ଆପଣମାନଙ୍କର କଥା ମଧ୍ୟ ସବୁ ଶୁଣେଇଛି । କିନ୍ତୁ ତାଙ୍କ ମୁଖରେ ମୁଁ କୌଣସି ପରିବର୍ତ୍ତନର ଚିହ୍ନ ଦେଖୁନାହିଁ । ଆପଣ ଜଲ୍‌ଦି ଆସନ୍ତୁ ।

ସାରାରାତି ଏହି କଳ୍ପନାରେ ସେ ମଗ୍ନ ରହିଲା । ମାତା ଆସିବେ ! ମାତାପିତାଙ୍କୁ ମୁଁ ପ୍ରଣାମ କରିବ ଏବଂ ପିତାଙ୍କୁ କହିବ—ଆଉ ଆପଣ କୁଆଡ଼େ ଯାଇପାରିବେନାହିଁ । ଆମେ ଦୁହେଁ ଆଉ ତାଙ୍କୁ ଛାଡ଼ିବୁନାହିଁ । ମନରେ ଚିନ୍ତା କରିବା କଥା କ'ଣ କେବେ କାହାର ପୂର୍ଣ୍ଣ ହୋଇଛି !

କିନ୍ତୁ ଚିଠି ପଠାଇବାର ମାସେ ବିତିଗଲା । ଅହଲ୍ୟା ଆସିଲାନାହିଁ କି ଅନ୍ୟ କେହି ମଧ୍ୟ ଆସିଲେନାହିଁ । ଶଙ୍ଖଧର ଦିନ ସାରା ବାଟ ଚାହିଁ ରହେଥାଏ । ରେଳଷ୍ଟେସନ ସେଠାରୁ ପାଞ୍ଚ ମାଇଲ୍ ଦୂରରେ । ରାସ୍ତା ମଧ୍ୟ ଭଲ । ତଥାପି କାହାର ଦେଖାନାହିଁ । ଚନ୍ଦ୍ରଧର କୁଆଡ଼େ ଚାଲିଗଲେ, ସେ ଷ୍ଟେସନ ରାସ୍ତାକୁ ଯାଇ ଚାହିଁ ଚାହିଁ ନିରାଶରେ ଫେରେ । ଶେଷରେ ମାସେ ଛଅଦିନରେ ଗୋଟିଏ ଚିଠି ମିଳିଲା । ତାକୁ ପଢ଼ି ଶୋକର ସୀମା ରହିଲା ନାହିଁ । ଅହଲ୍ୟା ଲେଖିଥିଲା—ମୁଁ ବଡ଼ ଅଭାଗିନୀ । ତୁ ଏତେ କଠିନ ତପସ୍ୟା କରି ଯେଉଁ ଦେବତାଙ୍କୁ ଦର୍ଶନ କରି ପାରୁଛୁ, ତାଙ୍କୁ ଦେଖିବା ପାଇଁ ପରମ ଅଭିଳାଷ ଥିଲେ ମଧ୍ୟ ମୁଁ ପାଦେ ଘୁଞ୍ଚି ପାରୁନାହିଁ । ମାସେ ହେଲା ବେମାର । ବଞ୍ଚିବାର ଆଶା ନାହିଁ । ଯଦି ତୁ ଆସି ଯାଆନ୍ତୁ, ତେବେ ମୁଁ ତୋତେ ଥରେ ଦେଖିପାରନ୍ତି । ନଚେତ୍ ଏ ଅଭିଳାଷ ମଧ୍ୟ ଯିବ । ମୁଁ କେତେ

ମାସ ହେଲା ଆଗ୍ରାରେ ପଡ଼ିଛନ୍ତି । ଯଦି କୌଣସି ପ୍ରକାରେ ବାବାଙ୍କୁ ଆଣି ପାରନ୍ତୁ, ତେବେ ଶେଷ ସମୟରେ ତାଙ୍କର ଚରଣ ଦର୍ଶନ କରିପାରନ୍ତି । ମୁଁ ଜାଣୁଛି, ସେ ଆସିବେ ନାହିଁ । ବୃଥାରେ ତାଙ୍କୁ ଅନୁରୋଧ କରୁନାହିଁ । କିନ୍ତୁ ତୁ ଆସିବାରେ ଏକ ମୁହୂର୍ତ୍ତ ମଧ୍ୟ ବିଳମ୍ବ କରିବୁ ନାହିଁ ।

ଶଙ୍ଖଧର ଡାକଘର ସାମନାରେ ଘଣ୍ଟେ କାଳ ଠିଆ ହୋଇ କାନ୍ଦିଲା । ମାଆ ବେମାର । ପୁତ୍ର ଏବଂ ସ୍ୱାମୀଙ୍କଠାରୁ ଦୂରରେ ରହି ଏ ଦଶା । ମୁଁ କ'ଣ ଏଠାରେ ଆଉ ଏକକ୍ଷଣ ଡେରି କରି ପାରିବି ! ପାଞ୍ଚ ବର୍ଷ ଯାଏଁ ମାଆଙ୍କ ପାଖକୁ ଖବର ନ ଦେଇ ସେ ଯେଉଁ ଅନ୍ୟାୟ କରିଛି, ସେଇ ବ୍ୟଥାରେ ସେ ଅଧୀର ହୋଇ ଉଠିଲା ।

ତା'ର ମୁଖରେ ଦୁଃଖର ରେଖା ଦେଖି ଚକ୍ରଧର ପଚାରିଲେ—ବାବା, ଆଜି ଏପରି ଉଦାସ ଦେଖାଯାଉଛୁ କାହିଁକି ?

ଶଙ୍ଖଧର—ମାଆ ପତ୍ର ଦେଇଛନ୍ତି—ସେ ଖୁବ୍ ବେମାର । ମୁଁ ବାପାଙ୍କୁ ଖୋଜିବା ପାଇଁ ବାହାରିଥିଲି । ସେ ତ ମିଳିଲେନାହିଁ । ମା' ମଧ୍ୟ ଚାଲିଯାଉଛନ୍ତି । ବାବା ଏତେବେଳେ ଯଦି ମିଳି ଯାଆନ୍ତେ, ତେବେ ମୁଁ ତାଙ୍କୁ ନିଶ୍ଚୟ କହନ୍ତି···

ଚକ୍ରଧର—କ'ଣ କହନ୍ତୁ ?

ଶଙ୍ଖଧର—କହି ଦିଅନ୍ତି-ଯେ···ଆପଣହିଁ ମାଆଙ୍କର ପ୍ରାଣ ନେଉଛନ୍ତି । ଆପଣଙ୍କର ବୈରାଗ ଆଉ ତପ କେଉଁ କାମ ପାଇଁ ! ଘରର ପ୍ରାଣୀ ତ ମରୁଛନ୍ତି । ଆପଣଙ୍କ ପାଖକୁ ବଡ଼ ଆଶା ନେଇ ଆସିଥିଲି । କିନ୍ତୁ ଆପଣ ନିର୍ଦ୍ଦୟ ହେଉଛନ୍ତି । ଆପଣଙ୍କୁ ପରମାତ୍ମା ଯୋଗବଳ ଦେଇଛନ୍ତି ବାବା, ଆପଣ ଚାହିଁଲେ ତ ପିତାଙ୍କର ଖବର କହିପାରିବେ ।

ଚକ୍ରଧର ଗମ୍ଭୀର ସ୍ୱରରେ କହିଲେ—ବାବା, ମୁଁ ଯୋଗୀ ନୁହେଁ । କିନ୍ତୁ ତୋର ପିତାଙ୍କର ଖବର ପାଇଯାଇଛି । ତୁ ଜାଣିନୁ, କିନ୍ତୁ ଗୁପ୍ତ ଭାବରେ ତୁ ତାଙ୍କୁ ଦେଖି ସାରିଛୁ—ତାଙ୍କର ତୋ ପ୍ରତି ଯେତେ ସ୍ନେହ, ତାର କଳ୍ପନା କରାଯାଇ ପାରିବନାହିଁ । ତୋର ମାତାଙ୍କୁ ସେ ସର୍ବଦା ମନେ ପକାଉଛନ୍ତି । କିନ୍ତୁ ସେ ନିଜର ଯେଉଁ ମାର୍ଗ ବାଛି ନେଇଛନ୍ତି, ତାହା ଛାଡ଼ି ପାରୁ ନାହାନ୍ତି କି ତାଙ୍କ ମାର୍ଗ ଅନୁସରଣ କରିବା ପାଇଁ କାହାକୁ ଜବରଦସ୍ତି କରିପାରୁନାହାନ୍ତି । ତୋର ମାତା ନିଜ ଇଚ୍ଛାରେ ସେଠାରେ ରହିଯାଇଛନ୍ତି । ସେ ତ ନିଜ ସହିତ ଆଣିବାକୁ ପ୍ରସ୍ତୁତ ଥିଲେ ।

ଶଙ୍ଖଧର—ଆଜିକାଲି ତ ମାତା ଆଗ୍ରାରେ । ବାଗେଶ୍ୱରୀ ଦେବୀଙ୍କୁ ଦେଖିବାକୁ ଯାଇ-ଥିଲେ । ସେଇଠାରେ ବେମାର ପଡ଼ିଲେ । କିନ୍ତୁ ଆପଣ ବାପାଙ୍କୁ ଦେଖିଲେ, ଅଥଚ ମୋତେ କହିଲେ ନାହିଁ । ପଥିରୁ ତ ମୁଁ ଜାଣିପାରୁଛି, ଆପଣଙ୍କର ମଧ୍ୟ ମୋ ପ୍ରତି ଦୟା ନାହିଁ ।

ଚକ୍ରଧର କିଛି ଉତ୍ତର ଦେଲେ ନାହିଁ । ତଳକୁ ଚାହିଁ ରହିଲେ । ସେ ବଡ଼ କଠିନ ପରୀକ୍ଷାର ସମ୍ମୁଖୀନ ହୋଇଛନ୍ତି । ବହୁ ଦିନ ପରେ ପୁତ୍ରକୁ ଦେଖିବା ସୌଭାଗ୍ୟ ମିଳି-

ଯାଇଥିଲା । ହୃଦୟରୁ ଦୂର କରି ଦେଇଥିବା ସମସ୍ତ ଭାବନା, ସମସ୍ତ ଅଭିଳାଷ ପୁନର୍ବାର ଜାଗ୍ରତ ହୋଇ ଯାଇଥିଲା ।ଏବେ ହରାଇବା ଭୟରେ ହୃଦୟ ତାଙ୍କର ଆର୍ତ୍ତନାଦ କରୁଥିଲା । ଯେଉଁ ମୋହ ବନ୍ଧନକୁ ବଡ଼ କଷ୍ଟରେ ସେ ଡ଼ିଲା କରିଥିଲେ, ଏବେ ସେ ଶତଗୁଣ ବେଗରେ ତାଙ୍କ ପାଖକୁ ଦୌଡ଼ି ଆସୁଥିଲା । ସତେ ଯେପରି ତା'ର ହାଡ଼ ଅସ୍ଥି ପିଞ୍ଜରା ଭେଦ କରି ଅନ୍ତଃସ୍ଥଳରେ ପହଞ୍ଚି ଯାଇଛି ।

ସହସା ଶଙ୍ଖଧର ଶ୍ୱାସରୁଦ୍ଧ କଣ୍ଠରେ କହିଲା—ତେବେ କ'ଣ ମୁଁ ନିରାଶ ହୋଇଯିବି !

ହୃଦୟରୁ ନିର୍ଗତ ହେଉଥିବା ଉଚ୍ଛ୍ୱାସକୁ ଦମନ କରି ଚକ୍ରଧର କହିଲେ ନାହିଁ ବାବା, ସେ ସ୍ୱୟଂ କେବେ ପୁତ୍ର ପ୍ରେମରେ ବ୍ୟାକୁଳ ହୋଇ ତୋ ପାଖକୁ ଆସିଯିବା ସମ୍ଭବ । ଯଦି ତୁ ଜୀବନରେ ଉଚ୍ଚ ଆଦର୍ଶ ପାଳନ୍ କରିପାରୁ, ତେବେ ତାଙ୍କୁ ନିଶ୍ଚୟ ଟାଣି ଆଣିବୁ । ଯଦି ତୋର ଆଚରଣ ଭ୍ରଷ୍ଟ ହୋଇଯିବ, ସେ ମଧ୍ୟ ସମ୍ଭବତଃ ଦୁଃଖରେ ପ୍ରାଣ ହରେଇ ପାରନ୍ତି ।

ଶଙ୍ଖଧର—ଆପଣଙ୍କୁ ମୁଁ ପୁଣି କେବେ ଦେଖିବି ? ଆପଣଙ୍କର ଠିକଣା କିପରି ମିଳିବ ? ଯଦି ମୋତେ ବାପାଙ୍କୁ ଦେଖିବାର ସୌଭାଗ୍ୟ ମିଳିଲା ନାହିଁ, କିନ୍ତୁ ପିତାଙ୍କର ପୁତ୍ରପ୍ରେମ ସମ୍ବନ୍ଧୀୟ ଯେଉଁ କଳ୍ପନା ସାମନାରେ ଥିଲା ତାହା ଆପଣଙ୍କ ଦୟାରୁ ପୂର୍ଣ୍ଣ ହୋଇଗଲା । ମୁଁ ଆପଣଙ୍କୁ ପିତାତୁଲ୍ୟ ବୁଝିଛି ଏବଂ ଆଜୀବନ ବୁଝିବି । ଏହି ସ୍ନେହ, ଏହି ବାତ୍ସଲ୍ୟ, ଏହି ଅପାର କରୁଣା ଭୁଲି ପାରିବିନାହିଁ । ଆପଣଙ୍କୁ ଦେଖିବା ପାଇଁ ମୋ ମନ ସର୍ବଦା ବ୍ୟାକୁଳ ହେବ । ମାଆଙ୍କର ଦେହ ଭଲ ହୋଇଗଲା ପରେ ମୁଁ ପୁଣି ଆପଣଙ୍କ ସେବାରେ ହାଜର ହେବି ।

ଚକ୍ରଧର ଆର୍ଦ୍ର କଣ୍ଠରେ କହିଲେ—ନା ବାବା, ତୁ ଏ କଷ୍ଟ କରିବୁନାହିଁ । ମୁଁ ସ୍ୱୟଂ କେବେ କେବେ ତୁମ ପାଖରେ ପହଞ୍ଚିଯିବି । ମୁଁ ତୋତେ ପୁତ୍ରବତ୍ ଜ୍ଞାନ କରେ । ମୋର ଆଶୀର୍ବାଦ ସର୍ବଦା ତୋ ପାଖରେ ରହିବ ।

ସନ୍ଧ୍ୟା ସମୟରେ ଶଙ୍ଖଧର ପିତାଙ୍କଠାରୁ ବିଦାୟ ନେଇ ଚାଲିଲା । ବକ୍ଷସ୍ଥଳରୁ ହୃଦୟ ବାହାରି ପଡ଼ି ଶଙ୍ଖଧର ସହିତ ଚାଲିଯାଉଥିବା ଚକ୍ରଧର ଅନୁଭବ କଲେ । ଆଖି ଆଗରୁ ଅଦୃଶ୍ୟ ହୋଇଯିବା ପରେ ସେ ଏକ ଦୀର୍ଘ ଶ୍ୱାସ ପକାଇ ବାଳକ ଭଳି କଇଁ କଇଁ ହୋଇ କାନ୍ଦି ପକାଇଲେ ।

## ( ୪୭ )

ଅହଲ୍ୟା ଆସିଥିବାର ଖବର ପାଇ ସାଇର ଶହ ଶହ ସ୍ତ୍ରୀ ଲୋକ ଆସି, ଜମା ହୋଇଗଲେ । ସହରର କେତେକ ବଡ଼ ଘରର ମହିଳା ମଧ୍ୟ ଆସିଗଲେ । ସନ୍ଧ୍ୟା ପର୍ଯ୍ୟନ୍ତ ଗହଳି ଲାଗି

ରହିଲା । କେତେ ଲୋକ ଡେପୁଟେସନ ଗଠନ କରି ସଂସ୍ଥା ପାଇଁ ଚନ୍ଦା ମାଗିବାକୁ ଆସି ପହଞ୍ଚିଗଲେ । ଏମାନଙ୍କଠାରୁ ପିଣ୍ଡ ଛଡ଼େଇବା ମୁସ୍କିଲ ହୋଇପଡ଼ିଲା । କାହାକୁ ବା କପରି କହିବ ! ଏଭଳି ଅବସ୍ଥାରେ ଏଠାକୁ ଆସିଥିବା ହେତୁ ଅହଲ୍ୟା ଲଜ୍ଜିତ ହେଲା । ଏଭଳି ଅବସ୍ଥାର ସମ୍ମୁଖୀନ ହେବାର ଜାଣିଥିଲେ, ସେ କୋଡ଼ିଏ ପଚଶ ହଜାର ହାତରେ ଧରି ଆସି ଥାଆନ୍ତା । ଏଭଳି ଭଙ୍ଗା ଘରେ ରହିବାକୁ ତାକୁ ଲାଜ ଲାଗୁଥିଲା । ଯେଉଁଦିନୁ ଲୋକେ ଜାଣିଲେ ଇଏ ହିନ୍ଦକୁମାରୀ ବୋଲି, ସେହିଦିନୁ ସେ ବାହାରକୁ କେବେ ଯାଇନାହିଁ । କେତେବେଳେ କାଶୀ ତ କେତେବେଳେ ଜଗନ୍ନାଥପୁର । ଅନ୍ୟ ସହରକୁ ଯିବା ଏଇ ପ୍ରଥମ । ଏବେ ଜାଣିଲା, ଧନ କେବଳ ଭୋଗ ବସ୍ତୁ ନୁହେଁ, ତାହାଦ୍ୱାରା ଯଶ କୀର୍ତ୍ତି ଅର୍ଜନ କରିହୋଇପାରେ । ସନ୍ଧ୍ୟା ସୁଦ୍ଧା ୧୫।୨୦ ହଜାର ଟଙ୍କା ଚନ୍ଦାର ପ୍ରତିଶ୍ରୁତି ଲେଖି ମୁନସୀ ବଜୁଅନ୍ଙ୍କ ପାଖକୁ ଟଙ୍କା ପଠାଇବା ପାଇଁ ଚିଠି ଦେଲା । ଟଙ୍କା ଆସିଗଲା । ପୁଣି ଦୁଆରେ ଲାଗିଲା ଭିକ୍ଷୁକମାନଙ୍କର ଭିଡ଼ । ଅନ୍ଧ-ଶ୍ରେଷ୍ଠାଙ୍କଠାରୁ ଆରମ୍ଭ କରି ମଠରରେ ବସିବା ଲୋକଙ୍କଯାଏଁ ଭିକ୍ଷା ଗ୍ରହଣ ପାଇଁ ଆସିଗଲେ । କେବେ ଅନାଥାଳୟ ପରିଦର୍ଶନ କରିବା ପାଇଁ ନିମନ୍ତ୍ରଣ ମିଳିଲା, କେବେ ଟି ପାର୍ଟିରେ ଯୋଗଦେବାକୁ ଆମନ୍ତ୍ରଣ । କୁମାରୀ ସଭା, ବାଳିକା ବିଦ୍ୟାଳୟ, ମହିଳା କ୍ଲବ ଆଦି ସଂସ୍ଥାମାନେ ମାନପତ୍ର ଦେଲେ । ଅହଲ୍ୟାର ଯୋଗ୍ୟତା ଓ ବିଚାରଶୀଳତାର ପ୍ରଶଂସା ବର୍ଷା ହେଲା । ତପସ୍ୟା କରିବାକୁ ଆସିଥିଲା । କିନ୍ତୁ ଏଠାରେ ସଭ୍ୟସମାଜର ଖେଳରେ ମଗ୍ନ ହୋଇଗଲା । ନିଜ ଅଭିଷ୍ଟ ସମ୍ବନ୍ଧରେ ଧ୍ୟାନ ରହିଲା ନାହିଁ ।

ଖ୍ୱାଜା ମହମ୍ମଦ ମଧ୍ୟ ଖବର ପାଇଗଲେ । ଆଖିକୁ ତାଙ୍କର ଆଉ ଭଲ ଦେଖାଯାଉନାହିଁ । ତାଙ୍କର ଆଶା ଥିଲା—ରାଣୀଜୀ ନିଶ୍ଚୟ ଆସିବେ । କିନ୍ତୁ ସପ୍ତାହେ ଚାଲିଗଲା ପରେ ଅହଲ୍ୟା ଯେତେବେଳେ ନ ଆସିଲା, ଦିନେ ତାମ୍‌ଜାନରେ ସ୍ୱୟଂ ଆସିଲେ ଏବଂ ବାଡ଼ି ଭରା ଦେଇ ଦୁଆରକୁ ଉଠିଲେ । ସେ ଆସିଥିବାର ଖବର ପାଇ ଅହଲ୍ୟା ଘରୁ ବାହାରି ଅତି ନମ୍ରତାର ସହ କହିଲା—ଖ୍ୱାଜା ସାହେବ, ମୁଁ ତ ନିଜେ ଯିବାକୁ ବାହାରିଥିଲି । ଆପଣ ଦୁଆରେ କଷ୍ଟ କଲେ ।

ଖ୍ୱାଜା—ଭଗବାନଙ୍କ ଦୟାରୁ ବଞ୍ଚିଛି । ହଜୁର ଭଲ ଅଛନ୍ତି ତ ?

ଅହଲ୍ୟା—ଆପଣଙ୍କ ଆଶୀର୍ବାଦରୁ ଭଲ । କିନ୍ତୁ ଆପଣ ମୋ ସହିତ ଯେପରି କଥାବାର୍ତ୍ତା କରୁଛନ୍ତି—ଯେତେ ଯେମିତି ମୁଁ ଅଉ କିଏ । ମୁଁ ଆପଣଙ୍କର ପାଳିତା କନ୍ୟା । ୧୫ ବର୍ଷ ପୂର୍ବେ ମୁଁ ଯେପରି ଥିଲି, ଏବେ ବି ମୁଁ ଆପଣଙ୍କୁ ସେହି ଦୃଷ୍ଟିରେ ଦେଖୁଛି ।

ଖ୍ୱାଜାସାହେବ ଅହଲ୍ୟାର ନମ୍ରତାରେ ମୁଗ୍ଧ ହୋଇଗଲେ । କହିଲେ—ଝିଅ, ଖୋଦା ତୁମକୁ ଏ ଆସନ ଦେଇଛନ୍ତି । କିନ୍ତୁ ତୁମର ବ୍ୟବହାର ପୂର୍ବେ ଯାହା ଥିଲା, ଏବେ ବି ସେମିତି । ଲୋକେ ତ ଗତ କଥା ଭୁଲିଯାଆନ୍ତି । ପ୍ରଭୁତ୍ୱ ପାଇଲେ ସେମାନଙ୍କର ଦୃଷ୍ଟିଭଙ୍ଗି ବଦଳିଯାଏ, ଗର୍ବରେ ଫାଟି ପଡ଼ନ୍ତି । ଖୋଦାରଣ, ଯେତେବେଳେ ମୁଁ ତୁମକୁ ନାଲୀ

ଭିତରୁ ଗୋଟେଇଲି, ଯେତେବେଳେ ମୁଁ ଏଥିରେ ଏଇ ଶ୍ରମକୁ ନେଉଥିଲି, ଏ କାଷ୍ଠଗୃହ କୌଣସି ବଡଘର ପ୍ରାସାଦ । ମୁଁ ଯଶୋଦାନନ୍ଦନଙ୍କୁ ମଧ୍ୟ ବହୁବାର ଏଇ କଥା କହେ । ଏତେ ସାହସ, ଏତେ ହୃଦୟବତ୍ତା, ନିଜ ଜୀବନକୁ ନେଇ ଖେଳିବା କେବଳ ରାଜକୁମାରୀମାନଙ୍କଠାରେ ଦେଖା ଯାଇଥାଏ । ଖୋଦା ତୁମକୁ ସଦା ଖୁସି ରଖନ୍ତୁ । ତୁମକୁ ଦେଖି ଆଜି ପବିତ୍ର ହୋଇଗଲି । ମା'ଆ ଭଲ ଅଛନ୍ତି ତ ! କ'ଣ କରିବି, ପଡ଼ୁଶାରେ ଥାଇ ବି ବର୍ଷ ବର୍ଷ ଧରି ଆସିନାହିଁ । ତାଙ୍କ ଭଳି ପବିତ୍ର ହୃଦୟବାଲା ବ୍ୟକ୍ତି ସଂସାରରେ କମ୍ ଦେଖାଯାଆନ୍ତି ।

ଅହଲ୍ୟା—ଏତେ କଷ୍ଟ କାହିଁକି ସେ ଭୋଗୁଛନ୍ତି, ଆପଣ ଟିକିଏ ବୁଝେଇ ଦେଉନାହାନ୍ତି ।

ଖ୍ୱାଜା—ଆରେ ମା', ଥରେ 'ନୁହଁ, ହଜାରେ ଥର ବୁଝେଇଲି । କେତେ କହିଲି, ମୋ ପାଖରେ ଯାହାକିଛି ଅଛି, ସେ ସବୁ ତୁମର ବୋଲି ଭାବ । ଯଶୋଦାନନ୍ଦନ ସଙ୍ଗେ ମୋର କୁଟୁମ୍ବ ସମ୍ପର୍କ । ସତ କହିଲେ, ମୋତେ ସେ ଗଢ଼ିଥିଲେ । ମୋ ସମ୍ପତ୍ତିରେ ତୁମର ମଧ୍ୟ ଭାଗ ଅଛି । କିନ୍ତୁ ମୋ କଥାକୁ ଟିକିଏ ହେଲେ ଗ୍ରହଣ କଲେନାହିଁ । ତୁମକୁ ଏ ଘର ଭଲ ଲାଗୁ ନ ଥିବ । ମୋର ବଙ୍ଗଳା ଖାଲି ପଡ଼ିଛି । ସେଇଟି ତୁମେ ରହ ।

ବାସ୍ତବିକ୍ ଅହଲ୍ୟାଙ୍କୁ ଏହି ଘରେ ବଡ଼ ଅସୁବିଧା ହେଉଥିଲା । ରାତିରେ ନିଦ ହଉନାହିଁ । ମଣିଷ ନିଜ ଅଭ୍ୟାସକୁ ଏତେ ଶୀଘ୍ର ବଦଳେଇ ପାରେନାହିଁ । ପଚିଶବର୍ଷ କାଳ ଯେଉଁ ଘରେ ସେ ଚଳିଥିଲା, ସେଭଳି ମର୍ଯ୍ୟାଦାପୂର୍ଣ୍ଣ ଘର ବନାରସରେ ମଧ୍ୟ ନ ଥିଲା । ବର୍ତ୍ତମାନ ଏ ଘର ଭଙ୍ଗାରୁଜା, ଅଳିଆ ଆବର୍ଜନାପୂର୍ଣ୍ଣ, ଦୁର୍ଗନ୍ଧମୟ ଏବଂ ଅନ୍ଧାରୁଆ । ମଶାଙ୍କ ରାଜତ୍ୱ । ନିଶ୍ୱାସ ନେବା କଷ୍ଟ । ତଥାପି ଖ୍ୱାଜା ମହମ୍ମଦଙ୍କ ନିମନ୍ତ୍ରଣକୁ ସେ ସ୍ୱୀକାର କରିପାରିଲାନାହିଁ । ବାଗେଶ୍ୱରୀଙ୍କଠାରୁ ସେ ଅଲଗା ହୋଇ ରହିପାରିବ ନାହିଁ । କହିଲା—ନା ଖ୍ୱାଜା ସାହେବ, ଏଠାରେ କିଛି ଅସୁବିଧା ନାହିଁ । ଏହିଠାରେ ପନ୍ଦର ବର୍ଷକାଳ ରହିଆସିଛି । ଜୀବନରେ ଯାହା କିଛି ସୁଖ ଦେଖିଛି, ଏଇ ଘରେହିଁ ଦେଖିଛି ।

ଖ୍ୱାଜା—ବାବୁ ଚକ୍ରଧରଙ୍କର କିଛି ଖବର ମିଳିଲା ?

ଅହଲ୍ୟା—ମୁଁ ବଡ଼ ଭାଗ୍ୟହୀନା ଖ୍ୱାଜାସାହେବ । ସେ ଯିବାର ପନ୍ଦର ବର୍ଷ ହୋଇଗଲା । ପାଞ୍ଚବର୍ଷ ହେଲା ପୁଅ ମଧ୍ୟ ଲୁଚି ଚାଲିଗଲା । ସେମାନଙ୍କ ଅନ୍ୱେଷଣରେ ବାହାରିଛି । ଲୋକେ ଭାବୁଥିବେ, ଏହାଭଳି ସୁଖୀ ଦୁନିଆରେ ନ ଥିବେ । ଭାବିଥିଲି କିଛିଦିନ ମା'ଆ ପାଖରେ ଏକାକୀ ରହିବି । କିନ୍ତୁ ଏଠାରେ ମଧ୍ୟ ଜମିଦାରୀ ବିପଦ ମୁଣ୍ଡରେ ଚଢ଼ିଛି । କହନ୍ତୁ, ଆଉ ତ ପରସ୍ପର ମଧ୍ୟରେ ଦଙ୍ଗାହଙ୍ଗାମା ହଉନାହିଁ ।

ଖ୍ୱାଜା—ନାହିଁ, ଏ ଯାଏଁ ତ ଖୋଦା ଠିକ୍ ରଖିଛନ୍ତି । କିନ୍ତୁ ମୁଁ ଦେଖୁଛି ପରସ୍ପର ମଧ୍ୟରେ ପୂର୍ବ ଭଳି ସ୍ନେହ ମମତା ନାହିଁ । ଉଭୟ ଗୋଷ୍ଠୀରେ ଏପରି କେତେକ ଲୋକ ଅଛନ୍ତି, ଯେଉଁମାନେ ଗଣ୍ଡଗୋଳ ସୃଷ୍ଟି କରିବାକୁ ନିଜର ସମ୍ମାନ ବୋଲି ମନେ କରନ୍ତି । ସବୁ

ମୁସଲମାନ ଶୁଦ୍ଧ ପବିତ୍ର ନୁହନ୍ତି କି ସବୁ ହିନ୍ଦୁ ଦେବତା ନୁହନ୍ତି । ଏହିଭଳି ସବୁ ହିନ୍ଦୁ କାଫେର ନୁହନ୍ତି କି ସବୁ ମୁସଲମାନ ବଦମାସ ନୁହନ୍ତି । ଯେଉଁ ବ୍ୟକ୍ତି ଅନ୍ୟ ଗୋଷ୍ଠୀର ବ୍ୟକ୍ତିକୁ ଯେତେ ଘୃଣା କରେ, ଜାଣିରଖ ସେ ଖୁଦାଙ୍କଠାରୁ ସେତେ ଦୂରରେ ଅଛି । ମୁଁ ତ ଗୁଲବା ବୁଲବାକୁ ଅସମର୍ଥ, ନ ହେଲେ ବାବୁ ସାହେବ ସୁରତି ଥାଆନ୍ତୁ ନା କାହିଁକି ଭକ୍ତି ଆଣନ୍ତି ।

ଖ୍ୱାଜାସାହେବ ବିଦାୟ ନେଇ ଗଲାବେଳେ ଅହଲ୍ୟା ମୁସଲମାନ ଅନାଥାଳୟକୁ ପାଞ୍ଚ ହଜାର ଟଙ୍କା ଦାନ କଲା । ଏହି ଦାନ ଦ୍ୱାରା ମୁସଲମାନଙ୍କ ହୃଦୟରେ କୃତଜ୍ଞତାର ଛାପ ପଡ଼ିଲା । ଚକ୍ରଧରଙ୍କର କଥା ସେମାନଙ୍କର ମନେ ପଡ଼ିଲା । ମୁସଲମାନ ମହିଳାମାନେ ମଧ୍ୟ ତା କୁ ଧନ୍ୟବାଦ ନା କଲେ ।

ଅହଲ୍ୟାକୁ ଏବେ ପ୍ରତିଦିନ କୌଣସି ନା କୌଣସି ଅନୁଷ୍ଠାନକୁ ଯିବାକୁ ପଡ଼ୁଛି ଏବଂ ସେ ମଧ୍ୟ ଆଗ୍ରହରେ ଯାଉଛି । ଦୁଇ ସପ୍ତାହ ମଧ୍ୟରେ ତା'ର କାୟା ପରିବର୍ତ୍ତନ ହୋଇଗଲା । ଯଶ ଲାଳସା ତା ହୃଦୟରୁ ଧନ ପ୍ରତି ଉପେକ୍ଷା ଭାବ ଦୂର କରିଦେଲା । ଏହି ସମାରୋହ-ମାନଙ୍କରେ ସେ ନିଜର ଦୁଃଖକଷ୍ଟ ଭୁଲିଗଲା । ଭାଷଣ ଦେବା ପାଇଁ ପ୍ରତିଦିନ ଘରେ ସେ ନିଜକୁ ପ୍ରସ୍ତୁତ କରିବାରେ ଲଗିଲା । ଇଏ ତା'ର ଗୋଟାଏ ନିଶା ହୋଇଗଲା । ଯଶ ଲାଳସା-ଠାରୁ ବଳି ଅନ୍ୟ ନିଶା ନାହିଁ ।

ବାଗେଶ୍ୱରୀ ପୁରାତନ ପନ୍ଥୀ । ଅହଲ୍ୟା ଏମିତି ବୁଲିବୁଲି ଭାଷଣ ଦେଇ ଟଙ୍କା ଉଡ଼େଇବାକୁ ସେ ପସନ୍ଦ କରୁ ନଥିଲେ । ଦିନେ ସେ କହି ପକେଇଲେ—କ'ଣରେ ଅହଲ୍ୟା, ତୁ କ'ଣ ନିଜ ସମ୍ପତ୍ତି ଏମିତି ଉଡ଼େଇବୁ ।

ଅହଲ୍ୟା ଗର୍ବର ସହ କହିଲା—ଧନ ଆଉ ଅଛି କାହିଁକି ମା' ! ପରୋପକାର କରିବା ପାଇଁ ତ !

ବାଗେଶ୍ୱରୀ ପରୋପକାର କଥାରେ ଚିଡ଼ି ଉଠି କହିଲେ—ତୁ ଯାହା କରୁଛୁ, ତାହା ପରୋପକାର ନୁହେଁ—ଯଶ ଲାଳସା । ନିଜର ସ୍ୱାମୀ ଏବଂ ପୁତ୍ରର ଉପକାର ତ ତୁ କରି ପାରିଲୁ ନାହିଁ ।

ଅହଲ୍ୟା—ତୁମେ ତ ମା', ଖୁବ୍ ରାଗିଯାଉଛ ।

ବାଗେଶ୍ୱରୀ—ତୁ ଯଦି ଧନ ପଛରେ ଅନ୍ଧ ଭଳି ଧାଇଁ ନ ଥା'ନ୍ତୁ, ତେବେ ତୋତେ ଏ ଦଣ୍ଡ ମିଳି ନ ଥା'ନ୍ତା । ତୋର ମନ ଠିକଏ ବାଟକୁ ଆସୁଥିଲା । କିନ୍ତୁ ପୁଣି ଏ ଭୂତ ଚଢ଼ିଲାଣି । ପୁଣି କ'ଣ ଅନିଷ୍ଟ କରିବ ।

ଅହଲ୍ୟା ନାକ ଟେକାଡ଼ି କହିଲା—ଯାହା ଅନିଷ୍ଟ କରିବାର ଥିଲା, କଲା । ଆଉ କ'ଣ କରିବ !

ପରଦିନ ସକାଳେ ଡାକବାଲା ଶଙ୍ଖଧରର ଚିଠି ଆଣି ଦେଲା । ଏ ଚିଠି ଜଗନ୍ନାଥପୁରୁ ଏବଂ କାଶୀ ଦେଇ ଆସିଛି । ପତ୍ର ପଢ଼ି ଅହଲ୍ୟା ଆନନ୍ଦରେ ନାଚି ଉଠିଲା ଏବଂ ବାଗେଶ୍ୱରୀଙ୍କ

ପାଖକୁ ଦୌଡ଼ି ଆସି କହିଲା—ମା', ଦେଖ, ଲଲୁର ଚିଠି । ଉଭୟେ ଗୋଟିଏ ଜାଗାରେ ଅଛନ୍ତି । ମୋତେ ଯିବାକୁ ଲେଖିଛି ।

ବାଗେଶ୍ୱରୀ—ଭଗବାନଙ୍କୁ ଧନ୍ୟବାଦ ଦେ ଝିଅ । କେଉଁଠି ଅଛନ୍ତି ?

ଅହଲ୍ୟା—ଦକ୍ଷିଣରେ । ଠିକଣା ସବୁ ଲେଖିଛି ।

ବାଗେଶ୍ୱରୀ—ବାସ୍, ତୁ ଏବେ ଚାଲ୍ ଯା' । ଚାଲ୍, ମୁଁ ତୋ ସଙ୍ଗେ ଯିବି ।

ଅହଲ୍ୟା—ପୂରା ପାଞ୍ଚ ବର୍ଷରେ ଖବର ମିଳିଛି ମା' । ମୁଁ ଆଗ୍ରା ଆସିବାର ଫଳ ପାଇଗଲି । ତୁମର ଆଶୀର୍ବାଦର ଫଳ ଏଇ ମା' । ଏହି ଆନନ୍ଦ ପାଇଁ ଉତ୍ସବ କରିବା କଥା ମା' ।

ବାଗେଶ୍ୱରୀ—ଉତ୍ସବ କଥା ଛାଡ଼ ୍। ଆଗ ଯିବାକୁ ପ୍ରସ୍ତୁତ ହୁଅ । ଆଉ କେଉଁଆଡ଼େ ଚାଲିଗଲେ—ପାଇବା ଅସମ୍ଭବ ।

କିନ୍ତୁ ସାରାଦିନ କଟିଗଲା, ଅହଲ୍ୟା ଯିବାର ଯୋଗାଡ଼ କିଛି କଲା ନାହିଁ । ଯିବା ପାଇଁ ଉତ୍ସୁକତା ମଧ୍ୟ ପ୍ରକାଶ ପାଇଲାନାହିଁ । ଆନନ୍ଦର ପ୍ରଥମ ପର୍ବ ସମାପ୍ତ ହେବା ପରେ ଭାବିଲା ଯିବି କି ନାହିଁ । ସେଠାକୁ ଯିବା ଅର୍ଥ ରାଜ୍ୟ ହରେଇବା ଏବଂ ଶଙ୍ଖଧରର ଭବିଷ୍ୟତକୁ ଅନ୍ଧକାରମୟ କରିବା । ସେ ଜାଣିଥିଲା, ଶଙ୍ଖଧର ପିତାଙ୍କୁ ଛାଡ଼ି ଆସିବନାହିଁ ଏବଂ ମୁଁ ମଧ୍ୟ ପ୍ରେମ ବନ୍ଧନରେ ପଡ଼ିଯିବି । ସେ ଭାବିଲା—କୌଣସି ବାହାନା କରି ଶଙ୍ଖଧରକୁ ଡାକି ଆଣିବା ଉଚିତ । ଶଙ୍ଖଧର ଆସିଗଲେ ସ୍ୱାମୀଙ୍କର ଦର୍ଶନ ନିଶ୍ଚୟ ମିଳିବ । କାରଣ ପୁତ୍ର ସ୍ନେହ ତାଙ୍କୁ ଭିଡ଼ି ଆଣିବ । ଶଙ୍ଖଧରର ଅଭିଷେକ ହୋଇଗଲା ପରେ ଯଦି ସ୍ୱାମୀଙ୍କର ଇଚ୍ଛା ହେବ, ତେବେ ମୁଁ ତାଙ୍କ ସହିତ ଚାଲିଯିବି ଏବଂ ଶେଷ ଜୀବନ ତାଙ୍କର ଚରଣ ସେବାରେ କଟେଇବି । ବର୍ତ୍ତମାନ ଯାଇ ନିଜ ପ୍ରେମାକାଂକ୍ଷା ରୂପକ ବେଦୀରେ ପୁଅର ଭବିଷ୍ୟତକୁ ବଳିଦେବି ନାହିଁ । ଏତେ ଦିନ ଯାଏଁ ପତି ବିଚ୍ଛେଦରେ ଯେମିତି କଟିଛି, ସେମିତି ଆଉ କିଛି ଦିନ କଟିବ । ଏହି କଥା ଭାବି ସେ ଶଙ୍ଖଧର ପାଖକୁ ଲେଖିଲା—'ମୁଁ ଖୁବ୍ ବେମାର, ବଞ୍ଚିବାର ଆଶା ନାହିଁ । ତୋତେ ଦେଖିବାକୁ ଉତ୍କଣ୍ଠିତ । ତୁ ଶୀଘ୍ର ଆସିଲେ ସମ୍ଭବତଃ ବଞ୍ଚିଯିବି । କିନ୍ତୁ ନ ଆସିଲେ ଭାବିନେବୁ—ମା' ମରିଗଲା ।' ଅହଲ୍ୟାର ବିଶ୍ୱାସ ହେଲା—ଏ ଚିଠି ପଢ଼ି ଶଙ୍ଖଧର ଦୌଡ଼ି ଆସିବ ଏବଂ ସ୍ୱାମୀ ତା' ସହିତ ନ ଆସିଲେ ବି ତାକୁ କେବେ ଅଟକେଇବେ ନାହିଁ ।

ଅଭାଗିନୀ ଅହଲ୍ୟା ତୁ ପୁଣି ଧନଲିପ୍ସା ଜାଲରେ ପଡ଼ିଗଲୁ ! ପନ୍ଦର ବର୍ଷର ଦାରୁଣ ବେଦନା ଏକ ମୁହୂର୍ତ୍ତରେ ଭୁଲିଗଲୁ । ଧନ୍ୟରେ ଧନ ! ଧନ୍ୟ ତୋର ମାୟା !

ସଂଧ୍ୟାରେ ବାଗେଶ୍ୱରୀ ପଚାରିଲେ—ଯିବାକୁ ଇଚ୍ଛା ନାହିଁ କି ?

ଅହଲ୍ୟା ଲଜ୍ଜିତ ହୋଇ କହିଲା—ଲଲୁକୁ ଏବେ ଡକେଇଛି । ଯଦି ସେ ନ ଆସିବ, ତେବେ ଯିବି ।

ବାଗେଶ୍ୱରୀ—ଲଲୁ ସହ ଚକ୍ରଧର ମଧ୍ୟ ଆସିବେ ! ତୁ ଏପରି ସୁଯୋଗ ପାଇ ଛାଡ଼ି ଦେଉଚୁ !

ଅହଲ୍ୟା ସବୁ ଦୂରରେ ଭୁଲି ଶଙ୍ଖଧରର ରାଜ୍ୟାଭିଷେକ କଳ୍ପନାରେ ବିଭୋର ହୋଇ ଉଠିଲା ।

( ୪୮ )

ଗାଡ଼ି ଦୌଡ଼ି ଚାଲିଛି । ସହସା 'ହର୍ଷପୁର' ନାମ ଶୁଣି ଏକ ପ୍ରକାର ଅଦ୍ଭୁତ ତରଙ୍ଗ ଶଙ୍ଖଧର ଶରୀରରେ ଖେଳିଗଲା । ସେ ଚମକି ପଡ଼ିଲା । ସେ କୁଆଡ଼େ ଯାଉଛି, କାହିଁକି ଯାଉଛି, ଏଠାରେ ନ ହେଲେ କେଡ଼େ ଅନର୍ଥ ହେବ—ଏସବୁ ଭୁଲିଗଲା । କୌଣସି ଅଜ୍ଞାତ ଶକ୍ତି ତାକୁ ଗାଡ଼ିରୁ ଓହ୍ଲାଇ ଦେଲା ।

ଗାଡ଼ିରୁ ଓହ୍ଲାଇ ପ୍ଲାଟଫର୍ମରେ ବୁଲାବୁଲି କରି ବାହାରକୁ ଚାଲିଲା । ଟିକଟବାବୁ ପଚାରିଲେ—ଆପଣ ଟିକଟ ତ ଆଗ୍ରା ପର୍ଯ୍ୟନ୍ତ କରିଛନ୍ତି ।

ଶଙ୍ଖଧର—ମୁଁ ଏଇଠି ଓହ୍ଲେଇଲି, କ୍ଷତି କ'ଣ ହେଲା ?

ଷ୍ଟେସନ ବାହାରକୁ ଆସି ଦେଖିଲା ଚାରିଆଡ଼େ ଅନ୍ଧକାର । ସ୍ଥାନଟା ପରିଚିତ ଭଳି ଜଣା ପଡ଼ିଲା । ସଡ଼କରେ ଆଗକୁ ଚାଲିଲା । ବସ୍ତି ଯେତିକି ନିକଟ ହେଉଥିଲା, ପାଦ ସେତିକି ଜୋରରେ ପଡ଼ୁଥିଲା । ସେ କୁଆଡ଼େ ଯାଉଛି ନିଜେ ବୁଝି ପାରୁ ନ ଥିଲା । ହଠାତ୍ ସାମନାରେ ଏକ ବିଶାଳ ଭବନ ଦେଖାଗଲା । ଭବନ ସାମନାରେ ଗୋଟିଏ ଛୋଟିଆ ବଗିଚା । ବିଜୁଳି ଆଲୋକରେ ଉଜ୍ଜ୍ୱଳ ଦେଖାଯାଉଥିଲା । ବଗିଚା ଦୁଆରେ ଜଣେ ଦରଓ୍ୱାନ ବନ୍ଧୁକ ଧରି ଠିଆ ହୋଇଥିଲା । ଶଙ୍ଖଧର ଭିତରକୁ ଆସୁଥିବାର ଦେଖି ଦରଓ୍ୱାନ କହିଲା—ତୁମେ କିଏ ?

ଶଙ୍ଖଧର ବେପରୁଆ ଭାବରେ କହିଲା—ଚୁପ୍ ରହ । ଆମେ ରାଣୀଜୀଙ୍କ ପାଖକୁ ଯାଉଛୁ ।

ଏହି ରାଣୀ କିଏ, ସେ କାହିଁକି ତାଙ୍କ ପାଖକୁ ଯାଉଛି । ରାଣୀଙ୍କ ସହିତ କେବେ ପରିଚୟ ହୋଇଥିଲା—ଏସବୁ କିଛି ଶଙ୍ଖଧରର ମନେ ପଡ଼ୁ ନ ଥିଲା । ଦରଓ୍ୱାନକୁ ସେ ଯେଉଁ ଜବାବ ଦେଲା—ତା ମଧ୍ୟ ହଠାତ୍ ତା ମୁହଁରୁ ଅନର୍ଗଳ ବାହାରି ପଡ଼ିଥିଲା । ଦରଓ୍ୱାନ ତା' ଉତ୍ତର ଶୁଣି ରାସ୍ତାରୁ ହଟିଗଲା ଏବଂ ଶଙ୍ଖଧର ବଗିଚା ଭିତର ଦେଇ ରାଜଭବନରେ ପ୍ରବେଶ କଲା ।

ଜଣେ ସେବିକା ପଚାରିଲା—ତୁମେ କିଏ ?

ଶଙ୍ଖଧର—ଜଣେ ସାଧୁ । ଯାଇ ମହାରାଣୀଙ୍କୁ ସୂଚନା ଦିଅ ।

ସେବିକା—ମହାରାଣୀ ପୂଜାରେ ବସିଛନ୍ତି । ତାଙ୍କ ପାଖକୁ ଯିବାକୁ ହୁକୁମ ନାହିଁ ।

ଶଙ୍ଖଧର—କ'ଣ ବହୁତ ଡେରି ହେବ ?

ସେବକା—ହଁ, ପୂଜାରୁ ଉଠିଲା ବେଳକୁ ପ୍ରାୟ ଘଣ୍ଟା ହେବ । ସେତିକବେଳେ ନାମ ମାତ୍ର ପାରଣା କରିବେ ଏବଂ ଘଣ୍ଟେ ଆରାମ କରି ସ୍ନାନକୁ ଚାଲିଯିବେ । ତା'ପରେ ପୁଣି ପ୍ରାୟ ଘଣ୍ଟା ଯାଏ ଆଉ ଆରାମ ନାହିଁ ।

ଶଙ୍ଖଧର—ଏ ତ ବଡ଼ କଠିନ ତପସ୍ୟା !

ସେବକା—ବେଶଭୂଷା ନାହିଁ, ହସ କୌତୁକ ନାହିଁ, କଥାବାର୍ତ୍ତା ନାହିଁ । ରାତିଦିନ ଜପଜପ ବ୍ୟତୀତ ଅନ୍ୟ କିଛି କାମ ନାହିଁ । ଯେଉଁଦିନଠାରୁ ମହାରାଜାଙ୍କର ସ୍ୱର୍ଗବାସ ହେଲା, ସେହିଦିନୁ ତପସ୍ୱିନୀ ହୋଇଯାଇଛନ୍ତି । ଆପଣ କେଉଁଠାରୁ ଆସିଛନ୍ତି ? କାମ କ'ଣ ?

ଶଙ୍ଖଧର—ସାଧୁସନ୍ଥମାନଙ୍କର କାମ ବା କାହାଠାରେ କ'ଣ ! ମହାରାଣୀ ସାଧୁ ସନ୍ଥ-ମାନଙ୍କର ଚର୍ଚ୍ଚା କରୁଛନ୍ତି ଶୁଣି ଚାଲିଆସିଲି ।

ସେବକା—ଆପଙ୍କର ଆଓ୍ୱାଜ କେଉଁଠି ଶୁଣିଲା ପରି ମନେ ହଉଚି ।

ସେବକା ଶଙ୍ଖଧରଙ୍କୁ ନିରୀକ୍ଷଣ କରି ଦେଖିଲା, କୋଡ଼ିଏ ବର୍ଷ ପୂର୍ବେ ଯେଉଁ ମୂର୍ତ୍ତି ଦେଖି-ଥିଲା, ସେହି ସଦୃଶ ଦେଖାଯାଉଛନ୍ତି । ସେ ସାଦୃଶ୍ୟ ଲକ୍ଷଣ ପ୍ରତ୍ୟକ୍ଷ ହେଉଛି । ସେ ଭୟଭୀତ ହୋଇ ଚଞ୍ଚଳ ପଦକ୍ଷେପରେ ରାଣୀ କମଳାଙ୍କ କୋଠରୀରେ ଠିଆହେଲା ।

ରାଣୀ କମଳାବତୀ ରୋଷ କଷାୟିତ ନେତ୍ରରେ ତାକୁ ଚାହିଁ ପଚାରିଲେ—ଏଠାକୁ କ'ଣ କରିବା ପାଇଁ ଆସିଗଲୁ ! ବର୍ତ୍ତମାନ ତୋର ଏଠାରେ କି କାମ !

ସେବକା—ମହାରାଣୀ, କ୍ଷମା କରନ୍ତୁ । ପ୍ରାଣଦାନ ମିଳିବ ତ କହିବି । ଅଗଣାରେ ଜଣେ ତେଜସ୍ୱୀ ପୁରୁଷ ଠିଆ ହୋଇଛନ୍ତି । କ'ଣ କହିବି ମହାରାଣୀ, ତାଙ୍କର କଣ୍ଠସ୍ୱର ଏବଂ ଆକୃତି ମହାରାଜାଙ୍କ ସହିତ ମିଳି ଯାଉଛି । ସତେ ଯେମିତି ସେ ନିଜେ ଛିଡ଼ା ହୋଇଛନ୍ତି । ଏ କି ଦୈବ ଲୀଳା ।

ରାଣୀ କମଳା ପୂଜା ସ୍ଥାନରୁ ଉଠି କହିଲେ—ଭୟ ନାହିଁ, ଭୟ କରେନା । ସେ ତୋତେ କ'ଣ କହିଲେ ?

ସେବକା—ସରକାର, ମୋର ତ ଛାତି ଥରୁଚି । ସେ ସରକାରଙ୍କ ନାମ ଧରି କହିଲେ ଦୁଆରକୁ ଆସିବା ପାଇଁ ସୂଚନା ଦେ ।

ରାଣୀ—ତାଙ୍କର ଅବସ୍ଥା ?

ସେବକା—ଦାଣ୍ଡି ଗଳୁଥି ସମସ୍ତ ।

ରାଣୀ କମଳା କିଛି ସମୟ ଚିନ୍ତାମଗ୍ନ ହେଲେ । ଏ ଜୀବନରେ କ'ଣ ପ୍ରାଣନାଥଙ୍କର ଦେଖା ପୁଣି ମିଳିପାରିବ ! କୋଡ଼ିଏ ବର୍ଷ ହେଲା ସେ ଶରୀର ତ୍ୟାଗ କଲେଣି । ଏପରି କ'ଣ କେବେ ହୋଇପାରେ !

ତାଙ୍କର ପୂର୍ବ ସ୍ମୃତି ଜାଗ୍ରତ ହେଲା । ପର୍ବତ ଗୁମ୍ଫାରେ ମହେନ୍ଦ୍ରଙ୍କ ସହ ରହିବା ମନେ ପଡ଼ିଲା । ସେ ସମୟରେ ମଧ୍ୟ ସେ ବ୍ରହ୍ମଚର୍ଯ୍ୟ ପାଳନ କରୁଥିଲେ । ତାଙ୍କର ଅନେକ ଅଲୌକିକ ଦୃଶ୍ୟ ମନେ ପଡ଼ିଲା । ବାୟୁଯାନରେ ତାଙ୍କ ସହ ବସି ଉଡ଼ିବାର ମନେ ପଡ଼ିଲା । ସେ ସମୟରେ ପ୍ରାଣନାଥ କେତେ ପ୍ରେମବିହ୍ୱଳ ହେଉଥିଲେ । ତାଙ୍କର ପ୍ରେମ-ପ୍ରଦୀପ୍ତ ଛବି ତାଙ୍କ ସମ୍ମୁଖରେ ନାଚି ଉଠିଲା ।

ସେବକ। କାତର କଣ୍ଠରେ ପଚାରିଲା—ସରକାର, ଆଦେଶ କରନ୍ତୁ ।

ରାଣୀ ଚମକି ପଡ଼ି କହିଲେ—ଶଙ୍ଖଧର, ଦେଖିବା କିଏ ସେ ।

ଧୈର୍ଯ୍ୟର ସହ ସେ ଅଗଣାକୁ ଆସିଲେ । ବିଦ୍ୟୁତ୍ ଆଲୋକରେ ଶଙ୍ଖଧରଙ୍କର ଦିବ୍ୟ ମୂର୍ତ୍ତି ବ୍ରହ୍ମଚର୍ଯ୍ୟ ତେଜରେ ଦୀପ୍ତିମାନ ଦେଖାଯାଉଥିଲା । ରାଣୀ ସେ ମୂର୍ତ୍ତି ଦେଖି ଭାବିଲେ—ସତେ କ'ଣ ସୌଭାଗ୍ୟ ସୂର୍ଯ୍ୟ ଉଦୟ ହୋଇଗଲା ! ଏବେ କ'ଣ ଆଉ ସନ୍ଦେହ କରାଯାଇପାରେ ! କିନ୍ତୁ ସଂସ୍କାରକୁ ଲଙ୍ଘନ କରିବା ସମ୍ଭବ ନୁହେଁ । କିଛିଦୂରରେ ଠିଆହୋଇ ପଚାରିଲେ—ମହାରାଜ, ଆପଣ କିଏ ? ମୋତେ କାହିଁକି ସ୍ମରଣ କରିଛନ୍ତି ?

ଶଙ୍ଖଧର ରାଣୀଙ୍କ ନିକଟକୁ ଯାଇ କହିଲେ—ମୋତେ କ'ଣ ଏତେ ଶୀଘ୍ର ଭୁଲିଗଲ କମଳା ! ଏହି ରୂପାନ୍ତର ହେତୁ କ'ଣ ତୁମେ ଭ୍ରମରେ ପଡ଼ିଯାଇଛ ! ବହୁଦିନ ହେଲା ଯିଏ ତମ ହୃଦୟରେ ପ୍ରେମ ରୂପରେ ଜନ୍ମ ନେଇଥିଲା, ମୁଁ ସେହି ପ୍ରିୟତମ ରୂପରେ ତୁମ ବ୍ରତ ଓ ସେବାରେ ଅମର ହୋଇ ଆଜି ପର୍ଯ୍ୟନ୍ତ ସେହି ଅପାର ଆନନ୍ଦ ଅନ୍ୱେଷଣରେ ଘୂରି ବୁଲୁଛି । ଆଉ ଅଧିକ କିଛି ପରିଚୟ ଦେବି ! ସେ ପର୍ବତ ଗୁମ୍ଫା ତୁମର ମନେଅଛି ? ବାୟୁଯାନରେ ବସି ଆକାଶରେ ଭ୍ରମଣ କରିବା ମନେ ଅଛି ? ପ୍ରିୟେ, ତୁମର ହୃଦୟ-ମନ୍ଦିର-ଦ୍ୱାରକୁ ମୁଁ ଦୁଇଥର ଭିକ୍ଷୁକ ରୂପେ ଆସିଛି । ମୁଁ ସେ ଦ୍ୱାର ଖୋଲି ଭିତରକୁ ଯିବାକୁ ଇଚ୍ଛା କରିଛି । କିନ୍ତୁ ଦୁଇଥର ଯାକ ଅସଫଳ ହୋଇଛି । ସେହି ଅତୃପ୍ତ ଆକାଂକ୍ଷା ମୋତେ ପୁଣି ଟାଣି ନେଇଛି ଏବଂ···

ରାଣୀ କମଳା ତାଙ୍କର ବାକ୍ୟ ପୂର୍ଣ୍ଣ ହେବାକୁ ଦେଲେ ନାହିଁ । ସେ ଦୌଡ଼ି ଯାଇ ତାଙ୍କ ଚରଣ ତଳେ ପଡ଼ିଯାଇ ଅଶ୍ରୁଜଳରେ ଧୌତ କରିବାକୁ ଲାଗିଲେ । ଏ ସୌଭାଗ୍ୟ କାହାକୁ ମିଳେ ! ଯେଉଁ ପବିତ୍ର ମୂର୍ତ୍ତିକୁ ସେ କୋଡ଼ିଏ ବର୍ଷ ହେଲା ଉପାସନା କରି ଆସୁଛନ୍ତି, ସେ ସମ୍ମୁଖରେ ଠିଆ ହୋଇଛନ୍ତି ! ସେ ସର୍ବସ୍ୱ ତ୍ୟାଗ କରି ଏ ଐଶ୍ୱର୍ଯ୍ୟକୁ ଜଳାଞ୍ଜଳି ଦେଇ ନିଜ ପ୍ରିୟତମଙ୍କ ସହ ପର୍ବତରେ ରହିବେ । ସେ ସମସ୍ତ କଷ୍ଟ ସହି ସ୍ୱାମୀଙ୍କର ସେବାକରିବେ । ଏହା ବ୍ୟତୀତ ତାଙ୍କର ଆଉ ଅନ୍ୟ ଆକାଂକ୍ଷା କିଛି ନାହିଁ ।

ପର ମୁହୂର୍ତ୍ତରେ ନିଜର ଶାରୀରିକ ଅବସ୍ଥା କଥା ମନେ ପଡ଼ି ତାଙ୍କର ଉନ୍ମତ୍ତ ହୃଦୟକୁ ଆଘାତ ଦେଲା । ଯୌବନ କାଳର ରୂପ ଲାବଣ୍ୟ ପାଇଁ ତାଙ୍କର ମନ ଲାଳାୟିତ ହୋଇପଡ଼ିଲା । ବର୍ତ୍ତମାନ ଏହି ଅବସ୍ଥାରେ ମୁଁ କିପରି ସ୍ୱାମୀଙ୍କର ପ୍ରାଣେଶ୍ୱରୀ ହୋଇପାରିବି !

ସହସା ଶଙ୍ଖଧର କହିଲା—କମଳା, ମୁଁ କେବେ ତୁମର ମନେପଡ଼େ ?

ରାଣୀ ତା'ର ହାତଧରି କହିଲେ—ସ୍ୱାମୀ, ଆଜିକି କୋଡ଼ିଏ ବର୍ଷ ହେଲା ଆପଣଙ୍କର ଉପାସନା କରୁଛି । ହାୟ ! ଆପଣ ଏପରି ସମୟରେ ଆସିଲେ, ଯେତେବେଳେ ମୋ ପାଖରେ ପ୍ରେମ ନାହିଁ । ଅଛି କେବଳ ଶ୍ରଦ୍ଧା ଓ ଭକ୍ତି । ଆସନ୍ତୁ, ମୋ ହୃଦୟ ମନ୍ଦିରରେ ବିରାଜମାନ କରନ୍ତୁ ।

ଶଙ୍ଖଧର—ଏପରି କାହିଁକି କହୁଛ କମଳା ?

କମଳା ସଜଳ ନେତ୍ରରେ ଶଙ୍ଖଧର ଆଡ଼କୁ କେବଳ ଚାହିଁରହିଲେ । ଶଙ୍ଖଧର ତାଙ୍କ ମନୋଭାବ ଜାଣିପାରି କହିଲା—ପ୍ରିୟେ, ଆଜିଠାରୁ କୋଡ଼ିଏ ବର୍ଷ ପୂର୍ବେ ତୁମେ ମୋ ଦୃଷ୍ଟିରେ ଯେମିତି ଥିଲ, ଆଜି ମଧ୍ୟ ସେମିତି ଅଛ । ବରଂ ତୁମର ଆତ୍ମସ୍ୱରୂପ ତା'ଠାରୁ ଅଧିକ ସୁନ୍ଦର ଏବଂ ମନୋହର ହୋଇଛି ତୁମକୁ ସନ୍ତୁଷ୍ଟ କରିବା ପାଇଁ ମୁଁ ତୁମର କାୟାକଳ୍ପ କରିଦେବି । ଯୌବନର ବିଭୂତି କାଳର ଚିହ୍ନକୁ ଦୂର କରିଦେବ ।

କମଳା କାତର ସ୍ୱରରେ କହିଲେ—ପ୍ରାଣନାଥ, ଏହା କ'ଣ ସମ୍ଭବ ?

ଶଙ୍ଖଧର—ହଁ ପ୍ରିୟେ, ଏ ବ୍ରହ୍ମାଣ୍ଡ ଏକ ପ୍ରୟୋଗଶାଳା ବ୍ୟତୀତ ଅନ୍ୟକିଛି ନୁହେଁ ।

କୋଡ଼ିଏ ବର୍ଷ ପରେ ଆଜି କମଳାଙ୍କର ଓଠରେ ହସ ଫୁଟିଉଠିଲା । ଏହା ମୋର ତପସ୍ୟାର ଫଳ ବୋଲି ମନେକଲେ । କିଏ ବା ଇନ୍ଦ୍ରିୟ ସୁଖ ତ୍ୟାଗ କରିପାରେ !

କିନ୍ତୁ କମଳା ହଠାତ୍ ଚମକି ପଡ଼ିଲେ । ଏ କ'ଣ ହେଲା ! ତାଙ୍କ ଚକ୍ଷୁର ଜ୍ୟୋତି କ୍ଷୀଣ ହୋଇଗଲା ପରି ସେ ମନେକଲେ । ଶଙ୍ଖଧରଙ୍କ ତେଜୋମୟ ସ୍ୱରୂପ ତାଙ୍କୁ ଅସ୍ପଷ୍ଟ ଦେଖାଗଲା । ଶଙ୍ଖଧର କ୍ରମେ ଦୂରକୁ ଦୂରକୁ ଚାଲି ଯାଉଥିବା ଭଳି ଜଣାଗଲା । ବ୍ୟସ୍ତ ହୋଇପଡ଼ି କହିଲେ—ପ୍ରାଣନାଥ, ଆପଣ କଣ ମୋତେ ଛାଡ଼ି ଚାଲିଯାଉଛନ୍ତି ?

ଶଙ୍ଖଧର ଗମ୍ଭୀର ଭାବରେ କହିଲା—ନା ପ୍ରିୟେ, ପ୍ରେମବନ୍ଧନ ଏତେ ଦୁର୍ବଳ ନୁହେଁ ।

କମଳା—ତେବେ ଆପଣ ଚାଲିଯିବା ଭଳି ଦେଖାଯାଉଛନ୍ତି କାହିଁକି ?

ଶଙ୍ଖଧର—ଏହାର କାରଣ ନିଜ ହୃଦୟରେ ଦେଖ ।

× × ×

ପ୍ରାତଃ କାଳରେ ଶଙ୍ଖଧର କହିଲା—ପ୍ରିୟେ, ମୋର ପ୍ରୟୋଗଶାଳାର ଅବସ୍ଥା କିପରି ଅଛି ?

କମଳା—ଚାଲନ୍ତୁ, ଆପଣଙ୍କୁ ଦେଖେଇବି ।

ଶଙ୍ଖଧର—କଠିନ ପରୀକ୍ଷା ପାଇଁ ପ୍ରସ୍ତୁତ ହୁଅ ।

କମଳା—ଆପଣ ଥିଲେ ମୋର ଭୟ କ'ଣ ?

କିନ୍ତୁ ପ୍ରୟୋଗଶାଳାରେ ପହଞ୍ଚିବା ପରେ ହଠାତ୍ କମଳାଙ୍କର ହୃଦୟ ଦ୍ରବୀଭୂତ ହୋଇଗଲା । ଯେଉଁ ସୁଖ ଲାଳସା ତାଙ୍କୁ ମାୟା ଅନ୍ଧକାର ଭିତରକୁ ନେଇଯାଉଛି,

ତାହା କ'ଣ ସମ୍ଭବ ! ପ୍ରଥମଥର ଭଲ ପାଇଥିବା ଦୁର୍ଭାଗ୍ୟର କୁଟିଳ କୀଡ଼ା ଏହି ସୁଖରୁ ତାଙ୍କୁ ବଞ୍ଚିତ କରାଦେବ ନାହିଁ ତ ! ଅନନ୍ତ କାଳରୁ ଏହି ସୁ'ଲର ହାତରେ ପଡ଼ି ଯାତନା ଭୋଗ କରୁଥିବା ଲୋକେ ଯେ ଅନୁଭବ କଲେ । ହାୟ ଭଗବାନ ।

ଶଙ୍ଖଧର କହିଲା—ପ୍ରିୟେ, ତୁମେ ଏହି ଶିଳାଉପରେ ଆଖି ବନ୍ଦକରି ଶୋଇପଡ଼ ।

କମଳା ଶିଳା ଉପରେ ବସି କାତର ସ୍ୱରରେ ପଚାରିଲେ—ପ୍ରାଣନାଥ, ଏ ସବୁ କ'ଣ ମୋର ମନେନହେବ !

ଶଙ୍ଖଧର—ସବୁ ମନେରହିବ ପ୍ରିୟେ, ନିଶ୍ଚିନ୍ତ ରହ ।

କମଳା—ମୋତେ ଏ ରାଜ୍ୟ, ରାଜଭବନ ତ୍ୟାଗ କରିବାକୁ ପଡ଼ିବ ?

ଶଙ୍ଖଧର ଦେଖିଲା, ଏ ଯାଏଁ ବି କମଳା ମୋହାଚ୍ଛନ୍ନା । ଅନନ୍ତ ସୁଖର ଆଶା ମଧ୍ୟ ତାଙ୍କର ମୋହ ବନ୍ଧନକୁ ଭାଙ୍ଗିପାରିବ ନାହିଁ । ଦୁଃଖିତ ହୋଇ କହିଲା—ହଁ କମଳା, ତୁମେ ଏହାଠାରୁ ବଡ଼ ରାଜ୍ୟର ସ୍ୱାମିନୀ ହେବ । ରାଜ୍ୟସୁଖରେ ବାଧା ପଡ଼ିବନି, ଯଦି ବିଳାସ ପ୍ରତି ଆକର୍ଷିତା ନ ହେବ ।

କିନ୍ତୁ କମଳା ଏହା ଶୁଣିପାରିଲେ ନାହିଁ । ଶିଳାରେ ପ୍ରବାହିତ ବିଦ୍ୟୁତ୍ ଶକ୍ତି ତାଙ୍କୁ ଅଚେତ କରି ଦେଇଥିଲା । କେବଳ ତାଙ୍କର ଆଖି ଖୋଲାଥିଲା ଏବଂ ସେ ଆଖିରେ ତୃଷ୍ଣା ଝଲସି ଉଠୁଥିଲା ।

( ୪୯ )

ରାଜା ବିଶାଳ ସିଂହଙ୍କର ହିଂସା ବୃତ୍ତି କୌଣସି ପ୍ରକାରେ ଶାନ୍ତ ହେଉନ ଥିଲା । ତାଙ୍କ ହୃଦୟରେ ଏବେ ସ୍ନେହ ସହାନୁଭୂତି ଓ ଧୈର୍ଯ୍ୟର ସ୍ଥାନ ନ ଥିଲା । ଏବେ କିଛି ଦିନ ହେଲା ଆଉ ଏକ ଶତ୍ରୁର ସନ୍ଧାନ କଲେ । ଦଇବ ତାଙ୍କୁ ନିଃସନ୍ତାନ ରଖି, ମିଳିଥିବା ସନ୍ତାନକୁ ଯଦି ଛଡ଼େଇ ନେଇଗଲେ, ସେ ନିଶ୍ଚୟ ଅନ୍ୟାୟ କଲେ । ତେଣୁ ସେ ସପ୍ତମ ବିବାହ କରିବାକୁ ସ୍ଥିର କଲେ । ରାଜାଙ୍କ ପାଇଁ କ'ଣ କନ୍ୟା ଅଭାବ ! ବ୍ରାହ୍ମଣ ଏବଂ ବଡ଼ ବଡ଼ ପଣ୍ଡିତମାନେ କୋଷ୍ଠି ଗଣନା କରି ବ୍ୟବସ୍ଥା ଦେଲେ ଯେ ଏ ବିବାହ ନିଷ୍ଫଳ ଯିବନାହିଁ । ତେଣୁ ଜୋର୍‌ସୋର୍‌ରେ ଯୋଗାଡ଼ ଚାଲିଲା । ରାଜବୈଦ୍ୟ ଦିନ ରାତି ଲାଗି ପ୍ରକାର ପ୍ରକାର ରସ ଏବଂ ମହୌଷଧି ରାଜାଙ୍କ ପାଇଁ ତିଆରି କରିବାରେ ଲାଗିଲେ ।

ରାଣୀ ମନୋରମା ଅନେକ ଦିନ ହେଲା ଘର କମ୍ବା ରାଜ୍ୟ ବିଷୟରେ ସମ୍ପୂର୍ଣ୍ଣ ନୀରବ । କହିଲେ ବା ଶୁଣିବ କିଏ ! ଯେଉଁ ମନୋରମା ସବୁ କିଛି ଥିଲା, ସିଏ ଏବେ ସମ୍ପୂର୍ଣ୍ଣ ଅବହେଳିତା । ରାଜାସାହେବ ତାକୁ ଚାହିଁବାକୁ ବି ଘୃଣା କଲେ । ଏ ଘର ଏବେ ମନୋରମା

ପାଇଁ ନର୍କଭୁଲ୍‌ଅ । ମାତୃଦରେ ସବୁ ବିପତ୍ତି ସହୁଛୁ । ସମୟେ ସମୟେ ସେ ଭାବେ—ଯାଇ ରାଜା ସାହେବଙ୍କୁ ପଗ୍ରରବ—ମୋର ଅପରାଧ କ'ଣ ! କିନ୍ତୁ ରାଜାସାହେବ ତାକୁ ଅବସର ଦେଉଛନ୍ତି ବା କୋଉଠି ! ତାଙ୍କ ମନରେ ଗୋଟାଏ ଧାରଣା ବଦ୍ଧମୂଳ ହୋଇଯାଇଥିଲା ଯେ ମନୋରମା ରୋହିଣୀଙ୍କୁ ବିଷ ଦେଇ ମାରି ଦେଇଛି । ଏହାର କୌଣସି ପ୍ରମାଣ ଥାଉ ବା ନ ଥାଉ, ସେ କିନ୍ତୁ ଯାହା ବୁଝିଛନ୍ତି ସେଇଆ ।

ଅନେକ ସମୟରେ ମନୋରମାକୁ କୌଣସି ନା କୌଣସି ଅପମାନ ସହିବାକୁ ପଡ଼ୁଥିଲା । ତାର ଗର୍ବ ଚୂର୍ଣ୍ଣ କରିବା ପାଇଁ ପ୍ରତିଦିନ କିଛି ନା କିଛି ଷଡ଼ଯନ୍ତ୍ର କରାଯାଉଥିଲା । କିନ୍ତୁ ଏହି ଉଦଣ୍ଡ ପ୍ରକୃତି ମନୋରମା ଏବେ ଧୈର୍ଯ୍ୟ ଓ ଶାନ୍ତିର ସାଗର ହୋଇଯାଇଛି । ହସି ହସି ସବୁ ମୁଣ୍ଡପାତି ସହି ନେଉଛି ।

ନୂଆ ରାଣୀ ସାହେବାଙ୍କ ପାଇଁ ସୁନ୍ଦର ଭବନ ନିର୍ମାଣ ହେଉଥିଲା । ସେଠି ସଜେଇବା ପାଇଁ ଗୋଟାଏ ବଡ଼ ଦର୍ପଣର ଆବଶ୍ୟକତା ପଡ଼ିଲା । ବଜାରରେ ମିଳିଲାନାହିଁ । ହୁକୁମ ହେଲା—ଜ୍ୟେଷ୍ଠ ରାଣୀ କୋଠରିରେ ଥିବା ବଡ଼ ଦର୍ପଣଟା ନେଇଆସ । ମନୋରମା ଏ ହୁକୁମ ଶୁଣିଲା ଏବଂ ହସିଦେଲା । ଗାଲିଚାର ଦରକାର ପଡ଼ିଲା । ପୁଣି ହୁକୁମ ହେଲା—ଜ୍ୟେଷ୍ଠରାଣୀ କୋଠରିରୁ ନେଇଆସ । ମନୋରମା ହସି ହସି ଗାଲିଚା ଦେଇଦେଲା । ଏହାର କିଛି ଦିନ ପରେ ହୁକୁମ ହେଲା—ଜ୍ୟେଷ୍ଠରାଣୀର ମଟରଟା ନୂଆ ଭବନକୁ ନେଇଆସ । ମନୋରମା ଏହି ଗାଡ଼ିଟିକୁ ଖୁବ୍ ଭଲ ପାଉଥିଲା, ନିଜେ ଚଲାଉଥିଲା । ଏ ହୁକୁମ ଶୁଣି ହସିଦେଲା । ମଟର ଚାଲିଗଲା ।

ମନୋରମା ପାଖରେ ଅନେକ ସେବକା ଥିଲେ । କମି କମି ଶେଷକୁ ତିନିଜଣ ରହିଲେ । ପରେ ହୁକୁମ ହେଲା ଦୁଇଜଣଙ୍କୁ ନୂଆ ଭାବରେ ନିଯୁକ୍ତ କର । ଏହାର ଏକ ସପ୍ତାହ ପରେ ବାକି ଜଣକୁ ମଧ୍ୟ ଡାକି ନିଆଗଲେ । ଆଉ ମନୋରମା ପାଖରେ ସେବିକା ନାହାନ୍ତି । ଏ ହୁକୁମ୍‌କୁ ସେ ହସି ହସି ସ୍ୱାଗତ କଲା ।

ବର୍ତ୍ତମାନ ଅଧିକ କଠୋର ଆଘାତ ପାଇବା ପାଇଁ ବାକିଥିଲା । ନୂଆ ରାଣୀ ପାଇଁ ତ ନୂଆ ଭବନ ତିଆରି ହେଲା । ତାଙ୍କ ମାତାଙ୍କ ରହିବା ପାଇଁ ଘର ଦରକାର ପଡ଼ିଲା । କନ୍ୟା ବିଚ୍ଛେଦ ମାତାଙ୍କ ପ୍ରତି ଅସହ୍ୟ । ରାଜା ସାହେବ ତାଙ୍କୁ ନୂଆ ଭବନରେ ରଖିବା ଉଚିତ ମନେ କଲେ ନାହିଁ । ନୂଆ ରାଣୀଙ୍କର ସ୍ୱାଧୀନତାରେ ବାଧା ପଡ଼ିବ । ହୁକୁମ୍ ହେଲା—ଜ୍ୟେଷ୍ଠ ରାଣୀଙ୍କ ମହଲ ଖାଲି କର । ରାଣୀ ଏ ହୁକୁମ୍ ଶୁଣି ହସିଦେଲେ । ମହଲ ଖାଲି କରି ଦିଆଗଲା । ଯେଉଁ ଘରେ ଦାସୀମାନେ ରହୁଥିଲେ, ସେଇ ଘରେ ଯାଇ ମନୋରମା ଖୁସିରେ ରହିଲା ।

ରାଜାସାହେବଙ୍କ ଅପ୍ରସନ୍ନତାର ପ୍ରଥମ ଆକ୍ରମଣ ହେଲା ଗୁରୁସେବକ ଉପରେ । ତାଙ୍କୁ ଦରବାରରୁ ବାହାର କରି ଦିଆଗଲା । ସେ ଏବେ ନିଜ ଜମିଦାରି ଦେଖୁଛନ୍ତି । ଅଧିକାର ଛଡ଼େଇ ନେବାରୁ ସେ ଏବେ ଅଧିକାରର ଶତ୍ରୁ । କୃଷକ ସଂଗଠନ ଆରମ୍ଭ କରି ବେଠି

ବିରୋଧରେ ପ୍ରଚାର କଲେ । ମନୋରମା ଉପରେ ଏ ସବୁ ଅତ୍ୟାଚାର ଦେଖି କ୍ରୋଧରେ କମ୍ପମାନ ହେଉଥିଲେ । ଦିନେ ସେ ମନୋରମାକୁ ସାକ୍ଷାତ କରିବାକୁ ଆସିଲେ । ତାଙ୍କର ଉଗ୍ରମୂର୍ତ୍ତି ଦେଖି ମନୋରମା ଭୟ କଲା ।

ଆସୁ ଆସୁ ଗୁରୁସେବକ ପଚାରିଲେ—ତୁ ମହଲ କାହିଁକି ଛାଡ଼ିଦେଲୁ ?

ମନୋରମା—ମୋର ତ ଏଠାରେ କିଛି ଅସୁବିଧା ହେଉନାହିଁ । ବରଂ ଖୁସିରେ ଅଛି ।

ଗୁରୁସେବକ—ଦେଖୁଛି, ବୁଢ଼ା ୬୫ ବର୍ଷ ବୟସରେ ଟୋକା ହଉଚି । ବାହାହବ ।

ମନୋରମା—ଭାଇ ତମ ପାଦ ତଳେ ପଡ଼ୁଚି—ତମେ ମୋ ଆଗରେ ସେ ସବୁ କଥା କହନାହିଁ ।

ଗୁରୁସେବକ—ମୁଁ ତା ବାହାହବା ମଜା ଚଖେଇବି ।

ମନୋରମା ବିରକ୍ତ ହୋଇ କହିଲା—ମୁଁ ପରା କହିଲି—ସେସବୁ ମୋ ଆଗରେ କିଛି କୁହନାହିଁ ବୋଲି । ସେ ନିଜ ଆୟତ୍ତରେ ନାହାନ୍ତି କି କେହି ହେଲେ ଦୁଃଖରେ ନିର୍ଦ୍ଦୟ ଆଘାତ ସହି ନିଜ ଆୟତ୍ତରେ ରହିପାରିବ ନାହିଁ । ବରଂ ମୁଁ ଦୁଃଖିତ । ତାଙ୍କ ପ୍ରତି ମୋର ଯେତେ ସହାନୁଭୂତି ରହିବା ଉଚିତ, ମୁଁ ରଖି ପାରିଲି ନାହିଁ ।

ଗୁରୁସେବକ—ଆଚ୍ଛା, ଆସୁଛି ।

ମନୋରମା—ଭାଇ ତୁମର ହାବଭାବରେ ମୋର ସନ୍ଦେହ ହେଉଛି । ଦେଖ ଭାଇ, ଯଦି ରାଜା ସାହେବଙ୍କ ଉପରେ ଟିକିଏ ଆଞ୍ଚ ଆସେ, ଭଲ ହବନାହିଁ । ଯଦି କିଛି କଥା ଅଛି, ସଫା ସଫା ମୋତେ କହ ।

ଗୁରୁସେବକ—ମୋର ରାଜାସାହେବଙ୍କଠି କାମ କ'ଣ ! ଯଦି ତୁ ଖୁସି, ତେବେ ମୁଁ ବା କାହିଁକି ଶତ୍ରୁ ହେବି ! ଯଦି ଖରାପ ନ ଭାବିବୁ, ତେବେ ଗୋଟିଏ କଥା କହିବି । ସେ ତୋତେ ଗୋଇଠା ମାରୁଛନ୍ତି, ତୁ ତାଙ୍କ ଗୋଡ଼ ଘଷିବାରେ ଲାଗିଛୁ ?

ମନୋରମା—ଭାଇ, ଯେଉଁ ସ୍ତ୍ରୀ ନିଜ ପତି ପ୍ରତି ଦ୍ୱେଷ ରଖେ, ସେ ସ୍ତ୍ରୀ ବିଷ ଖାଇ ମରିଯିବା ଉଚିତ । ଦ୍ୱେଷ ଆମର ଧର୍ମ ନୁହେଁ । କ୍ଷମା ଆମର ଧର୍ମ । ମୋ ବିବାହ କୋଡ଼ିଏ ବର୍ଷ ହୋଇଗଲା । ଅନେକ ଦିନ ପର୍ଯ୍ୟନ୍ତ ମୋ ଉପରେ ତାଙ୍କର କୃପାଦୃଷ୍ଟି ରହିଲା । ଏବେ ସେ ମୋତେ ଭଲ ପାଉ ନାହାନ୍ତି । କିନ୍ତୁ ଆଜି ପର୍ଯ୍ୟନ୍ତ ମୋତେ ପଦେ ହେଲେ କଠୋର କଥା କହି ନାହାନ୍ତି । ସଂସାରରେ କେତେଜଣ ଏପରି ପୁରୁଷ ଅଛନ୍ତି, ଯିଏ ବାଣୀକୁ ଏତେ ଜବତ କରିବ ! ମୋର ଏ ଦଶା ମୋ ଅଭିମାନ ହେତୁ ହୋଇଛି । ମୁଁ ଯଦି ଅଭିମାନ ତ୍ୟାଗକରି ତାଙ୍କ ପାଖକୁ ଯାଆନ୍ତି, ମୋର ବିଶ୍ୱାସ ସେ ମଧ୍ୟ ମୋ ସଙ୍ଗେ ହସି ହସି କଥାବାର୍ତ୍ତା କରନ୍ତେ ଏବଂ ମୁଁ ଯାହା କହନ୍ତି, କରନ୍ତେ । ତୁମକୁ ବିନୀତ ଅନୁରୋଧ ଭାଇ, କହ, କିଛି ଆଶଙ୍କାର କଥା ଅଛି କି ?

ଗୁରୁସେବକ—ପ୍ରଜାମାନେ ରାଜା ସାହେବଙ୍କ ଅନୀତିରେ ଘୋର ଅସନ୍ତୁଷ୍ଟ ।

ମନୋରମା—ତାହା ତ ଜାଣିଛି । ଭାରତ ଆଜି ଇଂରେଜମାନଙ୍କ ଅନୀତି ଯୋଗୁଁ ଘୋର ଅନ୍ଧକାର— ଏଥିରେ କ'ଣ ଅଛି !

ଗୁପ୍ତସେବକ—ରାଜା ସାହେବଙ୍କୁ ଜଣେଇ ଦବୁ—କାଲି ଦିନ ସାବଧାନ ରହିବ ।

ଗୁପ୍ତସେବକ ବାହାରକୁ ଚାଲିଗଲେ । ମନୋରମା ସ୍ତବ୍ଧ ହୋଇ ଠିଆ ହେଲା । କାଲି ତ ବିବାହ !

ବାହାର ସମସ୍ତ ପ୍ରସ୍ତୁତ ସରିଛି । ସକାଳୁ ବର, ବରଯାତ୍ରୀ ଏଠାରୁ ଯାତ୍ରା ଆରମ୍ଭ କରିବେ । ଆଉ ବେଶି ଚିନ୍ତା କରିବାର ସମୟ ନାହିଁ । ରାଜା ସାହେବଙ୍କୁ ସଚେତ କରିଦେବାକୁ ହେବ ।

ମନୋରମା ସେହି ମୁହୂର୍ତ୍ତରେ ରାଜାସାହେବଙ୍କ ଶୟନାଗାରକୁ ଗଲା । ଏ ଘଟଣା ସମୟରେ ସେ ମାନ କରିବ କ'ଣ ! ଚାରିବର୍ଷ ପରେ ସେ ଶୟନାଗାରରେ ପ୍ରବେଶ କଲା । କୋଠରୀର ପରିବେଶ ଶୁଷ୍କ, ନୀରସ । ରାଜାସାହେବ କୁଆଡ଼େ ବାହାରକୁ ଯିବା ପାଇଁ ପ୍ରସ୍ତୁତ ହେଉଥିଲେ । କ'ଣ ସେ ଲେଖୁଥିଲେ । ମନୋରମାକୁ ଦେଖି ଚମକି ପଡ଼ି ଠିଆ ହୋଇପଡ଼ିଲେ ଏବଂ ବାହାରକୁ ଚାଲିଲେ—ଯେତେ ଯେପରି ଗୋଟେ ଭୟଙ୍କର ଜନ୍ତୁ ସାମନାକୁ ଆସିଗଲା ।

ମନୋରମା ତାଙ୍କ ଆଗରେ ଠିଆ ହୋଇପଡ଼ି କହିଲା—ମୁଁ ଆପଣଙ୍କୁ ଏକ ଜରୁରୀ କଥା କହିବାକୁ ଆସିଛି । ଟିକିଏ ରହନ୍ତୁ ।

ରାଜାସାହେବ ଠିଆ ହେଲେ । ମନୋରମା ଆଗ୍ରହପୂର୍ଣ୍ଣ ସ୍ୱରରେ କହିଲା ଟିକିଏ ବସି ଯାଆନ୍ତୁ । ମୁଁ ଅଧିକ ସମୟ ନେବିନାହିଁ ।

ରାଜା—ବସିବିନାହିଁ । ମୋତେ ଫୁରୁସତ ନାହିଁ । କ'ଣ କହିବା କଥା କହ । କିନ୍ତୁ ମୋତେ ଜ୍ଞାନ ଉପଦେଶ ଶୁଣାଅନାହିଁ ।

ମନୋରମା—ଜ୍ଞାନ ଉପଦେଶ ମୁଁ ବା ଆପଣଙ୍କୁ କ'ଣ ଦେବି । କେବଳ ଏତିକି କହିବାକୁ ଆସିଛି ଯେ ପଟୁଆର ଯିବାବେଳେ ସାବଧାନ ରହିବେ ।

ରାଜା—ମାନେ କି ?

ମନୋରମା—ଉପଦ୍ରବ ହେବାର ଭୟ ଅଛି ।

ରାଜା—ବାସ୍, ଏତିକି ନା ଆଉ କିଛି ଅଛି ?

ମନୋରମା—ଏତିକି ।

ରାଜା—ହଉ, ତୁମେ ଯାଅ । ମୁଁ ଉପଦ୍ରବକୁ ଖାତିର କରେନା । ମୋର କାହାରିକୁ ଭୟ ନାହିଁ । ଯଦି କେହି ଚୁଁ କରେ, ସାରା ରାଜ୍ୟରେ ନିଆଁ ଲଗେଇ ଦେବି । ରକ୍ତନଦୀ ବୁହାଇ ଦେବି । ବିଶାଲସିଂହ ରାଜ୍ୟର ମାଲିକ । ରାଜ୍ୟର ଚାକର ନୁହେଁ । କିଏ ଏପରି ଅଛି, ମୋ ସାମନାରେ ଠିଆ ହେବ !

ମନୋରମାର ହୃଦୟ କରୁଣାରେ ବ୍ୟାକୁଳ ହୋଇ ଉଠିଲା । ଏହି ବାକ୍ୟରେ କେତେ ବେଦନା ! କେତେ ଅଜ୍ଞନତା ! ଆଗ୍ରହ ପ୍ରକାଶ କରି କହିଲା—ତଥାପି ସାବଧାନ ହେବା କିଛି ଖରାପ ନୁହେଁ । ମୁଁ ଆପଣଙ୍କ ସାଙ୍ଗରେ ରହିବି ।

ରାଜା ମନୋରମାକୁ ସ୍ନେହ ନେତ୍ରରେ ଚାହିଁ କହିଲେ—ନା, ନା, ତୁମେ ମୋ ସଙ୍ଗେ ରହିପାରିବ ନାହିଁ । ମୁଁ ତୁମକୁ ଖୁବ୍ ଜାଣେ ।

ଏହା କହି ରାଜାସାହେବ ବାହାରକୁ ଚାଲିଗଲେ । ମନୋରମା ଠିଆ ହୋଇ ଭାବିଲା—ଏ କଥାର ଉଦ୍ଦେଶ୍ୟ କ'ଣ !

ରାତି ଅଧିକ ହୋଇଯାଇଥିଲା । ବାହାରେ ବିବାହ ପଟୁଆର ଯୋଗାଡ଼ ଚାଲିଥିଲା । ଏ ନଗରରେ ଆଗରୁ କେବେ ଏପରି ପଟୁଆର ଦେଖା ନ ଥିଲା । ଗୋରା ପଲଟନ, କଳା ପଲଟନ, ରାଜ୍ୟର ପଲଟନ । ସାମରିକ ବାଦ୍ୟ । ସଜ୍ଜିତ ଘୋଡ଼ା ଓ ହାତୀ, ଫୁଲରେ ସଜାଯାଇଥିବା ଗାଡ଼ି । ସୁନ୍ଦର ସୁନ୍ଦର ପାଲିଙ୍କି । ଏ ସବୁ ଏତେ ସଂଖ୍ୟାରେ ଜମାହେଲେ ଯେ ସେମାନଙ୍କୁ ସଜେଇ ଠିଆ କରେଇବାରେ ଅନେକ ସମୟ ଲାଗିଗଲା । ଏତଦ୍ ବ୍ୟତୀତ ବ୍ୟାଣ୍ଡ୍ ବାଜା, ଦେଶୀ ବାଜା, ଅନେକ ବିମାନ, ଫୁଲଗଛ ତ ଗଣି ହେବନାହିଁ । ସାରା ରାତି ରାଜା ସାହେବ ଏ ସମସ୍ତ ବ୍ୟବସ୍ଥାରେ ବ୍ୟସ୍ତ ରହିଲେ । ରାତିସାରା ଖୁବ୍ ଗହଳଚହଳ । ମନୋରମା ଅନେକ ଥର ଶୟନ କକ୍ଷକୁ ଆସି ଫେରିଗଲାଣି । ବାହାରକୁ ଯାଇ ରାଜାସାହେବଙ୍କୁ ଅନୁନୟ ବିନୟ କରିବାକୁ ଅନେକଥର ମନ କଲାଣି । କିନ୍ତୁ ଭୟ ହେଉଛି—କାଳେ ସମସ୍ତଙ୍କ ସାମନାରେ ପାଟି କରିବେ, କ'ଣ ନା କ'ଣ କହିଦେବେ । ଯେ ନିଜ ଅଯତ୍ନରେ ନାହାନ୍ତି ତାଙ୍କର ବା ଲଜ୍ଜା-ସଂକୋଚ କାହାକୁ ! ଶେଷରେ ଦୁଆରେ ଯାଇ ଠିଆହେଲା, କାଳେ ରଜା ସାହେବ ଦେଖିଲେ ଆସିବେ । କିନ୍ତୁ ସେ ଦେଖି ମଧ୍ୟ ଦୂରକୁ ଦୂରକୁ ଚାଲିଗଲେ ।

ସାରା ସହରରେ ଏ ଶୋଭାଯାତ୍ରା । ଏ ବିବାହକୁ ଲୋକେ ଉପହାସ କରୁଥିଲେ । ପରସ୍ପର ମଧ୍ୟରେ କଥାବାର୍ତ୍ତା ହୋଇ ବିଦ୍ରୂପ କରୁଥିଲେ । ବ୍ୟଙ୍ଗ, ବିଦ୍ରୂପ ପ୍ରତି ରାଜା ସାହେବଙ୍କର ଖାତିର ନ ଥିଲା ।

ସାରା ରାତି କଟିଗଲା, କିନ୍ତୁ ମନୋରମାକୁ କିଛି କହିବାର ସୁଯୋଗ ମିଳିଲା ନାହିଁ । ନିଜ କୋଠରୀକୁ ଫେରିଯାଇ କାନ୍ଦି ଉଠିଲା । କୋଡ଼ିଏ ବର୍ଷ ପୂର୍ବର କଥା ତା'ର ମନେ ପଡ଼ିଲା । ରଜାଙ୍କୁ ବିବାହ କରିବା ପୂର୍ବରୁ ସେ କହିଲା—ଆପଣଙ୍କ ପ୍ରତି ମୋର ପ୍ରେମ ନାହିଁ କି ହୋଇ ପାରିବ ନାହିଁ ।

ପରଦିନ ବିବାହ ପଟୁଆର ବାହାରିବା ପୂର୍ବରୁ ମନୋରମା ପୁଣି ରାଜାସାହେବଙ୍କ ପାଖକୁ ଯିବାପାଇଁ ବାହାରିଲା । କିନ୍ତୁ ଘରୁ ବାହାରିବାକୁ ଯାଉଛି । ଦୁଆର ମୁହଁରେ ଦେଖିଲା ଶସ୍ତ୍ରଧାରୀ ସିପାହୀ ତାକୁ ବାଧା ଦେଉଛି ।

ମନୋରମା—ନିମକହାରାମ, ମୁଁ ତୋତେ ରଖିଛି, ଅଥଚ ତୁ ମୋତେ ରୋକୁଛୁ !

ସିପାହି—ହଜୁରଙ୍କ ହୁକୁମ୍-ଜଣ କରିବ ! ଆପଣ ଉଆସରୁ ବାହାରକୁ ନ ବାହାରିବା ପାଇଁ ମହାରାଜା ହୁକୁମ୍ କରିଛନ୍ତି । ଆମର କିଛି ଅପରାଧ ନାହିଁ ସରକାର !

ମନୋରମା—ମୁଁ କେବଳ ଏକ ମିନଟ୍ ପାଇଁ ସାକ୍ଷାତ କରିବି ।

ସିପାହି—ବଡ଼ କଡ଼ା ତାଗିଦ୍ ସରକାର, ଆମର ଜୀବନ ଯିବ ।

ବିରକ୍ତି ପ୍ରକାଶ କରି ମନୋରମା ରହିଗଲା । ଦିନେ ରାଜ୍ୟ ତା'ର ଇଙ୍ଗିତରେ ପରିଚାଳିତ ହେଉଥିଲା । ଆଜି କିନ୍ତୁ ଗୋଟେ ସିପାହି ତା'କଥା ଶୁଣୁ ନାହିଁ । କେତେ ତଫାତ୍ ହେଲେ !

ମନୋରମା ଦେଉଡ଼ିରେ ଠିଆ ହୋଇ ପଚାରିଲା—ପଟୁଆର ବାହାରିବା ପାଇଁ ଆଉ କେତେ ଡେରି ଅଛି ?

ସିପାହି—ଆଉ ଡେରି ନାହିଁ । ସବୁ ପ୍ରସ୍ତୁତ ।

ମନୋରମା—ରାଜାସାହେବଙ୍କ ଯାନ ପାଇଁ ପ୍ରହରୀର କିଛି ବିଶେଷ ବ୍ୟବସ୍ଥା କରା ଯାଇଛି କି ?

ସିପାହି—ହଁ ହଜୁର, ମହାରାଜାଙ୍କ ପାଖରେ ଶହେ ଗୋରା ସୈନ୍ୟ ରହିବେ । ସୈନ୍ୟମାନଙ୍କ ମଝିରେ ମହାରାଜାଙ୍କ ଘୋଡ଼ା ଚାଲିବ ।

ମନୋରମା ସନ୍ତୁଷ୍ଟ ହୋଇଗଲା । ତା'ର ଇଚ୍ଛା ପୂର୍ଣ୍ଣ ହେଲା ।

ଦିନ ଘଣ୍ଟାରେ ପଟୁଆର ଚାଲିଲା । ଲମ୍ବା ପ୍ରାୟ ଦୁଇମାଇଲ ହେବ । ସାରା ସହରର ଲୋକେ ଏ ତାମସା ଦେଖିବାକୁ ଦୁଇପାଖେ ଠିଆହୋଇଛନ୍ତି ।

ଏହି ସମୟରେ ଶଙ୍ଖଧରକୁ ସାଙ୍ଗରେ ଧରି ଅହଲ୍ୟା ନଗରରେ ପ୍ରବେଶ କଲା । ଅଳ୍ପ ଦୂର ଆସିଛି ଏ ପଟୁଆର ହେତୁ ସେ ଅଟକିଗଲା । ଶୁଣିଲା—ରାଜା ବିଶାଳ ସିଂହଙ୍କର ବିବାହ ପଟୁଆର । ଶଙ୍ଖଧର କାର୍‌ରୁ ଓହ୍ଲାଇ ପଡ଼ି ରୁମାଲ ହଲେଇ କହିଲା—ସମସ୍ତେ ଠିଆ ହୋଇଯାଅ କେହି ପାଦେ ହେଲେ ଆଗକୁ ଆସ ନାହିଁ । ଯାଇ ମହାରାଜାଙ୍କୁ ସୂଚନା ଦିଅ—କୁମାର ସାହେବ ଆସୁଛନ୍ତି ।

ସାଙ୍ଗେ ସାଙ୍ଗେ ପଟୁଆର ବନ୍ଦ । 'କୁମାର ସାହେବ ଆସିଗଲେ' ଏ ଖବର ପବନ ଭଳି ସବୁଆଡ଼େ ବ୍ୟାପିଗଲା । ତାଙ୍କୁ ଦେଖିବା ପାଇଁ ଲୋକେ ଆଗକୁ ଦୌଡ଼ିବାକୁ ଲାଗିଲେ । ସାରା ପଟୁଆର ବିଶୃଙ୍ଖଳ ହୋଇଗଲା । ଏ ଅବସ୍ଥା ଦେଖି ରାଜା ବିଶାଳ ସିଂହ ଭାବିଲେ ବୋଧେ ଉପଦ୍ରବ ଆରମ୍ଭ ହୋଇଗଲା । ଗୋରା ସିପାହିଙ୍କୁ ପ୍ରସ୍ତୁତ ରହିବା ପାଇଁ ହୁକୁମ୍ ଦେଲେ । କେହି ହେଲେ ରାଜାସାହେବଙ୍କୁ 'କୁମାର ସାହେବ ଆସିଗଲେ' ବୋଲି ଠିକ୍ ଠିକ୍ କହି ପାରିଲେ ନାହିଁ । ସମସ୍ତେ ଖାଲି ଧାଇଁବାରେ ଲାଗିଛନ୍ତି । ଏ ସବୁ ଦେଖି ରାଜାସାହେବ ଭୟଭୀତ ହୋଇଯିବା ସ୍ୱାଭାବିକ । ଉପଦ୍ରବର ଆଶଙ୍କା ପୂର୍ବରୁ ଥିଲା ।

ଏହି ସମୟରେ ଶଙ୍ଖଧର ଆସି ପ୍ରଣାମ କଲା । ଶଙ୍ଖଧରକୁ ଦେଖି ରାଜା ଅତି ଆଶ୍ଚର୍ଯ୍ୟ ହୋଇ ଘୋଡ଼ାରୁ ଡେଇଁପଡ଼ି କୁଣ୍ଢାଇ ପକାଇଲେ । ଆଜିର ଏ ଶୁଭ ମୁହୂର୍ତ୍ତରେ, ଯାହା

ପାଇଁ ସେ ଅହରହ କାନ୍ଦୁଥିଲେ—ତାଙ୍କୁ ପାଇବାର ଅଭିଳାଷ ପୂର୍ଣ୍ଣ ହେଲା । ବାରମ୍ବାର ତାଙ୍କୁ ଆଲିଙ୍ଗନ କରି ମଧ୍ୟ ତୃପ୍ତି ଆସୁ ନ ଥିଲା । ଆଖିରୁ ତାଙ୍କର ଅଶ୍ରୁଧାରା ଅନବରତ ପ୍ରବାହିତ ହେଉଥିଲା । ସମସ୍ତେ ଅବାକ୍ ହୋଇ ଅନାଇଛନ୍ତି । କିଛି ସମୟ ପରେ ଚିତ୍ତ ଶାନ୍ତ ହେବାରୁ ପଚାରିଲେ—ତୁ ଆସିଗଲୁ ମୋର ଦୁର୍ଦ୍ଦଶା ଗଲା । ଚକ୍ରଧରଙ୍କୁ ନେଇ ଆସିଛୁ ?

ଶଙ୍ଖଧର—ସେ ଆସିଲେ ନାହିଁ ।

ରାଜା—ଆସିବେ, ମୋର ମନ କହୁଛି ସେ ନିଶ୍ଚୟ ଆସିବେ । ତୁ ଗଲାଦିନୁଁ ଅହଲ୍ୟା କୁଆଡ଼େ ଯେ ବୁଲୁଛି, ତା'ର କିଛି ଠିକଣା ନାହିଁ ।

ଶଙ୍ଖଧର—ସେ ତ ମୋ ସାଙ୍ଗରେ ଆସିଛନ୍ତି ।

ରାଜା—ସତେ ! କାହିଁ ? ସେ ମଧ୍ୟ ଆସିଯାଇଛି । ବାଃ—ହେ ଭଗବାନ ! ସବୁ ତୁମ୍ଭେ ଏକାଦିନକେ ଦେଇଦେଲ । ଚାଲ ତୋତେ ଦେଖି ଆଖିକୁ ତୃପ୍ତି ଦିଏ ।

ପଟୁଆର ଅଟକିଲା । ରାଜାସାହେବ ଓ ଶଙ୍ଖଧର ଅହଲ୍ୟା ପାଖକୁ ଚାଲିଲେ । ବାପା ଓ ଝିଅର ମିଳନ ଦୃଶ୍ୟ ଅତ୍ୟନ୍ତ ମାର୍ମିକ ଥିଲା । ଉଭୟଙ୍କର ଲୋତକଧାର ବନ୍ଦ ହେବାପରେ ରାଜାସାହେବ କହିଲେ—ତୋତେ ଏ ବିବାହ ପଟୁଆର ଦେଖି କିପରି ଲାଗୁଥିବ । ସମସ୍ତେ କି ହସୁଛନ୍ତି, କିନ୍ତୁ ଇଏ ବିବାହ ପଟୁଆର ନୁହେଁ । ଇଏ ଉତ୍କ୍ଷିପ୍ତ ହୃଦୟର ପ୍ରକାଶ, ମନ କହିଲା—ଯଦି ଭଗବାନଙ୍କର ତୋ ପ୍ରତି ଦୟା ନାହିଁ, ଅକାରଣରେ ତୋତେ ଦଣ୍ଡ ଦେଉଛନ୍ତି, ତେବେ ତୁ କାହିଁକି ତାଙ୍କୁ ଡରିବୁ ! ଯଦି ସ୍ୱାମୀ ସେବକର ହୃଦୟ ବ୍ୟଥା ଜାଣି ପାରୁନି, ତେବେ ସେବକ କାହିଁକି ତାଙ୍କୁ ସମ୍ମାନ ଦେବ ! ମୁଁ ଏତେ ଅନ୍ୟାୟ କରିଛି—ତାହା କଥାରେ କହି ହେବନି । ଧର୍ମ-ଅଧର୍ମ ଓ ପାପ-ପୁଣ୍ୟର ବିଚାର ହୃଦୟରୁ ସମ୍ପୂର୍ଣ୍ଣ ଦୂର କରିଦେଲି । ଶେଷରେ ଦେଖ, ମୋର ବିଜୟ ହେଲା ।

ଅହଲ୍ୟା—ଲଲୁ ସାଙ୍ଗରେ ବୋହୂ ମଧ୍ୟ ନେଇ କରି ଆସିଛୁ ।

ରାଜା—ସତେ ? ବୋହୂ ମଧ୍ୟ ସାଥିରେ ?

କାର୍‌ର ପଛଭାଗରେ ବୋହୂ ବସିଥିଲା । ଅହଲ୍ୟା କହିଲା—ବୋହୂ, ପିତାଙ୍କର ଚରଣ ସ୍ପର୍ଶ କର ।

ବୋହୂକୁ ଦେଖି ରାଜା ଆଶ୍ଚର୍ଯ୍ୟ ହୋଇଗଲେ । ଏତେ ଅନୁପମ ସୌନ୍ଦର୍ଯ୍ୟ ସେ ଆଜିଯାଏଁ ଦେଖିନାହାନ୍ତି । ବୋହୂକୁ ଆଶୀର୍ବାଦ ଦେଇ ଅହଲ୍ୟାକୁ କହିଲେ—ଶଙ୍ଖଧର ବଡ଼ ଭାଗ୍ୟବାନ୍ । ଏ ଦେବକନ୍ୟା କେଉଁଠୁ ଉଡ଼େଇ ଆଣିଲା ?

ଅହଲ୍ୟା—ଦକ୍ଷିଣର ଜଣେ ରାଜା ଝିଅ । ଏପରି ସୁନ୍ଦର ସ୍ୱଭାବର ଯେ, ଦେଖିଲେ ହେଲେ ଶୋକ ମୁଁ ଭୁଲିଯାଉଛି । ଆପଣ ଠିକ୍ କହିଲେ—ଦେବକନ୍ୟା ।

ରାଜା—ତେବେ ଇଏ ମୋ ବିବାହର ପଟୁଆର ନୁହେଁ, ଶଙ୍ଖଧରର ବିବାହ ଉତ୍ସବ ।

( ୫୦ )

କମଳା ଗୋଟାଏ ଯୁଗପରେ ନିଜ ଘର ଜଗଦୀଶପୁର ଆସିଲା ବୋଲି ଅନୁଭବ କଲେ । ଏଠାର ସବୁକିଛୁ ତାଙ୍କର ପରିଚିତ । ତାଙ୍କର ବିଶାଳ ନାଚଘର ବର୍ତ୍ତମାନ ମରାମତି ଅଭାବରୁ ଅସ୍ତବ୍ୟସ୍ତ ହୋଇ ପଡ଼ିଛି । ମୟୂର, ହରିଣ ନାହାନ୍ତି । ଲତା, ଫୁଲକୁଣ୍ଡ କିଛି ନାହିଁ । କେବଳ ଲମ୍ବ ଲମ୍ବ ସ୍ତମ୍ଭ ଠିଆ ହୋଇଛନ୍ତି । କିନ୍ତୁ ଏ ନାଚଘରର ଧ୍ୱଂସାବଶେଷ ଦେଖି ରାଣୀ ଦୁଃଖିତ ହେଲେନାହିଁ । ବରଂ ସନ୍ତୋଷ ଲାଭ କଲେ । ନମ୍ରତାର ସହ ଭଗବାନଙ୍କୁ ପ୍ରାର୍ଥନା କଲେ—ହେ ଭଗବାନ, ମୁଁ ପାପିନୀ । ମୋର ପାପ ପାଇଁ ମହେନ୍ଦ୍ରଙ୍କୁ ଦଣ୍ଡ ଦିଅନ୍ତୁ ନାହିଁ । ମୁଁ ସହସ୍ର ଜୀବନ ଯାଏଁ ପ୍ରାୟଶ୍ଚିତ୍ତ କରିବି—ମୋତେ ବୈଧବ୍ୟର ଅଗ୍ନିରେ ଜଳାନ୍ତୁ ନାହିଁ ।

ନାଚଘରୁ ବାହାରି ଆସି ଦେବପ୍ରିୟା ରାଣୀ ମନୋରମାଙ୍କ କୋଠରୀରେ ପ୍ରବେଶ କଲେ । ମନୋରମାର ଅନୁପମ ଛବି ମଳିନ ପଡ଼ିଯାଇ ଥିଲା । ତା'ର ରୂପାନ୍ତର ହୋଇଯାଇଛି । ଏ ଦେବୀପ୍ରତିମା, ସରଳା ବିଶାଳ ସିଂହ ହାତୁଡ଼ି ପଡ଼ିବ ବୋଲି କିଏ ଆଶା କରିଥିଲା !

ମନୋରମା କହିଲା—ନାଚଘର ଦେଖିବାକୁ ଯାଇଥିଲ କି ! ତା'ର ଶୋଭା ରାଣୀ ଦେବପ୍ରିୟାଙ୍କ ସଙ୍ଗେ ଚାଲିଯାଇଛି ।

ଦେବପ୍ରିୟା ଧୀରକଣ୍ଠରେ କହିଲେ—ବରଂ ନିଆଁ ଲାଗିଯାଇଥିଲେ ଭଲ ହୋଇଥା'ନ୍ତା ।

ମନୋରମା—କଣ କିଛି ଶୁଣିଯାଇଛ କି ?

ଦେବପ୍ରିୟା—ହିଁ, ଯାହା ଶୁଣିଛି, ସେତିକି ଯଥେଷ୍ଟ । ଅଧିକ ଜାଣିବାର ଇଚ୍ଛା ନାହିଁ ।

ତା'ପରେ ସେ ରାଣୀ ରାମପ୍ରିୟାଙ୍କ ପାଖକୁ ଗଲେ । ତାଙ୍କୁ ଦେଖି ଦେବପ୍ରିୟାଙ୍କର ଆଖି ସଜଳ ହୋଇଗଲା । ବଡ଼ କଷ୍ଟରେ ଅଶ୍ରୁମୋଚନ କରି ଭାବିଲେ—ହାୟ, ଏହି ବାଳିକାକୁ ମୁଁ ନିଜେ କୋଳରେ ଖେଳେଇଥିଲି । ବୀଣା ରଖା ଯାଇଥିବାର ଦେଖି କହିଲେ—ସଙ୍ଗୀତ ବୋଧେ ଆପଣଙ୍କର ଖୁବ୍ ପ୍ରିୟ !

ରାମପ୍ରିୟା ନିର୍ନିମେଷ ନୟନରେ ତାଙ୍କୁ ଚାହିଁ ରହିଲା । ଦେବପ୍ରିୟାଙ୍କର କଥନ ତାଙ୍କୁ ଯେମିତି ଶୁଣାଯାଇ ନାହିଁ ।

ଦେବପ୍ରିୟା ପୁଣି କହିଲେ—ମୁଁ ମଧ୍ୟ ଆପଣଙ୍କଠାରୁ କିଛି ଶିଖିବି ।

ରାମପ୍ରିୟା ଏବେ ମଧ୍ୟ ତାଙ୍କର ମୁଖଛବିରେ ଚକ୍ଷୁ ନିବଦ୍ଧ କରିଥିଲେ । ଏଥର ବି କିଛି ଶୁଣି ପାରିଲେ ନାହିଁ ।

ଦେବପ୍ରିୟା ପୁଣି କହିଲେ—ଆପଣଙ୍କୁ ମୋ ପାଇଁ ବହୁତ ପରିଶ୍ରମ କରିବାକୁ ପଡ଼ିବ । ଅଳ୍ପ ବହୁତ ମୁଁ ଜାଣେ ମଧ୍ୟ ।

ଏହା କହି ସେ ବୀଣା ଉଠାଇ ଗୀତ ଗାଇଲେ—

ପ୍ରଭୁ ହେ, ତୁମ ଦରଶନ ପାଇବା କପର କହିବ…

ଅରେ ! ସେଇ ଗୀତ ତ ! ସେହି ସ୍ୱର, ସେହି ମାଧୁର୍ଯ୍ୟ, ସେହି ହୃଦୟସ୍ପର୍ଶୀ ଲହରୀ ! ରାମପ୍ରିୟା ଭୟାତୁର ନେତ୍ରରେ ଦେବପ୍ରିୟାଙ୍କୁ ଚାହିଁରହି ମୂର୍ଚ୍ଛିତା ହୋଇପଡ଼ିଲେ । ଦେବପ୍ରିୟା ଦେଖିଲେ ରହସ୍ୟ ଉଦ୍‌ଘାଟିତ ହୋଇଯିବ । କ'ଣ ଘଟିବ ସେ ଚିନ୍ତା କରିପାରିଲେ ନାହିଁ । ସେ ରାମପ୍ରିୟାଙ୍କୁ ସେହି ଅବସ୍ଥାରେ ଛାଡ଼ିଦେଇ ନିଜ କୋଠରୀକୁ ଏକପ୍ରକାର ଦୌଡ଼ି ଚାଲିଗଲେ ।

ଦାସୀଠାରୁ ଖବର ପାଇ ମନୋରମା ଦୌଡ଼ିଆସିଲା । ଘଣ୍ଟେ ଦୌଡ଼ାଦୌଡ଼ି ପରେ ରାମପ୍ରିୟା ଆଖି ଖୋଲିଲେ । ମନୋରମାକୁ ଦେଖି ଲଜ୍ଜା ଏବଂ ସଙ୍କ୍ୟକ ଦୃଷ୍ଟିରେ ସବୁଆଡେ ଚାହିଁ ଉଠିବସିଲେ ।

ମନୋରମା କହିଲା—ଆପଣଙ୍କର ହଠାତ୍ ଏପରି କ'ଣ ହେଲା ? ଏବେ ତ ବୋହୂ ଏଠାରେ ବସିଥିଲେ ।

ମନୋରମା କାନ ପାଖରେ ମୁହଁ ରଖି ରାମପ୍ରିୟା କହିଲେ—କ'ଣ କହିବି ଭଉଣୀ, ଆଖିକି ବିଶ୍ୱାସ କରିହେଉନି । ବୋହୂର ଚେହେରା ବିଲ୍‌କୁଲ ଦେବପ୍ରିୟା ଭଉଣୀ ସଙ୍ଗେ ମିଳିଯାଉଛି । ଏତେ ଟିକିଏ ଫରକ ନାହିଁ ।

ମନୋରମା—ହଁ କିଛି କିଛି ମିଳୁଛି ତ । କିନ୍ତୁ ସେଥିରେ କ'ଣ ଅଛି ! ଏକା ଭଳି କ'ଣ ଦୁଇଜଣଙ୍କର ଚେହେରା ହୁଏନି !

ରାମପ୍ରିୟା—ନାହିଁ ମନୋରମା, ଢଙ୍ଗ-ଢଙ୍ଗ କଥାବାର୍ତ୍ତା ସବୁ ସେଇଆ । ଗୀତ ଗାଇଲା—ଯେଉଁ ଗୀତ ଦେବପ୍ରିୟା ଭଉଣୀ ଗାଏ । ବିଲ୍‌କୁଲ୍ ସେହି ସ୍ୱର, ସେହି ଅଓ୍ୟାଜ । ଆରେ ଭଉଣୀ, କ'ଣ କହିବି ତୁମକୁ, ତିଳେ ହେଲେ ତଫାତ୍ ନାହିଁ । ଦେବପ୍ରିୟା ଭଉଣୀର ଯୌବନ ସମୟରେ ତୁମେ ତାଙ୍କୁ ଦେଖିନ । ଯେପରି ଜଣାଯାଉଛି ଭଉଣୀ, ସ୍ୱୟଂ କୁଆଡ଼୍ ଆସିଗଲା । ରହସ୍ୟ କ'ଣ କହି ହଉନି । କିନ୍ତୁ ଇଏ ଦେବପ୍ରିୟା, ଏଥିରେ ସନ୍ଦେହ ନାହିଁ ।

ମନୋରମା—ରାଜାସାହେବ ତ ରାଣୀ ଦେବପ୍ରିୟାଙ୍କୁ ସେତେବେଳେ ଦେଖିଥିବେ ।

ରାମପ୍ରିୟା—ହଁ ଦେଖିଛନ୍ତି ଏବଂ ଦେଖିବ—ସେ ମଧ୍ୟ ଏଇଆ କହିବେ । ଚେହେରା ଏକା ହେବା ଅଲଗା କଥା । କିନ୍ତୁ ଇଏ ଅଲଗା । କିଏ ଗ୍ରହଣ କରୁ କି ନ କରୁ, ମୁଁ କହିବି, ରାଣୀ ଦେବପ୍ରିୟା ପୁଣି ଅବତାର ନେଇ ଆସିଛି ।

ମନୋରମା—ହଁ, ହୋଇପାରେ । କିନ୍ତୁ ଆପଣଙ୍କର କଥା ଶୁଣି ମୋର ସନ୍ଦେହ ହେଉଛି ।

ଏହି ସମୟରେ ଅହଲ୍ୟା ସେହିବାଟେ ଗ୍ଭଲଗଲ । ଗର୍ବ ଏବଂ ଆନନ୍ଦରେ ତା' ପାଦ ଛଟେଇ ପଡ଼ୁନ । ପତି ସ୍ତୁତି ମଧ୍ୟ ଏହି ଆନନ୍ଦ ପ୍ରବାହରେ ବିଲୀନ ହୋଇଯାଉଛି ।

× × ×

ମୁନ୍‌ସୀ ବଜ୍ରଧର ଏ ଖବର ଶୁଣି ଘୋଡ଼ାରେ ଦୌଡ଼ି ଆସିଲେ । ଶଙ୍ଖଧର ଦୌଡ଼ିଆସି ଚରଣ ସ୍ପର୍ଶ କଲ । ମୁନ୍‌ସୀଙ୍କ ଲୁହ ଆଖିରୁ ଝରିଲା । ସେ ଗଦ ଗଦ୍ କଣ୍ଠରେ କହିଲେ—ଏ ଶୁଭଦିନ ଦେଖିବା ପାଇଁ ବଞ୍ଚିରହିଛୁ ବାବା । ଅଭିଳାଷ ମୋର ପୂର୍ଣ୍ଣ ହେଲ । ଖାଲି ଅଭିଷେକ ଦେଖିବି । କେବେ ମା' ତୋତେ ଗ୍ଭହିଁ ରହିଛି । ତାକୁ କ'ଣ ଭୁଲିଗଲୁ !

ଶଙ୍ଖଧର—ନାହିଁ । ଘରକୁ ଯାଇ ଆଶୀର୍ବାଦ ଗ୍ରହଣ କରିବି । ତାଙ୍କୁ ଭୁଲିଯିବି କିପରି !

ମୁନ୍‌ସୀ—ତୁ ବାବାଙ୍କୁ ସାଙ୍ଗରେ ଛାଡ଼ି ଆଣିଲୁନି !

ଶଙ୍ଖଧର—ସେ ଯେଉଁ ପବିତ୍ର କାର୍ଯ୍ୟମାନ କରୁଛନ୍ତି, ତାଙ୍କୁ ଛାଡ଼ି ଆସିବା ସମ୍ଭବ ନୁହେଁ । ମୁଁ ମୋର ପରିଚୟ ଦେଲିନି । ଦେଇଥିଲେ ବୋଧେ ମୋତେ ସେ ସ୍ୱୀକାର କରି ନ ଥା'ନ୍ତେ ।

ଏହାପରେ ଶଙ୍ଖଧର ସବୁକଥା ବର୍ଣ୍ଣନା କଲ ।

ମୁନ୍‌ସୀଙ୍କ ଯାଇ ରାଜାସାହେବଙ୍କ ପାଖରେ ପହଞ୍ଚିଲେ । ରାଜାସାହେବ ତାଙ୍କୁ ସାଦର ଅଭ୍ୟର୍ଥନା କରି କହିଲେ—ଆପଣ କ'ଣ ଏଠାକୁ ଆସିବା ରାସ୍ତା ଭୁଲିଗଲେ !

ମୁନ୍‌ସୀ—ମହାରାଜ, ଏବେ ଆପଣ ଓ ମୋର ସମ୍ବନ୍ଧ ଅଲଗା । ବେଶି ଯିବା ଆସିବା ଠିକ୍ ମନେ କରୁନାହିଁ ।

ରାଜା—ହନସାହି ବସିବସି କରୁଛନ୍ତି କ'ଣ ! (ହସିହସି) ଆଉ ତ ସମ୍ବନ୍ଧୀଙ୍କଠାରେ ଆକର୍ଷଣ ନ ଥିବ !

ମୁନ୍‌ସୀ—ବାଃ, ଆପଣ ସେ ଆକର୍ଷଣରେ ମଜ୍ଜା କଣ ଜାଣିବେ ! ମୋର ତ ଅନୁଭବ ଯେ ସ୍ତ୍ରୀ ପୁରୁଷର ପ୍ରେମ-ସୂତ୍ର ବୟସ ବୃଦ୍ଧି ସଙ୍ଗେ ସଙ୍ଗେ ଦୃଢ଼ ହୁଏ । ଆଛା, ବର୍ତ୍ତମାନ ତ ରାଜକୁମାରର ଅଭିଷେକ ହୋଇଯିବା ଉଚିତ । ଆପଣ ମଧ୍ୟ କିଛିଦିନ ଆନନ୍ଦ ଉପଭୋଗ କରିବେ ।

ରାଜା—ସେଇ ବିଗ୍ଭର ତ ଅଛି । କିନ୍ତୁ ମୁନ୍‌ସୀଙ୍କ, କଥା କ'ଣ କେଜାଣି, ଯେଉଁଦିନୁ ଶଙ୍ଖଧର ଆସିଲଣି—ସନ୍ଦେହ ହେଉଛି, ମଙ୍ଗଳ ଦଶାରେ କୌଣସି ନା କୌଣସି ବିଘ୍ନ ଅବଶ୍ୟ ପଡ଼ିବ ।

ମୁନ୍‌ସୀ—ଆପଣ ଭଗବାନଙ୍କୁ ସ୍ମରଣ କରି ଅଭିଷେକ କରନ୍ତୁ । ସବୁ କୁଶଳ ହେବ ।

ମୁନ୍‌ସୀଜି ସମସ୍ତଙ୍କ ସହ ସାକ୍ଷାତ କରି ଏବଂ ସମସ୍ତଙ୍କୁ ନିଜ ଘରକୁ ଆସିବା ପାଇଁ ନିମନ୍ତ୍ରଣ ଦେଇ ଫେରିଆସିଲେ ।

× × ×

ଦ୍ୱିତୀୟ ଦିନ ସଂଧ୍ୟାରେ ମୁନ୍‌ସୀଜିଙ୍କ ଘରେ ବଡ଼ ଧୂମ୍‌ଧାମ୍‌ରେ ଉତ୍ସବ ହେଲା । ନିର୍ମଳା ନାତିକୁ କୁଣ୍ଢେଇ ବହୁତ କାନ୍ଦିଲେ । ଅହଲ୍ୟା ହେତୁ ସେ ପୁଅକୁ ହରେଇଲେ । ନାତି ମଧ୍ୟ ତା'ରି ଯୋଗୁଁ ହାତରୁ ଯାଇଥିଲା । ସେଇଥି ଯୋଗୁଁ ଏବେ ବି ଅହଲ୍ୟା ସହ ତାଙ୍କ ମନ ମିଳେନି । ପିଲାମାନଙ୍କୁ ପାଖରେ ରଖି ସବୁ କଷ୍ଟ ସହିବାକୁ ନିର୍ମଳା ଭଲପାଆନ୍ତି । ଏ ଶେଷ ସମୟରେ କାହାରିକୁ ପାଖରୁ ଛାଡ଼ି ଦେବାକୁ ସେ ଚାହାନ୍ତିନାହିଁ ।

ବାହାରେ ଗାଉଣା ବାଜଣା ଚାଲିଥିଲା, ସହରର ଧନାଢ୍ୟ ବ୍ୟକ୍ତିମାନଙ୍କ ସତ୍କାର ପାଇଁ ମୁନ୍‌ସୀଜୀ ବ୍ୟବସ୍ଥା କରୁଥିଲେ । ଅହଲ୍ୟା ଲଣ୍ଠନ ଧରି ଘରେ ଥିବା ସବୁ ଜିନିଷ ତଦାରଖ କରୁଥିଲା । ଏଣେ ନିର୍ମଳା ଖଟ ଉପରେ ବସି ଶଙ୍ଖଧରଠାରୁ କଥା ଶୁଣିବାରେ ଲାଗିଥିଲେ । କମଳା ତାଙ୍କ ଗୋଡ଼ ଘଷି ଦେଉଥିଲା ଏବଂ ଶଙ୍ଖଧର ପଙ୍ଖାରେ ବିଞ୍ଚୁଥିଲା । ସ୍ୱର୍ଗରେ କ'ଣ ଏହାଠାରୁ ବଳି ଅଧିକ ସୁଖ ଅଛି ! ଏହି ସୁଖରୁ ଅହଲ୍ୟା ବଞ୍ଚିତ କରିଥିଲା ।

ସକାଳେ ଶଙ୍ଖଧର ବିଦାୟ ନେଲାବେଳେ ନିର୍ମଳା କହିଲେ—ବାପା, ଆଉ ବେଶିଦିନ ବଞ୍ଚିବିନି । ମଝିରେ ମଝିରେ ଆସି ଟିକିଏ ଦେଖିଯାଉଥିବୁ ।

ଆଜି ସେଠାରେ ରାଜାସାହେବଙ୍କର ମଧ୍ୟ ଉତ୍ସବ ଥିଲା । ଶଙ୍ଖଧରର ଏଠାରେ ରହିବାକୁ ଇଚ୍ଛା ଥିଲେ ମଧ୍ୟ ରହିପାରିଲା ନାହିଁ ।

ସ୍ତ୍ରୀଲୋକେ ନିର୍ମଳାଙ୍କର ଚରଣ ସ୍ପର୍ଶ କରି ବିଦାୟ ନେଲେ । ନିର୍ମଳା ଶଙ୍ଖଧରକୁ କହିଲେ—କାଲି ତୋ ବାଟ ଚାହିଁ ବସିଥିବି ।

ଶଙ୍ଖଧର—ନିଶ୍ଚୟ ଆସିବି ।

ମଟରରେ ସମସ୍ତେ ବସିଗଲେ । ନିର୍ମଳା ଦୁଆରେ ଠିଆହୋଇ ଚାହିଁ ରହିଲେ । ଶଙ୍ଖଧର ସହିତ ତାଙ୍କ ହୃଦୟ ସତେ ଯେପରି ଚାଲିଯାଉଛି । ଯୁବକର ପ୍ରେମରେ ଉଦ୍‌ବିଗ୍ନତା ଥାଏ, କିନ୍ତୁ ବୃଦ୍ଧଲୋକଙ୍କ ପ୍ରେମ ହୃଦୟବିଦାରକ । ଯୁବକ ଯାହାକୁ ଭଲପାଏ, ତା'ଠାରୁ ମଧ୍ୟ ଭଲପାଇବାର ଆଶା କରେ । ସ୍ନେହ ବଦଳରେ ସ୍ନେହ ନ ମିଳିଲେ, ସ୍ନେହକୁ ସେ ହୃଦୟରୁ ବାହାର କରି ଫିଙ୍ଗିଦିଏ । ବୃଦ୍ଧମାନଙ୍କଠାରେ ଏପରି ଦେଖାଯାଏ ନାହିଁ । ସେମାନେ ସ୍ନେହ କରନ୍ତି, କିନ୍ତୁ ତା' ପ୍ରତିବଦଳରେ ସେମାନେ କିଛି ଆଶା କରନ୍ତି ନାହିଁ ।

ଶଙ୍ଖଧରର ଆଖିରେ ଲୁହ ନ ଥିଲା । ହୃଦୟରେ ଦୁଃଖ ନ ଥିଲା । ସେ ଆନନ୍ଦରେ ଭ୍ରମଣରୁ ଫେରୁଥିବା ଭଳି ଯାଉଥିଲା । କିନ୍ତୁ ନିର୍ମଳାଙ୍କ ହୃଦୟରେ ଦୁଃଖ ଏବଂ ବଜ୍ରଧରଙ୍କ ଆଖି ଆଗରେ ଅନ୍ଧକାର ଛାଇ ହୋଇ ରହିଥିଲା ।

( ୫୧ )

କେତେ ଦିନ ଗଡ଼ିଗଲା । ରାଜା ସାହେବ ହରି ଭଜନ ଏବଂ ଦେବୋପାସନାରେ ବ୍ୟସ୍ତ ରହିଲେ । ପାଞ୍ଚ ଛଅ ବର୍ଷ ହେଲା ମନ୍ଦିର ଦେଖି ନ ଥିଲେ । ରାଜ୍ୟରେ ଧର୍ମଚର୍ଚ୍ଚା ବନ୍ଦ କରାଯାଇଥିଲା । ଏବେ ରାଜାସାହେବ ପୂରା ବଦଳିଗଲେ ।

ଏବେ ରାଜାସାହେବ ଅନେକ ସମୟରେ ଏକାନ୍ତରେ ବସି କୌଣସି ବିଷୟରେ ଚିନ୍ତା କରୁଥିବାର ଦେଖାଯାଉଥିଲା । ବାହାରକୁ କମ୍ ଯାଉଥିଲେ । ଖାଦ୍ୟପେୟରେ ରୁଚି ନ ଥିଲା । ନୈରାଶ୍ୟ ଅବସ୍ଥାରେ ଯେଉଁ ମାନସିକ ଅନ୍ଧକାର ଘେରି ରହିଥିଲା, ହଠାତ୍ ଆଲୋକରେ ତାହା ଦୂର ହୋଇଗଲା । ଧର୍ମାନୁରାଗ ସହ କର୍ତ୍ତବ୍ୟଜ୍ଞାନ ଜାଗ୍ରତ ହେଲା । ଅପକୀର୍ତ୍ତି କଥା ଭାବି ଅନୁତାପ କଲେ ।

ଅଧରାତ୍ର ଗଡ଼ି ଯାଇଥିଲା । ରାଣୀ ମହଲରେ ସମସ୍ତେ ଶୋଇ ପଡ଼ିଥିଲେ । ଅହଲ୍ୟା ସେତେ ବୁଝେଇଲେ ବି ମନୋରମା ନିଜ ଭବନକୁ ଆସିଲାନାହିଁ । ସେହି ଗ୍ରେଟିଆ କୋଠରି ଭିତରେ ପଡ଼ି ରହିଲା । ସହସା ରାଜାସାହେବ ମନୋରମା କୋଠରିରେ ପ୍ରବେଶ କଲେ । ମନୋରମା ବିସ୍ମିତ ହୋଇ ଠିଆ ହୋଇ ପଡ଼ିଲା ।

ରାଜାସାହେବ କୋଠରିର ତଳ ଉପର ଦେଖି ଅନୁତପ୍ତ କଣ୍ଠରେ କହିଲେ—ନୋରା, ମୁଁ କ୍ଷମା ମାଗିବାକୁ ଆସିଛି । ମୁଁ ତୁମ ସହ ଖୁବ୍ ଅନ୍ୟାୟ କରିଛି, ମୋତେ କ୍ଷମା କର । ମୋର କ'ଣ ହୋଇଯାଇଥିଲା, ମୁଁ କହି ପାରୁନାହିଁ । ସମ୍ଭବତଃ ରୋହିଣୀର ମୃତ୍ୟୁ ପରେ ଯେଉଁ ଦୁର୍ଘଟଣାମାନ ହେଲା, ସେ ସବୁ ମୋର ଚିତ୍ତକୁ ଅସ୍ଥିର କରି ପକାଇଲା । ମୁଁ ଭାବିଲି, ମୋତେ ଚତୁର୍ଦ୍ଦିଗରେ ଶତ୍ରୁ ଘେରି ରହିଛନ୍ତି । କାହା ଉପରେ ମୋର ବିଶ୍ୱାସ ରହିଲାନାହିଁ । ତୁମେ ମୋ ରକ୍ଷା ପାଇଁ ଯାହା କିଛି କରୁଥିଲ ତହିଁରେ ମୁଁ କପଟର ଗନ୍ଧ ପାଉଥିଲି । ନିଜ ଆୟତ୍ତରେ ଥିବା ବ୍ୟକ୍ତି କଦାପି ଏପରି କରେ ନାହିଁ ।

ମନୋରମା ସଜଳ ନେତ୍ରରେ କହିଲା—ସେ ସବୁ କଥା କହନ୍ତୁନାହିଁ । ଆପଣଙ୍କୁ ଦୁଃଖ ହେଉଛି ଏବଂ ମୁଁ ମଧ୍ୟ ଦୁଃଖିତ ହେଉଛି । ଆପଣଙ୍କ ପ୍ରତି ମୋ ହୃଦୟରେ ଏକ ମୁହୂର୍ତ୍ତିକ ପାଇଁ କୌଣସି ଦୁର୍ଭାବନା ଜାତ ହୋଇନାହିଁ—ଏହା ମୁଁ ଭଗବାନଙ୍କୁ ସାକ୍ଷୀ ରଖି କହୁଛି ।

ରାଜା—ମୁଁ ଜାଣେ ନୋରା ଏବଂ ଜାଣୁଛି ମଧ୍ୟ । ତୁମେ ଏହି କୋଠରିରେ ପଡ଼ିଥିବା ଦେଖି ମୋର ହୃଦୟ ଏବେ ଫାଟିଯାଉଛି । ଏବେ ମୁଁ ଜାଣୁଛି—ଦୁର୍ଦ୍ଦିନରେ ମନର କୋମଳ ଭାବଗୁଡ଼ିକର ସର୍ବନାଶ ଘଟେ ଏବଂ ସେହି ସ୍ଥାନରେ କଠୋର ଏବଂ ପାଶବିକ ଭାବ ଜାଗ୍ରତ ହୋଇଯାଏ । ମୋର ଜୀବନ ନିଷ୍ଫଳ ହୋଇଗଲା ନୋରା । ପ୍ରଭୁତ୍ୱ ପାଇବା ପରେ ମୋର ଯାହା କିଛି କରିବା ଉଚିତ ଥିଲା, ତାହା ମୁଁ କିଛି କଲିନାହିଁ । ଯାହା କଲି, ଓଲଟା କଲି । ମୁଁ ରାଣୀ ଦେବପ୍ରିୟାଙ୍କ ଶାସନ ବ୍ୟବସ୍ଥାକୁ ବିଦ୍ରୂପ କରୁଥିଲି । ମୁଁ କରିଜ ଭ୍ରହ୍ମଣକୁ କଲାନାଗ

ବୋଲି ଭାବୁଥିଲି । କିନ୍ତୁ ଆଜି ବୃଦ୍ଧ କଠୋର ବୋଝରେ ଅସ୍ଥିର ହୋଇପଡ଼ୁଛି । ପ୍ରଜାମାନେ ରାଣୀ ଦେବପ୍ରିୟାଙ୍କୁ ଏବେ ସ୍ମରଣ କରୁଛନ୍ତି । ମୋ ନାଁ ଶୁଣିଲେ ଲୋକେ କାନରେ ହାତ ଦେଉଛନ୍ତି । ମୁଁ ସମୟେ ସମୟେ ଭାବୁଛି; ଏ ରାଜ୍ୟ ମୋତେ ନ ମିଳିଥିଲେ ବରଂ ମୁଁ ସୁଖରେ ଥାଆନ୍ତି ।

ମନୋରମା—ମୁଁ ମଧ୍ୟ ସମୟେ ସମୟେ ଏହାହିଁ ଭାବିଥାଏ ।

ରାଜା—ମୋର ଜନ୍ମ ବୃଥା ହେଲା । ମୋ ଦ୍ୱାରା କେହି ଉପକୃତ ହେଲେ ନାହିଁ । ମୁଁ ମୋଟରେ ଛଅଥର ବିବାହ କଲି ଏବଂ ସପ୍ତମ ବିବାହ କରିବାକୁ ଯାଉଥିଲି । କୌଣସି ପତ୍ନୀ କ'ଣ ମୋ ଦ୍ୱାରା ସୁଖୀ ହୋଇଛନ୍ତି ! ଏପରିକି ତୁମ ଭଳି ଦେବୀଙ୍କୁ ମଧ୍ୟ ମୁଁ ସୁଖୀ ରଖି ପାରିଲି ନାହିଁ । ଶଙ୍ଖଧର ସହିତ ମୋ ହୃଦୟର କୋମଳ ଭାବଗୁଡ଼ିକ ଚାଲିଯାଇଥିଲେ । ତାକୁ ପାଇଲା ପରେ ସବୁ ପାଇଛି । କିନ୍ତୁ ନୋରା, ମନ ଭିତରେ ଭିତରେ ମୋର କମ୍ପି ଉଠୁଛି । କୌଣସି ଅନିଷ୍ଟର ଆଶା ମୋର ମନରେ ବାରମ୍ବାର ଉଦୟ ହେଉଛି ।

ମନୋରମା—ଈଶ୍ୱର ମୃତ ଆଶାକୁ ଜୀବନ ଦେଇଛନ୍ତି । ଆଉ ଅମଙ୍ଗଳ କିଛି ହେବ ନାହିଁ । ସବୁ କୁଶଳ ହେବ ।

ରାଜା—କ'ଣ କରିବ ନୋରା, ଏ ବିଶ୍ୱାସ ମୋତେ ଶାନ୍ତି ଦେଉନାହିଁ ।

ଏତିକି କହି ରାଜାସାହେବ ମନୋରମାର ଖୁବ୍ ନିକଟକୁ ଯାଇ ତା'ର କାନ ପାଖରେ କହିଲେ—ଏ ଆଶଙ୍କା ବିଲ୍‌କୁଲ୍ ଅକାରଣ ନୁହେଁ ନୋରା । ରାଣୀ ଦେବପ୍ରିୟାଙ୍କ ପିତା ମୋର ବଡ଼ ଭାଇ ଥିଲେ । ତାଙ୍କ ଚେହେରା ସହ ଶଙ୍ଖଧରର ଚେହେରା ସହ ଏକଦମ୍ ମିଳିଯାଉଛି । ଯୁବକ ସମୟରେ ମୁଁ ତାଙ୍କୁ ଦେଖିଛି । ଠିକ୍ ଏ ହେଲେ ପଲକ ନାହିଁ । ଭାଇଙ୍କର ଗୋଟିଏ ଫଟୋ ମଧ୍ୟ ମୋ ଆଲ୍‌ବମରେ ଅଛି । ତୁମେ ଦେଖିଲେ କହିବ, ଇଏ ଶଙ୍ଖଧର । ଏତେ ସାମ୍ୟ ଯାଆଁଳା ଭାଇ ମଧ୍ୟରେ ବି ହେବ ନାହିଁ । କେହି ପୁରୁଣା ଚାକର ନାହାନ୍ତି—ନ ହେଲେ ସାକ୍ଷୀ ଦିଅନ୍ତା ।

ମନୋରମା—ଏଥିରେ ଆଶଙ୍କାର କାରଣ କ'ଣ ?

ରାଜା—ନୋରା, ତୁମକୁ କିପରି ବା ବୁଝେଇବି ଏଥିରେ ଭୟଙ୍କର ରହସ୍ୟ ଅଛି ବୋଲି । ମୁଁ ଏବେ ଶଙ୍ଖଧରକୁ ଦେଖି ଚମକି ପଡ଼ିଲି ।

ମନୋରମା—ମୁଁ ମଧ୍ୟ ଆଶ୍ଚର୍ଯ୍ୟ ହେଉଛି । ରାଣୀ ରାମପ୍ରିୟା ଆସିଥିଲେ । ସେ କହୁଥିଲେ, ବୋହୂର ଚେହେରା ଦେବପ୍ରିୟାଙ୍କ ସହିତ ବିଲ୍‌କୁଲ ମିଶିଯାଉଛି । ସେ ବୋହୂକୁ ଦେଖି ତଟସ୍ଥ ହୋଇଗଲେ ।

ରାଜା ଭୟଭୀତ ହୋଇ କହିଲେ—ରାମପ୍ରିୟା ତ କାହିଁ ଏ କଥା ମୋତେ କହିନାହିଁ । ନୋରା, ଆଉ ମଙ୍ଗଳ ନାହିଁ । କିଛି ଗୋଟାଏ ଦୁର୍ଘଟଣା ଘଟିବ ।

ରାଜା ସାହେବ ଚିନ୍ତାରେ ବୁଡ଼ିଗଲେ । ଅତ୍ୟନ୍ତ ସ୍ନେହ କାରୁଣ ଭରା କଣ୍ଠରେ କହିଲେ— ନୋରା, ଗୋଟିଏ କଥା ତୁମକୁ ପଚାରିବ, ଝମ୍ପ ଭାବବନାହିଁ । ମୋ ମନରେ ସମୟେ ସମୟେ ପ୍ରଶ୍ନ ଉଠେ—ତୁମେ ମୋତେ ବିବାହ କଲ କାହିଁକି ? ମୋର ତ ଅବସ୍ଥା ପ୍ରୌଢ଼ଥିଲା । ଧନର ଲାଳସା ତ ତୁମର କେବେ ମୁଁ ଦେଖିନାହିଁ । ତେବେ କାହିଁକି ?

ମନୋରମା—ଦଣ୍ଡ ବୋଲି କହନ୍ତୁ ।

ରଜା—ନା ନୋରା, ମୁଁ ଜୀବନରେ ଯାହା କିଛି ସୁଖ ପାଇଛି—ତାହା କେବଳ ତୁମର ସ୍ନେହ ମାଧୁର୍ଯ୍ୟ ହେତୁ । ଭାଗ୍ୟର ନିର୍ଦ୍ଦୟ କ୍ରୀଡ଼ା ଯେ, ଯାହାକୁ ମୁଁ ସୁଖ-ହର୍ଷସ୍ୱ ଭାବିଥିଲି, ତାର ପ୍ରତି ଘୋର ଅନ୍ୟାୟ କଲି । କିନ୍ତୁ ଏବେ ମୁଁ ସେ ଅନ୍ୟାୟ ପାଇଁ ଦୁଃଖିତ ନ ହୋଇ ସନ୍ତୋଷ ପ୍ରକାଶ କରୁଛି । ଏହା ଥିଲା ଏକ ପରୀକ୍ଷା । ଏ ପରୀକ୍ଷା ତୁମର ସତୀତ୍ୱକୁ ଉଜ୍ଜ୍ୱଳ କରିଦେଲା । ଏ ପରୀକ୍ଷା ବିନା ତୁମର ଗୁଣଗୁଡ଼ିକ ଲୁଚି ରହିଯାଇଥାଆନ୍ତା । ଏପରି ମାନସିକ ବେଦନା, ଏପରି ଅପମାନ, ଏପରି ଦୁର୍ଜନତା ଅନ୍ୟ କେହି ସହିପାରିବେ ନାହିଁ, ଯାହା ତୁମେ ସହିଛ । ଏହାର ପ୍ରତିବଦଳରେ ମୁଁ କ'ଣ ବା ଦେଇ ପାରିବି ?

ମନୋରମା—ସ୍ତ୍ରୀ କ'ଣ ପ୍ରତିଦାନ ପାଇଁ ପୁରୁଷର ସେବା କରେ ।

ରାଜା—ଏ ବିଷୟକୁ ଆଉ ବଢ଼ାଅନି ମନୋରମା । ମୁଁ ଏବେ ତୁମକୁ ଯେଉଁ ପ୍ରଶ୍ନ ପଚାରିଥିଲି, ତାର ଉତ୍ତର ଦିଅ । ତୁମେ ମୋତେ ବିବାହ କଲ କାହିଁକି ?

ମନୋରମା—ଉତ୍ତର ଦେବି ? ହସିବେନି ତ ? ମୁଁ ରାଣୀ ହେବାକୁ ଚାହିଁଥିଲି । ମୁଁ ବାବୁଜୀଙ୍କଠାରୁ ଆପଣଙ୍କ କଥା ଶୁଣିଥିଲି । ସେ ଆପଣଙ୍କୁ ଖୁବ୍ ପ୍ରଶଂସା କରୁଥିଲେ— ଆପଣଙ୍କର ସହୃଦୟତା ଏବଂ ବିଶ୍ୱାସପୂର୍ଣ୍ଣ ହେବା ମଧ୍ୟ ଅନ୍ୟ ଏକ କାରଣ ଥିଲା ।

ରାଜା—ରାଣୀ ହେବାକୁ କାହିଁକି ଚାହିଁଥିଲ, ନୋରା ?

ମନୋରମା—ଯେଉଁ କାରଣ ପାଇଁ ଆପଣ ରାଜା ହେବାକୁ ଚାହିଁଥିଲେ, ସେହି କାରଣ ପାଇଁ ମୁଁ ରାଣୀ ହେବାକୁ ଚାହିଁଥିଲି । କୀର୍ତ୍ତି, ଦାନ, ଯଶ ହେବାକୁ ମୁଁ ସୁଖ ବୋଲି ଭାବିଥିଲି—ପ୍ରଭୁତ୍ୱ ଏବଂ ବିଳାସକୁ ନୁହେଁ ।

ରାଜା—କୀର୍ତ୍ତି ପାଇଁ ତୁମେ ଯୌବନର ଅନ୍ୟ ସୁଖ ପରିତ୍ୟାଗ କରିଦେଲ । ତୁମର ଏ ମନୋଭାବ ମୁଁ ପୂର୍ବରୁ ଜାଣି କୃପଣ ଥିଲେ ମଧ୍ୟ ତୁମ କାମରେ କେବେ ବାଧା ଦେଇନାହିଁ । ସେବା ଓ ଉପକାର ମୋ ପକ୍ଷେ ଥିଲା ଗୌଣ । ଅଧିକାର, ଐଶ୍ୱର୍ଯ୍ୟ ଏବଂ ଶାସନ—ଏଗୁଡ଼ିକୁ ମୁଁ ମୁଖ୍ୟ ମନେ କରିଥିଲି । ତୁମର ଏବଂ ମୋର ଆଦର୍ଶ ଥିଲା ସ୍ୱତନ୍ତ୍ର । ଯଦି କୀର୍ତ୍ତି ପାଇଁ ତୁମେ ଜୀବନର ଅନ୍ୟ ସମସ୍ତ ସୁଖକୁ ତ୍ୟାଗ କରିଦେଲ—ମୁଁ ଚାହେଁ ଏପରି କିଛି ବ୍ୟବସ୍ଥା କରିବି, ଯେପରି ତୁମେ ଭବିଷ୍ୟତରେ କୌଣସି ବାଧାର ସମ୍ମୁଖୀନ ହେବନାହିଁ । କ'ଣ ଯେ ହେବ କିଏ କହିବ । ତୁମକୁ ଖୁସିରେ ରଖିବା ପାଇଁ ଯେତିକି ଚେଷ୍ଟା କରିବା ଉଚିତ, ତାହା ଯେ ଗୁରୁଧର କରିବ—ଏ ଆଶା ମୁଁ କରିପାରୁ ନାହିଁ । ସେ ଖରାପ ବୋଲି କହୁନି କି ତା'ର

କ୍ଷତି ମୁଁ ଚାହୁଁନା । ମନୁଷ୍ୟର ସ୍ୱଭାବ ସାଧାରଣତଃ ଏଇଆ । ତେଣୁ ମୁଁ ଚାହେଁ ରାଜ୍ୟର ଅଧେ ଅଂଶ ତୁମ ନାମରେ କରିଦେବି । ମୋ କଥା ଶୁଣ, ମନୋରମା । ମୁଁ ଦୁନିଆ ଦେଖିଛି, ଦୁନିଆର ବ୍ୟବହାର କ'ଣ ତାହା ଜାଣିଛି । ଏଥିରେ ମୋର, ତୁମର କି ଶଙ୍ଖଧରର କିଛି କ୍ଷତି ହେବ ନାହିଁ, ତୁମର ଯଦି ଇଚ୍ଛା ହୁଏ, ଶଙ୍ଖଧରକୁ ଦେଇପାର । କିନ୍ତୁ ଅଧେ ତୁମ ନାମରେ ହେବା ନିତାନ୍ତ ଦରକାର । ତୁମେ ଏଥିରେ ଆପତ୍ତି କଲେ ମୁଁ ଶୁଣିବିନାହିଁ ।

ମନୋରମା—ବର୍ତ୍ତମାନ ଆପଣଙ୍କର ସେବାକୁହିଁ ମୁଁ ମୋ କୀର୍ତ୍ତି ବୋଲି ମନେକରେ ।

ରାଜା—ନୋରା, ତୁମେ ଏବେ ବି ମୋ କଥା ବୁଝିପାରିଲ ନାହିଁ । ଭବିଷ୍ୟତରେ ଲକ୍ଷଣ ମୋତେ କିଛି ଭଲ ଦେଖାଯାଉ ନାହିଁ । ମୋର ସନ୍ଦେହ ହେଉଛି ।······

ମନୋରମା—ସନ୍ଦେହ କିଛି ନାହିଁ । କିନ୍ତୁ ଈଶ୍ୱର କିଛି କ୍ଷତି କରିବାକୁ ଚାହିଁଲେ ମଧ୍ୟ, ମୁଁ ଶଙ୍ଖଧରର ପ୍ରତିଯୋଗିନୀ ହୋଇ ପାରିବି ନାହିଁ । ତାକୁ ମୁଁ ପୁତ୍ରବତ୍ ପାଳିଛି । ଶଙ୍ଖଧରଙ୍କର ପୁଅ ଏତେ କୃତଘ୍ନ ହୋଇ ପାରେନା ।

ରାଜା କଣ୍ଠରେ ଗମ୍ଭୀରତା ମାରି କହିଲେ—ନୋରା, ତୁମେ ଏବେ ମଧ୍ୟ ବୁଝି ପାରିଲ ନାହିଁ । ଛାଡ଼, କାଲିଠାରୁ ତୁମେ ନୂଆ ଘରେ ରହିବ—ଏହା ମୋର ଆଦେଶ ।

ଏହା କହି ରାଜା ଚାଲିଗଲେ । ଆଜି ବିଶାଳସିଂହ ମନୋରମାର ହୃଦୟକୁ ଜିଣି ପାରିଲେ । ସ୍ୱାମୀଙ୍କର ସହୃଦୟତାରେ ମନୋରମା ହାରିଗଲା । ପ୍ରେମ ସହୃଦୟତାରହିଁ ରସମୟ ରୂପ ।

( ୪୨ )

ରାଜାସାହେବଙ୍କୁ ଏବେ କୌଣସିମତେ ଶାନ୍ତି ମିଳୁ ନ ଥିଲା । କୌଣସି ଭୟଙ୍କର ବିପତ୍ତି ଆସି ପହଞ୍ଚିବ—ଏ ଦୁର୍ଭାବନା ତାଙ୍କ ମନରୁ ଯାଉ ନ ଥିଲା । ଦୁଇଜଣ କେହି ଯଦି ଜୋରରେ କଥାବାର୍ତ୍ତା କରୁଥିବାର ଶୁଣୁଥିଲେ, ସେ ଭାବୁଥିଲେ ବିପତ୍ତି ଆସିଗଲାକି ! ଶଙ୍ଖଧର କୁଆଡ଼େ ଗଲେ, ସେ କୁଶଳରେ ଘରକୁ ନ ଫେରିବା ଯାଏଁ ଉଦ୍‌ବିଗ୍ନ ରହୁଥିଲେ । ରାତିରେ ଉଠି ସେ ଠାକୁରଙ୍କ ପାଖରେ ପ୍ରାର୍ଥନା କରୁଥିଲେ । ଯେଉଁ ଆଶଙ୍କା ତାଙ୍କ ମନରେ ଥିଲା, ତାକୁ ପ୍ରକାଶ କରିବା ପାଇଁ ତାଙ୍କର ସାହସ ହେଉ ନ ଥିଲା ।

ସନ୍ଧ୍ୟା ହୋଇ ଯାଇଥିଲା । ରାଜାସାହେବ କାର୍‌ରେ ଯାଇ ମୁନ୍‌ସୀ ବଜ୍ରଧରଙ୍କ ପାଖରେ ପହଞ୍ଚିଲେ । ମୁନ୍‌ସୀଜୀଙ୍କର ସଙ୍ଗୀତମଣ୍ଡଳୀ ଆରମ୍ଭ ହେବାକୁ ଯାଉଥିଲା । ସଙ୍ଗୀତହିଁ ଥିଲା ତାଙ୍କର ଦାନ, ପୁଣ୍ୟ, ଧର୍ମ ଓ ବ୍ରତ । ତାଙ୍କର ସମସ୍ତ ବାଧା, ସମସ୍ତ ଚିନ୍ତା ସଙ୍ଗୀତର ସ୍ୱର ଲହରୀରେ ବିଲୀନ ହୋଇଯାଉଥିଲା । ମୁନ୍‌ସୀଜୀ ରାଜା ସାହେବଙ୍କୁ ଦେଖି ଦୌଡ଼ି ଆସି

କହିଲେ—ଆସନ୍ତୁ, ଅସନ୍ତୁ ମହାରାଜ ! ଆଜ୍ଞ ଗୁଆଲିୟରର ଜଣେ ସଙ୍ଗୀତାଗୃଜ୍ଞ ଆସିଛନ୍ତି । ଆପଣ ତ ଅନେକ ଗୀତ ଶୁଣିଛନ୍ତି, କିନ୍ତୁ ତାଙ୍କ ଗୀତରେ ନୂତନତା ଅଛି ।

ରାଜାସାହେବ ମନେ ମନେ ମୁନ୍‌ସୀଙ୍କର ଚିନ୍ତାଶୂନ୍ୟତା ପ୍ରତି ବିରକ୍ତ ହୋଇ କହିଲେ—ସେଇଥିପାଇଁ ତ ଆସିଛି । କିଛିଏ ଆପଣଙ୍କ ସହିତ କଥାବାର୍ତ୍ତା ହେବାକୁ ଚାହେଁ ।

ଉଭୟେ ଅନ୍ୟ ଏକ କୋଠରୀକୁ ଗଲେ । ରାଜାସାହେବ ଚିନ୍ତା କଲେ—କଥାଟା କେମିତି ଆରମ୍ଭ କରିବେ । ମୁନ୍‌ସୀଜୀ ତାଙ୍କର ଦୋଦୁଲ୍ୟମାନ ଅବସ୍ଥା ଦେଖି କହିଲେ—ମୋ ଦ୍ୱାରା କ'ଣ କାମ ହୋଇପାରିବ—କହନ୍ତୁ । ଆପଣ ଖୁବ୍ ଚିନ୍ତିତ ଜଣା ପଡ଼ୁଛନ୍ତି । କଥା କ'ଣ ?

ରାଜା—ଆପଣଙ୍କ ଜୀବନ ଯାପନ ପ୍ରଣାଳୀ ପ୍ରତି ମୋର ଈର୍ଷା ହେଉଛି । ଆପଣ ମୋତେ କାହିଁକି କିଛିଏ ଶିଖେଇ ଦେଉନାହାନ୍ତି !

ମୁନ୍‌ସୀ—ଏହା ତ କିଛି କଠିନ କଥା ନୁହେଁ । ଈଶ୍ୱରଙ୍କ ନିର୍ଦ୍ଦେଶରେ ଅମ୍ଭେମାନେ ପରିଚାଳିତ । ଚିନ୍ତା କରିବା କାହିଁକି !

ରାଜା—ତାହା ତ ଜାଣେ । କିନ୍ତୁ ତା ଦ୍ୱାରା ହୃଦୟକୁ ଶାନ୍ତି ମିଳୁନାହିଁ । ଜଗଦୀଶପୁର ରାଜ୍ୟକୁ ଭୋଗ କରିବା ମୋ ଜୀବନର ଲକ୍ଷ୍ୟ ଥିଲା । ଜୀବନର ସଦୁପଯୋଗ କିପରି ହେବ, ସେଥିପ୍ରତି ଚଳେମାତ୍ର ଧ୍ୟାନ ଦେଲେନାହିଁ । ଯେତେବେଳେ ରାଜ୍ୟ ନ ଥିଲା, ସେତେବେଳେ ବାବୁ ଚକ୍ରଧରଙ୍କ ସତ୍‌ସଙ୍ଗରେ କିଛିଦିନ ମନରେ ସେବାଭାବ ଜାଗ୍ରତ ହୋଇଥିଲା । ରାଜ୍ୟ ମିଳିବା ପରେ ମୋର କାୟାକଳ୍ପ ହୋଇଗଲା । ତା'ପରେ କେବେ ଆତ୍ମଚିନ୍ତାରେ ଅବକାଶ ମିଳିଲାନାହିଁ । ଶଙ୍ଖଧରକୁ ପାଇ ମୁଁ ନିଶ୍ଚିନ୍ତ ହୋଇଗଲି । ମୁଁ ସବୁକିଛି ପାଇଗଲି । କିନ୍ତୁ ଏବେ ଶଙ୍ଖଧର ଫେରିବା ପରେ ତା' ବିଷୟରେ ମୋର ଭୟଙ୍କର ସନ୍ଦେହ ଜାତ ହେଉଛି । ଆପଣ ମୋ ବଡ଼ଭାଇଙ୍କୁ ଦେଖିଛନ୍ତି ?

ମୁନ୍‌ସୀ—ନାହିଁ ଆଜ୍ଞା, ସେତେବେଳେ ତ ମୁଁ ବାହାରେ ତହସିଲଦାର ଥିଲି ।

ରାଜା—ଭାଇଙ୍କର ଚେହେରା ଆଜି ମଧ୍ୟ ମୋ ଆଖିରେ ନାଚି ଉଠୁଛି । ହେଇ, ଦେଖନ୍ତୁ ତାଙ୍କର ଫଟୋ ।

ରାଜାସାହେବ ଗୋଟିଏ ଫୋଟୋ ବାହାର କରି ଦେଖାଇଲେ । ମୁନ୍‌ସୀଜୀ ତାହା ଦେଖି ସଙ୍ଗେ ସଙ୍ଗେ କହିଲେ—ଏଇଟା ତ ଶଙ୍ଖଧରର ଫୋଟୋ ।

ରାଜା—ନାଇଁ ଆଜ୍ଞା, ଇଏ ମୋ ବଡ଼ ଭାଇଙ୍କ ଫୋଟୋ । ଶଙ୍ଖଧର ତ ଆଜିଯାଏଁ ତା ଫୋଟୋ ଉଠେଇନାହିଁ । ଫୋଟୋ ଉଠାଇବାକୁ ସେ ଘୃଣା କରେ ।

ମୁନ୍‌ସୀ—ମୁଁ କେମିତି ଜାଣିକି ଏହା ଆପଣଙ୍କ ବଡ଼ ଭାଇଙ୍କର ବୋଲି ! ଇଏ ତ ନିଃସନ୍ଦେହରେ ଶଙ୍ଖଧରର ।

ରାଜା—ବିଶ୍ୱାସ କରନ୍ତୁ ।

ମୁନ୍‌ସୀ—ତେବେ ତ ବଡ଼ ବିଚିତ୍ର କଥା !

ରାଜା—ତେଣୁ ମୋର ସନ୍ଦେହ । ରାତିରେ ନିଦ ହେଉନାହିଁ । ବଂଶୀମାନଙ୍କ ଚେଷ୍ଟାରେ ଏତେ ସାମ୍ୟ ଅଟେନାହିଁ । ଦେବୀ ନେବେ ପୁଣି ମୋ ଘରେ ଜନ୍ମ ହୋଇଛନ୍ତି—ଏଥିରେ ମୁଁ ଭ୍ରାନ୍ତ ନୁହେଁ । ଈଶ୍ୱର ଜାଣନ୍ତି, କାହିଁକି ସେ ଏ କୃପା କଲେ । କିନ୍ତୁ ଶଙ୍ଖଧରର କିଛି ଯଦି କ୍ଷତି ହୁଏ, ତେବେ ମୋର ପ୍ରାଣ ରହିବନାହିଁ ।

ମୁନ୍‌ସୀ—ଭଗବାନ ଚାହିଁଲେ ସବୁ କୁଶଳ ହେବ । ଭୟ କରିବାର କିଛି ନାହିଁ ।

ରାଜା—ମୋର ସନ୍ଦେହ ନିର୍ମୂଳ ନୁହେଁ । ବୋହୂର ଚେହେରା ଦେବପ୍ରିୟା ସହିତ ମିଳି ଯାଉଛି । ରାମପ୍ରିୟା ତ ବୋହୂକୁ ଦେଖି ମୂର୍ଚ୍ଛିତା ହୋଇ ପଡ଼ିଲା । ଭାଇ ଭାଉଜ ପୁଣି ଏ ଘରେ ଅବତାର ଗ୍ରହଣ କରିବା ଅକାରଣ ନୁହେଁ ।

ମୁନ୍‌ସୀଜୀ ଚମକିତ ହୋଇପଡ଼ି କହିଲେ—ଏ ତ ବଡ଼ ବିଚିତ୍ର କଥା !

ରାଜା—ବିଚିତ୍ର ନୁହେଁ ମୁନ୍‌ସୀଜୀ, ଏ ରାଜ୍ୟର ସର୍ବନାଶ ଘଟିବ । ରାଣୀ ଦେବପ୍ରିୟା ଯଦି ଜନ୍ମ ନେଇଛନ୍ତି, ତେବେ ସେ କଦାପି ବିଧବା ହୋଇ ରହି ପାରିବେନାହିଁ । ବିଧାତା ମୋତେ ଦଣ୍ଡ ଦେବା ପାଇଁ ଏ ବିଧାନ କରିଛନ୍ତି । କିନ୍ତୁ ଆପଣ ଦେଖିବେ, ମୁଁ କେବେ ତାଙ୍କର କାଠକଣ୍ଢେଇ ହୋଇ ପାରିବି ନାହିଁ । ଯେ କୌଣସି ଭଗବାନଙ୍କର ଦଣ୍ଡ ଗ୍ରହଣ କରିବାକୁ ମୁଁ ପ୍ରସ୍ତୁତ, କିନ୍ତୁ ଶଙ୍ଖଧରର ଯଦି ଟିକିଏ ମୁଣ୍ଡ ବ୍ୟଥା ହୁଏ, ମୁଁ ସହିପାରିବି ନାହିଁ ।

ମୁନ୍‌ସୀ—ଆପଣ କୌଣସି ପଣ୍ଡିତଙ୍କୁ ଏ ବିଷୟରେ କିଛି ପଚାରି ବୁଝିଲେଣି ।

ରାଜା—ନା । ଯାହା ମୁଁ ନିଜେ ଜାଣି ପାରୁଚି, ସେଥିରେ ପଚାରିବି କ'ଣ ! କୌଣସି ଦାନ ଯଜ୍ଞ ବା ପ୍ରାୟଶ୍ଚିତ୍ତ ଏ ସଙ୍କଟ ଟାଳି ପାରିବନାହିଁ । ପଣ୍ଡିତମାନେ ନିଜ ସ୍ୱାର୍ଥ ପାଇଁ ପ୍ରକାର ପ୍ରକାର ବ୍ୟବସ୍ଥା ବତାନ୍ତି । କିନ୍ତୁ ତହିଁରେ କ'ଣ ବିଧିର ବିଧାନ ବଦଳିଯିବ । ମୁନ୍‌ସୀଜୀ, ମୁଁ ଆଜୀବନ ମାୟାର ଉପାସନା କଲି । କର୍ମ-ଅକର୍ମର ବିଚାର କ୍ଷଣକ ପାଇଁ ମଧ୍ୟ କଲିନାହିଁ । ତା'ର ଫଳ ମୋତେ ମିଳୁଛି । କିନ୍ତୁ ମୁଁ ତାକୁ ଦେଖେଇଦେବି—ସେ ମୋତେ କଦାପି ତା'ର ଖେଳ କଣ୍ଢେଇ କରିପାରିବ ନାହିଁ । ମୁଁ ତାକୁ ଧ୍ୱଂସ କରିଦେବି । ଆପଣ ଈଶ୍ୱରଙ୍କୁ ଦୟାଳୁ ବୋଲି କହୁଛନ୍ତି । କିନ୍ତୁ ଈଶ୍ୱର ଦୟାଳୁ ନୁହନ୍ତି ।

ରାଜାସାହେବ ଉଠିଲେ । ବିଷାଦମୟ ସ୍ୱରରେ କହିଲେ—ହଁ, ଯେଉଁକଥା ମୁଁ କହିବାପାଇଁ ଆସିଥିଲି । ତାହା ଭୁଲିଗଲି । ମଣିଷ ମରିବା ପରେ କ'ଣ ଦୁଃଖ ପାଏ ?

ମୁନ୍‌ସୀ—କହନ୍ତି ତ ଦୁଃଖ ପାଏ ବୋଲି, ପୁଣି ଅଧିକ ଦୁଃଖ ।

ରାଜା—ଏ ସବୁ ମିଥ୍ୟା କଥା । ସୂକ୍ଷ୍ମ ଶରୀର, ବାସ୍ତବ ଶରୀର—ଏ ସବୁ ବିଦ୍ୱାନମାନଙ୍କର ଗୋଲକ ଧନ୍ଦା । ହଁ, ଆପଣ ଅହଲ୍ୟାକୁ ଧୈର୍ଯ୍ୟ ଦେବେ । ମନୋରମା ପାଇଁ ମୁଁ ନିଶ୍ଚିନ୍ତ । ସେ ଏପରି ଅବସ୍ଥାରେ ଅଧୈର୍ଯ୍ୟ ହେବ ନାହିଁ । ଅହଲ୍ୟା କିନ୍ତୁ ଏ ବଜ୍ରାଘାତ ସହିପାରିବ ନାହିଁ ।

ମୁନସୀଜୀ ଭୟଭୀତ ହୋଇ ରାଜାସାହେବଙ୍କ ହାତକୁ ଧରି ପକାଇଲେ । ଛଳଛଳ ଆଖିରେ କହିଲେ—ଆପଣ ଏତେ ନିରାଶ ହୁଅନ୍ତୁ ନାହିଁ । ସବୁ କୁଶଳ ହେବ ।

ରାଜା—କ'ଣ କରିବ, ମୋ ହୃଦୟଟା ଆପଣଙ୍କ ହୃଦୟପରି ନୁହେଁ । ଶଙ୍ଖଧରକୁ ଚାହିଁଲେ ମୋର ରକ୍ତ ବରଫ ପାଲଟି ଯାଉଛି । ସେ ମୋର ନାତି ନୁହେଁ, ଶତ୍ରୁ । ବରଂ ନିଃସନ୍ତାନ ଥିଲେ ଖୁବ ଭଲ ହୋଇଥାଆନ୍ତା ।

ରାଜାସାହେବ ବାହାରକୁ ଚାଲିଲେ । ମୁନସୀଜୀ ତାଙ୍କ ସହିତ କାର୍ ପର୍ଯ୍ୟନ୍ତ ଆସିଲେ । ଭୟରେ ପାଟିରୁ କଥା ବାହାରୁ ନ ଥିଲା । ରାଜାସାହେବ କାର୍‌ରେ ବସି କହିଲେ—ଯାହା କହିଲି ମନେ ରଖିବେ ।

ମୁନସୀଜୀ ମୂର୍ତ୍ତି ଭଳି ଠିଆହୋଇ ରହିଲେ । କାର୍ ଚାଲିଗଲା ।

( ୪୩ )

ଶଙ୍ଖଧର ରାଜକୁମାର ହୋଇ ମଧ୍ୟ ତପସ୍ୱୀ । ବିଳାସ ବ୍ୟସନର ସ୍ପୃହା ନାହିଁ । ଅତ୍ୟନ୍ତ ଖୁସିବାସିଆ କଥାବାର୍ତ୍ତା । ଅହଲ୍ୟା ଏବଂ ମନୋରମା ପାଖରେ ଘଣ୍ଟା ଘଣ୍ଟା ଧରି ବସି ଗପସପ କରେ । ଜେଜେବାପା ଓ ଜେଜେମା ପାଖକୁ ଯାଇ ହସପେଡ଼ି ଖୋଲିଦିଏ । ବୁଲାବୁଲି କରିବା, ଶିକାର କରିବାକୁ ଅତ୍ୟନ୍ତ ଘୃଣା କରେ । ଏକାନ୍ତରେ ବସି ଅନେକ ସମୟରେ ଗଭୀର ଚିନ୍ତାମଗ୍ନ ହୋଇଯାଏ । ବାରମ୍ବାର ତାର ଇଚ୍ଛାହୁଏ ପିତାଙ୍କ ପାଖକୁ ଚାଲିଯିବା ପାଇଁ । କିନ୍ତୁ ଘରେ ଅନ୍ୟ ସମସ୍ତଙ୍କର ଦୁଃଖକଥା ବିଚାର କରି ଯିବାକୁ ସାହସ କରେ ନାହିଁ । ପିତା ଯେତେବେଳେ ସେବାବ୍ରତ ଧାରଣ କରିଛନ୍ତି, ସେ କେଉଁ ହୃଦୟରେ ରାଜସୁଖ ଭୋଗ କରିବ ? ନରମ ଶେଯ, ତକିଆ ତାକୁ କଣ୍ଟକ ପରି ବୋଧହୁଏ । ସ୍ୱାଦିଷ୍ଟ ଭୋଜନ ଜହର ସମ ମନ କରେ ।

ସବୁଠାରୁ ବଡ଼ କଥା ଏହି ଯେ, ସେ କମଳାଠାରୁ ସର୍ବଦା ଦୂରରେ ରହେ । ଯୁବତୀ ଦେବପ୍ରିୟା ଏବେ ରାଣୀ କମଳା ନୁହଁନ୍ତି । ରମଣୀ ହୃଦୟରେ ଯେଉଁସବୁ କାମନା ଲହରି ମାରେ, ସେ ସବୁ ତାଙ୍କଠାରେ ଉଦୟ ହୋଇଯାଇଛି । ସେ ପ୍ରତିଦିନ ନୂତନ ନୂତନ ବେଶଭୂଷା, ରୂପରଙ୍ଗରେ ଶଙ୍ଖଧର ପାଖକୁ ଆସେ । ସେ ଅସିଲାବେଳେ ଶଙ୍ଖଧର କୌଣସି ଜରୁରୀ କାମରେ ବାହାରକୁ ଚାଲିଯାଏ କିମ୍ବା କୌଣସି ଧାର୍ମିକ ପ୍ରସଙ୍ଗ ଉତ୍ଥାପନ କରେ । ରାତିରେ ଶଙ୍ଖଧର କିଛି ନା କିଛି ପଢ଼େ କିମ୍ବା ଲେଖେ । କେବେ କେବେ ସାରା ରାତି ପଢ଼ିବାରେ କଟିଯାଏ । ଦେବପ୍ରିୟା ତାକୁ ଚାହିଁ ଚାହିଁ ଶୋଇପଡ଼େ । ବିଚାରି

ହଉଚ—ଦେବପ୍ରିୟାଙ୍କୁ ପୂର୍ବଜନ୍ମର ସବୁକଥା ଜଣା । ତାପ୍ସୁଯାନର ଦୃଶ୍ୟ ମଧ୍ୟ ମନେଅଛି । ସେ ଭାବୁଛି—ଏବେ ସିନା ସେମିତ ହୋଇଥିଲା । କଣ ବାରମ୍ବାର ସେହିପରି ହେବ ! ସେ ନିଜର ବୈଧବ୍ୟ କେତେ ସଂଯମରେ କଟେଇଚ । ପୂର୍ବକର୍ମର ପ୍ରାୟଶ୍ଚିତ୍ତ କଣ ତହିଁରେ ପୂର୍ଣ୍ଣ ହୋଇନାହିଁ !

ସମୟ ଅର୍ଦ୍ଧରାତ୍ର । ଚତୁର୍ଦିଗରେ ଗୃହଲକ୍ଷ୍ମୀ ବଳ୍ଲୁରତ୍ନ, କମଳା (ଦେବପ୍ରିୟା) ଆଜି ନିଜର ବେଶଭୂଷା ଓ ଅଲଙ୍କାର ସବୁ ଉତାରି ଦେଇଛି । କେଶ ମୁକୁଳିତ । ବିୟୋଗିନୀ ବେଶରେ ପତିଙ୍କଠାରୁ ପ୍ରେମ ଭିକ୍ଷା ପାଇଁ ଯାଉଛି । ପ୍ରଥମେ ଯାଇ ଦର୍ପଣ ଆଗରେ ଠିଆହେଲା । ଦେବପ୍ରିୟା ନିଜସ୍ୱ ଗର୍ବରେ ହସିଲା । ତା'ପରେ କୋଠରୀ ବାହାରକୁ ଆସିଲା ।

ସହସା ତା'ର ଅନ୍ତଃକରଣରେ ଶୁଣାଗଲା—'ସର୍ବନାଶ' । ଦେବପ୍ରିୟାର ପଦକ୍ଷେପ ବନ୍ଦ ହୋଇଗଲା । ଦେହ ଶିଥିଳ ପଡ଼ିଗଲା । ସେ ଧାଡ଼ଦୃଷ୍ଟିରେ ଏଣେତେଣେ ଚାହିଁ ପୁଣି ଆଗକୁ ଚାଲିଲା ।

ସେହି ସମୟରେ ବାୟୁର ବେଗ ବୃଦ୍ଧି ପାଇଲା । କୋଠରୀ ଭିତରେ କୌଣସି ପଦାର୍ଥ 'ଖଟ୍‌ଖଟ୍' ଶବ୍ଦ କରି ତଳେ ପଡ଼ିଗଲା । ଦେବପ୍ରିୟା କୋଠରୀ ଭିତରକୁ ଯାଇ ଦେଖିଲା । ଶଙ୍ଖଧରର ତୈଳଚିତ୍ର ଝଙ୍କ ମଲମଲ୍ ଚଟାଣ ଉପରେ ପଡ଼ି ଖଣ୍ଡଖଣ୍ଡ ହୋଇଯାଉଛି । ଦେବପ୍ରିୟା ଅନ୍ତଃକରଣରେ ପୁଣି ସେହି ଶବ୍ଦ ଶୁଣିଲା—'ସର୍ବନାଶ' । ତା'ର ଲୋମ ଟାଙ୍କୁରି ଉଠିଲା । ପୁଷ୍ପସମ କୋମଳ ଶରୀର ଥାଉଁଳି ପଡ଼ିଲା । ମୂହୂର୍ତ୍ତେ ଠିଆହୋଇ ପୁଣି ଚାଲିଲା ।

ଶଙ୍ଖଧର ଶୟନକକ୍ଷରେ ଚିନ୍ତାମଗ୍ନ ଅବସ୍ଥାରେ ବସିଥିଲା । ସେ ମନେମନେ ଭାବୁଥିଲା—ମୁଁ ବାରମ୍ବାର ଜନ୍ମ ହେବାର କାରଣ କଣ ? ମୋ ଜୀବନର ଉଦ୍ଦେଶ୍ୟ କଣ ଯୁବକ ଅବସ୍ଥାକୁ ଆସି ମରିଯିବା ? ମୋ ଜୀବନର ଅଭିଳାଷ କଣ ପୂର୍ଣ୍ଣ ହେବ ନାହିଁ ? ସଂସାରର ଅନ୍ୟ ସମସ୍ତେ ଯଦି ଭୋଗବିଳାସ ବର୍ଜନ କରୁନାହାନ୍ତି, ମୁଁ କାହିଁକି କରିବି ? ପରୀକ୍ଷା-ଅଗ୍ନିରେ ଜଳିବା କଣ ମୋ ଜୀବନର ଧ୍ୟେୟ ?

ଦେବପ୍ରିୟା ଆସି ଦୁଆର ମୁହଁରେ ଠିଆହେଲା ।

ଶଙ୍ଖଧର ତାର ଅଳଙ୍କାର ବର୍ଜନ ରୂପ ଦେଖି ଉନ୍ମତ୍ତ ହୋଇଗଲା । ଅଳଙ୍କାର ତ୍ୟାଗକରି ସେ ମୋହିନୀ ଦେଖାଯାଉଛି ।

ଦେବପ୍ରିୟା ଦୁଆର ମୁହଁରେ ଠିଆହୋଇ କହିଲା—'ଭିତରକୁ ଯିବି' ?

ଶଙ୍ଖଧର କିଛି କହିପାରିଲାନି ।

ଦେବପ୍ରିୟା ପୁଣି କହିଲା—ଭିତରକୁ ଆସିପାରେ କି ?

ଶଙ୍ଖଧର ଦୁଆର ମୁହଁକୁ ଯାଇ ହାତଧରି ଭିତରକୁ ନେଇଆସିଲା । ଏହି ସମୟରେ ପ୍ରଚଣ୍ଡ ପବନ ହେଲା । ବିଦ୍ୟୁତ୍ ଆଲୋକ ଲିଭିଗଲା, କୋଠରୀରେ ଅନ୍ଧକାର ଘୋଟିଗଲା ।

ଦେବପ୍ରିୟା ଲଜ୍ଜିତା ହୋଇ କହିଲା—ମୋତେ କ୍ଷମାକର ।

ସିତାର ଉପରେ ଆଘାତ ଲାଗିଲେ ତାରଗୁଡ଼ିକ ଯେପରି ଗୁଞ୍ଜରଣ ସୃଷ୍ଟିକରେ, ଶଙ୍ଖଧରର ସ୍ନାୟୁମଣ୍ଡଳ ସେହିପରି ଥରଉଠିଲା । ରମଣୀର ସ୍ପର୍ଶରେ ତାର ଦେହ ରୋମାଞ୍ଚିତ ହୋଇ ହେଲା । ମନକୁ ସମ୍ଭାଳି ରଖି କହିଲା—ଘରକୁ ଆସିଥିବା ଲକ୍ଷ୍ମୀଙ୍କୁ କିଏ ଛାଡ଼େ ?

ଦେବପ୍ରିୟା—ଅନିମନ୍ତ୍ରିତ ଅତିଥି ବିନା ଅଭ୍ୟର୍ଥନାରେ ଯାଇପାରେ ।

ଶଙ୍ଖଧରର ବିଚିତ୍ର ଅବସ୍ଥା । ଭିତରେ ଭୟ, ବାହାରେ ଇଚ୍ଛା । ମନ ପଛକୁ ହଟୁଥିଲା, ପାଦ ଆଗକୁ ବଢ଼ୁଥିଲା । ଏହି ସମୟରେ ବିଦ୍ୟୁତ୍ ଆଲୋକ ଆସିଗଲା । ସେ କହିଲା—ଲକ୍ଷ୍ମୀଙ୍କୁ ନ ଡାକିଲେ ଆସନ୍ତି ନାହିଁ ପ୍ରିୟେ ! ଉପାସକର ହୃଦୟ ଅବିରତ ଶବ୍ଦରେ ସେମାନଙ୍କ ତାଙ୍କର ଆଗମନକୁ ଗୁହାରୁଥାଏ । ସେ ମୁହଁରେ କିଛି ନ କହୁ ପଛେ । ତାର ମନରୁ ଆହ୍ୱାନର ଶବ୍ଦ ସର୍ବଦା ନିର୍ଗତ ହେଉଥାଏ ।

ଦେବପ୍ରିୟାର ଚିରକ୍ଷୁଧିତ ପ୍ରେମାକାଂକ୍ଷା ଆତୁର ହୋଇ ଉଠିଲା । ଅନନ୍ତ ବିଚ୍ଛେଦରେ ଛଟପଟ ହେଉଥିବା ହୃଦୟ ଆଲିଙ୍ଗନ ପାଇଁ ଚିତ୍କାର କରିବାକୁ ଲାଗିଲା । ସେ ନିଜର ମସ୍ତକ ଶଙ୍ଖଧରର ବକ୍ଷ ସ୍ଥଳରେ ରଖି ଉଭୟ ବାହୁ ଗଳାରେ ଛନ୍ଦି ଦେଲା । କେତେ କୋମଳ, କେତେ ମଧୁର, କେତେ ଅନୁରକ୍ତ ସ୍ପର୍ଶ ! ଶଙ୍ଖଧର ପ୍ରେମୋଲ୍ଲାସରେ ବିଭୋର ହୋଇଗଲା । ପୃଥିବୀ ଥରୁଛି ଏବଂ ଆକାଶ ଉଡ଼ିଯାଉଥିବା ଭଳି ତାକୁ ଜଣାପଡ଼ିଲା । ବଜ୍ର ଯେପରି ତା'ର ମୁଣ୍ଡ ଉପରେ ପଡ଼ିଗଲା । ସେ ମୂର୍ଚ୍ଛିତ ହୋଇ ପଡ଼ିଲା ।

ଦେବପ୍ରିୟାର ଅନ୍ତଃକରଣରେ ପୁଣି ଆବାଜ ଉଠିଲା—'ସର୍ବନାଶ !' ସର୍ବନାଶ ! ସର୍ବନାଶ !! ଭୟାର୍ତ୍ତ କଣ୍ଠରେ କହିଲା—ପ୍ରିୟତମ, ତୁମର କ'ଣ ହେଲା ? ହାୟ ! ତୁମେ କ'ଣ ଏଭଳି ହୋଇଯାଉଛ ? ମୁଁ ଯଦି ଜାଣିଥାଆନ୍ତି ତୁମର ଏଭଳି ହେବ ବୋଲି, ତେବେ ଅନନ୍ତକାଳ ପର୍ଯ୍ୟନ୍ତ ବିୟୋଗାଗ୍ନିରେ ଜଳି ଥାଆନ୍ତି ପଛେ, ତୁମ ପାଖକୁ ଆସି ନ ଥାନ୍ତି, ପ୍ରିୟତମ, ଆଖି ଖୋଲ, ତୁମର କମଳା କାନ୍ଦୁଛି ପରା !

ଶଙ୍ଖଧର ଆଖି ଖୋଲିଲା । ଆଖିରେ ଅକଥନୀୟ ଶୋକ, ଅସହନୀୟ ବେଦନା ଏବଂ ଅପାର ତୃଷ୍ଣା ।

ଅତ୍ୟନ୍ତ କ୍ଷୀଣ ସ୍ୱରରେ କହିଲା—ପ୍ରିୟେ, ପୁଣି ଆମର ସାକ୍ଷାତ ହେବ । ଏହି ଲୀଳା, ଯେଉଁଦିନ ପ୍ରେମ ବାସନାଶୂନ୍ୟ ହେବ, ସେହିଦିନ ସମାପ୍ତ ହେବ ।

ଗୃହିଣୀ ଏବେ ମଧ୍ୟ ବିଚ୍ଛୁରିତ ହୋଇଥିଲା ! ବୃକ୍ଷ ତଳେ ଏବେ ମଧ୍ୟ ଗୃହିଣୀର ଛାଇ ବିସ୍ତୃତ ହୋଇଥିଲା । ଜଳରେ ଏବେ ବି ଗୃହିଣୀ ନୃତ୍ୟ କରୁଥିଲା । ସଙ୍ଗୀତମୟୀ ବାୟୁ ଏବେ ମଧ୍ୟ ପ୍ରବାହିତ ହେଉଥିଲା । କିନ୍ତୁ ଦେବପ୍ରିୟା ପାଇଁ ଚତୁର୍ଦ୍ଦିଗ ଅନ୍ଧକାର ଏବଂ ଶୂନ୍ୟ ହୋଇ ଯାଇଥିଲା ।

ସହସା ରାଜା ବିଶାଳ ସିଂହ ଆସି ଦୁଆରେ ଛିଡ଼ା ହୋଇଗଲେ ।

ଦେବପ୍ରିୟା କାନ୍ଦି କାନ୍ଦି କହିଲ—ହାୟ ନାଥ ! ତୁମେ ମୋତେ ଛାଡ଼ି କୁଆଡ଼େ ଚାଲିଗଲ ? କ'ଣ ଏଇ କ୍ଷଣିକ ମିଳନ ପାଇଁ ମୋତେ ହର୍ଷପୁରରୁ ଆଣିଥିଲ ?

ରାଜାସାହେବ ଏ କରୁଣ ବିଳାପ ଶୁଣି ସ୍ତବ୍ଧ ହୋଇଗଲେ । ପାଦ ତଳୁ ତାଙ୍କର ଭୂମି ଅପସରିଗଲା । ସେ ବିଧିକୁ ପରାସ୍ତ କରିବା ପାଇଁ ସଙ୍କଳ୍ପ କରିଥିଲେ । କିନ୍ତୁ ବିଧି ତାଙ୍କୁ ପରାସ୍ତ କରିଦେଲା । ସେ ନିଜ ଆଖିରେ ଯାହାକିଛି ଦେଖିବାକୁ ଚାହୁଁଥିଲେ—ଏବେ ତାଙ୍କୁ ଦେଖିବାକୁ ପଡ଼ିଲା । ଆଜି ସେ ମୃନ୍ମୟୀ ବିଜୟଧରଙ୍କ ପାଖକୁ ଯାଇଥିଲେ । ହାୟ ! କିଏ ଜାଣିଥିଲା ବିଧାତା ଏତେ ଶୀଘ୍ର ସର୍ବନାଶ କରିଦେବ !

ରାଜାସାହେବ କୋଠରୀ ଭିତରକୁ ଯାଇ ଶଙ୍ଖଧର ମୁହଁକୁ ଚାହିଁଲେ । ତାଙ୍କ ଜୀବନାଧାର ନିର୍ଜୀବ ହୋଇ ପଡ଼ିଥିଲା । ଏହି ଦୃଶ୍ୟ ଆଜିକୁ ପଚିଶ ବର୍ଷ ପୂର୍ବେ ସେ ଦେଖିଥିଲେ ।

ତାଙ୍କ ମୁହଁରୁ ବିଳାପର ଏକ ଶବ୍ଦ ମଧ୍ୟ ବାହାରିଲାନାହିଁ । ଆଖିରୁ ବିନ୍ଦୁଏ ଅଶ୍ରୁ ମଧ୍ୟ ନିର୍ଗତ ହେଲା ନାହିଁ । ଠିଆ ହେବା ସଙ୍ଗେ ସଙ୍ଗେ କମ୍ପିତ ହୋଇ ଭୂଇଁରେ ପଡ଼ିଗଲେ ଏବଂ ପ୍ରାଣବାୟୁ ଉଡ଼ିଗଲା ।

( ୫୪ )

ଶଙ୍ଖଧର ସାଇଗଞ୍ଜରୁ ଚାଲିଯିବା ପରେ ଚକ୍ରଧରଙ୍କୁ ସଂସାରଟା ଶୂନ୍ୟ ଜଣାପଡ଼ିଲା । ଘରେ ବସିବାରେ ତାଙ୍କର ଉତ୍ସାହ ଲୋପପାଇଗଲା । ସେହି ସୁନ୍ଦର ଯୁବକର ରୂପ ଆଖି ଆଗରେ ନାଚି ଉଠିଲା । ତା'ର କଥା କର୍ଣ୍ଣରେ ଗୁଞ୍ଜରିତ ହେଲା । ଖାଇବାକୁ ବସିଲେ ଗଣ୍ଡା ପାଟିକୁ ଗଲା ନାହିଁ । ସବୁବେଳେ କିଛି ହଜେଇଲା ଭଳି ମନେ ହେଲା । ତା'ର ପାଖକୁ ଚାଲିଯିବା ପାଇଁ ବାରମ୍ବାର ମନ ହେଲା । ସାଇଗଞ୍ଜରୁ ଯିବା ପାଇଁ ଏବେ ତାଙ୍କର ମନ ହେଉ ନ ଥିଲା । ଗୋଟିଏ ସ୍ଥାନରେ ଏତେଦିନ ପର୍ଯ୍ୟନ୍ତ ସେ କେଉଁଠାରେ ରହି ନ ଥିଲେ । ଶଙ୍ଖଧର ଯେଉଁ କମ୍ବଳ ଉପରେ ଶୋଉଥିଲା, ସେ କମ୍ବଳକୁ ଏବେ ପର୍ଯ୍ୟନ୍ତ ଝାଡ଼ିଝୁଡ଼ି ଚଉତ ରଖୁଥିଲେ । ଶଙ୍ଖଧର ନିଜ ଖଞ୍ଜଣି ଏଠାରେ ଛାଡ଼ି ଯାଇଥିଲା । ଚକ୍ରଧରଙ୍କ ପାଇଁ ଏପରି ବହୁମୂଲ୍ୟ ବସ୍ତୁ ଏବେ ସଂସାରରେ କିଛି ନାହିଁ । ତାର ପୁରୁଣା ଧୋତି, ଶସ୍ତା ସାର୍ଟ ମୁଣ୍ଡତଳେ ରଖି ଶୋଉଥିଲେ । ରମଣୀ ନିଜର ବିବାହ ପାଟକୁ ମଧ୍ୟ ଏତେ ଯତ୍ନ କରୁନଥିବେ ।

ସଂଧ୍ୟା ହୋଇଯାଇଥିଲା । ଚକ୍ରଧର ମନ୍ଦିର ମଣ୍ଡପରେ ବସି ଯିବାର ଯୋଗାଡ଼ କରୁଥିଲେ । ଆଉ ଏଠାରେ ରହିହେବନାହିଁ । ସେହି ଦେବକୁମାରକୁ ଦେଖିବା ପାଇଁ ମନ ଭାରି ବିକଳ ହେଲାଣି ?

ଗାଁ ରେ ଧୂଳି ଅଛି ଚନ୍ଦ୍ରଲା—ମହାରାଜ, ଆପଣ ବୃଥାରେ ଗଣ୍ଡିଲ ବାନ୍ଧୁଛନ୍ତି । ଆମର ଆକର୍ଷଣ ଆପଣଙ୍କୁ ଅଧବାଟରୁ ଭିଡ଼ିଆଣିବ ।

ଚକ୍ରଧର—ନାହିଁ ଭାଇ, ମୋତେ ଯିବାକୁ ଦିଅ । ବହୁତ ଦିନ ହୋଇଗଲା ।

ଚୌଧୁରୀପୁଅ ତଳେ ଥୁଆ ହୋଇଥିବା ଖଞ୍ଜଣି ଧରି ବଜେଇଲା । ଚକ୍ରଧର ତା' ହାତରୁ ଖଞ୍ଜଣି ଛଡ଼େଇ ନେଇ କହିଲେ—ଖଞ୍ଜଣି ଭାଙ୍ଗି ଯିବ ପୁଅ । ମୋତେ ଦେଇଦେ ।

ପିଲଟା କାନ୍ଦ କାନ୍ଦ କହିଲା—ମୁଁ ଖଞ୍ଜଣି ନେବ ।

ଚୌଧୁରୀ ଚକ୍ରଧରଙ୍କ ଆଡ଼କୁ ଦେଖାଇ କହିଲା—ବାବୁଙ୍କୁ ମୁଣ୍ଡିଆ ମାରେ, ଖଞ୍ଜଣି ନବୁ ।

ଚକ୍ରଧର—ନାହିଁ ଭାଇ, ଖଞ୍ଜଣି ଦେବିନାହିଁ । ମୋ ପାଖରେ ଥିବା ଯୁବକର ଏ ଖଞ୍ଜଣି । ଅନ୍ୟର ଜିନିଷ ଦେବି କିପରି !

ଗାଁର ଅନେକ ଲୋକ ଜମା ହୋଇଗଲେ । ଚକ୍ରଧର ବିଦାୟ ନେଲେ । କେତେ ଲୋକ ମାଇଲିଏ ଯାଏଁ ତାଙ୍କ ସାଙ୍ଗରେ ଆସିଲେ ।

କିନ୍ତୁ ସକାଳୁ ଆସି ଲୋକେ ଦେଖିଲେ ବାବା ଭଗବାନ ଦାସ ମନ୍ଦିର ଚଉତରା ଓଲାଉଛନ୍ତି । ଜଣେ ବ୍ୟକ୍ତି ପଚାରିଲେ—ଆମେ କହୁଥିଲୁ ମହାରାଜ ଯାଆନ୍ତୁନାହିଁ । କିନ୍ତୁ ଆପଣ ଶୁଣିଲେ ନାହିଁ । ଶେଷରେ ଆମ ଭକ୍ତି ଆପଣଙ୍କୁ ଭିଡ଼ି ଆଣିଲା ।

ଚକ୍ରଧର—ଆଉ କିଛି ଦିନ ଏଠାର ଅନ୍ନଜଳ ଗ୍ରହଣ କରିବାକୁ ଅଛି । ପ୍ରକୃତରେ ଏ ଗାଆଁର ମୋହ ଛାଡ଼ି ହେଉନାହିଁ ।

ଚକ୍ରଧର ମନେ ମନେ ଠିକ୍ କଲେ ଆଉ ଶଙ୍ଖଧରକୁ ଦେଖିବାର ଇଚ୍ଛା କରିବ ନାହିଁ । ସେ ଘରେ ପହଞ୍ଚିଗଲା ଏବଂ ସମ୍ଭବତଃ ତାର ଅଭିଷେକ ହୋଇସରିବଣି । ସେ ଆଉ ମୋତେ ମନେ ପକାଉ ନ ଥିବ । ମୁଁ ବୃଥାରେ ତା' ପାଇଁ ଏତେ ଚିନ୍ତିତ । ସମସ୍ତଙ୍କର ତ ପୁଅ ଅଛନ୍ତି, କିନ୍ତୁ ମୋ ଭଳି ଏତେ କେହି ଗୋଡ଼ୋଉନାହାନ୍ତି ।

ପୁଣି ଭାବିଲେ—ଥରେ ଯାଇ ଦେଖି ଆସିଲେ ଛାଡ଼ି କ'ଣ ! କେହି ତ ମୋତେ ବାନ୍ଧି ରଖିବେନାହିଁ । ସେତେବେଳେ ଯଦି କେହି ଅଟକେଇ ପାରିଲେ ନାହିଁ, ଆଜି କାହିଁକି କିଏ ରୋକିବ ? ଟିକିଏ ଦେଖିବି—କେମିତି ଶାସନ କରୁଛି । ମୋ ଉପଦେଶର କିଛି ଫଳ ହେଲା କି ସେହି ଚକ୍ରବ୍ୟୂହରେ ପଡ଼ିଗଲା । ମାନବ ଚରିତ୍ର ଏତେ ଜଟିଳ ଯେ, ନିତାନ୍ତ ଖରାପ ବ୍ୟକ୍ତି ଦେବତା ହୋଇଯାଏ—ଉନ୍ନତ ବ୍ୟକ୍ତି ବି ପଶୁ ପାଲଟିଯାଏ । ମୁଁ ତା' ପାଖକୁ ଯିବି କାହିଁକି—ରଙ୍ଗ ଢଙ୍ଗତ ଲୋକଙ୍କ କଥାରୁ ଜଣାପଡ଼ିଯିବ ।

ଏହା ଭାବି ଭାବି ଚକ୍ରଧର ଶୋଇପଡ଼ିଲେ । ରାତିରେ ସେ ଏକ ଭୟଙ୍କର ସ୍ୱପ୍ନ ଦେଖିଲେ । ଶଙ୍ଖଧର ଗୋଟିଏ ନଦୀ କୂଳରେ ତାଙ୍କ ପାଖରେ ବସିଛି । ହଠାତ୍ ଦୂରରୁ ଗୋଟାଏ ନୌକା ଆସିବାର ଦେଖାଗଲା । ତହିଁରୁ ମନ୍ନାସିଂହ ଓହ୍ଲାଇଲେ । ସେ ହସି ହସି କହିଲା—ବାବୁ,

ଇଏ ଚମତ୍କାର ନା ! ମୁଁ ଅନେକ ଦିନରୁ ଖୋଜୁଛୁ । ବୋଧହୁଏ ବାବା ଡାକୁଛନ୍ତି ।

ଶଙ୍ଖଧର ଉଠି ମନ୍ନାସିଂହ ପାଖରେ ଗଲେ । ଉଭୟ ଯାଇ ନୌକାରେ ବସିଲେ । ମନ୍ନାସିଂହ କାତ ମାରିଲା । ନାଆ କିଛି ଦୂର ଯାଇ ଗୋଟାଏ ଭଉଁରୀ ଭିତରେ ପଡ଼ିଗଲା । ଶଙ୍ଖଧର ଦୁଇ ହାତ ଉଠାଇ ତାଙ୍କୁ ଡାକ ଛାଡ଼ିଲା । ସେ କୂଳେ କୂଳେ ଦୌଡ଼ିଲେ । କିନ୍ତୁ ପାଖରେ ପହଞ୍ଚିବା ପୂର୍ବରୁ ନାଆଟା ବୁଡ଼ିଗଲା । ପର ମୁହୂର୍ତ୍ତରେ ନାଆଟା ଉପରକୁ ଉଠିଲା । ମନ୍ନାସିଂହ ପୂର୍ବବତ୍ ଠିଆ ହୋଇଥିଲା । କିନ୍ତୁ ଶଙ୍ଖଧରର ପତ୍ତା ନ ଥିଲା ।

ଚକ୍ରଧର ଖୁବ୍ ଜୋର୍‌ରେ ଚତ୍କାର କରି ଉଠିପଡ଼ିଲେ । ତାଙ୍କର ହୃଦୟ ଥରି ଉଠିଲା । —ହେ ଈଶ୍ୱର ! ଏହା ସ୍ୱପ୍ନ ନା ସତ୍ୟ ! ସେହି ମୁହୂର୍ତ୍ତରେ ଉଠିଲେ । ଗଣ୍ଠିଲି କାନ୍ଧେଇ ଦୀର୍ଘ ବାଟ ପଥୁରିଆ ଭୂଇଁରେ ଚାଲିଲେ । ସକାଳୁ ରେଳ ଷ୍ଟେସନରେ ପହଞ୍ଚିଲେ । ଗାଡ଼ି ଆସିଲା, ତହିଁରେ ଯାଇ ବସିଲେ । ଗାଡ଼ିରେ କିଏ ବସିଛି—ଦିପହରି କେତେବେଳେ ହେଲା, ସଂଧ୍ୟା କେତେବେଳେ ଗଲା—ଏ ସମ୍ପର୍କରେ ଟିକିଏ କିଛି ଜାଣିପାରିଲେ ନାହିଁ । ଏ ଗାଡ଼ିରୁ ଓହ୍ଲାଇ ସେ ଗାଡ଼ିରେ ବସିବା, ଠିକ୍ ସମୟରେ ଷ୍ଟେସନରେ ଓହ୍ଲେଇବା ଇତ୍ୟାଦି ଠିକ୍ ଠିକ୍ କଲେ । ଅଭ୍ୟାସ ଅନେକ ସମୟରେ ଚେତନାର ସ୍ଥାନ ଦଖଲ କରିଥାଏ ।

ତୃତୀୟ ଦିନ ସକାଳେ ଗାଡ଼ି କାଶୀରେ ପହଞ୍ଚିଲା । ଗାଡ଼ି ଗଙ୍ଗାପୋଲ ପାରି ହେଲାବେଳେ ଚକ୍ରଧରଙ୍କର ଚେତନା ଜାଗ୍ରତ ହେଲା । ଗଙ୍ଗାର ବାମପାଖେ ବିଶାଳ ଶ୍ୟାମଳ କ୍ଷେତ୍ର ଏବଂ ଅନ୍ୟ ପାଖରେ କାଶୀର ଗଗନଚୁମ୍ବୀ ଅଟ୍ଟାଳିକା ଓ ମନ୍ଦିର । ଆଜି ବହୁ ଦିନ ପରେ ଏହି ଚିରପରିଚିତ ଦୃଶ୍ୟ ଦେଖି ଚକ୍ରଧର ଆନନ୍ଦରେ ଅଧୀର ହୋଇପଡ଼ିଲେ । ଭକ୍ତିର ଉଚ୍ଛ୍ୱାସ ମନରେ ଜାଗ୍ରତ ହେଲା । ଗଙ୍ଗାସ୍ନାନ ପାଇଁ ପ୍ରବଳ ଇଚ୍ଛା ହେଲା । ଏ ଇଚ୍ଛାକୁ ସେ କୌଣସି ପ୍ରକାରେ ଦମନ କରିପାରିଲେ ନାହିଁ ।

ଷ୍ଟେସନରେ ଅନେକ ପୁରୁଣା ବନ୍ଧୁଙ୍କୁ ଦେଖିଲେ । ସେମାନେ ଚକ୍ରଧରଙ୍କୁ ଦେଖି କୁଶଳ ପଚାରି ଚାଲିଗଲେ । କାହାରିକୁ ଫୁରୁସତ ନାହିଁ ।

ସେ ଗୋଟିଏ ଟାଙ୍ଗାରେ ବସି ସ୍ନାନ କରିବାକୁ ଗଲେ । କିଛି ବାଟ ଯାଇଛନ୍ତି, ଗୁରୁସେବକସିଂହ କାର୍‌ରେ ବସି ଆସୁଥିବାର ଦେଖିଲେ । ଚକ୍ରଧର ଟାଙ୍ଗାବାଲାକୁ ଅଟକାଇଲେ । ଗୁରୁସେବକ ମଧ୍ୟ କାର୍ ଅଟକାଇ ପଚାରିଲେ—କ'ଣ ଏବେ ଆସୁଛ ?

ଚକ୍ରଧର—ଆଜ୍ଞା ହଁ, ଚାଲିଆସିଲି ।

ଗୁରୁସେବକ କାର୍ ଛାଡ଼ି ଦେଲେ । ତାଙ୍କର ଏତେ ରୁକ୍ଷତା ଚକ୍ରଧର ଆଶା କରି ନ ଥିଲେ । ମନରେ ବଡ଼ କଷ୍ଟ ହେଲା । ଦଶାଶ୍ୱମେଧ ଘାଟରେ ପହଞ୍ଚି ସ୍ନାନ କଲେ । ସବୁ ପଣ୍ଡା ଚିହ୍ନନ୍ତି । ଆଜି କେହି ତାଙ୍କୁ ଆଗ୍ରହ ଦେଖାଉ ନାହାନ୍ତି । ସ୍ନାନ ସାରି ରାଜମହଲ ଆଡ଼କୁ ଚାଲିଲେ । ଉଆସ ଯେତିକି ନିକଟତର ହେଉଥିଲା, ତାଙ୍କର ଆଶଙ୍କିତ ହୃଦୟ ସେତିକି ଅସ୍ଥିର ହୋଇପଡ଼ୁଥିଲା ।

ଟାଙ୍ଗା ସିଂହ ଦୁଆରେ ପହଞ୍ଚିଲା । ବ୍ରଜ୍ୟର ପତାକା ମହଲ ଉପରେ ଅଧାରେ ଉଡ଼ୁଥିଲା । ଚକ୍ରଧରଙ୍କର ଛାତି ଦାବିକିନା ହୋଇଗଲା । ଏତେ ଯେପରି ଛାତିକି କିଏ ହାତୁଡ଼ିରେ ପିଟୁଛି ।

ଟାଙ୍ଗା ଦେଖି ଜଣେ ବୁଢ଼ା ଦରଓ୍ୱାନ ଆସି ଚକ୍ରଧରଙ୍କୁ ଧ୍ୟାନରେ ସହ ଦେଖି ଭିତରକୁ ଦୌଡ଼ିଲା । ମୁହୂର୍ତ୍ତିକ ମଧ୍ୟରେ ମହଲରେ ହାହାକାର ପଡ଼ିଗଲା ।

କେତେ ଜଣ ପଚାରିଲେ—ବିପତ୍ତି କ'ଣ ? କିନ୍ତୁ କେହି ନିକଟକୁ ଆସୁନାହାନ୍ତି, ଦୂରରେ ସବୁ ମୁଣ୍ଡ ପୋତି ଠିଆ ହୋଇଛନ୍ତି । ଏ କିଏ ବାଡ଼ି ଭରି ଦେଇ ଆସୁଛନ୍ତି ! ଆରେ ! ଏ ତ ମୁନ୍‌ସୀ ବଜ୍ରଧର ! ଚକ୍ରଧର ଟାଙ୍ଗାରୁ ଓହ୍ଲାଇ ପିତାଙ୍କର ପାଦତଳେ ପଡ଼ିଗଲେ ।

ମୁନ୍‌ସୀ ତିରସ୍କାର କରି କହିଲେ—ଦଶ ଦିନ ଆଗରୁ ଆସିଥିଲେ ଅବା ପୁଅର ମୁହଁ ଟିକିଏ ଦେଖିଥାଆନ୍ତୁ । ସର୍ବନାଶ ହେବା ପରେ ଆସିଛୁ ! କ'ଣ ସେଠି ବସି ବସି ଏଇଆ ମନାସୁଥିଲୁ ।

ଚକ୍ରଧର କାନ୍ଦିଲେ ନାହିଁ, ଗମ୍ଭୀର ଏବଂ ସୁଦୃଢ଼ ଭାବରେ କହିଲେ—ଈଶ୍ୱରଙ୍କ ଇଚ୍ଛା । ମୋତେ କେହି ଚିଠି ଖଣ୍ଡେ ବି ଦେଲେନାହିଁ । କ'ଣ ବେମାର ହୋଇଥିଲା ?

ମୁନ୍‌ସୀ—ମୁଣ୍ଡବ୍ୟଥା ବି ହୋଇନାହିଁ । ରୋଗ କାହିଁ । ଅଘଟଣ ! ଭାଗ୍ୟ ! ରାତିରେ ଖାଇପିଇ ବହି ପଢ଼ୁଥିଲା । ବୋହୂ ସହିତ କଥାବାର୍ତ୍ତା ହେଉଥିବା ସମୟରେ ସ୍ୱର୍ଗବାସ କଲା । ଯିଏ ଶୁଣୁଛି ଜିଭ କାମୁଡ଼ୁଛି । ବିଚାରୀ ରାଜାସାହେବ ମଧ୍ୟ ସେଇଠି ଏ ଅବସ୍ଥା ଦେଖିବାର ଠିକ୍ ପରେ ପରେ ଦେହତ୍ୟାଗ କଲେ । ଈଶ୍ୱର ବଡ଼ ନିର୍ଦ୍ଦୟ ।

ଚକ୍ରଧର ଦୀର୍ଘଶ୍ୱାସ ପକାଇ କହିଲେ—ମୋ କର୍ମର ଫଳ ଇଏ—ଈଶ୍ୱରଙ୍କୁ ଦୋଷ ଦିଅନ୍ତୁନାହିଁ ।

ମୁନ୍‌ସୀ—ତୁ କ'ଣ କର୍ମ କରିଥିବୁ—ମୁଁ ତ କିଛି କରିନାହିଁ । ମୋତେ କାହିଁକି ଏତେ ଦଣ୍ଡ ଦେଲେ ! ମୁଁ ତ ଏଯାଏଁ ଈଶ୍ୱରଙ୍କୁ ଦୟାଳୁ ବୋଲି କହୁଥିଲି । କିନ୍ତୁ ଆଉ ତାଙ୍କ ପ୍ରତି ଭକ୍ତି ନାହିଁ । ଆଜିଯାଏଁ ଗୁଣ କୀର୍ତ୍ତନ କରି କରି ବୁଢ଼ା ହେଲି । ଏଇ କ'ଣ ତାର ଫଳ ! ଈଶ୍ୱରଙ୍କୁ ଦୋଷ ଦିଅନାହିଁ ବୋଲି କହୁଚ । ନିଜର କଲ୍ୟାଣ ପାଇଁ ତ ଈଶ୍ୱର ଭଜନ କରାଯାଏ, ନ ହେଲେ କାହିଁକି କାହାର ଜିଭ କୁଣ୍ଡେଇ ହେବ ! ପ୍ରତିଜ୍ଞା କଲି—ଆଜିଠାରୁ ଈଶ୍ୱର ଭଜନ ବନ୍ଦ । ସୀତାର, ସାରଙ୍ଗି, ପଖଜ, ହାରମୋନିୟମ ସବୁ ଭାଙ୍ଗିଦେଇ ଆସିଛି । ଏପରି ନିର୍ଦ୍ଦୟର ମହିମା କାହିଁକି କିଏ ଗାଇବ !

ଏହା କହି ମୁନ୍‌ସୀ ପୁଅର ହାତ ଧରି ଅନ୍ତଃପୁର ଭିତରକୁ ଗଲେ । ଅହଲ୍ୟା ଖବର ପାଇ ଉଠିବାକୁ ଚେଷ୍ଟା କଲା । କିନ୍ତୁ ଉଠିବାର ଶକ୍ତି ନ ଥିଲା । ପାଖକୁ ଆସି ଚକ୍ରଧର ଡାକିଲେ—ଅହଲ୍ୟା !

ଅହଲ୍ୟା ପୁଣି ଚେଷ୍ଟା କଲା । ବହୁଦିନର ଚିନ୍ତା, ଶୋକ ଏବଂ ଉପବାସ ତାକୁ ଜର୍ଜ୍ଜରି କରି ଦେଇଥିଲା । ସେଥିପାଇଁ ପଡ଼ି ରହି ପତିଙ୍କ ଚରଣକୁ ହାତ ବଢ଼ାଇଲା । ହାତ ସେଥିପାଇଁ ପ୍ରସାରିତ ହୋଇ ରହିଗଲା । ରୁଦ୍ଧ କଣ୍ଠରେ ଚକ୍ରଧର କହିଲେ—ଅହଲ୍ୟା, ମୁଁ ଆସିଗଲି, ଆଉ ଯିବିନାହିଁ । ଭଗବାନଙ୍କ ଶପଥ ପକାଇ କହୁଛି ଆଉ ଯିବିନାହିଁ । ହେ ଭଗବାନ, ତୁମେ କ'ଣ ଏଇଆ ଦେଖାଇବାକୁ ମୋତେ ଏଠାକୁ ଆଣିଥିଲ !

ଅହଲ୍ୟା ଥରେ ମାତ୍ର ତୃଷିତ, କରୁଣ ନେତ୍ରରେ ପତିଙ୍କ ଆଡ଼କୁ ଚାହିଁଲା । ତା'ପରେ ଆଖି ସବୁଦିନ ପାଇଁ ବନ୍ଦହୋଇଗଲା ।

ଏହି ସମୟରେ ମନୋରମା ଆସି ଦୁଆରେ ଠିଆ ହୋଇଗଲା । ଅଶ୍ରୁ ସମ୍ବରଣ କରି ଚକ୍ରଧର କହିଲେ—ରାଣୀଜୀ, ଟିକିଏ ଆସି ଏହାକୁ ଖଟ ଉପରୁ ତଳକୁ ନେଇଆସନ୍ତୁ ।

ମନୋରମା ଭିତରକୁ ଆସି ଅହଲ୍ୟାର ମୁହଁକୁ ଚାହିଁଲା ଏବଂ କାନ୍ଦି କାନ୍ଦି କହିଲା—ଆପଣଙ୍କୁ ଦେଖିବା ଅପେକ୍ଷାରେ ଥିଲା । ନହେଲେ ପ୍ରାଣ କେବେଠାରୁ ଚାଲିଯାଇଥାନ୍ତାଣି । ଦୁଃଖିନୀର କୌଣସି ଅଭିଳାଷ ପୂର୍ଣ୍ଣ ହେଲାନାହିଁ ।

( ୪୪ )

କେତେ ବର୍ଷ ଚାଲିଗଲା । ମୁନ୍‌ସୀ ବଜ୍ରଧର ଆଉ ନାହାନ୍ତି । ଘୋଡ଼ାରେ ଯିବା ଆସିବା କରିବାକୁ ସେ ଭଲପାଉଥିଲେ—ଘୋଡ଼ା ଉପରେ, ଘୋଡ଼ୀ ଉପରେ ନୁହେଁ । ଟାଙ୍ଗା, କାର୍, ପାଲିଙ୍କିକୁ ସେ ମାଇପିଲୋକଙ୍କ ଯାନ ବୋଲି କହୁଥିଲେ । ଦିନେ ବହୁତ ରାତିରେ ସେ ଜଗଦୀଶପୁରରୁ ଫେରୁଥିଲେ । ରାସ୍ତାରେ ଗୋଟିଏ ନାଲ ପଡ଼ୁଥିଲା । ସେଥିରେ ଓହ୍ଲାଇକରି ଯିବାକୁ ପଡ଼ୁଥିଲା । କିନ୍ତୁ ଓହ୍ଲାଇ କରି ଯିବାକୁ ସେ ଅପମାନଜନକ ବୋଲି ଭାବିଲେ । ଘୋଡ଼ାକୁ ମାରିଲେ ଚାବୁକ, ନାଲ ଏ ପାଖରେ ଆସି ପହଞ୍ଚିଗଲେ । କିନ୍ତୁ ଘୋଡ଼ାର ଗୋଡ଼ ଗୋଟିଏ ଖଣାରେ ଗଳି ପଡ଼ିଲା । ଘୋଡ଼ା ପଡ଼ିଗଲା । ମୁନ୍‌ସୀଜୀ ମଧ୍ୟ ପଡ଼ିଗଲେ । ଆଉ ଉଠିଲେ ନାହିଁ । ହସି ଖେଳି ଜୀବନ ବିତାଇଦେଲେ । ନିର୍ମଳା ମଧ୍ୟପତି ବିୟୋଗ ସହିବାକୁ ବେଶି ଦିନ ରହିଲେନାହିଁ । ତାଙ୍କର ଅନ୍ତିମ ଅଭିଳାଷ ଥିଲା—ଚକ୍ରଧର ପୁଣି ବିବାହ କରୁ । କିନ୍ତୁ ତାଙ୍କ ଅଭିଳାଷ ପୂର୍ଣ୍ଣ ହୋଇ ପାରିଲା ନାହିଁ ।

ଦେବପ୍ରିୟା ପୁଣି ଜଗଦୀଶପୁରରେ ଶାସନକର୍ତ୍ତ୍ରୀ ହେଲେ । ହଁ, ତାଙ୍କର ନାମ ବଦଳିଗଲା । ବିଳାସିନୀ ଦେବପ୍ରିୟା ଏବେ ହୋଇଛନ୍ତି ତପସ୍ୱିନୀ ଦେବପ୍ରିୟା । ତାଙ୍କର ଭବିଷ୍ୟତ ଏବେ ଅନ୍ଧକାରମୟ ନୁହେଁ । ପ୍ରଭାତର ଆଶା-ରଶ୍ମି ତାଙ୍କର ଜୀବନମାର୍ଗକୁ ଆଲୋକିତ କରୁଛି ।

ରାଣୀ ମନୋରମା ନୂଆ ଭବନରେ ରହୁଛନ୍ତି । ସେ ଅନେକ ପ୍ରକାର ପକ୍ଷୀ ପାଳନ କରିଛନ୍ତି । ପକ୍ଷୀମାନଙ୍କର କଳରବରେ ସେ ନିଜର ମନୋବ୍ୟଥା ଦୂର କରିଦେବାକୁ ଚାହାଁନ୍ତି । ତାଙ୍କ ଶୟନାଗାରରେ ଦେଓ୍ୱାନ ସାହେବଙ୍କ ମୁଖନିସୃତବାଣୀ ଲେଖାଯାଇଥିଲା—

‘ଜନତାକୁ ଦେଖ’

ରାଜାସାହେବ ଜୀବିତ ଥିବା ସମୟରେ ମନୋରମାକୁ ଦେଓ୍ୱାନ ସାହେବ ହରିସେବକ ଏହି ଅନୁପମ ଉପଦେଶ ଦେଇଥିଲେ । ସେହି ଦିନଠାରୁ ଏହି ଉପଦେଶ ତାଙ୍କର ଜୀବନ-ମନ୍ତ୍ର ହୋଇଛି ।

ପିତାମାତାଙ୍କ ଅନ୍ତେ ଚକ୍ରଧର ଆଉ ଘରେ ରହିଲେ ନାହିଁ । ଦକ୍ଷିଣାଞ୍ଚଳକୁ ଚାଲିଗଲେ । ଏବେ କେବଳ ସେବା କାର୍ଯ୍ୟ କରୁ ନାହାନ୍ତି—ବିଭିନ୍ନ ପ୍ରକାରର ପକ୍ଷୀ ପାଳନ କରୁଛନ୍ତି । ଭକ୍ତଜନ ମଧ୍ୟ ନାନା ପ୍ରକାର ପକ୍ଷୀ ଆଣି ତାଙ୍କୁ ଦେଉଛନ୍ତି ।

---

---

